# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**June-July- 2020**


୭୬ ଭାଗ ୧୧ଶ-୧୨ଶ ସଂଖ୍ୟା ଜ୍ୟେଷ୍ଠ-ଶ୍ରାବଣ ଜୁନ୍-ଜୁଲାଇ - ୨୦୨୦




---




ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।



ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪-୨୫୩୦୨୧୧



ପ୍ରତିଖଣ୍ଡ : ଟ. ୫.୦୦

# ସୂଚୀ

## ରଥଯାତ୍ରା ବିଶେଷାଙ୍କ
## ଜୁନ୍‌-ଜୁଲାଇ- ୨୦୨୦



ପ୍ରାଚୀନ କାଳର ସ୍କନ୍ଦ ପୁରାଣ, ବାମଦେବ ସଂହିତା ଓ ସୁତ ପୁରାଣରେ ବର୍ଣ୍ଣିତ ପୁରୁଷୋତ୍ତମ କ୍ଷେତ୍ର ପୁରୀକୁ ଶଙ୍ଖକ୍ଷେତ୍ର ଭାବରେ ବର୍ଣ୍ଣନା କରାଯାଇଛି ।

## ପୁରାଣ ବର୍ଣ୍ଣନା ଅନୁସାରେ ଶଙ୍ଖକ୍ଷେତ୍ରରେ ଅବସ୍ଥିତ ପ୍ରସିଦ୍ଧ ସ୍ଥାନମାନଙ୍କର ନାମ

୧. ବଳଭଦ୍ର, ଜଗନ୍ନାଥ, ସୁଭଦ୍ରା ଓ ସୁଦର୍ଶନ
୨. ଶ୍ରୀକ୍ଷେତ୍ରେଶ୍ୱରୀ ବିମଳା
୩. ଶ୍ରୀମହାଲକ୍ଷ୍ମୀ
୪. ଉତ୍ତର ଦୁର୍ଗା
୫. ବାଟମଙ୍ଗଳା
୬. ଗରୁଡ଼ସ୍ତମ୍ଭ
୭. ଭୋଗମଣ୍ଡପ
୮. କଳ୍ପବୃକ୍ଷ
୯. ରୋହିଣୀକୁଣ୍ଡ
୧୦. ବାଟଗଣେଶ
୧୧. ଉଚ୍ଛ ଗଣପତି
୧୨. ଶ୍ରୀସରସ୍ୱତୀ ଦେବୀ
୧୩. ନବଗ୍ରହ
୧୪. କୋଣାର୍କ ସୂର୍ଯ୍ୟଦେବ
୧୫. ପାଦପଦ୍ମ
୧୬. ଯଜ୍ଞବଟ
୧୭. ଅଗ୍ନେଶ୍ୱର
୧୮. ଇନ୍ଦ୍ରାଣିଦେବୀ
୧୯. କ୍ଷେତ୍ରପାଳ
୨୦. ସ୍ନାନ ଭୈରବୀ
୨୧. ମୁକ୍ତେଶ୍ୱରୀ
୨୨. ଛତ୍ରକାଳୀ
୨୩. ବାଟ ମାର୍କଣ୍ଡେୟ
୨୪. କାତ୍ୟାୟନୀ
୨୫. ଗୋପେଶ୍ୱର
୨୬. ବେଦ କାଳୀ
୨୭. ପାତାଳେଶ୍ୱର
୨୮. ଭୁବନେଶ୍ୱରୀ
୨୯. ବୈକୁଣ୍ଠେଶ୍ୱର
୩୦. ଯାଜ୍ଞ୍ୟେଶ୍ୱରୀ
୩୧. ଈଶାନେଶ୍ୱର
୩୨. ଶୀତଳା ଦେବୀ
୩୩. ପାକଶାଳା
୩୪. ଦକ୍ଷିଣେଶ୍ୱର
୩୫. କୁଣ୍ଡଳେଶ୍ୱର
୩୬. ରାମ ଚୈତନ୍ୟ ମନ୍ଦିର
୩୭. ବରଭେି ହନୁମାନ
୩୮. ନିର୍ମାଲ୍ୟ ହନୁମାନ
୩୯. ଅଳକା ବାଟିକା
୪୦. ଚକ୍ର ନାରାୟଣ
୪୧. ରାମେଶ୍ୱର
୪୨. ଚତୁର୍ଧାମ
୪୩. କାନପଟା ହନୁମାନ
୪୪. ନିଳାଦ୍ରୀ ବିହାରୀ
୪୫. ବଭ୍ରେଶ୍ୱର
୪୬. ଶିଆଳି ଲତା
୪୭. କୋଇଲି ବୈକୁଣ୍ଠ
୪୮. ତପସ୍ୱୀ ହନୁମାନ
୪୯. ସୁବର୍ଣ୍ଣ କୂପ
୫୦. ଆନନ୍ଦ ବଜାର
୫୧. ଦେବସ୍ନାନ ମଣ୍ଡପ
୫୨. ମେଘନାଦ ପାଚେରୀ
୫୩. ସିଂହଦ୍ୱାର (ପୂର୍ବଦ୍ୱାର)
୫୪. ଅରୁଣ ସ୍ତମ୍ଭ
୫୫. ବଡ଼ଛାତ ମଠ
୫୬. ଛାଉଣି ମଠ
୫୭. ପଜନତା
୫୮. ପ୍ରହରୀ ହନୁମାନ
୫୯. ଦକ୍ଷିଣ ଦ୍ୱାର
୬୦. ଦୁର୍ଗାମାଧବ
୬୧. ମଙ୍ଗଳେଶ୍ୱରୀ
୬୨. ପଶ୍ଚିମ ଦ୍ୱାର
୬୩. ଉତ୍ତର ଦ୍ୱାର
୬୪. ଶ୍ରୀଲୋକନାଥ
୬୫. ରାମେଶ୍ୱର
୬୬. କାହ୍ନୁ ନୃସିଂହ
୬୭. କାହ୍ନୁ ଆଶ୍ରମ
୬୮. ନିକୁମ୍ଭିଳାବଟ
୬୯. ହରଚଣ୍ଡୀ
୭୦. ଚାମୁଣ୍ଡେଶ୍ୱରୀ
୭୧. ବନଦୁର୍ଗା
୭୨. ବାସେଳୀ
୭୩. କପାଳମୋଚନ
୭୪. ମଣିକର୍ଣ୍ଣିକା ତୀର୍ଥ
୭୫. ଘାଟମଙ୍ଗଳା
୭୬. ଭଗବତୀ
୭୭. ମାର୍କଣ୍ଡେଶ୍ୱର
୭୮. ମାର୍କଣ୍ଡେୟ ତୀର୍ଥ
୭୯. ସପ୍ତମାତୃକା
୮୦. ଅଳମ୍ବା ଦେବୀ
୮୧. ଅଠରନାଥ
୮୨. ମକରଧ୍ୱଜ ହନୁମାନ
୮୩. ଭାର୍ଗବୀ ନଦୀ
୮୪. ମୁକ୍ତାଶ୍ୱର
୮୫. ବାଟମଙ୍ଗଳା
୮୬. କପାଟେଶ୍ୱର
୮୭. ଭିଲ୍ଲେଶ୍ୱର
୮୮. ସିଦ୍ଧ ହନୁମାନ
୮୯. ଇନ୍ଦ୍ରଦ୍ୟୁମ୍ନ ତୀର୍ଥ
୯୦. ନୀଳକଣ୍ଠେଶ୍ୱର
୯୧. ଆଦି ନୃସିଂହ
୯୨. ଗୁଣ୍ଡିଚା ମଣ୍ଡପ
୯୩. ଅର୍ଦ୍ଧ ସୁଣାନି (ମାଉସୀମା)
୯୪. ମାର୍ଚ୍ଚିକା ଦେବୀ
୯୫. ଚର୍ଚ୍ଚିକା ଦେବୀ
୯୬. ଷୋଡ଼ଶ ପୁତ୍ରୀ
୯୭. ନାରାୟଣୀ
୯୮. ଅଙ୍ଗିରାଶ୍ରମ
୯୯. ଅଙ୍ଗିରାବଟ
୧୦୦. ଦକ୍ଷିଣକାଳୀ
୧୦୧. ଉଗ୍ରେଶ ଆଶ୍ରମ
୧୦୨. ଶ୍ୱେତଗଙ୍ଗା
୧୦୩. ମୁକ୍ତିଶୀଳା
୧୦୪. ଆଦିଶଙ୍କର ପୀଠ
୧୦୫. ସ୍ୱର୍ଗଦ୍ୱାର
୧୦୬. ବରାହୀ ଦେବୀ
୧୦୭. ଶ୍ୟାମାକାଳୀ
୧୦୮. ବଟ ହନୁମାନ
୧୦୯. ଚକ୍ରତୀର୍ଥ
୧୧୦. ଚକ୍ର ନାରାୟଣୀ
୧୧୧. ମହୋଦଧୀ ତୀର୍ଥ
୧୧୨. ଜଗନ୍ନାଥ ବଲ୍ଲଭ
୧୧୩. କାଶୀ ବିଶ୍ୱନାଥ
୧୧୪. ବିଶ୍ୱେଶ୍ୱରୀ
୧୧୫. ନରେନ୍ଦ୍ର ସରୋବର

# ଶ୍ରୀଜଗନ୍ନାଥାଷ୍ଟକମ୍



ଗୋପଅଙ୍ଗନା–ବଦନ–　　କମଳୁଁ ଯେ ମଧୁପାନ
କଲେକ ଆବର ଯା'ଙ୍କ ମୁରଲୀ–ନାଦ,
କାଳିନ୍ଦୀ–ତଟ–ବିପିନ　　କଲାକ ମୋଦେ ମଗନ
ରମା ଶମ୍ଭୂ ଆଦିରେ ଯେ ପୂଜିତ–ପଦ,
ପଥୁକି ମୋ' ନୟନ ପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୧)

ବାମକରେ ମୁରଲିକା　　ଶିରେ ଶିଖିପୁଚ୍ଛ ଶିଖା
କଟୀତଟେ ପୀତାମ୍ବର ଯା'ଙ୍କ ଶୋଭିତ,
କଟାକ୍ଷବାଣ ପ୍ରହାରି　　ମୋହନ୍ତି ଯେ ଗୋପନାରୀ
ଶ୍ରୀବୃନ୍ଦାକାନନେ ନିତ୍ୟ ହୋଇଣ ସ୍ଥିତ,
ପଥୁକି ମୋ' ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୨)

ଯେହୁ ମହୋଦଧିତୀରେ　　ସ୍ୱର୍ଣ୍ଣକାନ୍ତି ନୀଳାଦ୍ରିରେ
ସ୍ଥିତ ମହାମନ୍ଦିରରେ ନିତ୍ୟ ରାଜିତ,
ସାଦରେ ସଙ୍ଗତେ ଘେନି　　ବଳଭଦ୍ର ଭଦ୍ରା ବେନି
ଦେବଙ୍କୁ ପୟରସେବା କରିଣ ଦତ୍ତ,
ପଥୁକି ମୋ' ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୩)

ଯେହୁ କୃପା–ପାରାବାର　　ନବନୀରଦ ରୁଚିର
ରମାବାଣୀ–ବିନୋଦନ କମଳାନନ,
ଲକ୍ଷକୋଟି ଦେବରାଜ　　ଶିରେ ଯା'ଙ୍କ ପଦରଜ
ବହନ୍ତି ବେଦାନ୍ତ ଯା'ଙ୍କୁ କରେ ବଖାଣ,
ପଥୁକି ମୋ' ନୟନ ପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୪)

ଯେ ପ୍ରଭୁ କରୁଣାସିନ୍ଧୁ　　ଅଖିଳ ଜଗତବନ୍ଧୁ
ସିନ୍ଧୁ–ସୁତା–ଚିରି–ଇନ୍ଦୁ ଗମନ୍ତେ ରଥେ,
ବିପ୍ରଗଣ ପଥେ ମିଳି　　ଗାଆନ୍ତେ ସ୍ତୁତିଆବଳୀ
ଘେନା ଯେ କରନ୍ତି ସ୍ତୁତିକଥା ସୁଚିତ୍ତେ,
ପଥୁକି ମୋ' ନୟନପଥେ,
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୫)

ବିରଞ୍ଚି ଶିରଭୂଷଣ ପଦ୍ମପଳାଶଲୋଚନ
ନିଳାଦ୍ରି ବିହାରୀ ଯେ ଅନନ୍ତ–ମସ୍ତକେ,
ପୟର ଥାପି ଆସୀନ ସଦା ରସାନନ୍ଦ ଘନ
ମଗନ ଶ୍ରୀରାଧାଅଙ୍ଗ–ଆଶ୍ଳେଷ ସୁଖେ,
ପଥୁକି ମୋ' ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୬)

ନମାଗଇଁ ରାଜ୍ୟସୁଖ ନ ମାଗେଁ ମଣି ମାଣିକ୍ୟ
ନମାଗେଁ ନୟନ ନିଧି ବର କାମିନୀ,
ଯାହାଙ୍କ ଚରିତାବଳୀ ଗାଆନ୍ତି ଚନ୍ଦ୍ର ମଉଳି
ପରାଣ ଲୋଡ଼େ ମୋ' ତାଙ୍କୁ ଦିନଯାମିନୀ,
ପଥୁକି ମୋ' ନୟନ ପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୭)

ଅସାର ସଂସାର ବନ୍ଧ ଛେଦ ମୋ' ଖରେ ମୁକୁନ୍ଦ
ଅଥଳ ପାପପୟୋଧି ଦିଅ ଶୁଖାଇ,
ହେ ନାଥ ! ଦୀନ ଅନାଥ ପାଇଁ ଶାଶ୍ୱତ ନିଶ୍ଚିତ
ପ୍ରେମପତ୍ର କ୍ଷେତ୍ରେ ଏଥି ଅଛ ରୁହାଇ,
ପଥୁକି ମୋ' ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୮)

ଜଗନ୍ନାଥାଷ୍ଟକଂ ପୁଣ୍ୟଂ ଯଃ ପଠେତ୍ ପ୍ରଯତଃ ଶୁଚିଃ
ସର୍ବପାପ ବିଶୁଦ୍ଧାତ୍ମା ବିଷ୍ଣୁ ଲୋକଂ ସ ଗଚ୍ଛତି,
ପ୍ରାକୃତ ପଦେ ପୟାର ରଚିଲା ବିଚ୍ଛନ୍ଦ ଛାର
ସ୍ଥିରମନେ ଶୁଚିମନ୍ତ ହୋଇ ଗାଇଲେ,
ପାତକି–ପାତକମାନ ହୁଅଇ ହେଲେ ଦହନ
ଅନ୍ତେ ବିଷ୍ଣୁ ଲୋକେ ଗତି ହୁଏ ତା' ଭଲେ,
ଜୟ ଜୟ ଶ୍ରୀଜଗନ୍ନାଥ
ନିତ୍ୟକାଳ ପଦେ ତୁମ୍ଭ ଲୋଟୁ ମୋ' ମାଥ । (୯)

(ଓଡ଼ିଆ ରୂପାନ୍ତର : ବିଚ୍ଛନ୍ଦ ଚରଣ ପଟ୍ଟନାୟକ)



## ଚକ୍ରରାଜ ଶ୍ରୀସୁଦର୍ଶନଙ୍କ ପହଣ୍ଡି ବିଜେ



ସେବାୟତଙ୍କ ଗହଣରେ ମା' ସୁଭଦ୍ରାଙ୍କ ପହଣ୍ଡି ବିଜେ



ଟାହିଆ ହଲାଇ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପହଣ୍ଡି ବିଜେ





ଜଗଦ୍‌ଗୁରୁ ଶ୍ରୀ ଶ୍ରୀ ଶଙ୍କରାଚାର୍ଯ୍ୟ



ପୁରୀ ରଥଯାତ୍ରା ଅବସରରେ ସମବେତ ଭକ୍ତଙ୍କୁ ଅଭିବାଦନ ଜଣାଉଛନ୍ତି
ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ






ବଡ଼ଦାଣ୍ଡରେ ରଥ ଦଉଡ଼ି ଟାଣୁଛନ୍ତି ମାନ୍ୟବର ରାଜ୍ୟପାଳ
ପ୍ରଫେସର ଗଣେଶୀ ଲାଲ ଏବଂ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ





୫'ଟି'ର କାର୍ଯ୍ୟକାରିତା : ଶ୍ରୀମନ୍ଦିର ସୁରକ୍ଷା ଓ ସୌନ୍ଦର୍ଯ୍ୟ ପ୍ରତି ଅଗ୍ରାଧିକାର



ସାମାଜିକ ଦୂରତା ବଜାୟ ରଖି ରଥ ନିର୍ମାଣ କାର୍ଯ୍ୟ ଆଗେଇଚାଲିଛି







ସ୍ନାନ ମଣ୍ଡପରେ ଚତୁର୍ଦ୍ଧାମୂର୍ତ୍ତି





ସ୍ନାନ ମଣ୍ଡପରେ ଚତୁର୍ଦ୍ଧାମୂର୍ତ୍ତିଙ୍କ ହାତୀ ବେଶ

# ଓଡ଼ିଶା ଇତିହାସରେ ଏକ ନୂଆ ଅଧ୍ୟାୟ

## ‘ବନ୍ଦେ ଉତ୍କଳ ଜନନୀ’ ସଙ୍ଗୀତକୁ ରାଜ୍ୟ ସଙ୍ଗୀତର ମାନ୍ୟତା




‘ବନ୍ଦେ ଉତ୍କଳ ଜନନୀ’, କୀର୍ତ୍ତିମାଳିନୀ ଉତ୍କଳ ଜନନୀଙ୍କର ପବିତ୍ର ଆବାହନୀ ସଙ୍ଗୀତ । ଓଡିଆ ଜାତିର ଅସ୍ମିତା ଓ ସ୍ୱାଭିମାନର ସଙ୍ଗୀତ । ନୈସର୍ଗିକ ପ୍ରାକୃତିକ ଶୋଭା, ଅନନ୍ୟ କୀର୍ତ୍ତିରାଜି ଓ ଉତ୍କୃଷ୍ଟ କଳା ବିମଣ୍ଡିତ, ଉତ୍କଳ ଜନନୀଙ୍କର ଜୟଗାନ ଏହି ସଙ୍ଗୀତକୁ ଅମୃତମୟ କରିବା ସହ କୋଟି କୋଟି ଓଡିଆଙ୍କୁ ଜାତି ପ୍ରେମର ସୁଦୃଢ ବନ୍ଧନରେ ବାନ୍ଧିରଖିବା ସହ ଓଡିଶାର ଗୌରବକୁ ବିଶ୍ୱବ୍ୟାପୀ କରିବା ପାଇଁ ପ୍ରେରଣା ଦେଇଆସିଛି । ଦେଶାତ୍ମବୋଧ ଓ ଜାତୀୟତାବୋଧ ହେଉଛି ଏହି ସଙ୍ଗୀତର ଅନ୍ତଃସ୍ୱର ।

କୋଭିଡ୍ ଯୋଦ୍ଧାଙ୍କୁ ଉତ୍ସାହିତ କରିବା ପାଇଁ ୨୦୨୦ ମଇ ୩୦ ତାରିଖ ଶନିବାର ସନ୍ଧ୍ୟା ୫ ଘଟିକା ୩୦ ମିନିଟ୍ ସମୟରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନିବେଦନକ୍ରମେ ଦେଶ ବିଦେଶର କୋଣ ଅନୁକୋଣରେ ରହୁଥିବା ଓଡିଆ ଭାଇଭଉଣୀମାନେ ଯେଭଳି ଏକତାନରେ ‘ବନ୍ଦେ ଉତ୍କଳ ଜନନୀ’ ସଙ୍ଗୀତ ଗାନ କରି ଜାତି ପ୍ରେମର ନିଦର୍ଶନ ଦେଖାଇଛନ୍ତି, ତାହା ଅତୁଳନୀୟ । ଉତ୍କଳ ଜନନୀଙ୍କ ବନ୍ଦନାରେ ସେଦିନ ଗାଁ, ସହର, ନଗର, ପଲ୍ଲୀ ମୁଖରିତ ହୋଇ ଉଠିଥିଲା । ସାଢେ ଚାରିକୋଟି ଓଡିଆଙ୍କ କଣ୍ଠରେ ଥିଲା ଗୋଟିଏ ସ୍ୱର, ଉତ୍କଳ ଜନନୀଙ୍କର ଜୟଗାନ ‘ବନ୍ଦେ ଉତ୍କଳ ଜନନୀ’ । ଏଥିପାଇଁ ରାଜ୍ୟ କ୍ୟାବିନେଟ୍ ଓଡିଶା ସମେତ ଦେଶ ବିଦେଶରେ ରହୁଥିବା ଆମର ଓଡିଆ

ଭାଇଭଉଣୀମାନଙ୍କୁ ଧନ୍ୟବାଦ ଜଣାଉଛି । ବର୍ତ୍ତମାନର କଠିନ ପରିସ୍ଥିତିରେ ଏହି ସଙ୍ଗୀତ ଆମ ସଂକଳ୍ପକୁ ଆହୁରି ଦୃଢ଼ କରିବା ସହିତ ଆଗକୁ ବଢ଼ିବା ପାଇଁ ପ୍ରେରଣା ଦେଇଛି । ସାରା ଓଡ଼ିଶା ଆଜି ଏହି ସଙ୍ଗୀତ ତାନରେ ଏକ୍‌ଜୁଟ୍ ହୋଇଛି । ଏ ଜାତି ଏକ ମନ, ଏକ ପ୍ରାଣ ହୋଇ ଜାଗି ଉଠିଛି ।

୨୦୨୦ ମଇ ୩୦ ତାରିଖ ସନ୍ଧ୍ୟା ୫ ଘଟିକା ୩୦ ମିନିଟ୍ ସମୟରେ ସାରା ବିଶ୍ୱର କୋଣ ଅନୁକୋଣ ଉତ୍କଳ ଜନନୀଙ୍କ ବନ୍ଦନାରେ ଝଂକୃତ ହୋଇ ଉଠିଥିଲା । ଏହି ବିରଳ ଅନୁଭବକୁ ସଦା ସତେଜ ରଖିବା ପାଇଁ ୧୦ ଲକ୍ଷରୁ ଊର୍ଦ୍ଧ୍ୱ ଓଡ଼ିଆ ଭିଡ଼ିଓ ମାଧ୍ୟମରେ ଚିତ୍ର ଉତ୍ତୋଳନ କରି ଓଡ଼ିଶା ସରକାରଙ୍କ ପାଖକୁ ପ୍ରେରଣ କରି ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କର ମହତ୍ ଉଦ୍ଦେଶ୍ୟ ପ୍ରତି ଦୃଢ଼ ସମର୍ଥନ ଜ୍ଞାପନ କରିଛନ୍ତି । ସେଥିପାଇଁ ରାଜ୍ୟ କ୍ୟାବିନେଟ୍ ସମସ୍ତଙ୍କୁ ଧନ୍ୟବାଦ ଜଣାଉଛି ।

ଓଡ଼ିଆ ସାହିତ୍ୟ ଜଗତର ମଉଡ଼ମଣି କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କର କାଳଜୟୀ ସୃଷ୍ଟି 'ବନ୍ଦେ ଉତ୍କଳ ଜନନୀ' ଏହି ସଙ୍ଗୀତର ପ୍ରତିଟି ଶବ୍ଦରେ ଭରି ରହିଛି ଦେଶଭକ୍ତିର ଅଫୁରନ୍ତ ଶକ୍ତି ଓ ସୌନ୍ଦର୍ଯ୍ୟ, ଆଗକୁ ବଢ଼ିବା ପାଇଁ ଅଦମ୍ୟ ପ୍ରେରଣା । ବ୍ୟକ୍ତିଗତ ଦୁଃଖ ଓ ଯନ୍ତ୍ରଣାକୁ ପଛରେ ପକାଇ ମାତୃଭୂମି, ମାତୃଭାଷା ତଥା ଓଡ଼ିଆ ଜାତିକୁ ଗୋଟିଏ ସୂତ୍ରରେ ବାନ୍ଧି ରଖିବା ପାଇଁ ତାଙ୍କର ଉଦ୍ୟମ ନିମନ୍ତେ ସେ ଚିର ନମସ୍ୟ । ଏହି ଅବସରରେ ରାଜ୍ୟ କ୍ୟାବିନେଟ୍, କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ଅମର ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।



କାନ୍ତକବିଙ୍କର ଏହି କାଳଜୟୀ ରଚନା 'ବନ୍ଦେ ଉତ୍କଳ ଜନନୀ' ୧୯୧୨ ମସିହାରୁ ଉତ୍କଳ ସମ୍ମିଳନୀର ବିଭିନ୍ନ ଅଧିବେଶନରେ ଗାନ କରାଯାଇ ଆସୁଅଛି । ୧୯୩୬ ଅପ୍ରେଲ ପହିଲାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବା ସମୟରୁ 'ବନ୍ଦେ ଉତ୍କଳ ଜନନୀ' ରାଜ୍ୟ ସଙ୍ଗୀତ ଭାବରେ ପ୍ରତିଟି ଓଡ଼ିଆର ହୃଦୟରେ ଓ ଭାବନାରେ ରହି ଆସିଅଛି ।

୧୯୯୪ ମସିହା ନଭେମ୍ବର ୭ ତାରିଖ ଦିନ ମହାନ୍ ଜନନାୟକ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ତଥା ବିଧାନସଭାର ତତ୍କାଳୀନ ବାଚସ୍ପତିଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏକ ବୈଠକରେ 'ବନ୍ଦେ ଉତ୍କଳ ଜନନୀ'କୁ ବିଧାନସଭାର ପ୍ରତି ଅଧିବେଶନର ଶେଷ ଦିବସରେ ଉଦ୍‌ଯାପନୀ ସଙ୍ଗୀତ ଭାବରେ ଗାନ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା ଏବଂ ତାହା ଅଦ୍ୟାବଧି ପାଳିତ ହୋଇ ଆସୁଅଛି । ପରବର୍ତ୍ତୀ ସମୟରେ ବିଧାନସଭାର ବୈଠକମାନଙ୍କରେ 'ବନ୍ଦେ ଉତ୍କଳ ଜନନୀ' ସଙ୍ଗୀତକୁ ରାଜ୍ୟ ସଙ୍ଗୀତ ମାନ୍ୟତା ଦେବା ସମ୍ପର୍କରେ ଅନେକ ବିଚାର ବିମର୍ଷ କରାଯାଇଛି । ରାଜ୍ୟ ସରକାରଙ୍କ ପକ୍ଷରୁ ମଧ୍ୟ ବିଭିନ୍ନ ସମୟରେ ଏ ସମ୍ପର୍କରେ ଅନେକ ନିର୍ଦ୍ଦେଶାବଳୀ ଦିଆଯାଇଛି ।

କୋଭିଡ୍ ଯୋଦ୍ଧାଙ୍କ ତ୍ୟାଗକୁ ସମ୍ମାନ ଜଣାଇବା ସହ ସେମାନଙ୍କୁ ଉତ୍ସାହିତ କରିବା ପାଇଁ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନିବେଦନକ୍ରମେ ୨୦୨୦ ମଇ ୩୦ ତାରିଖ ଶନିବାର ସନ୍ଧ୍ୟା ୫ ଘଟିକା ୩୦ ମିନିଟ୍ ସମୟରେ

ସମଗ୍ର ଓଡିଆ ଜାତି ସମ୍ପୂର୍ଣ୍ଣ 'ବନ୍ଦେ ଉତ୍କଳ ଜନନୀ' ସଙ୍ଗୀତ ଗାନ କରି ଓଡିଆ ସ୍ୱାଭିମାନକୁ ନଭଶ୍ଚୁମ୍ୱୀ କରିପାରିଛନ୍ତି । ଏହା ଥିଲା ଓଡିଆ ଜାତି ପାଇଁ ଗର୍ବ ଓ ଗୌରବର ମୁହୂର୍ତ୍ତ ।

ଏହି ଐତିହାସିକ ମୁହୂର୍ତ୍ତକୁ ଚିରସ୍ଥାୟୀ କରିବା ପାଇଁ ତଥା ସାଢେ ଚାରିକୋଟି ଓଡିଆଙ୍କ ଭାବାବେଗକୁ ସମ୍ମାନ ଜଣାଇ ରାଜ୍ୟ କ୍ୟାବିନେଟ୍, କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କର ଅନବଦ୍ୟ ସୃଷ୍ଟି 'ବନ୍ଦେ ଉତ୍କଳ ଜନନୀ' ସଙ୍ଗୀତକୁ ରାଜ୍ୟ ସଙ୍ଗୀତ ଭାବରେ, ସରକାରୀ ମାନ୍ୟତା ଦେବା ପାଇଁ ନିଷ୍ପତ୍ତି ଗ୍ରହଣ କରିଛନ୍ତି ।

ଏହି ସଙ୍ଗୀତ ଗାନର ମାନ୍ୟକ୍ରମ ନିମ୍ନମତେ ସ୍ଥିରୀକୃତ ହେଲା ।

୧) କାନ୍ତକବିଙ୍କ ରଚିତ ସମ୍ପୂର୍ଣ୍ଣ ଗୀତ 'ବନ୍ଦେ ଉତ୍କଳ ଜନନୀ'କୁ ରାଜ୍ୟ ସଙ୍ଗୀତ ଭାବରେ ଗ୍ରହଣ କରାଗଲା ।

୨) ଏହି ସଙ୍ଗୀତ ଗାୟନର ଅନୁମୋଦିତ ସ୍ୱର, ଶୈଳୀ ତଥା ରେକର୍ଡିଂ ଓଡିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗ ଦ୍ୱାରା ପ୍ରସ୍ତୁତ କରାଯିବା ପାଇଁ ସ୍ଥିର କରାଗଲା ।

୩) ଏହାର ଗାୟନ ଅବଧି ସ୍ୱର ତଥା ଶୈଳୀ ଉପରୋକ୍ତ ରେକର୍ଡିଂ ପ୍ରକାରେ ନିର୍ଦ୍ଧାରିତ ହେଲା ।

୪) ରାଜ୍ୟ ସରକାରଙ୍କର ବିଭିନ୍ନ ସରକାରୀ କାର୍ଯ୍ୟକ୍ରମ, ବିଧାନସଭାର ଅଧିବେଶନ ଏବଂ ଅନ୍ୟାନ୍ୟ ସ୍ୱତନ୍ତ୍ର ଭାବରେ ଆୟୋଜିତ ସରକାରୀ କାର୍ଯ୍ୟକ୍ରମରେ ଏହି ସଙ୍ଗୀତର ବିନା ବାଦ୍ୟରେ ପ୍ରସ୍ତୁତ ଅନୁମୋଦିତ ସଂସ୍କରଣ ପରିବେଷଣ/ଗାନ କରାଯିବ ।

> ସାଢ଼େ ଚାରିକୋଟି ଓଡ଼ିଆଙ୍କ ଭାବାବେଗରେ ଗୁନ୍ଥା ହୋଇ ରହିଛି 'ବନ୍ଦେ ଉତ୍କଳ ଜନନୀ' । ମୁଁ ସେ କାଳଜୟୀ ସ୍ରଷ୍ଟାଙ୍କୁ ପ୍ରଣାମ କରୁଛି । କୋଟି କଣ୍ଠରେ ଏହି ରାଜ୍ୟ ସଂଗୀତର ସ୍ୱର ଝଂକୃତ ହେଉ ।

୫) ବିଦ୍ୟାଳୟ, ମହାବିଦ୍ୟାଳୟ, ଅନ୍ୟାନ୍ୟ ସଭାସମିତି ଓ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ପୃଷ୍ଠ ସଙ୍ଗୀତ କିମ୍ବା ବାଦ୍ୟଯନ୍ତ୍ର ସଙ୍ଗତ ସହିତ ଏହାକୁ ପରିବେଷଣ/ଗାନ କରାଯିବ ।

୬) ଉଦ୍‌ଘାଟନୀ, ଉଦ୍‌ଯାପନୀ ଓ ଉଦ୍‌ବୋଧନୀ ସଙ୍ଗୀତ ଭାବରେ ଏହା ଗାନ କରାଯିବା ସମୟରେ ଏହି ରାଜ୍ୟ ସଙ୍ଗୀତ ପ୍ରତି ସମ୍ମାନ ପ୍ରଦର୍ଶନ ପୂର୍ବକ ଉପସ୍ଥିତ ସମସ୍ତେ ସଙ୍ଗୀତ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଦଣ୍ଡାୟମାନ ରହିବେ । ମାତ୍ର ବୟସ୍କ, ଅସୁସ୍ଥ, ଭିନ୍ନକ୍ଷମ, ଗର୍ଭବତୀ ମହିଳା ଯେଉଁମାନେ ନିଜର ଉପରୋକ୍ତ ଅକ୍ଷମତା କାରଣରୁ ଦଣ୍ଡାୟମାନ ହେବାରେ ଅସୁବିଧା ଅନୁଭବ କରୁଥିବେ, ସେମାନେ ଏହି ସଙ୍ଗୀତ ପରିବେଷଣ/ଗାନ ସମୟରେ ନିଜ ସ୍ଥାନରେ ନମ୍ର ଭାବରେ ବସି ରହି ଏଥିପ୍ରତି ସମ୍ମାନ ପ୍ରଦର୍ଶନ କରିପାରିବେ । ଶିଶୁମାନଙ୍କୁ ମଧ୍ୟ ଏହି ସଙ୍ଗୀତ ପରିବେଷଣ/ଗାନ ସମୟରେ ଦଣ୍ଡାୟମାନ ରହିବାରୁ ଅବ୍ୟାହତି ଦିଆଗଲା ।

୭) ଏହି ସଙ୍ଗୀତ ପୋଲିସ୍ ବ୍ୟାଣ୍ଡ୍, ବଂଶୀ, ସିତାର ଭଳି ବିଭିନ୍ନ ବାଦ୍ୟଯନ୍ତ୍ର ମାଧ୍ୟମରେ ମଧ୍ୟ ପରିବେଷଣ କରାଯିବ ।

୮) ଏହି ସଙ୍ଗୀତର ପ୍ରଚାର ପ୍ରସାର ତଥା ଅଭିବୃଦ୍ଧି ନିମନ୍ତେ ଏହାର ସୃଜନାତ୍ମକ ପରିବେଷଣ ଉପରେ କୌଣସି କଟକଣା ରହିବ ନାହିଁ ।

୯) ବିଦ୍ୟାଳୟ ଓ ମହାବିଦ୍ୟାଳୟ ପାଠ୍ୟକ୍ରମରେ ଏହି ସଙ୍ଗୀତକୁ ଅନ୍ତର୍ଭୁକ୍ତ କରିବା ପାଇଁ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ ଏବଂ ଉଚ୍ଚଶିକ୍ଷା ବିଭାଗକୁ ନିର୍ଦ୍ଦେଶ ଦିଆଗଲା ।



## କରୋନା ଯୋଦ୍ଧାଙ୍କୁ ସମ୍ମାନ ଜଣାଇ 'ବନ୍ଦେ ଉତ୍କଳ ଜନନୀ' ସଙ୍ଗୀତ ଗାନ












# ବନ୍ଦେ ଉତ୍କଳ ଜନନୀ

ବନ୍ଦେ ଉତ୍କଳ ଜନନୀ
ଚାରୁହାସମୟୀ ଚାରୁ ଭାଷମୟୀ, ଜନନୀ, ଜନନୀ, ଜନନୀ ।
ପୂତ-ପୟୋଧି-ବିଧୌତ-ଶରୀରା,
ତାଳତମାଳ-ସୁଶୋଭିତ-ତୀରା,
ଶୁଭ୍ରତଟିନୀକୂଳ-ଶୀକର-ସମୀରା
ଜନନୀ, ଜନନୀ, ଜନନୀ ।।

ଘନ ବନଭୂମି ରାଜିତ ଅଙ୍ଗେ,
ନୀଳ ଭୂଧରମାଳା ସାଜେ ତରଙ୍ଗେ,
କଳ କଳ ମୁଖରିତ ଚାରୁ ବିହଙ୍ଗେ
ଜନନୀ, ଜନନୀ, ଜନନୀ ।।

ସୁନ୍ଦରଶାଳି-ସୁଶୋଭିତ-କ୍ଷେତ୍ରା,
ଜ୍ଞାନବିଜ୍ଞାନ-ପ୍ରଦର୍ଶିତ-ନେତ୍ରା,
ଯୋଗୀଋଷିଗଣ-ଉଟଜ-ପବିତ୍ରା
ଜନନୀ, ଜନନୀ, ଜନନୀ ।।

ସୁନ୍ଦର ମନ୍ଦିର ମଣ୍ଡିତ-ଦେଶା,
ଚାରୁକଳାବଳି-ଶୋଭିତ-ବେଶା,
ପୁଣ୍ୟ ତୀର୍ଥଚୟ-ପୂର୍ଣ୍ଣ-ପ୍ରଦେଶା
ଜନନୀ, ଜନନୀ, ଜନନୀ ।।

ଉତ୍କଳ ସୁରବର-ଦର୍ପିତ-ଗେହା,
ଅରିକୁଳ-ଶୋଣିତ-ଚର୍ଚ୍ଚିତ-ଦେହା,
ବିଶ୍ୱଭୂମଣ୍ଡଳ-କୃତବର-ସ୍ନେହା
ଜନନୀ, ଜନନୀ, ଜନନୀ ।।

କବିକୁଳମୌଳି ସୁନନ୍ଦନ-ବନ୍ଦ୍ୟା,
ଭୁବନବିଘୋଷିତ-କୀର୍ତ୍ତିଅନିନ୍ଦ୍ୟା,
ଧନ୍ୟେ, ପୁଣ୍ୟେ, ଚିରଶରଣ୍ୟେ
ଜନନୀ, ଜନନୀ, ଜନନୀ ।।

(କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର)



କରୋନା ସମୟରେ ବିଧାନସଭାର ଏକ ସ୍ୱତନ୍ତ୍ର ଅଧିବେଶନ




କରୋନା ବିରୋଧୀ ସଚେତନତା ସୃଷ୍ଟି








କୋଭିଡ୍ ହସ୍ପିଟାଲ୍ ପରିଦର୍ଶନ ଅବସରରେ ଉନ୍ନୟନ କମିଶନର ଓ ୫ 'ଟି' ସଚିବ

## କୋଭିଡ୍-୧୯ ସମ୍ପର୍କରେ ଓଡ଼ିଶା ସରକାରଙ୍କ ସ୍ୱାସ୍ଥ୍ୟ ପରାମର୍ଶଦାତା ପ୍ରଫେସର କେ. ଶ୍ରୀନାଥ ରେଡ୍ଡୀଙ୍କ ସହ ଏକ ବିଶେଷ ଆଲୋଚନା




## କରୋନା ଭୂତାଣୁ ସମ୍ପର୍କରେ ଦୈନିକ ବିବରଣୀ ପ୍ରଦାନ




ଶ୍ରୀମତୀ ଶାଳିନୀ ପଣ୍ଡିତ   ଶ୍ରୀମତୀ ସୁଜାତା କାର୍ତ୍ତିକେୟନ୍   ଶ୍ରୀ ପ୍ରଦୀପ୍ତ କୁମାର ମହାପାତ୍ର   ଶ୍ରୀ ଅସୀତ୍ ତ୍ରିପାଠୀ   ଶ୍ରୀ ସଂଜୟ କୁମାର ସିଂ




ଡକ୍ଟର ସୁବ୍ରତ ବାଗ୍‌ଚୀ



ଶ୍ରୀ ପ୍ରଦୀପ କୁମାର ଜେନା




ଶ୍ରୀ ଅଭୟ



ଡକ୍ଟର ସଂଘମିତ୍ରା ପତି

# କରୋନା ଭୂତାଣୁ ବିରୁଦ୍ଧରେ ତ୍ୱରିତ ପଦକ୍ଷେପ



JOIN ODISHA GOVT
WHATSAPP INFO DESK
9337929000

To get all latest updates on
Odisha Govt's COVID19
containment measures
at your finger tip

Web Dashboard www.statedashboard.odisha.gov.in
Mobile App Search for 'Odisha COVID Dashboard'

Odisha COVID Dashboard

#OdishaFightsCorona
Help Us to Help You and Your Families

@Naveen_Odisha Naveen.Odisha







# ସମ୍ପାଦକୀୟ



ଯେତେବେଳେ ସମଗ୍ର ମାନବ ସମାଜ କୋଭିଡ୍-୧୯ ବିରୁଦ୍ଧରେ ସଂଗ୍ରାମରତ ସେପରି ଏକ ସନ୍ଧିକ୍ଷଣରେ ଅନୁଷ୍ଠିତ ହେବାକୁ ଯାଉଛି ବିଶ୍ୱପ୍ରସିଦ୍ଧ ପୁରୀ ରଥଯାତ୍ରା । କରୋନା ମହାମାରୀ ଏବେ ସମଗ୍ର ବିଶ୍ୱକୁ ଦୋହଲାଇ ଦେଇଛି । କେତେବେଳେ ଏହି ଭୂତାଣୁ କାହାକୁ କେଉଁଭାବରେ କବଳିତ କରିବ, ତାହା କଳ୍ପନାର ବାହାରେ । ଶ୍ରୀଜଗନ୍ନାଥଙ୍କ କୃପା ଓ ସାଢେ ଚାରିକୋଟି ଓଡ଼ିଆ ଲୋକଙ୍କ ସହଯୋଗ ଯୋଗୁଁ ଓଡ଼ିଶା ଆଜି କରୋନା ମୁକାବିଲା କ୍ଷେତ୍ରରେ ସମଗ୍ର ଦେଶରେ ଉତ୍ତମ ପ୍ରଦର୍ଶନ କରୁଥିବା ରାଜ୍ୟ ହୋଇପାରିଛି । ଏ କ୍ଷେତ୍ରରେ ଆମ ରାଜ୍ୟ ଜାତୀୟ ସ୍ତରରେ ମାନ୍ୟତା ହାସଲ କରିପାରିଛି । କୋଭିଡ୍ ଯୁଦ୍ଧରେ ଓଡ଼ିଶାକୁ ଉତ୍ତମ ପ୍ରଦର୍ଶନକାରୀ ରାଜ୍ୟର ମାନ୍ୟତା ଦେବାରେ ବିଶେଷ ଭୂମିକା ଗ୍ରହଣ କରିଥିବା ଆଗଧାଡିର କରୋନା ଯୋଦ୍ଧାଙ୍କର ଅନେକ ଭୂମିକା ଅଛି । ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ନେତୃତ୍ୱରେ ରାଜ୍ୟ ସରକାରଙ୍କ ତ୍ୱରିତ ନିଷ୍ପତ୍ତି ଏବଂ ଆମ ଲୋକଙ୍କ ତ୍ୟାଗ ରାଜ୍ୟକୁ ବେଶ୍ ସହାୟକ ହୋଇଛି । କୋଭିଡ୍ ଯୋଦ୍ଧାଙ୍କ ତ୍ୟାଗକୁ ସମ୍ମାନ ଜଣାଇବା ସହ ସେମାନଙ୍କୁ ଉତ୍ସାହିତ କରିବା ଲାଗି ମାନ୍ୟବର ମୁଖ୍ୟମନ୍ତ୍ରୀ ୨୦୨୦ ମସିହା ମଇ ମାସ ୩୦ ତାରିଖ ସନ୍ଧ୍ୟା ଘ.୫.୩୦ମି.ରେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ରଚିତ 'ବନ୍ଦେ ଉତ୍କଳ ଜନନୀ' ସଙ୍ଗୀତ ଗାନ ପାଇଁ ଆହ୍ୱାନ ଦେଇଥିଲେ । ରାଜ୍ୟର ସବୁଆଡେ ଏହାକୁ ନେଇ ପ୍ରବଳ ଉତ୍ସାହ ପରିଲକ୍ଷିତ ହୋଇଥିଲା । ଏହାର ଠିକ୍ ସାତ ଦିନ ପରେ ଏହି କାଳଜୟୀ ସଙ୍ଗୀତକୁ ଶ୍ରୀ ନବୀନ ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ରାଜ୍ୟ କ୍ୟାବିନେଟ୍‌ର ଏକ ସ୍ୱତନ୍ତ୍ର ଅଧିବେଶନରେ ରାଜ୍ୟ ସଙ୍ଗୀତ ଭାବେ ମାନ୍ୟତା ପ୍ରଦାନ କରିବା ପାଇଁ ନିଷ୍ପତ୍ତି ନିଆଗଲା । ବିଗତ ୮୦ ବର୍ଷର ଓଡ଼ିଶା ଇତିହାସରେ ଏହା ରାଜ୍ୟବାସୀଙ୍କ ପାଇଁ ଏକ ବିରାଟ ଉପଲବ୍ଧି ସଦୃଶ ଥିଲା ।



ଭାରତରେ ଥିବା ପୁଣ୍ୟ କ୍ଷେତ୍ରମାନଙ୍କ ମଧ୍ୟରେ ଶ୍ରୀକ୍ଷେତ୍ର ଶ୍ରେଷ୍ଠତମ । ଏଠାରେ ଅଧିଷ୍ଠିତ ଦେବତା ସମଗ୍ର ଜଗତର ନାଥ ଶ୍ରୀଜଗନ୍ନାଥ । ମହାପ୍ରଭୁଙ୍କ ଦ୍ୱାଦଶ ଯାତ୍ରା ମଧ୍ୟରୁ ଶ୍ରୀଗୁଣ୍ଡିଚା ଯାତ୍ରା ହେଉଛି ସର୍ବଶ୍ରେଷ୍ଠ ।

ଏହା ସର୍ବଧର୍ମ, ଶାନ୍ତି, ମୈତ୍ରୀ ଓ ପ୍ରୀତିର ସମନ୍ୱୟ । ରଥଯାତ୍ରା ସମ୍ପର୍କରେ ସମ୍ୟକ୍ ଧାରଣା ସୂଚାଇ ଦିଏ କି ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ପତିତଜନଙ୍କୁ ଉଦ୍ଧାର କରିବା ପାଇଁ ମହାପ୍ରଭୁ ସ୍ୱୟଂ ନିଜ ଅଗ୍ରଜ ଶ୍ରୀବଳଭଦ୍ର, ଭଗ୍ନୀ ଦେବୀ ସୁଭଦ୍ରା ଓ ଚକ୍ରରାଜ ଶ୍ରୀସୁଦର୍ଶନଙ୍କ ସହ ବଡଦାଣ୍ଡରେ ରଥଯାତ୍ରା କରି ଶ୍ରୀଗୁଣ୍ଡିଚା ମନ୍ଦିର ଅଭିମୁଖେ ଯାତ୍ରା କରିଥାନ୍ତି । ଏହା ଭକ୍ତ ଓ ଭଗବାନଙ୍କ ମଧ୍ୟରେ ଏକ ଭାବଗତ ମିଳନର ଅବକାଶ ସୃଷ୍ଟି କରେ । ସମବେତ ଭକ୍ତଙ୍କ ମଧ୍ୟରେ ରଥ ଦଉଡି ଟାଣିବାକୁ ପ୍ରବଳ ଆଗ୍ରହ ପରିଲକ୍ଷିତ ହୁଏ । ଏହି ରଥଯାତ୍ରା ବିଭିନ୍ନ ପର୍ଯ୍ୟାୟ ଦେଇ ଅନୁଷ୍ଠିତ ହୁଏ । ଅକ୍ଷୟ ତୃତୀୟାଠାରୁ ଆରମ୍ଭ ହୋଇ ନୀଳାଦ୍ରିବିଜେରେ ସମାପିତ ହୁଏ ଏହି ପର୍ବ । ଲୌକିକ ଚଳଣିରେ ସ୍ନାନଯାତ୍ରାରେ ୧୦୮ ଗରା ସୁବାସିତ ଜଳରେ ସ୍ନାନ କରିଥିବା ଠାକୁର ସାଧାରଣ ଲୋକଟିଏ ପରି ଜ୍ୱରରେ ପୀଡିତ ହୁଅନ୍ତି । ଅନବସର ବା ଅଣସର ଘରେ ୧୫ ଦିନର ଦିବ୍ୟ ଚେରମୂଳି ଚିକିତ୍ସା ପରେ ସୁସ୍ଥ ହୋଇ ରତ୍ନସିଂହାସନରେ ଅଧିଷ୍ଠିତ ପୂର୍ବକ ନବଯୌବନ ବେଶରେ ଦର୍ଶନ ଦିଅନ୍ତି ଏବଂ ଏହାପରେ ଆରମ୍ଭ ହୋଇଯାଏ ରଥଯାତ୍ରାର ପ୍ରକ୍ରିୟା ।



ଆମେ ସମସ୍ତେ ଅନୁଭବ କରୁ ଯେ, କରୋନା ଭୂତାଣୁର ଭୟାବହତା ଦୃଷ୍ଟିରୁ ଏ ବର୍ଷର ରଥଯାତ୍ରା ପୂର୍ବବର୍ଷଗୁଡିକ ପରି ଅନୁଷ୍ଠିତ ହୋଇପାରିବ ନାହିଁ । ତେବେ ଆଶା କରିବା ଯେ, ମହାପ୍ରଭୁଙ୍କର କୃପା ବଳରେ ସମସ୍ତ ନୀତିକାନ୍ତି ସୁରୁଖୁରୁରେ ସମାପ୍ତ ହେବ । ଚତୁର୍ଦ୍ଧାମୂର୍ତ୍ତିଙ୍କ ପ୍ରତି ଭକ୍ତି ନୈବେଦ୍ୟ ଅର୍ପଣ ସହ କରୋନା ଭୂତାଣୁକୁ ପ୍ରତିହତ କରିବା ନିମନ୍ତେ ଆସନ୍ତୁ, ଆମେ ସଭିଏଁ ୫ଟି ମନ୍ତ୍ର ଯଥା– ମାସ୍କ ପରିଧାନ, ସାମାଜିକ ଦୂରତା ରକ୍ଷା, ପରିମଳ ନିର୍ବାହ, କରୋନା ଭୂତାଣୁର ବ୍ୟାପକ ପରୀକ୍ଷା ଓ ଏହାକୁ ଦୂରେଇ ଦେବାକୁ ସମସ୍ତ ସାଧନ ଉପରେ ଗୁରୁତ୍ୱ ଦେବା । ନିଜେ ସୁରକ୍ଷିତ ରହି, ଅନ୍ୟକୁ ସୁରକ୍ଷିତ ରଖିବା ।

ଜୟ ଜଗନ୍ନାଥ ।

(signature)

ସମ୍ପାଦକ

# ସର୍ବ ମଙ୍ଗଳ, ସର୍ବ ରହସ୍ୟ ଶ୍ରୀଜଗନ୍ନାଥ

**ଶରତ କୁମାର କର**

ଅନେକ ବ୍ୟକ୍ତି, ଦାର୍ଶନିକ, ଭକ୍ତ, ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥଙ୍କ ମଧ୍ୟରେ ଏକାତ୍ମତା ଅଛି ବୋଲି ଦର୍ଶାଇଥାଆନ୍ତି । ଶ୍ରୀକୃଷ୍ଣଙ୍କ ବଡ଼ ପରିବାର । ତାଙ୍କର ଦୁଇ ହଳ ପିତାମାତା । ଜନ୍ମିତ ଓ ପାଳିତ । ଅଥଚ ସେ ତାଙ୍କ ନିଜ ବଂଶ ଯଦୁବଂଶକୁ ଧ୍ୱଂସ କରି ପରିବାରବର୍ଗଙ୍କ କାର୍ଯ୍ୟକଳାପରେ ଅତିଷ୍ଠ ହୋଇ ନିଜ ଘରକୁ ଜଳଧି ଜଳରେ ବୁଡ଼ାଇ ଦେଇଥିଲେ (ପଶ୍ଚିମ ଭାରତର ଦ୍ୱାରକାକୁ) । ତଥାପି ଶ୍ରୀମଦ୍‌ଭାଗବତରେ ନନ୍ଦ ରାଜାଙ୍କ ପ୍ରଶ୍ନର ଉତ୍ତରରେ ଉଦ୍ଧବ କହିଛନ୍ତି–



ନ ପିତା ମାତା ତସ୍ୟ ନ ଭାର୍ଯ୍ୟା ନ ସୁତାଦୟଃ
ନାତ୍ମୀୟୋ ନ ପରଶ୍ଚାପି ନ ଦେହୋ ଜନ୍ମ ଏବଚ ।।
ନ ଚାସ୍ୟ କର୍ମ ବା ଲୋକେ ସଦସନ ମିଶ୍ର ଯୋନି
କ୍ରୀଡ଼ାର୍ଥ ସୋଦ୍ଧପି ସାଧୁନାଂ ପରିତ୍ରାଣାୟ କଳ୍ପତେ ।।

ବ୍ୟାସକୃତ ଏହି ସଂସ୍କୃତ ଭାଗବତର ଏହି ଶ୍ଳୋକର ଅର୍ଥ ହେଲା– ହେ ନନ୍ଦ ରାଜା ତାଙ୍କର ମାତା ନାହିଁ କି ପିତା ନାହିଁ, ଭାର୍ଯ୍ୟା ନାହିଁ, ପୁତ୍ର ନାହିଁ, କେହି ଆତ୍ମୀୟ ନାହାନ୍ତି କି କେହି ପର ନାହାନ୍ତି । ତାଙ୍କର ଦେହ ନାହିଁ କି ଜନ୍ମ ମଧ୍ୟ ନାହିଁ । ଏ ସଂସାରରେ ମଧ୍ୟ ତାଙ୍କର କିଛି କର୍ମ ନାହିଁ । ତଥାପି ସାଧୁମାନଙ୍କର ପରିତ୍ରାଣ ପାଇଁ ଲୀଳାଖେଳା ରଚନା ନିମନ୍ତେ ସେ ଏହି ପ୍ରାକୃତ ଲୋକର ଦେବତା, ପଶୁ, ପକ୍ଷୀ, ମନୁଷ୍ୟ ଆଦି ଯୋନିରେ ଶରୀର ଧାରଣ କରନ୍ତି । ପୁଣି ତା' ପର ଶ୍ଳୋକରେ କୁହାଯାଇଛି– ସେ ନିଜେ ନିର୍ଗୁଣ ହେଲେ ମଧ୍ୟ ସ୍ୱ, ରଜ, ତମ ଗୁଣକୁ ସ୍ୱୀକାରକରି ପ୍ରାଣୀମାନଙ୍କର 'ମଙ୍ଗଳ' ପାଇଁ ଲୀଳା (କ୍ରୀଡ଼ା) ରଚନା କରନ୍ତି ଏବଂ ସ୍ୱଗୁଣରେ ବିଶ୍ୱର ସୃଷ୍ଟି, ରଜୋଗୁଣରେ ଏହାର ପାଳନ ଓ ତମୋଗୁଣରେ ଏହାର 'ସଂହାର' କରନ୍ତି ।

ଏହି ଦୃଷ୍ଟିରୁ ଦେଖିଲେ ଶ୍ରୀମନ୍ଦିରରେ ରତ୍ନସିଂହାସନରେ ବିରାଜମାନ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀଦେବୀ ସୁଭଦ୍ରା ବସ୍ତୁତଃ ତ୍ରିମୂର୍ତ୍ତି ହେଲେ ମଧ୍ୟ ତ୍ୱତଃ ଏକ ଏବଂ ତାହା ବ୍ରହ୍ମା ବିଷ୍ଣୁ ଓ ମହେଶ୍ୱର (ସାରଳା ଦାସ) । ଏଇଥିପାଇଁ ଶାସ୍ତ୍ର ଓ ଗ୍ରନ୍ଥମାନଙ୍କରେ ବାରମ୍ବାର କୁହାଯାଇଛି ଯେ ପରଂବ୍ରହ୍ମ ଏକ । କିନ୍ତୁ 'ବହୁ' ହେବା 'ଇଚ୍ଛା'ରୁ ହିଁ ସେ ନିଜକୁ ବିସ୍ତାରିତ କରିଛନ୍ତି । ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ଏହି ତ୍ୱର ପ୍ରତୀକାତ୍ମକ ପ୍ରକାଶ । ଦାରୁବ୍ରହ୍ମ ବା ବ୍ରହ୍ମଦାରୁ ଶ୍ରୀଜଗନ୍ନାଥ ଏଥିରୁ ଭିନ୍ନ ନୁହଁନ୍ତି । ଶ୍ରୀକୃଷ୍ଣ ବଂଶ ବୁଡ଼ାଇ ଦେଲେ, ଘର ବୁଡ଼ାଇ ଦେଲେ । କିନ୍ତୁ ଶ୍ରୀଜଗନ୍ନାଥ ଅବତାରରେ ସେ ବ୍ୟାପକ ହେବାକୁ ଇଚ୍ଛା କରିବାରୁ ବ୍ୟାପକ ଭାବେ ସ୍ୱ, ରଜ, ତମ ଗୁଣର ବ୍ୟବହାର କରୁଛନ୍ତି । ଯଥା– ସୃଷ୍ଟି ପାଳନ ଓ ସଂହାର କରୁଛନ୍ତି ।

ମହର୍ଷି ବେଦବ୍ୟାସକୃତ 'ମହାପୁରୁଷ ବିଦ୍ୟା' ଗ୍ରନ୍ଥରେ (ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରକାଶିତ) ଗ୍ରନ୍ଥରେ ଗୋଟିଏ ଚମତ୍କାର ଶ୍ଳୋକ (ଯାହାକି ଶ୍ରୀଜଗନ୍ନାଥଙ୍କ ଏକ ଧ୍ୟାନ ମନ୍ତ୍ର ଭାବେ ସ୍ୱୀକୃତ) । ଦେଖନ୍ତୁ–

'ନୀଳାଦ୍ରୌ ଶଙ୍ଖ ମଧ୍ୟେ ଶତଦଳ କମଳେ
ରତ୍ନସିଂହାସନସ୍ଥଂ
ସର୍ବାଳଙ୍କାରଯୁକ୍ତଂ ନବଘନରୁଚିରଂ ସଂଯୁତଂ ଚାଗ୍ରଜେନ ।
ଭଦ୍ରାୟା ବାମଭାଗେ ରଥଚରଣଯୁତଂ ବ୍ରହ୍ମରୁଦ୍ରେନ୍ଦ୍ର ବନ୍ଦ୍ୟଂ
ବେଦାନାଂ ସାରମୀଶଂ ସ୍ୱଜନ
ପରିବୃତଂ ବ୍ରହ୍ମଦାରୁଂ ଭଜେଦ୍ଧହମ ॥

ଅର୍ଥାତ ନୀଳାଦ୍ରିରେ ଶଙ୍ଖାକାର କ୍ଷେତ୍ର ମଧ୍ୟରେ ଶତଦଳ କମଳ ଉପରେ ରତ୍ନସିଂହାସନରେ ଅଧିଷ୍ଠିତ, ସର୍ବବିଧ ଅଳଂକାରଯୁକ୍ତ, ନୂତନମେଘ ସଦୃଶ ସୁନ୍ଦର, ଅଗ୍ରଜ ଶ୍ରୀବଳଭଦ୍ରଙ୍କ ସହ ସଂଯୁକ୍ତ, ଦେବୀ ସୁଭଦ୍ରାଙ୍କ ବାମ ପାର୍ଶ୍ୱରେ ରଥରେ ବିଦ୍ୟମାନ ଚକ୍ରରାଜ ସୁଦର୍ଶନଙ୍କ ସହ ଯୁକ୍ତ । ବ୍ରହ୍ମା, ରୁଦ୍ର ଓ ଇନ୍ଦ୍ରଙ୍କ ଦ୍ୱାରା ବନ୍ଦିତ, ବେଦମାନଙ୍କର ସାରତ୍ୱ ସହ, ସ୍ୱଜନମାନଙ୍କଦ୍ୱାରା ପରିବେଷ୍ଟିତ ସେହି ବ୍ରହ୍ମଦାରୁଙ୍କୁ ମୁଁ ପ୍ରଣାମ କରୁଛି ।

'ମହାପୁରୁଷବିଦ୍ୟା'ର ଏହି ଶ୍ଳୋକାନୁଯାୟୀ ସ୍ପଷ୍ଟ ସୂଚିତ ଯେ ଶ୍ରୀଜଗନ୍ନାଥ (ଦାରୁବ୍ରହ୍ମ)ଙ୍କ ପରିବାର ମଧ୍ୟରେ ନିର୍ଦ୍ଦିଷ୍ଟ ଭାବରେ ବିଦ୍ୟମାନ ତାଙ୍କ ବଡ଼ଭାଇ ବଳଭଦ୍ର, ଭଉଣୀ ସୁଭଦ୍ରା ଓ ଶ୍ରୀସୁଦର୍ଶନ । କିନ୍ତୁ ପରିଶେଷରେ ସକଳ ବେଦର ସାରସ୍ୱରୂପ ବ୍ରହ୍ମଦାରୁ ଶ୍ରୀଜଗନ୍ନାଥ 'ସ୍ୱଜନ ପରିବୃତ' ବୋଲି ମହର୍ଷି ବେଦବ୍ୟାସ ତାଙ୍କର ବିରାଟ ପରିବାରକୁ ଇଙ୍ଗିତ କରିଛନ୍ତି । ଏ ସମ୍ପର୍କରେ ଅନୁଧ୍ୟାନ କଲେ ତାଙ୍କର ବିରାଟ ସେବକ ପରିବାର, ବହୁ ସମ୍ପୃକ୍ତ ପ୍ରତିମା ଦେବଦେବୀ, ଆନୁଷଙ୍ଗିକ ପର୍ବ, ଉତ୍ସବ, ଯାତ୍ରା ଓ ସେଥିସହ ସମ୍ପୃକ୍ତ ବହୁ ସେବାୟତ, ବ୍ୟକ୍ତିବିଶେଷ, ସେବାକାରୀ, ମଠ, ମନ୍ଦିର, ଭକ୍ତକର୍ମୀ, ସାଧୁ ଦର୍ଶନେଚ୍ଛୁ ଯାତ୍ରୀଗଣ ।

ଏହାକୁ ବିଶେଷ ଅନୁଧ୍ୟାନ କଲେ ଗବେଷକମାନେ ବହୁ ତଥ୍ୟ, ତ୍ୱ ସମ୍ପର୍କରେ ଅବଗତ ହୋଇପାରିବେ । ଯାହାକୁ ମୁଁ ଆରମ୍ଭରୁ ଏ ପୁସ୍ତକରେ କହିଛି– ଯାହା ମୁଁ ବୁଝିଛି– ଯେ ସେ ପରଂବ୍ରହ୍ମ ଇଚ୍ଛାମୟ, ସ୍ୱୟଂଭୂ, ନିଜକୁ ନିଜେ ନିଜ ଇଚ୍ଛାରେ ସୃଷ୍ଟି କରି ତାଙ୍କ ଦାରବଲୀଳା, ମାନବଲୀଳା ମଧ୍ୟରେ ସାକ୍ଷାତ୍ ନିଜର ମହତ୍ତ୍ୱ, ମାହାତ୍ମ୍ୟକୁ ନିଜେ ପ୍ରକଟ, ପ୍ରକାଶ କରୁଛନ୍ତି । ସ୍ଥୂଳରେ ପୁଣି ସୂକ୍ଷ୍ମରେ ତାଙ୍କ ନିର୍ଦ୍ଦେଶିତ ଲୀଳା ବା (ଖେଳ କ୍ରୀଡ଼ା) ମାଧ୍ୟମରେ ତାଙ୍କର ସାର୍ବଭୌମ, ସର୍ବକାଳୀନ ଦିବ୍ୟସାକୁ ଅସମାପ୍ତ ଅନନ୍ତ ଭାବେ ବ୍ୟାପ୍ତ ପ୍ରସାରିତ କରିବାକୁ ଇଚ୍ଛା କରିଛନ୍ତି ଏବଂ କରୁଛନ୍ତି ମଧ୍ୟ ।

ଆହୁରି ମଧ୍ୟ, ଦାରୁବ୍ରହ୍ମ ଭାବରେ ଏହି ବିରାଟ ପରିବାର ବ୍ୟତୀତ ପରଂବ୍ରହ୍ମ ଭାବରେ ଏ ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ତାଙ୍କର ପରିବାର ବୋଲି ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତରେ ପ୍ରଭୁ ନିଜେ କହିଛନ୍ତି । ''ବ୍ରହ୍ମାଣ୍ଡ ମାଳ ମାଳ ହୋଇ ମୋ ଲୋମରୂପେ ବିରାଜଇ'' । ବେଦରେ ତାଙ୍କୁ କୁହାଯାଇଛି ତାଙ୍କର ସହସ୍ର ମସ୍ତକ, ସହସ୍ର ଚକ୍ଷୁ, ସହସ୍ର ପାଦ । ସମସ୍ତ ବିଶ୍ୱ ବ୍ରହ୍ମାଣ୍ଡରେ ପରିବ୍ୟାପ୍ତ । ଏହିପରି ପରଂବ୍ରହ୍ମଙ୍କ ରହସ୍ୟ । ପରିବ୍ୟାପ୍ତ ଦିଗ ଦିଗନ୍ତ, ସ୍ଥାନ, ହସ୍ତ ପଦ ମସ୍ତକ ଚକ୍ଷୁ ବ୍ୟତୀତ ଯଦି କିଛି ଅକଳ୍ପନୀୟ ବ୍ୟାପ୍ତି ସ୍ଥାନ ଥାଏ ତା'ର ମଧ୍ୟ ସେ ଅଧୀଶ୍ୱର । ସ୍ଥାନ (ବସ୍ତୁ) ଓ କାଳର ସେ ହିଁ ଏକମାତ୍ର ଈଶ୍ୱର ।

ଶ୍ରୀଜଗନ୍ନାଥ ଏହିଭଳି ସମଗ୍ର ରହସ୍ୟର ଆଧାର । ପୁଣି ସେ ସମସ୍ତ ମଙ୍ଗଳର ସୂତ୍ରଧର ବା ଅଶେଷ, ଅଖଣ୍ଡ, ଅସରନ୍ତି ଆଶ୍ରୟର ସ୍ରୋତ ଏବଂ ଅନନ୍ତକୋଟି ସୂର୍ଯ୍ୟାଲୋକରେ ଦୀପ୍ତ ଅନ୍ଧକାରନାଶୀ ଜ୍ୟୋତିସ୍ତମ୍ଭ । ଯେକୌଣସି ରହସ୍ୟ, ଚମତ୍କାର, ଅସମ୍ଭବ ତାଙ୍କ ପକ୍ଷରେ ସମ୍ଭବ । ଯେକୌଣସି ବିପଦ, ଦୁଃଖ, ଅମଙ୍ଗଳ, ରୋଗ, ହତାଶା, ଭ୍ରାନ୍ତି ଓ ଅଶାନ୍ତିରୁ ଉଦ୍ଧାର କରିବାରେ ସେ ସିଦ୍ଧିଦାତା । କିନ୍ତୁ ଏସବୁର ବର୍ଣ୍ଣନା ଶୁଣିବା, ପଢ଼ିବା, ବୁଝିବା ଅପେକ୍ଷା ପ୍ରତ୍ୟେକ ମଣିଷ ତା'ର ଆତ୍ମଚିନ୍ତନ ବା ଆତ୍ମ ଜିଜ୍ଞାସାରେ ନିଜ ଅନୁଭବରେ ତାଙ୍କୁ ଗ୍ରହଣ କରିନେଇ ପରୀକ୍ଷା କରନ୍ତୁ ତାଙ୍କ ନିଜ ସମସ୍ୟା କିଭଳି ଅନାୟସରେ ସମାଧାନ ହୋଇଯାଉଛି ।





ନିରାକାରଭାବ ନିଜ ଚେତନାକୁ ତତ୍‌କ୍ଷଣାତ୍ ନ ଆସିଲେ 'ସାକାର' ଚତୁର୍ଦ୍ଧାମୂର୍ତ୍ତିଙ୍କ ଦର୍ଶନ ମାତ୍ରେ ହିଁ ସ୍ପନ୍ଦନ ଅନୁଭୂତ ହୁଏ । ସେହି ଅନୁଭୂତିକୁ ହୃଦୟଙ୍ଗମ କରି ଅଭ୍ୟାସ ଅନୁସାରେ ସ୍ମରଣ, ଭଜନ, ଜପରତ ରହିଲେ ଫଳାଫଳ ଯେକୌଣସି ଭକ୍ତ ନିଜେ ଜାଣି ପାରିବେ । ଏହାପରେ ସେ ନିଜେ ଅନ୍ୟମାନଙ୍କ ପାଇଁ ପ୍ରବଚକ, ପ୍ରଚାରକ, ସ୍ତାବକ ହୋଇଯିବେ । ଏ ଲକ୍ଷଣ ବହୁ ଲୋକଙ୍କ ପାଖରେ ମୁଁ ଦେଖିଛି । ଏହାପରେ ସେଇ ଜଗନ୍ନାଥ ଚେତନା ପ୍ରେମୀମାନେ 'କାଳିଆ'ର ଆଜ୍ଞାବହ, ଦୀକ୍ଷିତ, ସେବକ, ବାବଦୁକ ପ୍ରଚାରକ ହୋଇପଡ଼ନ୍ତି । ସେଇମାନେ ହିଁ 'କଲ୍‌କି' ସେନାବାହିନୀର ସୈନିକ ଏବଂ ଶ୍ରୀଜଗନ୍ନାଥ ଓ ଶ୍ରୀକାଳି ମା'ଙ୍କର ଅନୁଗୃହୀତ ଭାବେ ପରିଗଣିତ ହେବେ । ସତ୍ୟସନ୍ଧାନୀ ଭାବେ ଶତପ୍ରତିଶତ ନିର୍ବାଣ ପ୍ରାପ୍ତ ଭକ୍ତ– ପରିଜନଙ୍କ ସଂଖ୍ୟା ବୃଦ୍ଧି କରିଚାଲିଥିବେ ।

ଏଭଳି ସର୍ବବ୍ୟାପ୍ତ, ସର୍ବଶକ୍ତିମାନ, ସର୍ବଜ୍ଞାତା, ସର୍ବଶ୍ରୋତା, ସର୍ବକର୍ତ୍ତା, ସର୍ବେସର୍ବା ପ୍ରଭୁଙ୍କୁ ଆମେ ଆମ ଅଜ୍ଞାନ ଯୋଗୁଁ ସମ୍ପୂର୍ଣ୍ଣ ଜାଣିପାରିବାର ବା ଆନ୍ତରିକ ପାଇପାରିବାର କ୍ଷମତା ସର୍ବଦା ରଖୁ ନଥିଲେ ମଧ୍ୟ ସେ ଆମକୁ ସଦୟ ହୋଇ କିଭଳି, କ'ଣ କେତେ କରୁଣା କରିପାରନ୍ତି– ତାହା ମଧ୍ୟ ଆମେ ହୃଦୟଙ୍ଗମ କରି ପାରି ନାହୁଁ । ସେ ଆମର ଅତ୍ୟନ୍ତ ଆଦରର ଆପଣାର 'ମା ଓ ବାପା' । ସର୍ବମଙ୍ଗଳ କାର୍ଯ୍ୟରେ, ସମସ୍ତ ଘରୋଇ ପୂଜା, ଉତ୍ସବ, ଅନୁଷ୍ଠାନ, ବିବାହ, ବ୍ରତ, ସନ୍ତାନ ଜନ୍ମ କାର୍ଯ୍ୟରେ ଆମେ ଓଡ଼ିଆ ଜାତି ସର୍ବମଙ୍ଗଳ ଜଗନ୍ନାଥ ଓ ମା'ଙ୍କୁ ପ୍ରଥମେ ଡାକି ପଠାଉ । ସେ ଆସନ୍ତି, ସବୁ ଆଶଙ୍କା ଦୂରକରି ମଙ୍ଗଳ, ଶୁଭମୟ କରିଦିଅନ୍ତି ସେ ସମସ୍ତ ଅନୁଷ୍ଠାନକୁ ।

ସେହି ଅଶେଷ ଦୟାମୟ, ମଙ୍ଗଳମୟ, ଅନ୍ତର୍ଯ୍ୟାମୀ ନିରାକାର ମହାନାୟକ ଭଗବାନଙ୍କୁ ନୟନ ପୂରାଇ ଦେଖିବା ପାଇଁ ସେ ଆମ ଆଗରେ ସାକାର ରୂପରେ ଚତୁର୍ଦ୍ଧାମୂର୍ତ୍ତି ଭାବରେ ସମଗ୍ର ବିଶ୍ୱସମ୍ମୁଖରେ ମର୍ତ୍ତ୍ୟମଣ୍ଡଳରେ ଉଭା ହୋଇଛନ୍ତି । 'ପୁରୁଷୋତ୍ତମ' ସ୍ୱୟଂ ଦେହ ଧରି ପୁରୀଧାମରେ ପବିତ୍ର ଉତ୍କଳ ଦେଶରେ ମହୋଦଧି ସନ୍ନିକଟ ନୀଳାଦ୍ରିରେ ଅବସ୍ଥାନ କରିଛନ୍ତି ।

ଏହା କ'ଣ କମ୍ କଥା? ବ୍ୟାସଦେବଙ୍କ ସ୍କନ୍ଦ ପୁରାଣର ସମସ୍ତ ବର୍ଣ୍ଣନା ଏବଂ ଜଗନ୍ନାଥଙ୍କ ବିଷୟରେ ସମସ୍ତ ତଥ୍ୟ ପଢ଼ିଲେ ମନେହେବ ସ୍ୱୟଂ ପରଂବ୍ରହ୍ମ ଏହି ଉତ୍କଳର ପୁରୀଧାମକୁ ଆଧ୍ୟାତ୍ମିକ ରାଜଧାନୀ କରାଇବା ପାଇଁ ସାଗର ବକ୍ଷରେ ଭାସି ଭାସି ଆସି ଅପୌରୁଷେୟ ଦାରୁବ୍ରହ୍ମ ଭାବରେ ନିତ୍ୟ ଶାଶ୍ୱତ, ଦର୍ଶନ ଦେବା ପାଇଁ ଏ ପବିତ୍ର ସ୍ଥଳରେ ସ୍ୱୟଂ ପ୍ରତିଷ୍ଠିତ ହେଲେ । ଯାହାଙ୍କୁ ସ୍ୱୟଂ ବିଶ୍ୱକର୍ମା ଅରୂପକୁ ରୂପ ଦେଲେ ଚତୁର୍ଦ୍ଧାମୂର୍ତ୍ତି ଭାବରେ । ସ୍ୱୟଂ ପ୍ରଜାପିତା ବ୍ରହ୍ମା ତାଙ୍କୁ ପ୍ରତିଷ୍ଠା କଲେ । ପ୍ରତିଷ୍ଠା କାଳରେ ଭୀଷଣ ନୃସିଂହ ରୂପରେ ଉଗ୍ର ପ୍ରତିଭାତ ହେବାରୁ ବ୍ରହ୍ମା ତାଙ୍କୁ ମନ୍ତ୍ର ବଳରେ ଶାନ୍ତ କାନ୍ତ ସୌମ୍ୟ ଶ୍ରୀଜଗନ୍ନାଥ ଭାବରେ ରତ୍ନସିଂହାସନରେ ବସାଇଥିଲେ । ଯାହାଙ୍କ ଭକ୍ତିବଳରେ ବ୍ରହ୍ମଲୋକରୁ ନିରାକାର ବ୍ରହ୍ମ ମର୍ତ୍ତ୍ୟଲୋକକୁ ସାକାର ହେବାପାଇଁ ଆସିଲେ, ସେ ବ୍ୟକ୍ତି ସତ୍ୟଯୁଗର ଭକ୍ତ ଶିରୋମଣି ରାଜା ଇନ୍ଦ୍ରଦ୍ୟୁମ୍ନ । ତାଙ୍କର ଅଖଣ୍ଡ ଭକ୍ତି, ନିଷ୍ଠା, ଉଦ୍ୟମ ଫଳରେ ତାଙ୍କର ସହସ୍ର ଅଶ୍ୱମେଧଯଜ୍ଞ, ପରେ ମୂର୍ତ୍ତି ଓ ମନ୍ଦିର ନିର୍ମାଣ କାର୍ଯ୍ୟରେ ତାଙ୍କରି ଆହ୍ୱାନରେ ଭାରତର ଅନେକ ରାଜା, ଭକ୍ତ, ଶିଳ୍ପୀ, ସେକାଳରୁ ନୀଳାଦ୍ରି ଶଙ୍ଖକ୍ଷେତ୍ରରେ ପ୍ରଭୁ ଶ୍ରୀଜଗନ୍ନାଥ ଓ ଭକ୍ତ ଇନ୍ଦ୍ରଦ୍ୟୁମ୍ନ ରାଜା ଓ ରାଣୀ ଗୁଣ୍ଡିଚା, ବ୍ରାହ୍ମଣ ମନ୍ତ୍ରୀ ବିଦ୍ୟାପତି, ଶବରରାଜ ବିଶ୍ୱାବସୁ ଆଦିଙ୍କୁ ଏକତ୍ର କରାଇ ଭକ୍ତ ଓ ଭଗବାନଙ୍କର ଅପୂର୍ବ, ଅନନ୍ୟ ମିଳନ ସ୍ଥଳୀରେ ପରିଣତ କରି ଦେଇଛନ୍ତି ତୀର୍ଥରାଜ ଶ୍ରୀକ୍ଷେତ୍ର ପୁରୀକୁ । ଯଥାର୍ଥରେ ସେହିଦିନୁ ମର୍ତ୍ତ୍ୟରେ ଏହା ଆଧ୍ୟାତ୍ମିକ ରାଜଧାନୀ ଏବଂ ମର୍ତ୍ତ୍ୟ ବୈକୁଣ୍ଠ ଓ ଗୋଲକ ଧାମ ଭାବେ ନାମିତ ହୋଇ ରହିଛି । ବାରମ୍ବାର ବ୍ରହ୍ମା କହିଛନ୍ତି– ଏଠାରେ ଦାରୁବ୍ରହ୍ମ 'ପ୍ରତିମା ନୁହନ୍ତି, ସ୍ୱଦେହୀ' । ତେଣୁ ଏ ଧାମ ଅଶେଷ ପୁଣ୍ୟଧାମ । 'ଯେଣୁ ନାରାୟଣ ଦେହୀ ତେଣୁ ସେହି ନାମ'' (କବି ସମ୍ରାଟ୍ ଭଞ୍ଜ) 'ପୁରୁଷୋତ୍ତମ' ଏଠାରେ ଦେହଧରି ରହିଥିବାରୁ ଏହା ପୁରୁଷୋତ୍ତମ ବା ପୁରୀଧାମ । ନୀଳଚକ୍ର ଓ ପତିତପାବନ ପତାକା ଏହାର ପ୍ରାମାଣିକ ଚିହ୍ନ ।





ବେଦ, ଉପନିଷଦ, ପୁରାଣ ବର୍ଣ୍ଣନାନୁସାରେ ତଥା ବିଦ୍ୟାପତି ଓ ଶବରରାଜଙ୍କ ପୂଜା, ବହୁବିଧ ଦର୍ଶନ, ସେବାବିଧି, ମନ୍ତ୍ର ଓ ବିଶ୍ୱାସର ସମନ୍ୱୟର ସାର୍ବଜନୀନ ପୂଜା ଏବଂ ପରମ୍ପରା, ଦାରୁବ୍ରହ୍ମଙ୍କ ମାନବଲୀଳାର ପର୍ଯ୍ୟାୟକ୍ରମ ଦେଖିବାକୁ ମିଳେ । ସ୍ନାନ ଚନ୍ଦନ, ଝୁଲଣ ଯାତ୍ରା, ବେଶ ପରମ୍ପରା, ଅଳଙ୍କାର, ବାଳଭୋଗଠାରୁ ଛପନ ଭୋଗ, ଦହି ପଖାଳ, ବିରି ପିଠା, ଖଜା, ବିଡ଼ିଆପାନ ପର୍ଯ୍ୟନ୍ତ କେତେ ବିଧି ଖଞ୍ଜା ଯାଇଛି । ଫୁଲ, ତୁଳସୀ, ଚନ୍ଦନ, କର୍ପୂର ଲାଗିଠାରୁ ନାକଚଣାଠାରୁ କରପଲ୍ଲବ, ଚିତା, ପାଟ, ଶ୍ରୀକପଡ଼ାଠାରୁ ଗୀତଗୋବିନ୍ଦ ଖଣ୍ଡୁଆ ପ୍ରଭୃତି ମଙ୍ଗଳ ଆଳତି ପୂର୍ବରୁ 'ମଣିମା ଉଠିବା ହୁଅନ୍ତୁ' ଡାକଠାରୁ ଶଯ୍ୟାପୂର୍ବରୁ ନୃତ୍ୟ ସଙ୍ଗୀତ ଓ ବଡ଼ସିଂହାର ବେଶକୁ ଦେଖିଲେ ଓ ଅନୁଭବ କଲେ ମନେହେବ ସ୍ୱର୍ଗରେ ପ୍ରଭୁଙ୍କର ଏତେ ସେବା ଖଞ୍ଜା ହୋଇଥିବ କି ନାହିଁ । ପୁରୀରେ ପ୍ରଭୁ ଓ ସେବକ ଭକ୍ତ ଘେନାଘେନି ଭାବରେ ଏତେ ସଂଯୁକ୍ତ ଯେ ତାହା ଆଉ କେଉଁଠି କେଉଁ ମନ୍ଦିରରେ ଦେଖା ନଥିବ । ମନ୍ଦିର ବାହାରେ ସର୍ବସାଧାରଣଙ୍କ ପାଇଁ ଆହୁରି ସ୍ନାନଯାତ୍ରା, ରଥଯାତ୍ରା, ଚନ୍ଦନ ଯାତ୍ରା ରହିଛି । ସମୟର ସାମୟିକ ବାଧା, ବିଘ୍ନ, ବିଚ୍ୟୁତି ଭିତରେ ପୁଣି ପରମ୍ପରା ତାଙ୍କ ଇଚ୍ଛାରେ ସଜାଡ଼ି ହୋଇ ଚାଲିଛି । ଯେଉଁଥିପାଇଁ ସାରା ପୃଥିବୀ ତାଙ୍କୁ ମନେକରେ ସେ ଜୀବନ୍ତ ଠାକୁର । ନିଜ ବ୍ୟବସ୍ଥା ନିଜେ କରାଇ ନିଅନ୍ତି ।

ମୁନି, ଋଷି, ବେଦର କାଳାତୀତ କାଳରୁ ଅନନ୍ତ 'ପରଂବ୍ରହ୍ମ' 'ଚେତନା'ର ମୂର୍ତ୍ତିମନ୍ତ ପ୍ରମାଣ ପରି ରହିଛି ଏବେକାର ଚତୁର୍ଦ୍ଧାମୂର୍ତ୍ତିଙ୍କର ଚଳନ୍ତି ସେବା, ପୂଜା, ଯାତ୍ରା, ନବକଳେବର ବିଧି ପରମ୍ପରା ପ୍ରଭୃତି । ଇତିହାସ, ଭୂଗୋଳ, କିମ୍ବଦନ୍ତୀ, ପ୍ରମାଣ, ସାକ୍ଷ୍ୟ, ଗବେଷଣାର ମେଳ, ଅମେଳ ସଂଲଗ୍ନତା ଓ ବିଚ୍ଛିନ୍ନତା ମଧ୍ୟରେ ସୁଦ୍ଧା ତାଙ୍କ ଇଚ୍ଛାରେ 'ସ୍ଥାନ' 'କାଳ'ର ଘୂର୍ଣ୍ଣନ, ପରିବର୍ତ୍ତନ, ଉତ୍‌ଥାନ, ପତନର ସ୍ରୋତରେ ସେ ଜୀବନ୍ତ 'ଅନୁଷ୍ଠାନ' ଓ 'ଗଣଦେବତା' ଆଜି ପର୍ଯ୍ୟନ୍ତ ଟଣା ଭିଡ଼ା ବା ବାଦବିବାଦରେ ହଜି ନଯାଇ ସେ ଯେ 'ଇଚ୍ଛାମୟ', 'ଆରାଧ୍ୟ', 'ନିତ୍ୟ' ଓ 'ସନାତନ'– ସେହିଭାବେ ଅବିକଳ ବିସ୍ମୟ ହୋଇ ରହିଛନ୍ତି, ରହିଥିବେ, ସମଗ୍ର ସୃଷ୍ଟିର ପ୍ରଳୟ ବା ଧ୍ୱଂସସାଧନ ହେବା ପର୍ଯ୍ୟନ୍ତ ।

ଏଥିରେ ଯୁକ୍ତିର ଆବଶ୍ୟକତା ନାହିଁ କାରଣ ଚିରନ୍ତନ ବିଶ୍ୱାସର ଦୃଢ଼ ଭିତ୍ତିଭୂମି ଉପରେ ସେ ପ୍ରତିଷ୍ଠିତ ଏବଂ 'ନବକଳେବର' ଗ୍ରହଣ ପଦ୍ଧତିରେ ସେ ନିତ୍ୟନୂତନ 'ବ୍ରହ୍ମ' ଓ କଳେବର । ସୃଷ୍ଟି ଆରମ୍ଭ ପୂର୍ବରୁ ସେ ଅନନ୍ତ ଶୟନ ମୁଦ୍ରାରେ ହୁଏତ ଥିଲେ ସ୍ୱୟଂ ଇଚ୍ଛାରେ, ଲୀଳା ଖେଳାରେ ବିସ୍ତୃତ, ପ୍ରସାରିତ ହେବା ପାଇଁ ସୃଷ୍ଟି ସର୍ଜନା କରି ସତ୍ୟ ଶିବ ସୁନ୍ଦର ଚେତନା ପାଇଁ ଏବେ ଲୀଳାମୟ ସାଧୁ ସନ୍ଥ, ଭକ୍ତ ସେବକଙ୍କ ସମର୍ପଣ ଭାବରେ ଏତେ ବାନ୍ଧି ହୋଇ ଯାଇଛନ୍ତି ଯେ 'ଭାବକୁ ନିକଟ' ହୋଇ 'ପତିତ ଉଦ୍ଧାର' କରୁଛନ୍ତି । ସଚ୍ଚିଦାନନ୍ଦଙ୍କୁ ଭାବ, ପ୍ରେମ, ଶ୍ରଦ୍ଧା ବନ୍ଧନରେ ସଦାସର୍ବଦା ଏକାତ୍ମଭାବେ ଧରି ରଖିବା ହିଁ ସନାତନ ଧର୍ମ । କଳିରେ ଏହି 'କଳା'କୁ ଗ୍ରହଣ କର । 'ହରିର୍ନାମ ହରନାମ ହରିର୍ନାମ ହିଁ କେବଳଂ ।। କଲୌ ନାସ୍ତେବ ନାସ୍ତେବ ଗତିର ନ୍ୟଥା' ।

ସେ ନିର୍ଗୁଣ, ନିର୍ଜୀବ, ନିର୍ଲିପ୍ତ ଦାରୁ ହେଲେ ମଧ୍ୟ ଆମ ଦର୍ଶନାନ୍ତେ ଭାବନା, ଚେତନା, କାମନା, ଯାଚନା ଭିତରେ ମୁହୂର୍ତ୍ତକ ମଧ୍ୟରେ ମୁହୂର୍ତ୍ତ ମୁହୂର୍ତ୍ତ ସ୍ପନ୍ଦନ ଖେଳାଇ ଦିଅନ୍ତି । ଏହାହିଁ 'ଜୀବ' 'ପରମ'ର ଚିରକାମ୍ୟ ଶ୍ରେଷ୍ଠ ସାକ୍ଷାତ୍‌କାର । ଜଡ଼ ଚେତନାର ଭାବ ଆଦାନ ପ୍ରଦାନ ବିନିମୟରେ ଭାବୈକ୍ୟର ସ୍ପନ୍ଦନ ଓ ଉନ୍ମାଦନା ଏବଂ ତ୍ରିନେତ୍ର (ଜ୍ଞାନଚକ୍ଷୁ)ର ଆଦ୍ୟ ଉନ୍ମୋଚନ ଓ ଆଦ୍ୟ ସ୍ଫୁରଣ ।

ଅଶେଷ, ବିଶାଳ, ବିସ୍ମୟାତୀତ ସୃଷ୍ଟିର କେଉଁ ରେଣୁ ପରମାଣୁରୁ ସୃଷ୍ଟ ଆମେ କେତେ କ୍ଷୁଦ୍ର ମଣିଷ? କେତେ ସମୟ ଜୀବନ୍ତ ବା ମୂର୍ତ୍ତିମନ୍ତ ହୋଇ ରହିଥିବା ଜଡ଼ରୂପୀ ଆମ ଶରୀର ଯନ୍ତ୍ର ମଧ୍ୟରେ? ମୁହୂର୍ତ୍ତକ ପାଇଁ ସ୍ଥିର, ଶାନ୍ତ ଭାବେ ସୁଖ ଶାନ୍ତି, ମଙ୍ଗଳ ପାଇପାରିବା କି ନାହିଁ ? ଅଥଚ କେତେ ଅହଂ ଅଭିମାନ ଆମର ? ଆମେ ଦୁର୍ଜୟ ପ୍ରକୃତି ବିରୋଧରେ ନିଜ ଇଚ୍ଛା ପ୍ରୟୋଗ କରି ରୋବର୍ଟ ମଣିଷ ଭଳି କେତେକ 'ଲିଲିପୁଟ' ବା ସ୍ପାଇଡରମ୍ୟାନ ସୃଷ୍ଟି କରି





ତାଙ୍କୁ ଗ୍ରହ ଗ୍ରହାନ୍ତରକୁ ପଠାଇ ଦିଗ୍‌ବିଜୟ କରିବାକୁ ମନସ୍ଥ କରୁଛୁ, ସୂକ୍ଷ୍ମ ଦୁର୍ଲ୍ଲଭ ମଣିଷ ଜୀବାତ୍ମାକୁ ଆମେ ଅଜେୟ, ଅମର କରିବୁ ? ଏତେ ଆସ୍ପର୍ଦ୍ଧା, ଏତେ କଳ୍ପନା କୋଉଠୁ କାହିଁକି ଆସୁଛି ?

ସେଇ ବ୍ରହ୍ମ, ଯିଏ ଲୀଳାମୟ, ଲୀଳାକାରୀ, ଭାବଗ୍ରାହୀ– ସିଏ ଆମକୁ କଣ୍ଢେଇ ନଚେଇଲା ଭଳି ନଚଉ ନାହିଁତ ? ତାହା ମଧ୍ୟ ଆମରି 'ଅଜ୍ଞତା'ରୁ ଆମରି ଅଭିଶପ୍ତ, ସୀମିତ ଇନ୍ଦ୍ରିୟ ବ୍ୟବସ୍ଥାର ଅମାନିଆ ମନ ଚାଞ୍ଚଲ୍ୟରୁ ଜାତ । କ୍ଷୁଦ୍ରସ୍ୱାର୍ଥୀ, ଅହଂକାରୀ 'ଜୀବ'ର ପରମ ବ୍ରହ୍ମଜ୍ଞାନାଲୋକର ଅଭାବରୁ, ସତ୍‌ଚିଦ୍ ଆନନ୍ଦର ଦର୍ଶନ ଅଭାବରୁ ସତ୍ୟ ଶିବ ସୁନ୍ଦରର ପ୍ରତ୍ୟକ୍ଷ ସ୍ୱାଦ ଓ ଦର୍ଶନରୁ ବଞ୍ଚିତ ହେଲେ ଏଭଳି ଘଟଣା ଘଟିଥାଏ । ତେଣୁ ଗୁରୁ ପରମ୍ପରାରେ ଈଶ୍ୱର ଚୟନକରି ବ୍ରହ୍ମ ଦର୍ଶନ ପାଇଁ ଆଧ୍ୟାତ୍ମିକ ଗୁରୁଙ୍କ ଶରଣ ଯାଇ 'କ୍ରିୟାଯୋଗ'ର କୁଣ୍ଡଳିନୀ ଶକ୍ତି ମାଧ୍ୟମରେ ବ୍ରହ୍ମଙ୍କୁ ସ୍ୱୟଂ ଦର୍ଶନ କର ଏବଂ ସେ ଶକ୍ତିରେ ଏକାତ୍ମା ହୋଇଯାଅ । ନଚେତ ନିଜର ସମସ୍ତ 'ଅହଂ' ସମର୍ପଣ କରି କାଳିଆ, କାଳିମାଙ୍କୁ ଶୁଦ୍ଧ ଭକ୍ତିଭାବରେ ପତିତ ଉଦ୍ଧାର ପାଇଁ ଦର୍ଶନ କର । ଆକୁଳ ପ୍ରାର୍ଥନାରେ ଡାକରା ଦିଅ, ଡାକଶୁଣି 'ଓ' କରିବା ଠାକୁର ଇଏ ବୋଲି ଖ୍ୟାତି ରହିଛି ତାଙ୍କର ।

''ସର୍ବେ ହୋଇଣ ଏକମୁଖ ଡାକ ହେ ନାରାୟଣ ରଖ ।''

ଏହି ସମର୍ପଣ ଭାବରେ ସର୍ବମଙ୍ଗଳ ଜଗନ୍ନାଥଙ୍କୁ, ଚରମ ରହସ୍ୟମୟଙ୍କୁ ନ ଡାକିଲେ ସମସ୍ତ ବୈଦିକ, ଉପନିଷଦିକ ତଥା ଆର୍ଯ୍ୟ ଅନାର୍ଯ୍ୟଙ୍କର ଯୁଗାନ୍ତକାରୀ ବିଶ୍ୱାସ ଲବ୍ଧ ଜ୍ଞାନ ଏବଂ ସର୍ବଶେଷରେ ପ୍ରକୃତି ଓ ଭୌତିକ ବିଜ୍ଞାନୀମାନଙ୍କର ପଦାର୍ଥ, ରାସାୟନିକ, ଗ୍ରହଆକାଶ ବିଜ୍ଞାନରୁ ପ୍ରାପ୍ତ ଜ୍ଞାନ ଓ ଆବିଷ୍କାର ସୁଦ୍ଧା କେହି ଆମକୁ ଘୋର ତମସାରୁ ରକ୍ଷା କରି ପାରିବ ନାହିଁ ।

ପ୍ରଭୁ ତାଙ୍କର ଅଗଣିତ ସୃଷ୍ଟି ମଧ୍ୟରୁ ମନୁଷ୍ୟ ଭଳି ବୁଦ୍ଧିଆ, ବିବେକୀ, ମନରେ ଚିନ୍ତା କରି ପାରୁଥିବା ମିଶ୍ରିତ ଅସୁରୀ ଦୈବୀଗୁଣର ଦୁର୍ଲ୍ଲଭ ଦ୍ୱିପଦ ପ୍ରାଣୀଟିଏ ଜନ୍ମଦେଲେ । ସେ ପ୍ରାଣୀ ତା'ର ଅନେକ ସୀମିତ, ଅସୀମିତ, ବିକ୍ଷିପ୍ତ ଚିନ୍ତା ମଧ୍ୟରୁ ନିର୍ଦ୍ଦିଷ୍ଟଭାବେ ଜାଣି ପାରୁନାହିଁ ଯେ ସେ ଅସଲରେ ନିଜେ କିଏ ? ସେ ଏକ ଜଡ଼ ଶରୀର ଓ ତା'ର ଅନ୍ତର୍ନିହିତ 'ଆତ୍ମ'ଶକ୍ତି କ୍ଷୁଦ୍ର ଏକ ଚେତନାର ମିଶ୍ରିତ ସମୀକରଣ ମାତ୍ର । ତା'ର ନିଜସ୍ୱ ଭାବେ ପ୍ରାପ୍ତ ସତ୍ତ୍ୱ, ରଜ, ତାମସ ତିନିଗୁଣରେ ସେ ସୀମିତ ବା ବନ୍ଧା । 'ମନ ତୋହର ନିଜ ଗୁରୁ ଉଦ୍ଧବ କେତେ ତୁ ପଚାରୁ'– ନ୍ୟାୟରେ ବିବେକକୁ ମନ ଦ୍ୱାରା ସୁପରିଚାଳନା କଲେ ମଣିଷ ହୁଏତ ବିବେକୀ ହୋଇ ଜ୍ଞାନମାର୍ଗରେ ଅଗ୍ରସର ହୋଇପାରିବ ।

ଉଭୟ ଭୌତିକ (ପ୍ରାକୃତିକ) ଜ୍ଞାନ ଓ ଆଧ୍ୟାତ୍ମିକ ଜ୍ଞାନର ଜିଜ୍ଞାସା ବା ଅନୁସନ୍ଧାନରେ ଆମେ ଦେଖିଲେ ଯେ ଅମା ଅନ୍ଧାର ବା କାଳିଆ ବସ୍ତୁ ଓ ଶକ୍ତିର ବହୁ ଭାଗ (ଶତକଡ଼ା ୯୭ ପ୍ରାୟ) ଅପ୍ରଦର୍ଶିତ ଓ ଅଜଣା । ମାତ୍ର ଯେଉଁ ୩ ଭାଗ ଯାହା ପ୍ରଦର୍ଶିତ ବୋଲି ବୈଜ୍ଞାନିକ, ଅଣବୈଜ୍ଞାନିକ ବା ଦାର୍ଶନିକମାନେ ଜାଣି ପାରିଛନ୍ତି ତାହା ମଧ୍ୟ ବହୁ ରହସ୍ୟମୂଳକ ସନ୍ଦେହ, ଆପେକ୍ଷିକ ସ୍ଥିତି, ସର୍ତ୍ତମୂଳକ ଘଟଣାବଳୀ ଉପରେ ନିର୍ଭର କରୁଛି । ସ୍ଥିର ରୂପୀ ଏହି ଅସ୍ଥିର ଜଗତରେ ମଣିଷର ସୃଷ୍ଟି, ସ୍ଥିତି ଓ ବିଲୟ ମଧ୍ୟ ନିର୍ଭରଯୋଗ୍ୟ ଭାବେ ସ୍ଥିର ନୁହେଁ କି ସ୍ଥାୟୀ ନୁହେଁ । ତେଣୁ ଆମର ତଥାକଥିତ ସାଧାରଣ, ବୈଜ୍ଞାନିକ ଓ ଦାର୍ଶନିକ ଚିନ୍ତାକୁ ଆମର ପରମାର୍ଥିକ ସ୍ରଷ୍ଟାଙ୍କ ଉଦ୍ଦେଶ୍ୟରେ ଭକ୍ତିପୂର୍ଣ୍ଣ ଦିବ୍ୟଚେତନା ମଧ୍ୟରେ ସମର୍ପଣ କରିଦେବା ଉଚିତ ।

ମୁଁ ମୋର ସାଧାରଣଜ୍ଞାନ, ପଢ଼ା ଶୁଣା, ଜଣା ଅଜଣା ଧାରଣାମାନଙ୍କର ସମଷ୍ଟି ମଧ୍ୟରେ ମନ୍ଥନ କରି ପାଠକମାନଙ୍କର ବିଚାର ପାଇଁ ଛାଡ଼ି ଦେଇଛି । ବିବର୍ତ୍ତନଧାରାରେ କେତେକ ବିକ୍ଷିପ୍ତ ଚିନ୍ତାକୁ ଆପାତସିଦ୍ଧ ସତ୍ୟାନୁସରଣ ଭାବରେ ଆପେକ୍ଷିକ ନିୟମାନୁସାରେ ମୁଁ ମୋର ମନୋଭାବକୁ ଦର୍ଶାଇଛି । କାରଣ ମୂଳରୁ ଶେଷ ଯାଏ ମୁଁ ଅନୁଭବ କରିଛି ଯେପରିକି ଏହାକୁ ମୁଁ ଲେଖୁନାହିଁ । ଯାହାଙ୍କୁ ହାତଟେକି ଦେଇଥିଲି, ସେହି ଲେଖାଇ ଦେଉଛନ୍ତି ।





ସର୍ବରହସ୍ୟମୟଙ୍କୁ ସମ୍ପୂର୍ଣ୍ଣ ବୁଝିବା ପୂର୍ବରୁ ସେ ଆମକୁ (ବିଶେଷତଃ ପ୍ରଭାବଶାଳୀ ବୈଜ୍ଞାନିକ ଓ କ୍ଷମତାଶାଳୀ ରାଷ୍ଟ୍ରନେତାମାନଙ୍କୁ) ଲୋଭନୀୟ ଅହଂକାରର ବାସନା ମଧ୍ୟରେ ମାୟା ମରୀଚିକା ମଧ୍ୟରେ ବୁଡ଼ାଇ ତାଙ୍କ ଅଲୌକିକ ପ୍ରୀତି, ଶ୍ରଦ୍ଧାଭାବଠାରୁ ଦୂରେଇ ନେଇ ପ୍ରତ୍ୟହ ପରୀକ୍ଷା କରନ୍ତି । ତାଙ୍କୁ ସମର୍ପଣ ଭକ୍ତିଭାବରେ ଧରି ନରଖିଲେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ଅସମ୍ଭବ ।

କାରଣ ଅନନ୍ତ 'ସାଗର', 'ଆକାଶ' ଭଳି ସେ 'ପୂର୍ଣ୍ଣ' ବା ଶୂନ୍ୟ (୦) ଭଳି ଅସୀମ ସତ୍ୟ । ଓଁ ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ ପୂର୍ଣ୍ଣ ମୁଦଚ୍ୟୁତେ ॥ ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବା ବଶିଷ୍ୟତେ ॥ ସ୍ନେହପୂର୍ଣ୍ଣତା ସହିତ ସମ୍ପୂର୍ଣ୍ଣ ମିଶିଗଲେ ବା ମିଳେଇଗଲେ ସତ୍ୟକୁ ଅନୁଭବ କରିପାରିବା । କାରଣ ଆମେ ହିଁ ଶୂନ୍ୟ ବା ପୂର୍ଣ୍ଣର ଅଂଶବିଶେଷ ହୋଇପାରିବା । ଏହି ଜ୍ଞାନ ହିଁ ବେଦ ଜ୍ଞାନ, ବ୍ରହ୍ମଜ୍ଞାନ । ଚିରନ୍ତନ, ଶାଶ୍ୱତ ଓ ସନାତନ । ଭାରତବାସୀ 'ଜ୍ଞାନ' ବୋଲି ଏହାକୁ ବୁଝନ୍ତି ଓ ସମଗ୍ର ମାନବ ସମାଜକୁ ଏହାହିଁ ବୁଝାନ୍ତି । ବେଦ, ବେଦାନ୍ତ, ଉପନିଷଦ, ପୁରାଣ, ମହାକାବ୍ୟ, ମହାଭାରତ, ରାମାୟଣ, ଶ୍ରୀମଭାଗବତ ଓ ଗୀତା ଏହି ସତ୍ୟକୁ ସରଳ, ପ୍ରାଞ୍ଜଳ ଭାବରେ ବୁଝାଇ, ପଢ଼ାଇ, ଉପାୟ, ଚରିତ୍ର ବର୍ଣ୍ଣନା କରି ଉତ୍‌ଥାନ, ପତନ ଓ ସଂକଟର ଆବିର୍ଭାବ ଦର୍ଶାଇ, ସମାଧାନର ବାର୍ତ୍ତା ମଧ୍ୟ ବତାଇ ଭାରତୀୟ ତଥା ସମସ୍ତ ମାନବର ଆଚାର, ବିଚାରକୁ ନିୟନ୍ତ୍ରିତ କରି, ଆଦର୍ଶମାର୍ଗୀ ହେବାକୁ କହିଛନ୍ତି । ଏଥିପାଇଁ ଏହି 'ଭା' (ଜ୍ଞାନ)ରତ ଭାରତୀୟ ଦାର୍ଶନିକ, ମୁନି, ଋଷି, ସମଗ୍ର ମାନବ ସମାଜର ଆଚାର୍ଯ୍ୟ, ଶିକ୍ଷକ ହୋଇ ରହିଯାଇଛନ୍ତି । ଏହି ଦୃଷ୍ଟିଭଙ୍ଗୀର ଅନୁପାଳନ କରିବା ହିଁ ମାନବର ମାନବିକତା ଧର୍ମ ।

ତେଣୁ ବେଦ ସମ୍ମତ, ଆଧାତ୍ମିକ ନୀତି ଆଦର୍ଶ ସମ୍ମତ, ଦାର୍ଶନିକ ମୂଲ୍ୟବୋଧ ସମ୍ମତ ଜୈବିକ ମାନବିକତା ସମ୍ମତ ଆଚରଣ, ଉଚ୍ଚାରଣ ମାନବ ସମାଜ ପକ୍ଷରେ ସର୍ବାଦୌ ଆବଶ୍ୟକ । ମଣିଷର ଜନ୍ମକାଳୀନ କୁଆଁ କୁଆଁ (ମୁଁ କିଏ?) ଉଚ୍ଚାରଣଠାରୁ ଶ୍ମଶାନକୁ ଯିବା ପଥରେ 'ରାମ ନାମ ସତ୍ୟ ହୈ'ର ଉଚ୍ଚାରଣ ମଧ୍ୟରେ ଯେଉଁ କେତେ କ୍ଷଣ ଆମ ହାତରେ ସମୟ ରହୁଛି ତା'ର ସଦୁପଯୋଗ ହେଲା, ସତ ସଙ୍ଗ, ସଦଜ୍ଞାନ, ସତ ଚିନ୍ତା । 'ଓଁ ମା କାଳୀ ଓ ଶ୍ରୀଜଗନ୍ନାଥ' ମନ୍ତ୍ର ସ୍ମରଣ କରି 'ବର' ମାଗନ୍ତୁ 'ସର୍ବେ ଭବନ୍ତୁ ସୁଖୀନଃ', 'ସର୍ବେ ସନ୍ତୁ ନିରାମୟାଃ', 'ସର୍ବେ ଭଦ୍ରାଣୀ ପଶ୍ୟନ୍ତୁ, ମା କଶ୍ଚିତ ଦୁଃଖଭାଗ ଭବେତ' ।

ଶୂନ୍ୟବାଣୀ ପରି ଶ୍ରୀକୃଷ୍ଣଙ୍କ ବ୍ରହ୍ମବାଣୀ ମନରେ ଝଂକୃତ ହେବ–

''ସର୍ବ ଧର୍ମ ପରିତାଜ୍ୟ ମାମେକଂ ଶରଣଂ ବ୍ରଜ ।''
(ଶ୍ରୀମଦ୍‌ଭାଗବତ ଗୀତା)
ଅହଂ ତ୍ୱାଂ ସର୍ବପାପେଭ୍ୟୋ
ମୋକ୍ଷୟିଷ୍ୟାମି, ମା ଶୁଚଃ ॥

ଅର୍ଥାତ ସବୁ ଧର୍ମ ତ୍ୟାଗ କରି ମୋର ଶରଣକୁ ଆସ ମୁଁ ତୁମର ସମସ୍ତ ପାପ ମୁକ୍ତ କରି ମୋକ୍ଷ ଦେବି । ଚିନ୍ତା କର ନାହିଁ । (ଅଷ୍ଟାଦଶ ଅଧ୍ୟାୟ, ୬୭ ଶ୍ଳୋକ)

ଶ୍ରୀକୃଷ୍ଣ କହୁଛନ୍ତି– ତୁମେ ଏହି ଗୀତାରୂପକ ରହସ୍ୟମୟ ଉପଦେଶ କୌଣସି କାଳରେ 'ଅଭକ୍ତ'କୁ ବା ଶୁଣିବାକୁ ଇଚ୍ଛା କରୁନଥିବା ଅବିଶ୍ୱାସୀଙ୍କୁ କହିବା ଉଚିତ ନୁହେଁ । ଯେ ମୋଠାରେ ଦୋଷ ତ୍ରୁଟି ଦେଖେ ତାକୁ ତ କଦାପି କହିବା ଉଚିତ ନୁହେଁ । ଗୀତାର ଶେଷ ଅଧ୍ୟାୟର (୬୧ ଶ୍ଳୋକରେ) ସେ ସାର ସତ୍ୟ ଓ ତଥ୍ୟ ପୂର୍ବରୁ କହି ଦେଇଛନ୍ତି ।

ଈଶ୍ୱର ସର୍ବଭୂତାନାଂ ହୃଦେମେର୍ଦ୍ଦର୍ଜୁନ ତିଷ୍ଠତି
ଭ୍ରାମୟକ ସର୍ବଭୂତାନି ଯନ୍ତ୍ରରୂଢ଼ାନି ମାୟୟା ॥

ଅନ୍ତର୍ଯ୍ୟାମୀ ପରମେଶ୍ୱର ସମସ୍ତ ପ୍ରାଣୀଙ୍କ ହୃଦୟରେ ନିବାସ କରି ଶରୀରରୂପକ ଯନ୍ତ୍ରରେ ଆରୂଢ଼ ହୋଇଥିବା ସମସ୍ତ ପ୍ରାଣୀଙ୍କୁ ନିଜର ମାୟା ଦ୍ୱାରା ସେମାନଙ୍କର କର୍ମାନୁସାରେ ଭ୍ରମିତ କରାନ୍ତି । ଅଥଚ ସେହି ରହସ୍ୟମୟ ସର୍ବବ୍ୟାପୀ ମାୟାଧର ନିଜେ ଜଣାଇଛନ୍ତି ଯେ 'ବିନା ଚିନ୍ତାରେ ମୋର ଶରଣ ନିଅ' ଏ ଉପଦେଶ ସର୍ବମଙ୍ଗଳମୟଙ୍କର ସ୍ୱୟଂସିଦ୍ଧ ବାଣୀ ।





ମୋ ଭଳି ଅଜ୍ଞାନୀ, ଅଧମ, ଅଭକ୍ତ ପ୍ରାଣୀ ଆଉ କ'ଣ ବା ଲେଖିବ ? କେବଳ ପୁସ୍ତକରେ ଏତିକି ସ୍ମରଣ କରାଇଦେଇଛି ସମସ୍ତଙ୍କୁ ଯେ ସେ କଳିକାଳରେ କଳ୍କି ଅବତାର ଭାବେ ଇଚ୍ଛାମୟ ସ୍ୱୟଂ ପରଂବ୍ରହ୍ମ ନିରାକାରରୁ 'ସାକାର' ହୋଇ ପ୍ରକୃତିପୁରୁଷ ଉଭୟ ଶୈବଶାକ୍ତ ବୈଷ୍ଣବର ମିଳିତ ଦାରୁବିଗ୍ରହ ଚତୁର୍ଦ୍ଧାମୂର୍ତ୍ତି ରୂପରେ, ପବିତ୍ର ପୁରୀଧାମରେ ସର୍ବସାଧାରଣଙ୍କୁ (ଭକ୍ତ, ଅଭକ୍ତ, ସାଧୁ, ଜ୍ଞାନୀ, ମୂର୍ଖ, ମ୍ଳେଛ, ଅହଂକାରୀ ଇତ୍ୟାଦି) ସମସ୍ତଙ୍କୁ ନିଜ ନିଜର ଚର୍ମଚକ୍ଷୁରେ ସ୍ପନ୍ଦନରେ ଧରାଦେବାକୁ ଆସିଛନ୍ତି । ଏ ସୁଯୋଗ ଛାଡ଼ିବାର ନୁହେଁ ... ।

ତେଣୁ ଏ ସୁଯୋଗକୁ ଗ୍ରହଣ କରିବା ସଙ୍ଗେସଙ୍ଗେ ସମଗ୍ର ବିଶ୍ୱକୁ ଏହି ସୁଯୋଗ ଦେବାପାଇଁ ସମସ୍ତ ପ୍ରକାର ଚେଷ୍ଟା, ବ୍ୟବସ୍ଥା କରନ୍ତୁ ଓ କରାନ୍ତୁ । ଏହାହିଁ କାଳିଆର ଇଚ୍ଛା ।

ଓଁ ଜଗନ୍ନାଥ ସ୍ୱାମୀ ନୟନପଥ ଗାମୀ ଭବତୁ ମେ ।

ପୂର୍ବତନ ବାଚସ୍ପତି, ଓଡ଼ିଶା
ପ୍ଲଟ୍ ନଂ – ୬୫୮
ଶହୀଦ ନଗର, ଭୁବନେଶ୍ୱର

# ଗୋପଲୀଳା

**ଡକ୍ଟର ବଳରାମ ଦାସ**

ତୁମ ମୁରଲୀର ମୋହନ ମାଧୁରୀ
ତୃଷ୍ଣା ତଟିନୀ ତୀରେ
ଗୋପ ଗୁଆଳୀର ମର୍ମ ମୁକୁରେ
ଭାସି ଉଠେ ବାରେ ବାରେ
ସେଇ ସେ ସ୍ୱରରେ ପାଗଳିନୀ ରାଧା
ପାଗଳ ଆକାଶ ଧରା
ନିଧୁବନ ନିଧି ରଙ୍ଗ ଅଧରେ
ନିଦ୍ରିତ ବସୁନ୍ଧରା ।
ଗୋଟିଏ ବେଣୁର ଦୁଇଟି ରାଗିଣୀ
ଜଣେ ଦିନ ଆନ ରାତି
ଗୋଟିଏ ଦ୍ୱୀପର ନୀଳ ନଗରୀରେ
ଦୁଇ କ୍ଳାନ୍ତ ପ୍ରଜାପତି
ଏକଇ ନିଃଶ୍ୱାସେ ଦୁଇଟି ପରାଣ
ରଚେ଼ ଜୀବନର ଛନ୍ଦ
ଜଣେ କଦମ୍ବର କୋରକିତ କାବ୍ୟ
ଆନ ତା'ର ମୁଖବନ୍ଧ ।
ଚନ୍ଦ୍ରସେଣାର ଚନ୍ଦ୍ରଶାଳାରେ
ଚନ୍ଦ୍ର ଆସିଲେ ଉଇଁ
ତନ୍ଦ୍ରା ଅଳସେ ଅଭିସାରେ ଚଳେ
ବ୍ରଜବିନୋଦିନୀ ରାଈ
ନୀଳ ଯମୁନାର ତୀରେ ତୀରେ ତା'ର
ନିଃଶ୍ୱାସ ହୁଏ ଭାରି





ଆକୁଳ ଆଖିରେ ଅବତରି ଆସେ
ବିନିଦ୍ର ବିଭାବରୀ ।
ତୁମ ବିରହର ବିଜନ ବେଣୁରେ
ତୁମକୁ ମୁଁ ପାଏ ଖୋଜି
ନିଃଶ୍ଚୁପ ମୋର ସ୍ନାୟୁର ସହରେ
ଆପେ ଯାଏ ହଜି ହଜି
ସେ ସହର ରୂପା ଆକାଶରେ ହସେ
ଫଗୁଣର ସୁନା ଜହ୍ନ
ପ୍ରତି ନିଃଶ୍ୱାସରେ ମର୍ମରି ଉଠେ
ନିଃଶବ୍ଦ ସମ୍ବୋଧନ ।
ଯେତେ ଲୀଳା ପଛେ ରଚିଥାଅ ପ୍ରଭୁ
ଶ୍ରେଷ୍ଠ ତୁମ ଗୋପଲୀଳା
ତୁମ ଚିଦାକାଶେ ଭାସିବୁଲେ ସଦା
ସେ ସ୍ମୃତିର ମେଘମାଳା
ସେଇ କଥା ସ୍ମରି ଆଜି ବି ମନ୍ଦିରେ
ସ୍ମୃତିର ସେ ପୃଷ୍ଠା ଖୋଲି
ତୁମ ସାଥେ ମିଶି ପଢୁଛୁ ସଭିଏଁ
ଉଚ୍ଛ୍ୱସିତ ପ୍ରାଣ ଭରି ।

ଶଙ୍ଖନାଭି
ସର୍ବୋଦୟ ନଗର, ପୁରୀ–୨

# ଶଙ୍କା ପଞ୍ଚକମ୍

**ପଣ୍ଡିତ ସୂର୍ଯ୍ୟନାରାୟଣ ରଥଶର୍ମା**

**୧) ରଥଯାତ୍ରାର ମୌଳିକ ନାମ କ'ଣ ?**

ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ରଥରେ ବିଜେକରି ଆଡ଼ପ ମଣ୍ଡପକୁ ଯାତ୍ରା କରନ୍ତି, ଆଡପ ମଣ୍ଡପରେ ସାତଦିନ ରହି ବାହୁଡ଼ା ଯାତ୍ରା କରନ୍ତି, ଆଡପ ମଣ୍ଡପ ହିଁ ଯାତ୍ରାର ମୁଖ୍ୟ ଲକ୍ଷ୍ୟସ୍ଥଳ । ଏହି ଯାତ୍ରା ଘୋଷଯାତ୍ରା, ଶ୍ରୀଗୁଣ୍ଡିଚା ଯାତ୍ରା, ଦଶାବତାର ଯାତ୍ରା, ପତିତପାବନଯାତ୍ରା, ଦକ୍ଷିଣାୟନଯାତ୍ରା ଏପରି ବହୁବିଧ ନାମରେ ଖ୍ୟାତ । ପରନ୍ତୁ ଏହାର ବାସ୍ତବ ମୌଳିକ ନାମ କ'ଣ ? ବୈଦିକ ଋଷି ଆଚାର୍ଯ୍ୟ ଜୈମିନୀ କୁହନ୍ତି ଏହି ଉତ୍ସବର ନାମ (ମହାବେଦୀ ମହୋତ୍ସବ) ଅନ୍ତର୍ବେଦୀରୁ ବାହାରି ମହାବେଦୀ ପର୍ଯ୍ୟନ୍ତ ଯାତ୍ରାକୁ ରଥଯାତ୍ରା କୁହାଯାଏ । ଏହାର କାରଣ ବିଗ୍ରହଙ୍କର ପ୍ରତିଷ୍ଠା ପରଦିନ ନଗର ଭ୍ରମଣ ବିଧି ବୈଦିକ ପରମ୍ପରା ଅଟେ । ଏହା ସମ୍ପୂର୍ଣ୍ଣ ଆପ୍ତ ପରମ୍ପରା କର୍ମକାଣ୍ଡ ଅନ୍ତର୍ଗତ 'ବ୍ରହ୍ମୋତ୍ସବ' ଏହାର ନାମ । ଭାରତର ପ୍ରତ୍ୟେକ ମନ୍ଦିରରେ ବ୍ରହ୍ମୋତ୍ସବ ପାଳନ କରାଯାଏ । ପ୍ରତିଷ୍ଠିତ ଦେବ ବିଗ୍ରହ ସ୍ୱସ୍ୱ ଅନୁକୂଳ ଯାନ ବାହନରେ ବିଜେ କରି ନଗର ଭ୍ରମଣ କରିବାର ବିଧି ପରମ୍ପରା ଅନୁଷ୍ଠିତ ହୁଏ । ଶ୍ରୀଜଗନ୍ନାଥ ଦାରୁବ୍ରହ୍ମ 'ବ୍ରହ୍ମ'ଙ୍କର ଯାନ ରଥ । ତେଣୁ ଜଗନ୍ନାଥ ଯେତେବେଳେ ବ୍ରହ୍ମୋତ୍ସବ କରନ୍ତି ରଥରେ ବିଜେ କରି ଗନ୍ତବ୍ୟସ୍ଥଳ ମହାବେଦୀ ବା ଆଡପ ମଣ୍ଡପ ଗୁଣ୍ଡିଚା ଘରକୁ ଯାତ୍ରା କରନ୍ତି । ତେଣୁ ବେଦ ବେଦାନ୍ତ ସିଦ୍ଧାନ୍ତ ଅନୁସାରେ ଏହି ଯାତ୍ରାର ମୌଳିକ ନାମ 'ମହାବେଦୀ ମହୋତ୍ସବ' ବ୍ରହ୍ମୋତ୍ସବ ରଥଯାତ୍ରା ।



**୨) ଶ୍ରୀଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ରଥ ଉପରେ କ'ଣ ନୀତି ହୁଏ ?**

ରଥ ଉପରେ ପ୍ରାତଃ ସମୟରୁ ପହୁଡ ଫିଟାଠାରୁ ପହୁଡ ପର୍ଯ୍ୟନ୍ତ ସମସ୍ତ ନୀତି ଶ୍ରୀମନ୍ଦିର ମଧ୍ୟରେ ଯେପରି ହୁଏ ରଥରେ ସମସ୍ତ ନୀତି ସେବା ହୁଏ । ଯଥା– (୧) ମଙ୍ଗଳ ଆଳତି (୨) ବେଶ ମୈଲମ (୩) ତଡପଲାଗି (୪) ଅବକାଶ (୫) ମୈଲମ (୬) ବେଶ (୭) ଗୋପାଳ





ବଲ୍ଲଭ ଭୋଗ (୮) ସକାଳଧୂପ (୯) ମଇଲମ (୧୦) ମହାସ୍ନାନ (୧୧)ସର୍ବାଙ୍ଗ ଚନ୍ଦନ ଲାଗି (୧୨) ମଧ୍ୟାହ୍ନଧୂପ (୧୩) ମୈଲମ (୧୪) ବେଶ (୧୫) ସନ୍ଧ୍ୟା ଆଳତି (୧୬) ସନ୍ଧ୍ୟାଧୂପ (୧୭) ବେଶ ମୈଲମ (୧୮) ଚନ୍ଦନଲାଗି (୧୯) ବଡସିଂହାର ବେଶ (୨୦) ବଡ଼ସିଂହାର ଧୂପ (୨୧) ପୁଷ୍ପାଞ୍ଜଳି (୨୨) ପହୁଡ (୨୩) ଶୋଧ (ପହୁଡ ସମୟରେ ଖଟ ଶେଯ ଲାଗି ହୁଏ ନାହିଁ) ଶ୍ରୀମୁଖରେ ଖଣ୍ଡୁଆ ପଡି ଠିଆ ପହୁଡ ହୁଅନ୍ତି। ଶୟନ ଠାକୁର ରଥ ଉପରକୁ ଆସନ୍ତି ନାହିଁ । ଏତଦ୍‌ବ୍ୟତୀତ (ହରିଶୟନ ଏକାଦଶୀ) ଏହି ଦିନ ଦୁଇଥର ବଡଶୃଙ୍ଗାର ବେଶ ହୁଅନ୍ତି ଓ ହରିଶୟନ ଏକାଦଶୀ କୁହାଯାଏ । ଭଣ୍ଡାର ଘରୁ ଶୟନ ଠାକୁର ରଥକୁ ଆସି ଶୟନନୀତି ହୋଇଥାଏ ଓ ସୁନାବେଶ ତଥା ଅଧର ପଣାଭୋଗ ହୋଇଥାଏ । ରଥଯାତ୍ରା ଦିନ ରଥ ଉପରେ ମହାସ୍ନାନ ବଢ଼ି (ଘଣ୍ଟଛତା) ଭୋଗ ହୁଏ, ଏହି ନୀତି ରଥ ଗୁଣ୍ଡିଚା ଘରେ ଲାଗିଲେ ହୁଏ । ବାଟରେ ରଥ ଯେଉଁଠାରେ ରହିବ ସମସ୍ତ ନୀତି ରଥ ଉପରେ ସମ୍ପନ୍ନ ହୋଇଥାଏ ।

### ୩) ରଥ ଉପରେ ଜଗନ୍ନାଥ ମହାପ୍ରଭୁ ଖାଆନ୍ତି କ'ଣ ?

ମହାପ୍ରଭୁ ଛପନ ଭୋଗ ଖିଆ ଠାକୁର ଶ୍ରୀମନ୍ଦିରରେ ଓ ଗୁଣ୍ଡିଚା ଘରେ ଥିବା ସମୟରେ ପ୍ରତ୍ୟେକ ଦିନ (୧) ଗୋପାଳବଲ୍ଲଭ (୨) ସକାଳ ଧୂପ (୩) ମଧ୍ୟାହ୍ନ ଧୂପ (୪) ସନ୍ଧ୍ୟାଧୂପ (୫) ବଡସିଂହାର ଧୂପ । ଏହି ଚାରିଧୂପରେ ଛପନ ପ୍ରକାର ଭୋଗ ଲାଗିଥାଏ । ମନରେ ପ୍ରଶ୍ନ ଆସେ ରଥ ଉପରେ ଅନ୍ନଭୋଗ ହୋଇନଥାଏ, ତେବେ ଖାଆନ୍ତି କ'ଣ? ବିଭିନ୍ନ ଧୂପରେ ପ୍ରଭୁଙ୍କର ପାଖରେ (୧) ବଡ କାକରା (୨) ଉଠା କାକରା (୩) ମହାପ୍ରସସ୍ତ ମନୋହର (୪) ବଡଅମାଲୁ (୫) ସାନ ଅମାଲୁ (୬)ଝଡ଼େଇନେଦା (୭) ଟାକୁଆ (୮) ମାଣ୍ଡୁଅ (୯) ମରିଚିଲଡୁ (୧୦) ସାନ ମନୋହର (୧୧) ନାଡି (୧୨) ଗଜା (୧୩) ଫେଣି (୧୪) ଡାଳିମ୍ବ (୧୫) ସୁଆର ଲଡୁ (୧୬) ପାଗଖଇ (୧୭) କୋରା ଓ ଆମ୍ବ, ପଣସ, ଫଳ, କଦଳୀ ଆଦି ଶୁଖିଲା ଭୋଗ ଲାଗି ହୁଏ, ଏହା ସବୁ କୋଠ ଭୋଗ ଅଟେ ।

### ୪) ଛେରା ପହଁରା ନୀତି କ'ଣ ?

ରଥଯାତ୍ରା ଦିନ ରଥ ତ୍ରୟରେ ଠାକୁର ବିଜେ କରିବା ପରେ ବେଶ ବଢ଼ିବା ପରେ ରାଜା ଏହି ନୀତି କରିଥାନ୍ତି । ରାଜାଙ୍କର ଅନୁପସ୍ଥିତିରେ ମୁଦିରସ୍ତ ଏହି ସେବା କରନ୍ତି । ଛେରା ପହଁରା ମୁଖ୍ୟତଃ ରଥଯାତ୍ରା, ବାହୁଡାଯାତ୍ରା, ଚନ୍ଦନଯାତ୍ରା, ଦୋଳଯାତ୍ରା, ସ୍ନାନଯାତ୍ରାମାନଙ୍କରେ ହୋଇଥାଏ । ଛେରାପହଁରା ଦୁଇଭାଗରେ ବିଭକ୍ତ – (୧) ରାଜନୀତି (୨) ଛେରାପହଁରା ।

(୧) ରାଜନୀତି କ'ଣ ? ରାଜା ଶ୍ରୀଜୀଉଙ୍କଠାରେ ଦଣ୍ଡ ପ୍ରଣାମ କରନ୍ତି । ଗରାବଡୁଠାରୁ ହାତୁଆଣି ନେଇ ନିଉଛାଳି ଦେଇ ପୁଷ୍ପାଞ୍ଜଳି ଦିଅନ୍ତି । ତଦ୍‌ପରେ କର୍ପୂର, ଆଳତି, ସୁବର୍ଣ୍ଣଚାମର, ଆଲଟ କରନ୍ତି । ଏହି କାର୍ଯ୍ୟକୁ ରାଜନୀତି କୁହାଯାଏ ।

(୨) ଦ୍ୱିତୀୟରେ ଛେରା ପହଁରା – ରାଜା ରାଜନୀତି ସେବା ସମ୍ପନ୍ନ ପରେ ସିଂହାସନ ତଳକୁ ଆସି ଛେରାପହଁରା ନୀତି କରନ୍ତି ଯଥା ପର୍ଯ୍ୟାୟକ୍ରମେ ପ୍ରଥମେ ଦୟାଣମାଳି ଦେଇଥିବା ଶୁକ୍ଳ ପୁଷ୍ପ ରୂପା ପିଙ୍ଗଣରେ ଭଣ୍ଡାର ମେକାପ ରୂପା ପିଙ୍ଗଣରେ ଧରିଥାନ୍ତି, ରାଜଗୁରୁ ସୁନା ଖଡିକା ସଂସ୍କାର କରି ରାଜାଙ୍କୁ ଦିଅନ୍ତି । ଭଣ୍ଡାର ମେକାପ ଶୁକ୍ଳପୁଷ୍ପ ଆଗରେ ପକାଇଥାନ୍ତି । ରାଜା ସୁନା ଖଡ଼ିକା ଧରି ରଥ ଚାରିପଟ ପହଁରିବେ । ଏହିପରି ଦ୍ୱିତୀୟରେ ଚନ୍ଦନ ପାଣି ସଂସ୍କାର ହୋଇ ରାଜା ରଥ ଚାରିପଟରେ ପକାଇଥାନ୍ତି । ତୃତୀୟରେ ଘଟୁଆରି ଦେଇଥିବା ଚନ୍ଦନ ଗୁଣ୍ଡ ସଂସ୍କାର କରି ରାଜଗୁରୁ ଭଣ୍ଡାର ମେକାପଙ୍କୁ ଦେଲେ ମେକାପ ରାଜାଙ୍କୁ ଦିଅନ୍ତି । ରାଜା ଚନ୍ଦନ ଗୁଣ୍ଡ ରଥ ଚାରିପଟ ପକାଇଥାନ୍ତି । ଏହି ପହଁରା କାର୍ଯ୍ୟ ବଢ଼ିଲେ ରାଜା ପ୍ରଭୁଙ୍କୁ ପ୍ରାର୍ଥନା କରି ଧଣ୍ଡା ପ୍ରସାଦ ବାଡଗ୍ରାହୀ ଦଇତାଙ୍କଠାରୁ ଗ୍ରହଣ କରି ସେବା ବଢ଼ାଇଥାନ୍ତି– ବାହୁଡାଦିନ ଏହି କ୍ରମରେ ଏହି ପବିତ୍ର ସେବା କରନ୍ତି । ଏହି ବିଧାନକୁ ଛେରାପହଁରା କୁହାଯାଏ । ପ୍ରଥମେ

ବଳଭଦ୍ର, ଦ୍ୱିତୀୟ ଜଗନ୍ନାଥ, ତୃତୀୟରେ ମା'ଙ୍କର ରଥ– ଏହି କ୍ରମରେ ନୀତି ହୁଏ । ଏହି ସେବାରେ ଦୟାଣମାଳ, ଭଣ୍ଡାର ମେକାପ, ଘଟୁଆରୀ, ରାଜଗୁରୁ, ଗରାବଡୁ, ପର୍ବଯାତ୍ରା ଯୋଗାଣିଆ, ପତ୍ରିବଡୁ, ତଳିଛ ମହାପାତ୍ର, ମୁଦିରସ୍ତ, ପୁଷ୍ପାଳକ, ଦଇତା, ଭୋଇ, ପୂଜାପଣ୍ଡା ନିଯୋଗ ସହଯୋଗରେ ନୀତି ହୁଏ ।

**୫) ହେରାପଞ୍ଚମୀ କ'ଣ ଓ କେବେ ପାଳନ ହୁଏ ?**

ରଥଯାତ୍ରାର ପଞ୍ଚମ ଦିନ ଆଷାଢ଼ ଶୁକ୍ଳ ଷଷ୍ଠୀଦିନ ଏହି ସେବାନୀତି ପାଳନ କରାଯାଏ । ହେରା ଅର୍ଥ ଦେଖିବା, ପ୍ରଭୁଙ୍କୁ ଦେଖିବା ପାଇଁ ମା'ଲକ୍ଷ୍ମୀ ଗୁଣ୍ଡିଚାମଣ୍ଡପକୁ ଆସନ୍ତି । ତେଣୁ ହେରା ଉତ୍ସବ କୁହାଯାଏ । ରଥଯାତ୍ରାର ପଞ୍ଚମଦିନ ହେଉଥିବାରୁ ହେରାପଞ୍ଚମୀ କୁହାଯାଏ । ଶ୍ରୀଜୀଉମାନେ ଗୁଣ୍ଡିଚା ଘରକୁ ଆସିଲେ ମା' ଭଣ୍ଡାର ଘର ନିକଟରେ ଥା'ନ୍ତି । ହେରାପଞ୍ଚମୀ ଦିନ ମା'ଙ୍କର ମାଜଣା ଓ କନକଲାଗି ମହାଜନ ସେବକ କରିଥାନ୍ତି । ତଦ୍‌ପରେ ବେଶ ହୋଇ ପନ୍ତି ଭୋଗ ପୂଜାପଣ୍ଡା କରିବା ପରେ ମହାଜନ ସେବକ ବିମାନରେ ବିଜେ କରାନ୍ତି । ମା'ଙ୍କୁ ବିମାନବଡୁ ସେବକମାନେ ଆଣନ୍ତି, ସାଥିରେ ଘଣ୍ଟା, କାହାଳି, ଛତାର ସହ ସିଂହଦ୍ୱାର ଦେଇ ବଡଦାଣ୍ଡରେ ଆସି ଗୁଣ୍ଡିଚାଘର ଜଗନ୍ନାଥଙ୍କର ନନ୍ଦିଘୋଷ ରଥ ପାଖରେ ଠିଆ ହୁଅନ୍ତି । ଏହିଠାରେ ପତିମହାପାତ୍ର, ପ୍ରସାଦଲାଗି, ବନ୍ଦାପନା ଓ ଆଲଟ, ଚାମର ସେବା ପରେ ଘସା, ବିଡିଆ ଦହିପତି ମଣୋହି କରନ୍ତି । ଗୁଣ୍ଡିଚା ଘରେ ମହାପ୍ରଭୁଙ୍କର ବାଡରେ ମହାସ୍ନାନ ତିନିବାଡରେ ନୂଆଲୁଗା ଲାଗି, ସର୍ବାଙ୍ଗ ଚନ୍ଦନ ଲାଗି ହୋଇ ସନ୍ଧ୍ୟାଧୂପ ପୂଜା ବସେ । ତଦ୍‌ପରେ ମହାଲକ୍ଷ୍ମୀ ଗୁଣ୍ଡିଚା ଘର ଜଗମୋହନ ଜୟବିଜୟ ଦ୍ୱାର ନିକଟକୁ ଆସନ୍ତି । ପତିମହାପାତ୍ର ସିଂହାସନ ଉପରକୁ ଯାଇ ଶ୍ରୀଜଗନ୍ନାଥଙ୍କର ଶ୍ରୀଅଙ୍ଗରୁ ଅଧର ଚୁମ୍ବିତ ଆଜ୍ଞାମାଳ ଆଣି ଲକ୍ଷ୍ମୀଙ୍କୁ ପ୍ରଦାନ କରନ୍ତି । ସନ୍ଧ୍ୟାଧୂପ ଟେରା ପଡିଲେ ଲକ୍ଷ୍ମୀ ଗୁଣ୍ଡିଚା ଘର ଜଗମୋହନରୁ ବାହାରି ନାକଚଣାଦ୍ୱାର ଦେଇ ଗୁଣ୍ଡିଚା ଘର ପାଖରେ ବାହ୍ୟଭାଗରେ ଗୋଟିଏ ବୃକ୍ଷମୂଳରେ ବିମାନ ରହେ । ଭିତରଛ ମହାପାତ୍ର ବନ୍ଦାପନା ଓ ଦହିପତି ମଣୋହି କରନ୍ତି । ଏହାପରେ ଲକ୍ଷ୍ମୀ ଶ୍ରୀଜଗନ୍ନାଥଙ୍କର ରଥ ନିକଟକୁ ଆସି ନନ୍ଦିଘୋଷ ରଥର ଖଣ୍ଡେ କାଠ ଭାଙ୍ଗି ଦେଇ ଲୁଚି ଲୁଚି ଯେଉଁ ଗୋହିରୀ ଦେଇ ଆସନ୍ତି ସେହି ଗୋହିରୀର ନାମ ହେରାଗୌରୀ ସାହି ନାମରେ ଖ୍ୟାତ । ସେହି ବାଟ ଦେଇ ମା' ଶ୍ରୀମନ୍ଦିରକୁ ବିଜେ କରନ୍ତି । ତା' ପରଦିନ ରଥ ତ୍ରୟର ଦକ୍ଷିଣ ମୋଡ ନୀତି ଆରମ୍ଭ ହୋଇଥାଏ ।

ଶ୍ରୀଜଗନ୍ନାଥ ସଂସ୍କୃତି ପ୍ରଚାରକ
ଜଗନ୍ନାଥ ଧାମ, ପୁରୀ







# କ୍ଷେତ୍ରାଣାଂ ମପି କ୍ଷେତ୍ରଂ

ଡକ୍ଟର ତୁଳସୀ ଓଝା

ସ୍କନ୍ଦପୁରାଣର ବର୍ଣ୍ଣନା ଅନୁଯାୟୀ ''ତୀରାଦ୍‌ଗବ୍ୟୁତି ମାତ୍ରନ୍ତୁ ପରିତଃ କ୍ଷେତ୍ର ମୁଚ୍ୟତେ'' ଅର୍ଥାତ୍ ନଦୀ ସମୁଦ୍ର ଆଦିର ତୀରଠାରୁ ଦୁଇକ୍ରୋଶ ପର୍ଯ୍ୟନ୍ତ ସ୍ଥଳଭୂମିକୁ କ୍ଷେତ୍ର କୁହାଯାଏ । 'ବ୍ରହ୍ମପୁରାଣ'ର ବ୍ୟାଖ୍ୟାନୁଯାୟୀ କ୍ଷେତ୍ର ଶବ୍ଦର ଅର୍ଥ ''କ୍ଷୀୟନ୍ତେ ନମନ୍ତି ପାପାନି ଅତ୍ର ତତ୍ର କ୍ଷେତ୍ର'' ଅର୍ଥାତ୍ ଯେଉଁ ସ୍ଥାନରେ ପାପ ସମୂହର କ୍ଷୟ ବା ବିଲୟ ହୁଏ ତାକୁ କ୍ଷେତ୍ର କହନ୍ତି । ସେମିତି ଏକ କ୍ଷେତ୍ର ନୀଳଗିରି, ନୀଳାଚଳ, ନୀଳକନ୍ଦର, ନୀଳଦ୍ରି, ଭୌମକ୍ଷେତ୍ର, ପୁରୁଷୋତ୍ତମକ୍ଷେତ୍ର, ଶଙ୍ଖକ୍ଷେତ୍ର, ଦଶାବତାର କ୍ଷେତ୍ର, ଜଗନ୍ନାଥ ଧାମ, ଦିବ୍ୟକ୍ଷେତ୍ର ଇତ୍ୟାଦି ବହୁ ନାମରେ ଖ୍ୟାତ ଶ୍ରୀକ୍ଷେତ୍ର । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ନିତ୍ୟ ନିବାସ ସ୍ଥଳ । 'କପିଳ ସଂହିତା'ର ବର୍ଣ୍ଣନାର ସାକ୍ଷାତ୍ ବୈକୁଣ୍ଠ, ଶ୍ରେଷ୍ଠକ୍ଷେତ୍ର ଓ ଶ୍ରେଷ୍ଠ ତୀର୍ଥ । ଯେଉଁ କ୍ଷେତ୍ରକୁ ଆସିବା ପାଇଁ ମୁନି, ଋଷି, ଭକ୍ତ, ଜ୍ଞାନୀ, ଅଜ୍ଞାନ, ଜିଜ୍ଞାସୁ ଦେବତା ସମସ୍ତେ ବ୍ୟାକୁଳ । ସଂସ୍କୃତରେ ଲିଖିତ ପ୍ରାଚୀନ ପୁରାଣ ଶାସ୍ତ୍ର ଯଥା – 'ମହାଭାରତ', 'ପଦ୍ମପୁରାଣ', 'ବାମଦେବ ସଂହିତା', 'କପିଳ ସଂହିତା', 'ସ୍କନ୍ଦପୁରାଣ', 'ନୀଳାଦ୍ରି ମହୋଦୟ' 'ବ୍ରହ୍ମପୁରାଣ' ଆଦି ପ୍ରାଚୀନ ଗ୍ରନ୍ଥ ତଥା ଓଡ଼ିଆରେ ଲିଖିତ ଭକ୍ତି ଯୁଗର ଦାର୍ଶନିକ କବି ବଳରାମ, ଜଗନ୍ନାଥ, ଅଚ୍ୟୁତ, ଅନନ୍ତ, ଯଶୋବନ୍ତ ଆଦିଙ୍କ ଲିଖିତ ପୁରାଣଶାସ୍ତ୍ରରେ ଏହି କ୍ଷେତ୍ରର ନାମଧାମ ଆଦିର ମହନୀୟତା ପ୍ରକାଶିତ । ଯାହାକୁ ଆଧାର କରି ଏ କ୍ଷେତ୍ରର ବହୁବିଧ ନାମକରଣର ସାର୍ଥକତା ନିରୂପଣ କରାଯାଇପାରେ ।



୧. ଶଙ୍ଖକ୍ଷେତ୍ର– 'ବାମଦେବ ସଂହିତା' ଏକ ପ୍ରାଚୀନ ଗ୍ରନ୍ଥ, ଯେଉଁ ଗ୍ରନ୍ଥରେ ମହାଦେବୀ ପାର୍ବତୀଙ୍କ ଜିଜ୍ଞାସାର ଉତ୍ତର ଦେବାକୁ ଯାଇ ସ୍ୱୟଂ ବାମଦେବ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ କ୍ଷେତ୍ରର ସଂପୂର୍ଣ୍ଣ ବିବରଣୀ ତଥା ମାହାତ୍ମ୍ୟ ବର୍ଣ୍ଣନ କରିଛନ୍ତି ।

ପରଂବ୍ରହ୍ମ ମହାବିଷ୍ଣୁଙ୍କର ଆୟୁଧ ଚାରି । ଶଙ୍ଖ ଚକ୍ର ଗଦା ଓ ପଦ୍ମ । ଏହି ଚାରୋଟି ଯାକ ଆୟୁଧକୁ ଭୂପୃଷ୍ଠକୁ



ନିକ୍ଷେପ କରି ସେ ଚାରିଗୋଟି ଉତ୍ତମ କ୍ଷେତ୍ର ପ୍ରତିଷ୍ଠା କରିଥିଲେ । ସେଥିମଧ୍ୟରୁ ପୁରୁଷୋତ୍ତମ କ୍ଷେତ୍ରରେ ଶଙ୍ଖ, ବିରଜା କ୍ଷେତ୍ରରେ ଗଦା, ଏକାମ୍ରରେ ଚକ୍ର ଓ କୋଣାର୍କରେ ପଦ୍ମ ପଡ଼ିଥିଲା । ସେହି ଅନୁସାରେ ଏକାମ୍ର ଚକ୍ରକ୍ଷେତ୍ର, କୋଣାର୍କ ଅର୍କକ୍ଷେତ୍ର, ବିରଜା ପଦ୍ମକ୍ଷେତ୍ର ଓ ପୁରୀ ଶଙ୍ଖ କ୍ଷେତ୍ର ଭାବରେ ପରିଚିତ । ଶ୍ରୀଜଗନ୍ନାଥ ସଂସ୍କୃତିର ଆଧାରଗ୍ରନ୍ଥ ଭାବରେ ପରିଚିତ 'ସ୍କନ୍ଦପୁରାଣ'ର ବର୍ଣ୍ଣନ ଅନୁସାରେ ଏହି କ୍ଷେତ୍ରର ଭୌଗଳିକ ଆକାର ଏକ ଦକ୍ଷିଣାବର୍ତ୍ତ ଶଙ୍ଖ ସଦୃଶ । ''ସୀମା ପ୍ରତୀଚୀ କ୍ଷେତ୍ର ଶଙ୍ଖାକାରସ୍ୟ ମୂର୍ଦ୍ଧନ ।'' ଦଶ ଯୋଜନ ବିସ୍ତୃତ ଏହି କ୍ଷେତ୍ର ତୀର୍ଥରାଜ ସମୁଦ୍ର ସଲିଳରୁ ଉତ୍‌ଥିତ ହୋଇ ସୁବର୍ଣ୍ଣ ବାଲୁକାରାଶି ଦ୍ୱାରା ସମାବେଷ୍ଟିତ ଏବଂ ଏହାର ମଧ୍ୟ ସ୍ଥଳ ବୃହତ୍ ନୀଳ ପର୍ବତ ଦ୍ୱାରା ପରିଶୋଭିତ । ଶଙ୍ଖର ଉଦର ଭାଗଟି ସମୁଦ୍ର ଜଳରେ ନିମଗ୍ନ ।

ଏହି ଶଙ୍ଖର ନାଭି ଦେଶରେ ଶତଦଳ କମଳଯୁକ୍ତ ରତ୍ନସିଂହାସନ ଉପରେ ପରଂବ୍ରହ୍ମ ଶ୍ରୀଜଗନ୍ନାଥ ସିଂହାସନ ଉପରେ ଆରୂଢ଼ । ଏହା ବ୍ୟତୀତ କେତେକ ପୁରାଣର କଥା ଅନୁସାରେ ବିଷ୍ଣୁଙ୍କ ହସ୍ତରେ ମୃତ୍ୟୁ ବରଣ କରିଥିବା ଏକ ଦୈତ୍ୟ 'ଶଙ୍ଖାସୁର'ର ନାମାନୁସାରେ ଏହି କ୍ଷେତ୍ରର ନାମ ଶଙ୍ଖକ୍ଷେତ୍ର ହୋଇଛି ।

ଖ୍ରୀଷ୍ଟୀୟ ଚତୁର୍ଦ୍ଦଶ ଶତାବ୍ଦୀରେ ବେଦ ଭାଷ୍ୟକାର ଶ୍ରୀସାୟଣାଚାର୍ଯ୍ୟ ଋକ୍ ବେଦର ଏହି ମନ୍ତ୍ରକୁ ବ୍ୟାଖ୍ୟା କରି କହିଥିଲେ, ''ଦୂରବର୍ତ୍ତୀ ସ୍ଥାନରେ ବର୍ତ୍ତମାନ ଅପୁରୁଷ (ସ୍ୱୟଂଭୂ) ଯେଉଁ ଦାରୁମୟ ପୁରୁଷୋତ୍ତମ ନାମକ ଦେବତା ଶରୀର ସମୁଦ୍ର ତୀରରେ ଜଳ ଉପରେ ବିରାଜମାନ, ହେ ସ୍ତାବକ, ସେହି ଦାରୁକୁ ଉପାସନା କର ଏବଂ ଏହାଦ୍ୱାରା ଉତ୍କୃଷ୍ଟ ବୈଷ୍ଣବ ଲୋକକୁ ଯାତ୍ରା କର ।'' ଗୀତାରେ ଶ୍ରୀକୃଷ୍ଣ ପୁରୁଷୋତ୍ତମ ଯୋଗରେ ପରଂବ୍ରହ୍ମ ଶ୍ରୀବିଷ୍ଣୁଙ୍କୁ ପୁରୁଷୋତ୍ତମ ଭାବରେ ବ୍ୟାଖ୍ୟା କରିଛନ୍ତି । ''ଅତୋଽସ୍ମି ଲୋକେ ବେଦେଚ ପ୍ରଥିତଃ ଶ୍ରୀପୁରୁଷୋତ୍ତମଃ ।'' 'ମେରୁତନ୍ତ୍ର', 'ଶାରଦାତିଳକ' ଆଦି ଗ୍ରନ୍ଥରେ ମଧ୍ୟ ଶ୍ରୀବିଷ୍ଣୁଙ୍କୁ ପୁରୁଷୋତ୍ତମଃ'' (ଗୀତା – ୧୫/୧୮) ଭାବରେ ଉପାସନା କରାଯାଇଛି ।

ହିନ୍ଦୁ ଦର୍ଶନରେ ବହୁ ପ୍ରାଚୀନ କାଳରୁ ଶ୍ରୀବିଷ୍ଣୁ ମଧ୍ୟ ପୁରୁଷୋତ୍ତମ ଭାବରେ ବିଖ୍ୟାତ ଏବଂ ପ୍ରାଚୀନ କାଳରୁ ତାଙ୍କ ଧର୍ମ ମଧ୍ୟ ପୁରୁଷୋତ୍ତମ ଧର୍ମ ଭାବରେ ପରିଚିତ । ମହାଭାରତରେ ଏହାର ଉଲ୍ଲେଖ ଦେଖାଯାଏ ।

ବାମଦେବ ସଂହିତାର ବର୍ଣ୍ଣନା ଅନୁଯାୟୀ ଏହି କ୍ଷେତ୍ରମାନଙ୍କ ମଧ୍ୟରୁ ସାକ୍ଷାତ୍ ବ୍ରହ୍ମା ବିରାଜମାନ ହୋଇଥିବା ସର୍ବୋତ୍ତମ କ୍ଷେତ୍ର ହେଉଛି ପୁରୁଷୋତ୍ତମ କ୍ଷେତ୍ର ।

ଏହି ନୀଳପର୍ବତରେ ବ୍ରହ୍ମ ସପ୍ତଧା ବିରାଜମାନ କରିଥାନ୍ତି । ଯେଉଁଠାରେ କି ଶଙ୍ଖକ୍ଷେତ୍ରର ଉତ୍ପତ୍ତି ହୋଇଅଛି । ପୁନଶ୍ଚ ବର୍ଣ୍ଣନା କରାଯାଇଛି– ପଦ୍ମୋଦ୍‌ଭବ ବ୍ରହ୍ମା ଯଜ୍ଞ କରୁଥିବାଠାରୁ ମାଧବ ରୂପରେ ସାକ୍ଷାତ୍ ପରଂବ୍ରହ୍ମ ଚାରି ହଜାର ବର୍ଷ (ଅର୍ଥାତ୍ ବ୍ରହ୍ମାଙ୍କର ଏକ ଦିନର ପରିମାଣ) ପୂର୍ବାର୍ଦ୍ଧରେ ନୀଳମାଧବ ରୂପରେ ଏବଂ ନୀଳ ପର୍ବତର ଅପରାର୍ଦ୍ଧରେ ଜଗନ୍ନାଥ ରୂପରେ ବିରାଜମାନ କରୁଛନ୍ତି । ତଣ୍ଟେ ଏହି କ୍ଷେତ୍ରର ମହିମା କେହି କହିବା ସଂଭବ ନୁହେଁ । ଏହା ବ୍ୟତୀତ 'କପିଳସଂହିତା'ର ବର୍ଣ୍ଣନା ଅନୁଯାୟୀ ''କ୍ରୁରୁଧ୍ୱଜ୍ରେଭୋ ବିପ୍ରସ୍ତପୋ ମୁକ୍ତି ପ୍ରଦାୟକମ୍'' ଅର୍ଥାତ୍ ଏହି କ୍ଷେତ୍ର ମୁକ୍ତି ପ୍ରଦାୟକ ହେତୁ ଏଠାରେ ତପସ୍ୱୀମାନେ ତପସ୍ୟା କରୁଥିଲେ । ତେଣୁ ଏହା ମୁନିମାନଙ୍କର ଏକ ତପୋବନ ଥିଲା । ଯାହାର ନାମ ଥିଲା ପଂଚଯଜ୍ଞ ତପୋବନ । ଏଠାରେ ବୈଷ୍ଣବମାନେ ପୁରୁଷୋତ୍ତମଙ୍କୁ ଗୋଟିଏ ମଣ୍ଡପରେ ପ୍ରତିଷ୍ଠିତ କରିଥିଲେ । କାରଣ ଏହି ସମୟରେ ମନ୍ଦିର ଗଠନ ପ୍ରକ୍ରିୟାର ପ୍ରଚଳନ ହୋଇନଥିଲା । ପୁରୁଷୋତ୍ତମଙ୍କର ବିଗ୍ରହ ଏଠାରେ ସ୍ଥାପିତ ହୋଇଥିବାରୁ ଏହା ପୁରୁଷ ମଣ୍ଡପ ଭାବରେ ଖ୍ୟାତ ଥିଲା । ଦକ୍ଷିଣ କୋଶଳ ମହାରାଜା ଜନ୍ମେଜୟ ମହାନୁଭବ ଗୁପ୍ତଙ୍କର ତାମ୍ରଶାସନରେ ଉଲ୍ଲେଖ ଅଛି ଏହି ପୁରୁଷ ମଣ୍ଡପଟି





ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ପୁରୁଷପୁର ନାମ ଧାରଣ କରିଥିବାର ପ୍ରମାଣ ମିଳେ ।

୩. ଶ୍ରୀକ୍ଷେତ୍ର – ଶ୍ରୀଶବ୍ଦର ଆଭିଧାନିକ ଅର୍ଥ ହେଉଛି ଶ୍ରେଷ୍ଠ, ସୁନ୍ଦର, ଶୋଭନୀୟ ସୁଲକ୍ଷଣଯୁକ୍ତ ତଥା ଶୌର୍ଯ୍ୟ ଓ ସମୃଦ୍ଧ । ଅତଏବ ଶ୍ରୀଏକ ମଂଗଳ ସୂଚକ ଶବ୍ଦ । ଧର୍ମ ଅର୍ଥ କାମ ଓ ମୋକ୍ଷ ସାଧକ ଶବ୍ଦ । ତେଣୁ ପାରଂପରିକ ଭାବରେ ନାମ ଏବଂ ଧାମ ତଥା ତୀର୍ଥ କ୍ଷେତ୍ର ପୂର୍ବରୁ ଶ୍ରୀସଂଯୁକ୍ତ ହୋଇଥାଏ । ସେହି ଦୃଷ୍ଟିରୁ ଏହିତୀର୍ଥ ଓ କ୍ଷେତ୍ର ପୂର୍ବରୁ ଶ୍ରୀ ସଂଯୁକ୍ତ ହୋଇ ଏହା ଶ୍ରୀକ୍ଷେତ୍ର ହୋଇଥିବାର କେତେକ ପଣ୍ଡିତ ମତ ପ୍ରକାଶ କରନ୍ତି । ବିଭିନ୍ନ ପୁରାଣରେ ଏହିସ୍ଥାନର ମହତ୍ତ୍ୱ ବର୍ଣ୍ଣନା କରାଯାଇ ଏହାକୁ ଧର୍ମ, ଅର୍ଥ କାମ ମୋକ୍ଷର ସ୍ଥଳ ଭାବରେ ବର୍ଣ୍ଣନା କରାଯାଇଛି । ବିଶେଷ ଭାବରେ ମୋକ୍ଷ କ୍ଷେତ୍ର ଭାବରେ ଏହାର ପ୍ରସିଦ୍ଧି ଜଗତ ବିଖ୍ୟାତ । ପୁରୁଷୋତ୍ତମ ମାହାତ୍ମ୍ୟରେ ଲକ୍ଷ୍ମୀ ଏ କ୍ଷେତ୍ର ସଂପର୍କରେ ଯମକୁ ଯାହା କହିଛନ୍ତି ତାହା ପ୍ରଣିଧାନଯୋଗ୍ୟ ।

ସ୍କନ୍ଦପୁରାଣର ବର୍ଣ୍ଣନା ଅନୁସାରେ ଏହି କ୍ଷେତ୍ର ସୃଷ୍ଟି, ସ୍ଥିତି ଓ ପ୍ରଳୟର ଉର୍ଦ୍ଧ୍ୱରେ ରହିଛି ।

କାରଣ ଏହି ସ୍ଥାନ ସୃଷ୍ଟି, ସ୍ଥିତି ଓ ପ୍ରଳୟ କର୍ତ୍ତା ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କର ନିତ୍ୟ ନିବାସ ସ୍ଥଳ । ଯେଉଁମାନେ ସ୍ୱୟଂ ମହାଲକ୍ଷ୍ମୀଙ୍କଠାରୁ ସଂଜାତ । ଏଠାରେ ସ୍ୱୟଂ ମହାଲକ୍ଷ୍ମୀଙ୍କର ଏକ ସ୍ୱତନ୍ତ୍ର ମନ୍ଦିର ରହିଛି । ଆଦିଲକ୍ଷ୍ମୀ (ଶ୍ରୀ) ଏଠାରେ ନିବାସ କରୁଥିବାରୁ ତାଙ୍କ ନାମାନୁସାରେ ଏହି କ୍ଷେତ୍ରର ନାମ ଶ୍ରୀକ୍ଷେତ୍ର ହୋଇଛି । ଲକ୍ଷ ଶବ୍ଦରୁ ଲକ୍ଷ୍ମୀ ଶବ୍ଦ ଉତ୍ପନ୍ନ । ଅର୍ଥାତ୍ ଖାଦ୍ୟ (ଲକ୍ଷ୍ମୀ) ବା ଅନ୍ନ ଯାହା ପ୍ରକୃତିର ଅବଦାନ । ସଂପତ୍ତି (ଧନ ଐଶ୍ୱର୍ଯ୍ୟ ଆଦି) ଯାହା ସଂସ୍କୃତି ସହିତ ସମନ୍ଵିତ । ଲକ୍ଷ୍ମୀଙ୍କର ଅନ୍ୟନାମ କମଳା (କମଳ ଅର୍ଥାତ୍ ପଦ୍ମ) ଯାହାର ସୁଗନ୍ଧ କୀଟପତଙ୍ଗରୁ ଆରମ୍ଭ କରି ମନୁଷ୍ୟ ପର୍ଯ୍ୟନ୍ତ ସମସ୍ତଙ୍କୁ ଆକର୍ଷିତ କରିଥାଏ । ଖାଦ୍ୟ (ଲକ୍ଷ୍ମୀ) ଯାହା ସମସ୍ତ ସଜୀବ ପ୍ରାଣୀଙ୍କର ମୌଳିକ ଆବଶ୍ୟକତା । ତେଣୁ ଏହି ଲକ୍ଷ୍ମୀଙ୍କ ପାଇଁ ସମସ୍ତଙ୍କର ଆକର୍ଷଣ ରହିଛି । ବୃକ୍ଷଲତା ଖାଦ୍ୟ ପାଇଁ ସୂର୍ଯ୍ୟ କିରଣ ଦିଗକୁ ପ୍ରଧାବିତ ହୁଅନ୍ତି । ତୃଣ ଭୋଜି ପ୍ରାଣୀମାନେ ତୃଣ ପାଇଁ ଆକର୍ଷିତ ହୁଅନ୍ତି । ମାଂସ ଭୋଜିମାନେ ଶିକାର ପଛରେ ଓ ମନୁଷ୍ୟମାନେ ଶସ୍ୟ ପଛରେ ପ୍ରଧାବିତ ଅଥଚ ଖାଦ୍ୟ (ଲକ୍ଷ୍ମୀ) କାହା ପଛରେ ପ୍ରଧାବିତ ହୁଅନ୍ତି ନାହିଁ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ କ୍ଷେତ୍ର ମା ଲକ୍ଷ୍ମୀଙ୍କ କ୍ଷେତ୍ର । ସମସ୍ତେ ଏ କ୍ଷେତ୍ର ପ୍ରତି ଆକର୍ଷିତ ହୁଅନ୍ତି । ଅଥଚ ଏ କ୍ଷେତ୍ର କାହା ପାଇଁ ଆକର୍ଷିତ ନୁହେଁ । ଏହା ଭୋଜନୀ କ୍ଷେତ୍ର ଅର୍ଥାତ୍ ଏଠାରେ କେହି ଉପବାସରେ ରହନ୍ତି ନାହିଁ । ଏହା ମୁକ୍ତିକ୍ଷେତ୍ର ତଥା ଭକ୍ତିକ୍ଷେତ୍ର ମଧ୍ୟ । କେତେକ ପୁରାଣର ବର୍ଣ୍ଣନା ଅନୁସାରେ ପ୍ରାଚୀନ କାଳରେ ରେଣୁକାନଦୀ ପରବର୍ତ୍ତୀ କାଳରେ ବାଙ୍କିନଦୀ ଓ ବାଙ୍କି ମୁହାଣରେ ପରିଣତ ହୋଇଛି । ପ୍ରାମାଣିକ ଭାବରେ ଏହି ବାଙ୍କି ମୁହାଣରୁ ହିଁ ପରଂବ୍ରହ୍ମ ଶ୍ରୀଜଗନ୍ନାଥଙ୍କ ଦାରୁ ପ୍ରାପ୍ତ ହୋଇଥିଲା । ଏହି ଶ୍ରୀତୀର୍ଥ ପରବର୍ତ୍ତୀ କାଳରେ ଶ୍ରୀକ୍ଷେତ୍ର ହୋଇଛି ।

୪. ଭୌମକ୍ଷେତ୍ର – ଏହି କ୍ଷେତ୍ର ସ୍ୱୟଂ ଜଳ ମଧ୍ୟରୁ ଉତ୍‌ଥିତ ହୋଇଥିବାରୁ ଏ କ୍ଷେତ୍ରକୁ ଭୌମକ୍ଷେତ୍ର କୁହାଯାଏ । ମହାଭାରତର ବନପର୍ବରେ ବର୍ଣ୍ଣିତ ଅଛି ପାଣ୍ଡବମାନେ ତୀର୍ଥ ଯାତ୍ରାରେ ବର୍ହିଗତ ହୋଇ ପୁଣ୍ୟତୋୟା ବୈତରଣୀ ନଦୀ କୂଳରେ ପହଂଚିଲେ । ଲୋମଶମୁନିଙ୍କ ନିର୍ଦ୍ଦେଶରେ ବୈତରଣୀ ନଦୀରେ ପବିତ୍ର ସ୍ନାନ କଲାପରେ ସହସା ଯୁଧିଷ୍ଠିର ବୈଖାନସ ମୁନିମାନଙ୍କ ଦ୍ୱାରା ଉଚ୍ଚାରିତ ବେଦଧ୍ୱନି ଶୁଣିବାରୁ, ମହାମୁନି ଲୋମଶ ସେମାନଙ୍କୁ ସୂଚନା ଦେଇ କହିଲେ, ଏହି ବେଦଧ୍ୱନି ଯେଉଁଠାରୁ ଆସୁଛି ତାହା ଏଠାରୁ ପ୍ରାୟ ତିନିଲକ୍ଷ ଯୋଜନ ଦୂରରେ ରହିଛି । ଏହାଏକ ପ୍ରାଚୀନ ବିଷ୍ଣୁକ୍ଷେତ୍ର । ଏଠାରେ ବ୍ରହ୍ମବନ ନାମକ ଏକ ସ୍ଥାନରେ ପରମପିତା ବ୍ରହ୍ମା ଏକ ଯଜ୍ଞ କରୁଥିଲେ । ଯଜ୍ଞଶେଷରେ ବ୍ରହ୍ମା ପର୍ବତ ଓ ବନଭୂମି ସହିତ ସମଗ୍ର ପୃଥିବୀକୁ କାଶ୍ୟପଙ୍କୁ ଦାନ କରିଦେଲେ । ଏଥିରେ କୁପିତ ହୋଇ ଦେବୀ ବସୁନ୍ଧରା ରସାତଳ ଗାମୀ ହୋଇଗଲେ । ଏଥିରେ ଦୁଃଖିତ ହୋଇ କଶ୍ୟପମୁନି ଦେବୀ ବସୁଧାଙ୍କୁ ସନ୍ତୁଷ୍ଟ କରିବା ପାଇଁ ତପସ୍ୟା

ପ୍ରାରମ୍ଭ କଲେ ଏବଂ ଦେବୀଙ୍କୁ ବିଭିନ୍ନ ଭାବରେ ସ୍ତୁତି କରିବାକୁ ଲାଗିଲେ । କାଶ୍ୟପଙ୍କ ସ୍ତୁତିରେ ସନ୍ତୁଷ୍ଟ ହୋଇ ଦେବୀ ବସୁନ୍ଧରା ଏକ ବାଲୁକା ଦେବୀ ରୂପରେ ପୁନଃ ସାଗର ଗର୍ଭରୁ ଉତ୍‌ଥିତ ହେଲେ ।

ତେଣୁ ଏହି କ୍ଷେତ୍ର ଭୌମ କ୍ଷେତ୍ର ଭାବରେ ପ୍ରସିଦ୍ଧ । ଏହାର ଚତୁଃପାର୍ଶ୍ୱ ଜଳ ଓ ମଧ୍ୟରେ ବେଦୀ ସଦୃଶ ଏହି କ୍ଷେତ୍ର ଅବସ୍ଥିତ ଥିଲା ।

**୫. ଦଶାବତାର କ୍ଷେତ୍ର**

ଏହି ସ୍ଥାନ ହିଁ ସୃଷ୍ଟି ସ୍ଥିତି ଓ ପାଳନର ମୂଳାୟତନ । ଭଗବାନ ଏହି ସ୍ଥାନରେ ନାନା ମୂର୍ତ୍ତିରେ ଅବତୀର୍ଣ୍ଣ ହୋଇ କାର୍ଯ୍ୟ ବଶତଃ ଅନ୍ୟତ୍ର ଗମନ କରନ୍ତି । ପୃଥିବୀ ସଂପର୍କରେ କର୍ତ୍ତବ୍ୟ ସଂପାଦନ ପୂର୍ବକ ପୁନର୍ବାର ଏହି ସ୍ଥାନରେ ଅବସ୍ଥାନ କରନ୍ତି । ଅତଏବ ମତ୍ସ୍ୟାଦି ଦଶାବତାରଙ୍କୁ ଦର୍ଶନ କଲେ ଯେଉଁ ଫଳ ହୁଏ, ମନୁଷ୍ୟ କେବଳ ପୁରୁଷୋତ୍ତମଙ୍କୁ ଦର୍ଶନ କଲେ ସେହି ଫଳ ଲାଭକରେ । ଏଣୁ ଏହି କ୍ଷେତ୍ରକୁ ଦଶାବତାର କ୍ଷେତ୍ର କୁହାଯାଏ । ବହୁ ଉତ୍କଳୀୟ କବି ଓ ବୈଷ୍ଣବ ମଧ୍ୟ ଏହି କ୍ଷେତ୍ରକୁ ଦଶାବତାର କ୍ଷେତ୍ର ଭାବରେ ବର୍ଣ୍ଣନା କରିଛନ୍ତି । ଏପରିକି ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଶ୍ରୀଗୁଣ୍ଡିଚା ରଥଯାତ୍ରାକୁ ମଧ୍ୟ ଦଶାବତାର ଯାତ୍ରା କୁହାଯାଏ ।

ଶ୍ରୀଜଗନ୍ନାଥ ଯେତେବେଳେ ନୀଳାଚଳରୁ ସୁନ୍ଦରାଚଳକୁ ଯାତ୍ରା କରନ୍ତି ସେ ଦଶ ଦେବ ବିଗ୍ରହ ହୋଇ ଯାତ୍ରା କରନ୍ତି । ଯଥା– ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ହୋଇ ଚାରିମୂର୍ତ୍ତି, ବଳଭଦ୍ରଙ୍କ ସହିତ ନୃସିଂହ ଓ ରାମକୃଷ୍ଣ ହୋଇ ତିନିମୂର୍ତ୍ତି, ଜଗନ୍ନାଥଙ୍କ ସହିତ ମଦନମୋହନ, ବାସୁଦେବ ଏବଂ ସୁଭଦ୍ରାଙ୍କ ସହିତ ଜୟଦୁର୍ଗା ଏହିପରି ଦଶ ହୋଇଥିବାରୁ ଏହିଯାତ୍ରା ମଧ୍ୟ ଦଶାବତାର ଯାତ୍ରା । ଏ ସମସ୍ତ ଦୃଷ୍ଟିରୁ ଏହି କ୍ଷେତ୍ରକୁ ଦଶାବତାର କ୍ଷେତ୍ର କୁହାଯାଏ ।

୬. ନୀଳାଚଳ – (ନୀଳଗିରି, ନୀଳକନ୍ଦର, ନୀଳାଦ୍ରି) ମହାଭାରତର ବର୍ଣ୍ଣନା ଅନୁଯାୟୀ ପୂର୍ବ ସମୁଦ୍ରରୁ ପଶ୍ଚିମ ସମୁଦ୍ର ପର୍ଯ୍ୟନ୍ତ ଛଅଟି ପର୍ବତ ବିସ୍ତୃତ । ସେମାନେ ହେଲେ ହିମବାନ, ହେମକୂଟ, ନିଷଧ, ବୈଦୁର୍ଯ୍ୟ ମଣିମୟ ନୀଳ ଜଳଦ କାନ୍ତି ଯୁକ୍ତ ନୀଳଗିରି, ଚନ୍ଦ୍ରମା ସଦୃଶ ଉଜ୍ଜ୍ୱଳ ଧାତୁ ସଂପନ୍ନ ଶୃଙ୍ଗବାନ ପର୍ବତ । ଏହି ଛଅ ପର୍ବତ ସିଦ୍ଧ ଓ ଚାରଣମାନଙ୍କର ନିବାସ ସ୍ଥଳ ଥିଲା । ଏହା ମଧ୍ୟରୁ ନୀଳଗିରି ପର୍ବତରେ ବ୍ରହ୍ମର୍ଷିମାନେ ନିବାସ କରୁଥିଲେ ।

ଅନ୍ୟାନ୍ୟ ହିନ୍ଦୁ ପୁରାଣର ବର୍ଣ୍ଣନା ଅନୁସାରେ ଆଠ ଦିଗରେ ପୃଥିବୀକୁ ଧରି ରଖିଥିବା ଆଠଟି ପର୍ବତ ରହିଛି– ଯଥା– ମହେନ୍ଦ୍ର, ମଳୟ, ସହ୍ୟ, ଶୁକ୍ତିମାନ, ଋକ୍ଷପର୍ବତ, ବିନ୍ଧ୍ୟ, ପରିପାତ୍ର ଓ ହିମାଳୟ । ଏମାନଙ୍କ ବ୍ୟତୀତ ଭାରତର ବିଭିନ୍ନ ତୀର୍ଥ ସ୍ଥାନକୁ ଧାରଣ କରିଥିବା ପ୍ରାଚୀନ କୁଳାଚଳମାନଙ୍କର ବର୍ଣ୍ଣନା ରହିଛି । ଯଥା ସୀମାଦ୍ରି, ସୋହାଦ୍ରି, ସହ୍ୟାଦ୍ରି, ସ୍ୱର୍ଣ୍ଣାଦ୍ରି, ହିମାଦ୍ରୀ, ନୀଳାଦ୍ରି । ସୋହାଦ୍ରି ସମୁଦ୍ର ମଧ୍ୟସ୍ଥ ଗିରି, ସ୍ୱର୍ଣ୍ଣାଦ୍ରି ଭୁବନେଶ୍ୱରର ପୁରାତନ ନାମ, ସୀମାଦ୍ରି – ସୀମାଚଳ, ସହ୍ୟାଦ୍ରି ପଶ୍ଚିମ ଘାଟ ପର୍ବତମାଳା, ଏବଂ ନୀଳାଦ୍ରି ବା ନୀଳାଚଳ । ସ୍ୱର୍ଣ୍ଣକୂଟ ଗିରି ପରେ ନୀଳଗିରି ଏକ ମହତ୍ତ୍ୱପୂର୍ଣ୍ଣ ପର୍ବତ । ନୀଳ ଶବ୍ଦ ସହିତ ବିଷ୍ଣୁ ସର୍ବଦା ଜଡ଼ିତ ହୋଇ ରହିଥାନ୍ତି । ଭାଷାତତ୍ତ୍ୱର ବର୍ଣ୍ଣନା ଅନୁଯାୟୀ ନୀଳାଚଳ ନାମରେ ତିନୋଟି ପର୍ବତ ଦୃଷ୍ଟିଗୋଚର ହୋଇଥାଏ । ଉତ୍ତରନୀଳାଚଳ ଆସାମର କାମାକ୍ଷା ପାହାଡ଼, ଦକ୍ଷିଣ ନୀଳାଚଳ ଦାକ୍ଷିଣାତ୍ୟର ନୀଳଗିରି ପର୍ବତମାଳା, ପୂର୍ବଘାଟରେ ପୂର୍ବ ନୀଳଗିରି ପର୍ବତ ମାଳା । ସଂଭବତଃ ଏହି ପୂର୍ବଘାଟ ପାହାଡ଼ର ଉତ୍ତରସୀମା ପୁରୀଜିଲ୍ଲାକୁ ଲାଗି ଥିବାରୁ ପୁରୀର ନାମ ନୀଳାଚଳ ହୋଇଛି । ଏହି ସ୍ଥାନରେ ପ୍ରାଚୀନ କାଳରୁ ନୀଳମାଧବ ରୂପରେ ଶ୍ରୀବିଷ୍ଣୁ ବାସ କରୁଥିବାର ସୂଚନା ସ୍କନ୍ଦପୁରାଣରେ ରହିଛି ଏବଂ ଏହି କ୍ଷେତ୍ରର ମଧ୍ୟ ଭାଗରେ ନୀଳଗିରି ବିଦ୍ୟମାନ ।

୭. ଦିବ୍ୟଧାମ – ନୀଳାର ଅନ୍ୟ ଏକ ନାମ ବିଦ୍ୟମାନ ।

''ଅତ୍ର କ୍ଷେତ୍ରବରେ ବସତାଂସ୍ତାନ୍ ପ୍ରକୁରୁତେ ବିଭୁଃ ।
ଏତଦ୍ଧି ପରମଂ ସ୍ଥାନଂ ଦିବ୍ୟଂ ଭୌମଞ୍ଚ କଥ୍ୟତେ ।''

(ସ୍କ.ପୁ. ୧୫୫/୧୧)





ବିଭୁ ନାରାୟଣ ସର୍ବୋତ୍ତମ ପୁରୁଷୋତ୍ତମ ଏହି କ୍ଷେତ୍ରରେ ବିଭିନ୍ନ ଅବତାର ମୂର୍ତ୍ତ ପ୍ରକାଶ କରିଥିବାରୁ ଏହାକୁ ପଣ୍ଡିତ ଗଣ ପରମ ପବିତ୍ର ଦିବ୍ୟଧାମ କହିଥାନ୍ତି । ଏହି କ୍ଷେତ୍ରରେ ବ୍ରହ୍ମାଙ୍କ ସହିତ ଦେବଗଣ ଆସି ବାସ କରିବା ସହିତ ମହୋଦଧି ତୀର୍ଥରେ ସ୍ନାନକରି ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିଥାନ୍ତି । ଫଳରେ ଏହି କ୍ଷେତ୍ର ଏକ ଦିବ୍ୟ କ୍ଷେତ୍ରରେ ପରିଣତ ହୋଇଛି ।

ଏହି ଦକ୍ଷିଣାବର୍ତ୍ତ ଶଙ୍ଖର ସ୍ମରଣ ମାତ୍ରକେ ସମସ୍ତ ପାପ ବିନଷ୍ଟ ହୋଇଥାଏ । ଯେହେତୁ ଏହି ଶଙ୍ଖ ମଧ୍ୟରେ ନୀଳବର୍ଣ୍ଣ ଓ ଚତୁର୍ଭୁଜ ରୂପରେ ବିଷ୍ଣୁସ୍ୱୟଂ ବିରାଜମାନ କରିଥାନ୍ତି ।

ମହାପ୍ରଭୁ କମଳଲୋଚନ ବିଷ୍ଣୁଙ୍କର ବିଜେସ୍ଥଳୀର ନାମ ଗୋଲକ । ଗୋଲକରେ ଅଧଃ ଦେଶରେ ରହିଛି ଅଷ୍ଟବୈକୁଣ୍ଠ ଏବଂ ଅଷ୍ଟବୈକୁଣ୍ଠର ଉର୍ଦ୍ଧ୍ୱରେ ପରମବିଷ୍ଣୁ ଶ୍ରୀଜଗନ୍ନାଥ ପଦ୍ମାସନରେ ଉପବିଷ୍ଟ । ତାଙ୍କ ପାଦତଳେ ରହିଛି ବାଇଶି ପାବଚ୍ଛ । ଯେଉଁଠି ଚତୁର୍ଦ୍ଦଶ ଭୁବନ ଓ ଅଷ୍ଟବୈକୁଣ୍ଠ ପ୍ରଲମ୍ବିତ । ଶ୍ରୀବୈକୁଣ୍ଠ, କୈବଲ୍ୟ, ବୈକୁଣ୍ଠ, କାରଣାର୍ଣ୍ଣବ ବୈକୁଣ୍ଠ, ଶେଷଶାୟୀ ବୈକୁଣ୍ଠ, ଶ୍ୱେତଦ୍ୱୀପ ବୈକୁଣ୍ଠ, ପରବ୍ୟୋମ ବୈକୁଣ୍ଠ, ଗର୍ଭୋଦୟ ଶାୟୀ ବୈକୁଣ୍ଠ ଓ କୈଳାସ ବୈକୁଣ୍ଠ ରହିଛି । ଏହି ହେତୁ ଏହି କ୍ଷେତ୍ର ସାକ୍ଷାତ ବୈକୁଣ୍ଠ ସ୍ୱରୂପ । ପଂଚଭୂତକୁ ଏକତ୍ର କରିବାରେ ଯେଉଁ ଶକ୍ତି କେବେ କୁଣ୍ଠିତ ହୁଏ ନାହିଁ ତାହା ବୈକୁଣ୍ଠ । ଅର୍ଥାତ୍ ସ୍ୱୟଂ ଭଗବାନ ହିଁ ବୈକୁଣ୍ଠ ( ମହାଭାରତ ଶାନ୍ତିପର୍ବ– ଶ୍ଳୋକ ୮୦) (୩୬୨ପୃ) ଏବଂ ଏହି କ୍ଷେତ୍ର ମାନ ମୁକ୍ତି ପ୍ରଦାୟକ ଅସଂଖ୍ୟ ତୀର୍ଥରେ ପରିପୂରିତ ।

ବ୍ରତ ପାରଣ, ସରଳତା, ଦେବତାଙ୍କର ସେବା ଏବଂ ଗୁରୁ ଶୁଶ୍ରୂଷା ଏ ସବୁକୁ ତୀର୍ଥ କୁହାଯାଏ । ମାତା ପିତାଙ୍କ ସେବା, ସ୍ତ୍ରୀକୁ ସନ୍ତୁଷ୍ଟ ରଖିବା, ଗୃହସ୍ଥ ଧର୍ମ ପାଳନ ଆଦିକୁ ତୀର୍ଥ କୁହାଯାଏ । ଅତିଥି ସେବାରେ ଲାଗି ରହିବା ପରମତୀର୍ଥ, ବେଦ ଅଧ୍ୟୟନ ସାନତନ ତୀର୍ଥ, ବ୍ରହ୍ମଚର୍ଯ୍ୟ ପାଳନ ପରମତୀର୍ଥ, ହୋମ ଆଦି ଦ୍ୱାରା ଅଗ୍ନିରେ ଆହୁତି ପ୍ରଦାନ ମଧ୍ୟ ତୀର୍ଥ ଅଟେ । ଏ ସମସ୍ତ ମୂଳ ହେଉଛି ଧର୍ମ । ତୀର୍ଥ ସାଧାରଣତଃ ଦୁଇ ପ୍ରକାର । ସ୍ଥାବର ଓ ଜଙ୍ଗମ । କିନ୍ତୁ ସ୍ଥାବରଠାରୁ ଜଙ୍ଗମତୀର୍ଥ ଶ୍ରେଷ୍ଠ । କାରଣ ଏହାଦ୍ୱାରା ଜ୍ଞାନ ପ୍ରାପ୍ତି ହୋଇଥାଏ ।

ଅତଏବ ଏହି ଲୋକରେ ପୁଣ୍ୟ କର୍ମ ଅନୁଷ୍ଠାନରେ ବିଶୁଦ୍ଧ ହୋଇଥିବା ପୁରୁଷ ହୃଦୟରେ ସମସ୍ତ ତୀର୍ଥ ବାସ କରନ୍ତି । ଅତଏବ ସେ ସ୍ୱୟଂ ତୀର୍ଥ ସ୍ୱରୂପ ଅଟେ । ଗୁରୁ ରୂପୀ ତୀର୍ଥଠାରୁ ପରମାତ୍ମାଙ୍କ ଜ୍ଞାନ ପ୍ରାପ୍ତ ହୁଏ ତେଣୁ ସେ ସବୁଠାରୁ ବଡ଼ତୀର୍ଥ । ଜ୍ଞାନତୀର୍ଥ ସବୁଠାରୁ ବଡ଼ ଏବଂ ବ୍ରହ୍ମତୀର୍ଥ ସନାତନ ଅଟେ । ଦୟା କ୍ଷମା ଗୁଣ ଧାରଣ କରିଥିବା ବ୍ୟକ୍ତି ଈଶ୍ୱର ସଦୃଶ । ଆତ୍ମା ରୂପ ନଦୀ ପରମ ପାବନ ତୀର୍ଥ । ସ୍ୱର୍ଗ ମୋକ୍ଷ ଆଦି ସବୁ ଆତ୍ମାର ଅଧୀନ କାରଣ ଆତ୍ମା ଯଜ୍ଞ ରୂପ ଅଟେ । କ୍ଷମା ସବୁଠାରୁ ବଡ଼ ତୀର୍ଥ । ଯେଉଁ ବ୍ୟକ୍ତି କ୍ଷମାଶୀଳ, ଦ୍ୱେଷ ରହିତ ତଥା ଅହିଂସାକୁ ପରମଧର୍ମ ଭାବି ଇନ୍ଦ୍ରିୟ ସଂଯମୀ ଅର୍ଥାତ୍ ତିରସ୍କାର ଓ ପୁରସ୍କାରକୁ ସମଦୃଷ୍ଟିରେ ଦେଖେ । ସଦାଚାର ଦ୍ୱାର ତା'ର ଆତ୍ମ ନିର୍ମଳ ହୋଇଯାଇଥାଏ । ସେହି ବ୍ୟକ୍ତି ତୀର୍ଥ ସ୍ୱରୂପ ଅଟେ । ଯେଉଁ ସ୍ଥାନରେ ସେ ବାସ କରେ ତାହା ତୀର୍ଥରେ ପରିଣତ ହୁଏ । ତେଣୁ ଜଳପୂର୍ଣ୍ଣ ତୀର୍ଥରେ ଯାଇ ସ୍ନାନ କରିବା ତା' ପାଇଁ କୌଣସି ଆବଶ୍ୟକତା ନାହିଁ ।

ମହାଭାରତରେ ବର୍ଣ୍ଣିତ ତୀର୍ଥର ସଂଜ୍ଞା ଅନୁସାରେ 'ସ୍କନ୍ଦପୁରାଣ'ର 'ଉତ୍କଳଖଣ୍ଡ'ର ଷଷ୍ଠ ଅଧ୍ୟାୟର ଦୁଇରୁ ପଚିଶ ଶ୍ଳୋକ ମଧ୍ୟରେ ଉତ୍କଳ ଦେଶରେ ସ୍ଥିତ ପୁରୁଷୋତ୍ତମ କ୍ଷେତ୍ରର ଯେଉଁ ବର୍ଣ୍ଣନା କରାଯାଇଛି ସେଥିରୁ ପୁରୁଷୋତ୍ତମ କ୍ଷେତ୍ରର ତୀର୍ଥତ୍ୱ ଓ ମହାନତା ପରିପ୍ରକାଶିତ । ଜୈମିନି କହିଛନ୍ତି ଉତ୍କଳ ନାମରେ ଏକ ପରମ ପବିତ୍ର ବିଖ୍ୟାତ ଦେଶ ଅଛି ଉକ୍ତ ଦେଶରେ ଅନେକ ତୀର୍ଥ ଓ ପୁଣ୍ୟ ସ୍ଥାନ ରହିଛି । ସେହି ଦେଶ ଦକ୍ଷିଣ ସମୁଦ୍ରର ତୀର ଭାଗରେ ପ୍ରତିଷ୍ଠିତ । ସେଠାକାର ଲୋକ ସମୂହ ସଦାଚାର ପରାୟଣ, ବ୍ରାହ୍ମଣଗଣ ବେଦଜ୍ଞ ଓ ବେଦ ଅଧ୍ୟୟନ ତତ୍ପର ଏବଂ





ଯଥା ବିଧାନରେ ଯାଗକର୍ତ୍ତା ଅଟନ୍ତି । ସୃଷ୍ଟିର ଆଦିମ କାଳରୁ ସେଠାରେ ବେଦ ବିହିତ ଯାଜଯଜ୍ଞାଦି ସମଭାବରେ ଅନୁଷ୍ଠିତ ହୋଇଥାଏ । ଏହି ଦେଶ ଅଷ୍ଟାଦଶ ବିଦ୍ୟାର ଖଣି ବୋଲି କୀର୍ତ୍ତିତ ହୋଇଥାଏ । ଉତ୍କଳର ଜନଗଣ ସମସ୍ତେ ବୈଷ୍ଣବ, ଧର୍ମପରାୟଣ, ସତ୍ୟବାଦୀ, ମାତୃପିତୃ ଭକ୍ତ, ଲଜ୍ଜାଶୀଳ, ବିନୟୀ ଆଧି, ବ୍ୟାଧି ଓ କ୍ଲେଶ କାହାର ନାହିଁ, ନାରୀ ପୁରୁଷ ଉଭୟ ସଦାଚାରୀ ବିବିଧ ଶାସ୍ତ୍ରରେ ବିଶାରଦ । ସମସ୍ତେ ପ୍ରଚୁର ପରିମାଣରେ ଦକ୍ଷିଣାଦେଇ ଯଜ୍ଞାନୁଷ୍ଠାନ କରାଇଥାନ୍ତି । ସମସ୍ତେ ଅତିଥି ନାରାୟଣ । କ୍ଷମାଶୀଳ, ଗୋବ୍ରାହ୍ମଣହିତାର୍ଥେ କାର୍ଯ୍ୟ କରିଥାନ୍ତି । କାୟମନୋବାକ୍ୟରେ ଶୁଦ୍ଧ ଏବଂ ନିର୍ମଳ ତେଣୁ ଶ୍ରୀଲକ୍ଷ୍ମୀ ଦେବୀ ଭଗବାନ ନାରାୟଣଙ୍କ ଆଜ୍ଞାନୁସାରେ ସେଠାରେ ଗୃହେ ଗୃହେ ବିରାଜିତ ହୋଇଥାନ୍ତି । ଫଳରେ ଏହି କ୍ଷେତ୍ର ଶ୍ରୀକ୍ଷେତ୍ର ଓ ପ୍ରତ୍ୟେକ ଗୃହ ତୀର୍ଥ ସଦୃଶ ।

ସାଧାରଣତଃ ତୀର୍ଥ ଶବ୍ଦର ଅର୍ଥ ‘‘ତରନ୍ତି ଦୁସ୍ତର ସାଗରାତ୍ ଯତ୍ର ତତ୍ରତୀର୍ଥ’’ । ଅର୍ଥାତ୍ ପାପ କର୍ମରୁ ଉଦ୍ଧାର ପାଇବା ପାଇଁ ଲୋକେ ଯେଉଁ ସ୍ଥାନକୁ ଯାତ୍ରା କରନ୍ତି ତାହା ତୀର୍ଥ । ଏହି ତୀର୍ଥମାନଙ୍କ ମଧ୍ୟରୁ ଯେଉଁ ଶ୍ରେଷ୍ଠ ତୀର୍ଥ ଏଠାରେ ବିଦ୍ୟମାନ ସେ ସଂପର୍କରେ ବିଭିନ୍ନ ପୁରାଣ ସମ୍ୟକ ଧାରଣା ଦେଇଥାଏ । ଏକଦା ଧର୍ମରାଜ ଏହି ପୁରାଣ ପ୍ରସିଦ୍ଧ ଶ୍ରୀକ୍ଷେତ୍ରରେ ନିଜର ଅଧିକାର ଭଂଗ ହେବାର ଦେଖି ଅତ୍ୟନ୍ତ ବ୍ୟାକୁଳ ହୋଇ ଭଗବାନଙ୍କୁ ପ୍ରାର୍ଥନା କରିବାରୁ ଭଗବାନଙ୍କ ନିର୍ଦ୍ଦେଶରେ ମହାଲକ୍ଷ୍ମୀ ଏହି କ୍ଷେତ୍ରର ମହନୀୟତା ସଂପର୍କରେ ବ୍ୟାଖ୍ୟା କରିବାକୁ ଯାଇ ଏହି କ୍ଷେତ୍ରରେ ଥିବା ରୋହିଣୀ କୁଣ୍ଡ ସଂପର୍କରେ ସୂଚନା ଦେଇ କହିଥିଲେ –

‘‘କୁଣ୍ଡଂ ହ୍ୟେତ ଦ୍ରୌହିଣାଖ୍ୟଂ କାରଣାଖ୍ୟଜଳେନବୈ
ସମ୍ଭୃତଂ ତିଷ୍ଠତେ ନିତ୍ୟଂ ସ୍ପର୍ଶନାଦ୍ ବନ୍ଧମୁକ୍ତିଦମ୍ ।
ଅତ୍ର ପ୍ରତିଷ୍ଠିତଂ ବାରି ପ୍ରଳୟେ ଯତ୍ ପ୍ରବର୍ଦ୍ଧତେ
ଅତ୍ରୈବ ଲୀୟତେ ପଶ୍ଚାତ୍ ତସ୍ମୀ ଦ୍ରୋହିଣସଂଜ୍ଞିତମ୍ ।
୨୪ (ସ୍କ. ପୁ. ୪ଅଧ୍ୟାୟ)

ଅର୍ଥାତ୍ ଏଠାରେ ଯେଉଁ ରୋହିଣୀ ନାମକ କୁଣ୍ଡକାରଣ ଜଳରେ ସର୍ବଦା ପରିପୂର୍ଣ୍ଣ ହୋଇ ରହିଛି ଏହାର ସ୍ପର୍ଶ ମାତ୍ରକେ ପ୍ରାଣୀ ମୁକ୍ତି ପାଇଯାଏ । ଏହି କୁଣ୍ଡ ସ୍ଥିତ ଜଳ ପ୍ରଳୟ କାଳରେ ବର୍ଦ୍ଧିତ ହୋଇ ପୁନଶ୍ଚ ଏହି ସ୍ଥାନରେ ଲୀନ ହୁଏ ।

ଏହି କ୍ଷେତ୍ରରେ ଆକଳ୍ପ ସ୍ଥାୟୀ ଏକ ବଟବୃକ୍ଷ ରହିଛି । ଏହି ବୃକ୍ଷର ପରିମାଣ ଏକ କ୍ରୋଶ । ଉକ୍ତ ବଟ ବୃକ୍ଷରେ ଫଳ ନଥାଏ କି ପୁଷ୍ପ ନଥାଏ । କେବଳ କୋମଳ ପଲ୍ଲବରେ ପରିପୂର୍ଣ୍ଣ । ଅତଏବ ଏହା ଦେଖିବା ପାଇଁ ଅତ୍ୟନ୍ତ ମନୋହର । ସୂର୍ଯ୍ୟ ଦେବଙ୍କ ଗତି ଅନୁସାରେ ଏହାର କାୟାର କୌଣସି ପରିବର୍ତ୍ତନ ହୁଏ ନାହିଁ । ଏହି କଳ୍ପାନ୍ତ ସ୍ଥାୟୀ ବୃକ୍ଷ ମୁକ୍ତି ଦାୟକ ଅଟେ । କାରଣ ଏହା ସ୍ୱୟଂ ଭଗବାନଙ୍କର ଅଂଗରୁ ସୃଷ୍ଟି । ସୃଷ୍ଟିର ବିନାଶ କାଳରେ ଭଗବାନ ବାଳ ମୁକୁନ୍ଦ ରୂପଧାରଣ କରି ଏହି କଳ୍ପବଟର ପତ୍ର ପୁଟରେ ଶୟନ କରି ବିଶ୍ରାମ ନେଇଥାନ୍ତି । ଯାହାଙ୍କୁ ମାର୍କଣ୍ଡେୟ ମୁନି ଦର୍ଶନ କରୁଥିଲେ । ଏହି ବଟ ବ୍ୟତୀତ ଏହି କ୍ଷେତ୍ରରେ ଅଙ୍ଗିରା ବଟ, ନିକୁମ୍ଭିଳା ବଟ, ଅଘୋର ବଟ, ଗୋଛନ୍ଦ ବଟ ଓ ବାଞ୍ଛା ବଟ ନାମରେ ପାଂଚଟି ପବିତ୍ର ବଟବୃକ୍ଷ ମଧ୍ୟ ରହିଛି ।

ଏହି କ୍ଷେତ୍ରକୁ କେହି ଶୈବକ୍ଷେତ୍ର, କେହି ସୌରକ୍ଷେତ୍ର, କେହି ଶକ୍ତିକ୍ଷେତ୍ର, ଶ୍ରୀକ୍ଷେତ୍ର କହିଥାନ୍ତି । କାରଣ ଏହି କ୍ଷେତ୍ର ଏକାଧାରରେ ସମସ୍ତ କ୍ଷେତ୍ରର ଏକ ପଞ୍ଜିକୃତ ରୂପ । ସମସ୍ତ ଚେତନାର ଦେବଦେବୀ ଏଠାରେ ଆସି ନିବିଘ୍ନରେ ବିରାଜମାନ କରିଥାନ୍ତି ଫଳରେ ସେମାନଙ୍କ ଉପାସକମାନେ ମଧ୍ୟ ଏଠାକୁ ଆସି ନିର୍ବିଘ୍ନରେ ନିଜ ନିଜର ଇଷ୍ଟ ଦେବଦେବୀଙ୍କ ଆରାଧନା କରିଥାନ୍ତି । ତେଣୁ ‘ବାମଦେବ ସଂହିତା’ ଆଦି ଗ୍ରନ୍ଥରେ ଏହି କ୍ଷେତ୍ରକୁ ତ୍ରିରା ବୃତ୍ତକ୍ଷେତ୍ର ଭାବରେ ବର୍ଣ୍ଣନା କରିଥାନ୍ତି । ପ୍ରଥମା ବରଣରେ ବିମଳା, ରୋହିଣୀ କୁଣ୍ଡ, ନୃସିଂହ, କଳ୍ପବଟ, ଈଶାନେଶ୍ୱର, ରହିଥିବା ବେଳେ ଦ୍ୱିତୀୟା ବରଣରେ କପାଳମୋଚନେଶ୍ୱର, ମଣିକର୍ଣ୍ଣିକା ତୀର୍ଥ, ଚଣ୍ଡରୂପା, ଶ୍ୱେତଗଂଗା, ଶ୍ୱେତମାଧବ,





ମତ୍ସ୍ୟ ମାଧବ, ଦକ୍ଷିଣ କାଳିକା, ଅର୍ଦ୍ଧାଶିନୀ, ମରୀଚିକା, ଚକ୍ରତୀର୍ଥ, ମାର୍କଣ୍ଡେୟ ପୁଷ୍କରିଣୀ, ମାର୍କଣ୍ଡେଶ୍ୱର ବିରାଜମାନ । ତୃତୀୟ ବରଣରେ ଯମେଶ୍ୱର, କଣ୍ଡୁଆଶ୍ରମ, ସର୍ବମଂଗଳା, ଅଲାବୁକେଶ୍ୱର, ଅଲମ୍ବା, ତଥା ନୀଳକଣ୍ଠେଶ୍ୱର ବିରାଜମାନ । ଏହି କ୍ଷେତ୍ରକୁ କପାଳମୋଚନ, କ୍ଷେତ୍ରପାଳ, ଯମେଶ୍ୱର, ମାର୍କଣ୍ଡ, ବେଲେଶ୍ୱର, ନୀଳକଣ୍ଠ ଓ ବଟେଶ୍ୱର ଆଦି ଅଷ୍ଟଶମ୍ଭୁ ଯେପରି ପାବନ କରି ରଖିଛନ୍ତି ଠିକ୍ ସେହିପରି ମଂଗଳା, ବିମଳା, ରୁଦ୍ରାଣୀ, ଅର୍ଦ୍ଧାଶନୀ, ଅଲାମଚଣ୍ଡୀ, କାଳରାତ୍ରୀ, ମରୀଚିକା, ଚାମୁଣ୍ଡା ଆଦି ଅଷ୍ଟଶକ୍ତି ଏହି କ୍ଷେତ୍ରକୁ ସୁରକ୍ଷା ପ୍ରଦାନ କରିଥାନ୍ତି । ଏହି ସମସ୍ତ ଦେବଦେବୀଙ୍କ ନାମ ଜପକଲେ ଅଶ୍ୱମେଧ ଯଜ୍ଞର ଫଳପ୍ରାପ୍ତି ହୋଇଥାଏ । ଏହି କ୍ଷେତ୍ରରେ ମହାରାଜ ଇନ୍ଦ୍ରଦ୍ୟୁମ୍ନ ସହସ୍ର ଅଶ୍ୱମେଧ ଯଜ୍ଞ କରାଇଥିଲେ । ଯେଉଁ ଯଜ୍ଞରେ ଯଜ୍ଞଭାଗ ଗ୍ରହଣ କରୁଥିବା ଦେବତାମାନେ ମଧ୍ୟ ଆସି ନରରୂପ ଧାରଣ କରି ସେହି ଯଜ୍ଞରେ ଅଂଶ ଗ୍ରହଣ କରିଥିଲେ । 'ସ୍କନ୍ଦପୁରାଣ'ର 'ପୁରୁଷୋତ୍ତମ ମାହାତ୍ମ୍ୟ'ର ସପ୍ତଦଶ ଅଧ୍ୟାୟରେ ଏହାର ବିସ୍ତୃତ ବର୍ଣ୍ଣନା ରହିଛି । ଏହାଦ୍ୱାରା ତ୍ରୈଲୋକ୍ୟର ପ୍ରୀତି ଉତ୍ପାଦିତ ହୋଇଥିଲା । ଏହି କ୍ଷେତ୍ରରେ ବାମନ, କୃଷ୍ଣ, ସୂର୍ଯ୍ୟ, ରାଧା, ଦିକପାଳ, ଗରୁଡ଼, ଦୁର୍ଗା, ଭୈରବ, ଗଣେଶ, ଋଷି (ଭୃଗୁ, ଅତ୍ରି, ଅଙ୍ଗିରା, ମାର୍କଣ୍ଡ) ଆଦିଙ୍କର ମଧ୍ୟ ସ୍ୱତନ୍ତ୍ର ଉତ୍ସବରେ ଉପାସନା କରାଯାଇଥାଏ । ସବୁଠାରୁ ବଡ଼କଥା ହେଲା ଏହି କ୍ଷେତ୍ରତୀର୍ଥ ରାଜ ମହୋଦଧିର ତଟ ଦେଶରେ ଅବସ୍ଥିତ । ପୃଥିବୀରେ ପରିବ୍ୟାପ୍ତ ସମସ୍ତ ସମୁଦ୍ର, ମହାସାଗର ବା ସାଗର ଭାବରେ ଚିହ୍ନିତ ହେଲାବେଳେ ଦକ୍ଷିଣ ସମୁଦ୍ର କେବଳ ତୀର୍ଥରାଜ, ସରିତା ପତି ଓ ମହୋଦଧି ଆଖ୍ୟା ଧାରଣ କରିଛି । ଏହା ଏକାଧାରାରେ ଲକ୍ଷ୍ମୀଙ୍କ ପିତ୍ରାଳୟ, ଦାରୁବ୍ରହ୍ମଙ୍କର ପ୍ରକଟ ସ୍ଥଳ ତେଣୁ ଏହା ଉଭୟଙ୍କର ପିତ୍ରାଳୟ । ଏପରିକି ଏହା ଏହି କ୍ଷେତ୍ରର ଜନ୍ମସ୍ଥଳ । ଏପରିକି ଏହି ସମୁଦ୍ରକୁ ସ୍ୱୟଂ ଭଗବାନଙ୍କର ତନୁ ରୂପରେ ମଧ୍ୟ ପରି କଳ୍ପନା କରାଯାଇଛ ।

ଏପରିକି ପ୍ରଳୟକାଳରେ ଦେବତାମାନେ ଏହିଠାରେ ଆସି ନିଜ ଶରୀର ବିସର୍ଜନ କରିଥାନ୍ତି । ସାରଳାଦାସଙ୍କ ଉଲ୍ଲେଖ –

''ମଉଦଧିରୁ ଯାମନିକତୀର୍ଥ ପରିଯନ୍ତେ ଯେତେକ ବାଲି
ସମସ୍ତ ଦେବତାର ଅସ୍ଥିଯେ ମୁଁ ପ୍ରତ୍ୟକ୍ଷ ଦେଖିଲି ।''
(ମହାଭାରତ)

ଏହାର କାରଣ ସ୍ୱରୂପ ଏତିକି କୁହାଯାଇପାରେ– ଭୋଗଭୂମି ସ୍ୱର୍ଗ ଲୋକରେ ଦେବତାମାନେ ବିପୁଳ ସ୍ୱର୍ଗସୁଖ ଭୋଗ କଲାପରେ ମର୍ତ୍ତ୍ୟଲୋକକୁ ଆସନ୍ତି ଏବଂ ଏହି କ୍ଷେତ୍ରରେ ତପସ୍ୟା କରି ପୁନଶ୍ଚ ଏହିଠାରେ ଦେହତ୍ୟାଗ କରି ସ୍ୱର୍ଗ ଲୋକକୁ ଗମନ କରନ୍ତି । ଭକ୍ତ ସାଧକ କବି ବଳରାମ ଦାସ ଉଲ୍ଲେଖ କରିଛନ୍ତି –

କୋଟିଏ ତୀର୍ଥ ତହିଁ ରୁଣ୍ଡ । ସ୍ୱର୍ଗକୁ ଫିଟିଅଛି ଦାଣ୍ଡ
ସେ ତୀର୍ଥେ ସ୍ନାହାନ କରନ୍ତେ । ଯମନଦଣ୍ଡେ କଦାଚିତେ
ସ୍ୱର୍ଗ ଦୁଆର ନାମ କହି । ଦେବେ ଅଛନ୍ତି ନାମଦେଇ
ସ୍ୱର୍ଗ ଦ୍ୱାରକୁ ନାହିଁ ଲକ୍ଷ୍ୟ । ବିଷ୍ଣୁର ଅଂଗ ସେ ପ୍ରତ୍ୟକ୍ଷ ।
(ଦାରୁବ୍ରହ୍ମ ଗୀତା)

ଏହି ଭାବରେ ଶ୍ରୀକ୍ଷେତ୍ର, ସମସ୍ତ କ୍ଷେତ୍ରମାନଙ୍କ ମଧ୍ୟରେ ଶ୍ରେଷ୍ଠତୀର୍ଥ ହେବାର ଗୌରବ ଅର୍ଜନ କରିଛି । ଏବଂ କ୍ଷେତ୍ରରାଜ ଭାବରେ ମଧ୍ୟ ପ୍ରସିଦ୍ଧ ହୋଇଛି ।



# ଐତିହ୍ୟର ଜୟଯାତ୍ରା : ରଥଯାତ୍ରା

**ପ୍ରଫୁଲ୍ଲ କୁମାର ଦାସ**

ଏଇ ସେହି ଉତ୍କଳ । ଜଗନ୍ନାଥ ହିଁ ଓଡିଶାର ଇତିହାସ । ରତ୍ନଗର୍ଭା ଓଡିଶାର ସାଂସ୍କୃତିକ, ସାମାଜିକ, ନୈସର୍ଗିକ ଓ ଆଧାତ୍ମିକ ପରମ୍ପରା ଓ ବିଶ୍ୱ ଐତିହ୍ୟକୁ ଶ୍ରୀଜଗନ୍ନାଥ କେବଳ ଆଚ୍ଛନ୍ନ କରି ନାହାନ୍ତି, ଓଡିଶାର ନାଭିକେନ୍ଦ୍ର ଓ ପ୍ରାଣକେନ୍ଦ୍ର ଶ୍ରୀକ୍ଷେତ୍ରରେ ତାଙ୍କର ରଥଯାତ୍ରା ଓଡିଶା ସମେତ ସାରା ଜଗତକୁ ମଧ୍ୟ ଅତି ଅଦ୍ଭୁତ ଭାବରେ ଆକର୍ଷିତ ଓ ଆଚମ୍ଭିତ କରି ଆସିଛି ।



ଶ୍ରୀଜଗନ୍ନାଥଙ୍କର ଏହି ପବିତ୍ର ରଥଯାତ୍ରା, ଘୋଷଯାତ୍ରା ଭାବରେ ସମଗ୍ର ସଚରାଚର ବିଶ୍ୱକୁ ପରିବ୍ୟାପ୍ତ । କିନ୍ତୁ, ଶ୍ରୀକ୍ଷେତ୍ରର ରଥଯାତ୍ରାର ଯେଉଁ ସୁକୋମଳ ବ୍ୟାକୁଳତା ଦେଖାଯାଏ ତାହା ମରମର୍ତ୍ତ୍ୟରେ ବିରଳ । ଓଡିଶା ଜଗନ୍ନାଥର ଦେଶ । ଶ୍ରୀଜଗନ୍ନାଥ ଓଡିଶା ଜାତିର ପ୍ରାଣସ୍ଫୂର୍ତି ପରିଚୟ । ସର୍ବ ଧର୍ମର ସର୍ବକର୍ମର ମହାମିଳନ ପୀଠ ଜଗନ୍ନାଥ ଧାମ । ଓଡିଆ ପ୍ରାଣର ପ୍ରିୟ ଜୀବନ ଜଗନ୍ନାଥ । ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ଏ ମାଟି, ପାଣି, ପବନ, ଆକାଶ, ବତାସ ସଦା ସର୍ବଦା ଚଳଚଂଚଳ । ପୃଥିବୀର ଶିରୀ ଏଇ ପୁରୀ । ଏହାର ନୈସର୍ଗିକ ଶୋଭା ସୌନ୍ଦର୍ଯ୍ୟରେ ପ୍ରକୃତି ଆତ୍ମହରା ହୁଏ । ସ୍ୱର୍ଗର ଦେବତା ବି ଯୁଗେଯୁଗେ ପ୍ରଣତି ଜଣାଏ । ଏଠାରେ ଜାତି ନାହିଁ ମୁକ୍ତି ମିଳେ । ସର୍ବଧର୍ମ ସମ୍ପ୍ରଦାୟର ସୁମଧୁର ଲୁଚକାଳିରେ ମାନବ ଧର୍ମ ଲହଡି ଭାଙ୍ଗେ । ରଥଯାତ୍ରାର ଜନ ସମାବେଶ ଜନସମୁଦ୍ର ସଦୃଶ ଦୃଶ୍ୟମାନ ହୁଏ । ରଥଯାତ୍ରାର ଅପୂର୍ବ ଦୃଶ୍ୟରେ ରତ୍ନାକରର ରତ୍ନସିଂହାସନ ଦୋହଲିଯାଏ । ମହାକାଶର ମଣିମୟ ରତ୍ନବେଦୀ ଚହଲି ଉଠେ । ବଡ ଠାକୁର, ବଡ ଦେଉଳ, ବଡ ପଣ୍ଡା, ବଡ ଧଣ୍ଡା, ବଡ ନେତ, ବଡ ଭୋଗ ଓ ବଡ ଥାନା, ବଡ ମନରେ ଗରିବ ଓଡିଶା ନୈସର୍ଗିକ ଐଶ୍ୱର୍ଯ୍ୟରେ ଧନୀ ପାଲଟି ଯାଏ । ଡୋରି ନ ଲାଗିଲେ ଜଗନ୍ନାଥ ଦର୍ଶନ ହୁଏ ନାହିଁ । କାରଣ ଜଗନ୍ନାଥ ଦର୍ଶନ ଅନନ୍ୟ ଓ ଅଦ୍ଭୁତ ।

ଓଡିଶାର ସଂସ୍କୃତି ଜଗନ୍ନାଥ ସଂସ୍କୃତି । ଯେଉଁଠି ନୈତିକ ମୂଲ୍ୟବୋଧ ଉପରେ ଧର୍ମାନ୍ତର ଗ୍ରହଣ କରିବାରେ କୌଣସି ଔଦ୍ଧତ୍ୟର ଚିହ୍ନବର୍ଣ୍ଣ ନଥାଏ । ଯେଉଁଠି ଓଡିଶାର ଗଜପତି ରାଜ୍ୟ ରାଜ ସିଂହାସନ ମୋହ ତ୍ୟାଗ କରି ଶ୍ରୀଜଗନ୍ନାଥଙ୍କ ଶ୍ରୀଚରଣ ତଳେ ସମର୍ପଣ କରି ରଥ ଯାତ୍ରାରେ ବଡଦାଣ୍ଡରେ ଚଣ୍ଡାଳ ବେଶରେ ଝାଡୁଦାର ହୋଇ ଛେରା ପହଁରା କରିଥାନ୍ତି । ଯେଉଁଠି ଶ୍ରୀଜଗନ୍ନାଥ ଶ୍ରୀବଳଭଦ୍ର ଓ ସୁଭଦ୍ରା ଜନସମ୍ପର୍କ ପ୍ରତିଷ୍ଠା କରିବା ପାଇଁ ବଡ ଦେଉଳ ପରିତ୍ୟାଗ କରି ସାରା ବିଶ୍ୱର ହାରି ଗୁହାରି ଶୁଣିଥାନ୍ତି ।





ରଥଯାତ୍ରା ସମୟରେ ଜଗନ୍ନାଥ ଦର୍ଶନ କଲେ ପୁନଃଜନ୍ମ ନଥାଏ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ତାଙ୍କର ପୂଜା ହୁଏ । ପତିତ ଉଦ୍ଧାର ଏହି ଯାତ୍ରାର ଉଦ୍ଦେଶ୍ୟ । ଓଡିଶାର ହୀରା, ମୋତି ସଂସ୍କୃତି ଜଗନ୍ନାଥ ସଂସ୍କୃତି ଓ ହିରଣ୍ମୟ ଐତିହ୍ୟ ଏବଂ କାଳଜୟୀ ପରମ୍ପରା ଓ ଧର୍ମର ବିଜୟ ଯାତ୍ରା ରଥର ବୈଶିଷ୍ଟ୍ୟ । ପୁରାଣ ପ୍ରସିଦ୍ଧ ଦେବତା ଭାବରେ ଏହି ତିନି ଠାକୁର ବିଶ୍ୱ ପ୍ରେମରେ ପାଗଳ । ଶବର ପୂଜିତ ବଡ ଠାକୁର ବିଶ୍ୱର ମଉଡ ମଣି । ଯାହାର ସ୍ଥିତି, ଭିତ୍ତି ଓ ଭାରତୀ ସାର୍ବଜନୀନ ଏବଂ ବିଶ୍ୱ ମୈତ୍ରୀର କଥା କହେ । ଶ୍ରୀଜଗନ୍ନାଥ କେବଳ କାଠର ଦେବତା ନୁହଁନ୍ତି । ଓଡିଶା ଇତିହାସରେ ସେ ଏକ ବୈଚିତ୍ର୍ୟ । ମାଣିକର ସାମାନ୍ୟ ଦଧିରେ ତାଙ୍କୁ ବିଶ୍ୱ ତୃଷ୍ଣା ନିବାରଣ କରିବାକୁ ପଡିଛି । କଥା କାହାଣୀରେ, କିମ୍ବଦନ୍ତୀ ଓ ଇତିହାସରେ ସ୍ମୃତି ଓ ପରମ୍ପରାରେ ଶ୍ରୀଜଗନ୍ନାଥ ଓଡିଆ ଜାତିର ପରମ ଆତ୍ମୀୟ । ବିଦେଶରେ ଓଡିଶାର ପରିଚୟ ଏହି ଜଗନ୍ନାଥ । ଏଠାରେ ମନୁଷ୍ୟ ଦେବତା ହୋଇଛି ପୁଣି ଦେବତା ମନୁଷ୍ୟ ହୋଇଛି । ଜଗନ୍ନାଥଙ୍କୁ କେନ୍ଦ୍ରକରି ଉତ୍କଳର ଯେଉଁ ସମାଜର, ଶାସନର ବିକାଶ ହୋଇଛି ବିଶ୍ୱ ସଭ୍ୟତାରେ ତାହା ଅଦିତୀୟ । ଜଗନ୍ନାଥ ପୁରୁଷୋତ୍ତମ ଓ ପତିତପାବନ । ତାଙ୍କ ଦୃଷ୍ଟିରେ ଆଚଣ୍ଡାଳ ବ୍ରାହ୍ମଣ ସମାନ । ସେ କେବଳ ଉତ୍କଳର ନୁହଁନ୍ତି ମାନବ ସମାଜ ସଭ୍ୟତାର ଏକ ଦୁର୍ଲ୍ଲଭ ସମ୍ପଦ । ରଥ ଯାତ୍ରା ଏହି ନବଦିନ ଜନ–ସମ୍ପର୍କ ଯାତ୍ରା ଅତ୍ୟନ୍ତ ହୃଦୟ ସ୍ପର୍ଶୀ । କବିଗୁରୁ ରବିନ୍ଦ୍ରଙ୍କ ଭାଷାରେ ସେ ଜୀବନ୍ତ ଦେବତା । ରଥ, ପଥ ଏଠି ଏକାକାର । ସେ ଏକ ବିସ୍ମୟ ଓ ରହସ୍ୟମୟ ବିଗ୍ରହ । ସାଗରରେ ଯେପରି କ୍ଷୟବୃଦ୍ଧି ନ ଥାଏ , ଆକାଶରେ ଯେପରି ଆଦି ଅନ୍ତ ନଥାଏ, ବାୟୁରେ ଯେପରି ଦିଗ ବିଦିଗ ନ ଥାଏ, ଠିକ୍ ସେହିପରି ଜଗନ୍ନାଥ କଥାମୃତର ଆରମ୍ଭ ବା ଅନ୍ତ ମଧ୍ୟ ନାହିଁ । ବିଶ୍ୱାସ ବିସ୍ମୟର ସୁମଧୁର ମିଳନ ବିନ୍ଦୁ । ତତ୍ତ୍ୱ ରହସ୍ୟର ସିନ୍ଧୁ, ଅଲୌକିକ ଠାକୁରଙ୍କ ଲୌକିକ ଲୀଳା ଦେଖିବାକୁ ଗଗନ, ପବନ ଆତୁର ।

ଓଡିଶାରେ ଜଗନ୍ନାଥଙ୍କୁ କେନ୍ଦ୍ରକରି ବାର ମାସରେ ତେର ପର୍ବ ପାଳିତ ହୁଏ । ତନ୍ମଧ୍ୟରୁ ଶ୍ରୀଗୁଣ୍ଡିଚା ଯାତ୍ରା ବା ଘୋଷ ଯାତ୍ରା ବା ରଥ ଯାତ୍ରା ବିଶ୍ୱ ପ୍ରସିଦ୍ଧ । ଶତାବ୍ଦୀ ଶତାବ୍ଦୀ ଧରି ଏହି ଯାତ୍ରା ଐତିହ୍ୟର ଜୟଯାତ୍ରା ଭାବରେ ପରିଗଣିତ ହୋଇଛି । ଜଗନ୍ନାଥ ସଂସ୍କୃତି ଗଙ୍ଗ ରାଜବଂଶର ଶ୍ରେଷ୍ଠ ଅବଦାନ । ନନ୍ଦିଘୋଷରେ ଜଗନ୍ନାଥ, ତାଳଧ୍ୱଜରେ ବଳଭଦ୍ର ଓ ଦେବଦଳନ ରଥରେ ସୁଭଦ୍ରା ବିରାଜମାନ କରି ବିଶ୍ୱଜନମାନସକୁ ମାନବ ପ୍ରେମରେ ଉଦ୍‌ବୋଧ କରିଚାଲିଛନ୍ତି । ନୀଳଚକ୍ର, ସୁଦର୍ଶନ ଓ ଅରୁଣ ଖମ୍ବର ମହିମା ବେଶ୍ ଚର୍ଚ୍ଚିତ । ଶ୍ରୀଜଗନ୍ନାଥ କେବଳ ଓଡିଶାର ବଡ ଠାକୁର ନୁହଁନ୍ତି । ସେ ଓଡିଶାର ଇଷ୍ଟଦେବ ଭାବରେ ପ୍ରତିଷ୍ଠିତ । ସାରଳାଙ୍କଠାରୁ ପଂଚସଖା ଯୁଗ ପର୍ଯ୍ୟନ୍ତ ସାହିତ୍ୟିକମାନେ ଶ୍ରୀଜଗନ୍ନାଥଙ୍କ ଗୁଣଗାନରେ ଅସ୍ଥିର ଓ ଅଧିର ହୋଇଛନ୍ତି । ଆଜି ଗାଁ ଗାଁରେ ରଥ ଯାତ୍ରା, ଦେଶ ଦେଶରେ ରଥଯାତ୍ରା । ଦାରୁବ୍ରହ୍ମ ଜଗନ୍ନାଥ ପୂର୍ଣ୍ଣବ୍ରହ୍ମ । ସେ କଳାର ଓ କାଳର । ଦାସିଆ ନଡିଆ ଉପଖ୍ୟାନ, ସାଲବେଗ ଭଜନ ଓ କବି ବଳରାମ ଦାସଙ୍କ ବାଲି ରଥ ଉପାଖ୍ୟାନ ଭିନ୍ନ ଭିନ୍ନ କୀର୍ତ୍ତି କୋଣାର୍କ । ତାଙ୍କୁ ନେଇ ଇତିହାସ ଗଢ଼ାଯାଏନା, ସେ ନିଜେ ଏକ ସ୍ୱତନ୍ତ୍ର ଇତିହାସ । ଯେଉଁ ଐତିହ୍ୟର ଜୟଯାତ୍ରା ଯୁଗ ଯୁଗ ଧରି ଜନ ସମୁଦ୍ରରେ ଚିତ୍ତ ଚୋରି କରି ଚାଲିଛି ଯାହା ବିଶ୍ୱ ଐତିହ୍ୟକୁ ଗମ୍ଭୀର ଓ ଗଭୀର ଭାବରେ ନିରୀକ୍ଷଣ କରିଚାଲିଛି ।

ଜାତୀୟ ଓ ଅନ୍ତର୍ଜାତୀୟ ଐକ୍ୟ ସଂହତି ରକ୍ଷା କ୍ଷେତ୍ରରେ ଏହାର ମହାନ ମହତ୍ତ୍ୱ ପରିଲକ୍ଷିତ ହୋଇଛି । ଜଗତର ଆନନ୍ଦ ପାଇଁ ସେ ଆନନ୍ଦ ବଜାର ଖୋଲିଛନ୍ତି । ଭ୍ରାତୃ ପ୍ରେମରେ ସେ ଲକ୍ଷ୍ମୀଙ୍କୁ ପରିତ୍ୟାଗ କରିଛନ୍ତି ଓ ଲକ୍ଷ୍ମୀଙ୍କ ଶ୍ରୀବୃଦ୍ଧି ପାଇଁ ବଡ ଭାଇଙ୍କ ସାଥିରେ ଭିକ୍ଷା ଝୁଲି ଧରି ଗାଁ ଗାଁ ଘର ଘର ବୁଲିଛନ୍ତି । ଏଇତ ମାନବ ସଂସ୍କୃତି । ଏଇତ ବିଶ୍ୱ ପ୍ରେମ । ଯାହା ନିଆରା ଓ ବିରଳ । ଜଗନ୍ନାଥଙ୍କୁ ଯିଏ ଯାହା ମାଗିଛି ସିଏ ତାହା ପାଇଛି । ଶ୍ରୀଜଗନ୍ନାଥ କିନ୍ତୁ, ବିଶ୍ୱର ସୁରକ୍ଷା ବଳୟ ସାଜିଛନ୍ତି । ରଥ ଯାତ୍ରା ଯେଉଁଠି ଜ୍ୟୋସ୍ନାର ଜୁଆରରେ ହସିଉଠେ ମାନବ ଆକାଶ, ଧର୍ମ, ଅର୍ଥ, କାମ, ମୋକ୍ଷ ଯାହାଙ୍କ ପ୍ରକାଶ । ବର୍ଣ୍ଣାଢ଼୍ୟ ଭକ୍ତିର ରସୋତୀର୍ଣ୍ଣ ଅଧ୍ୟାୟ ହେଉଛି ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ।





ଭାବ ବିନୋଦିଆ ନୀଳାଚଳିଆ ଶ୍ରୀଜଗନ୍ନାଥ ଭାବର ଠାକୁର । ସେ ଅଭାବକୁ ଦୂର । ଯାହା ବିରାଟ ଓ ଅନନ୍ତ । ଯାହାର ଶେଷ ନାହିଁ, ଯେଉଁଥିରେ ସବୁକିଛି ଶେଷ । ନୀଳ ମାଧବ ସଂସ୍କୃତିଠାରୁ ଜଗନ୍ନାଥ ସଂସ୍କୃତି ଅଧିକ ପ୍ରଭାବଶାଳୀ । ଯିଏ କାଳର ପାହାଡ ସିଏ କଳା ପାହାଡକୁ ଡରିଛି । ଯାହାଙ୍କ ଚକାଆଖି ସବୁ ଦେଖୁଛି । ସେ ଅବୁଝା ଠାକୁରଙ୍କୁ କେବଳ ପ୍ରେମ ଭକ୍ତିରେ ବୁଝିହୁଏ ।

ଶ୍ରଦ୍ଧାରେ ଜାଣି ହୁଏ । କଳାରେ ଜଗନ୍ନାଥ କଳ୍ପନାରେ ଜଗନ୍ନାଥ, ଭାବନାରେ ଜଗନ୍ନାଥ, ଓଡିଆ ଜାତିର ପ୍ରାଣ ବାୟୁ । ବଡ ରସିକ କାଳିଆ ଠାକୁର । କାଳିଆ ସାଆନ୍ତ ଆମର । ରଥ ଏକ ଚଳନ୍ତି ଦେଉଳ ପରି ମନେହୁଏ । ସତେକି ସମଗ୍ର ବିଶ୍ୱ ଆଜି ବଡଦାଣ୍ଡରେ । ଜଗନ୍ନାଥ ସ୍ୱାମୀ ନୟନ ପଥ ଗାମୀ ସମସ୍ତଙ୍କ ମୁହଁରେ । ବ୍ରାହ୍ମଣ୍ୟ ଓ ଆରଣ୍ୟ ସଂସ୍କୃତିର ମହାମିଳନ ଯାତ୍ରା ହେଉଛି ଐତିହ୍ୟର ଜୟ ଯାତ୍ରା ରଥ ଯାତ୍ରା । ଏହି ଭବ୍ୟ ପରମ୍ପରା ଅପୂର୍ବ ଚିନ୍ତା ଚେତନାରେ ରସାଣିତ କରି ଗଣ ମହୋତ୍ସବ ଭାବରେ ଅନନ୍ୟ ଅନୁପମ ହୋଇଛି । ମହାନ ଆଧ୍ୟାତ୍ମିକ ସଂସ୍କୃତିର ଭାସ୍ୱର ଦୀପ୍ତିରେ ସମଗ୍ର ବିଶ୍ୱକୁ ଆଲୋକିତ କରିଛି । ରଥ ଯାତ୍ରାର ଦର୍ଶନ ବିଶ୍ୱ କଲ୍ୟାଣ । କଥାରେ, ଗାଥାରେ ରଥ ଯାତ୍ରାର ଜନସମ୍ପର୍କ ଅଭିଯାନ ଓଡିଶାର ଐତିହ୍ୟ ପରମ୍ପରାକୁ କୋଟି ଔଜ୍ଜ୍ୱଲ୍ୟ ମାଧୁର୍ଯ୍ୟରେ ବିମଣ୍ଡିତ କରିଛି । ଭକ୍ତ କବି ଜୟଦେବଙ୍କ ଗୀତଗୋବିନ୍ଦରେ ଶ୍ରୀଜଗନ୍ନାଥଙ୍କ ମନୋରମ ଆଲେଖ୍ୟ ମଣିଷର ମନ ବନକୁ ରୋମାଂଚିତ କରେ । ବିଶ୍ୱର ବିଭିନ୍ନ ପ୍ରାନ୍ତରୁ ଦର୍ଶକମାନଙ୍କର ବିପୁଳ ସମାବେଶ । ରଥଯାତ୍ରା ଲୋକପ୍ରିୟତାର ସର୍ବଶ୍ରେଷ୍ଠ ଉଦାହରଣ । ଉତ୍କଳୀୟମାନଙ୍କ ସାମାଜିକ ଓ ସାଂସ୍କୃତିକ ଜୀବନର ପ୍ରାଣକେନ୍ଦ୍ର ଐତିହ୍ୟର ଜୟଯାତ୍ରା ରଥଯାତ୍ରାକୁ ଓଡିଶା ସରକାର ଏବେ ରାଷ୍ଟ୍ରୀୟ ଉତ୍ସବ ରୂପେ ପାଳନ କରୁଛନ୍ତି । ଜଗନ୍ନାଥ ଓଡିଶାର ନେତା ଓ ବିଶ୍ୱର ଦେବତା ।

ଏହାର ସମାନତା, ଉଦାରତା, ବିଶ୍ୱପ୍ରାଣତା ସମଗ୍ର ବିଶ୍ୱକୁ ଆଚ୍ଛାଦିତ ଓ ଆହ୍ଲାଦିତ କରିଛି । ଶ୍ରୀଜଗନ୍ନାଥ ଆଜି ସର୍ବତ୍ର ବିଦ୍ୟମାନ ଏବଂ ସର୍ବ ଶକ୍ତିମାନ । ଚତୁର୍ଦ୍ଦିଗରେ ଭକ୍ତିଭାବର ମହାସ୍ରୋତ ପ୍ରବାହିତ । ସୁଦାମର ଖୁଦ ଭଜା ତାଙ୍କ ପାଇଁ ଯେତିକି ଲୋଭନୀୟ ଭକ୍ତ ଦାସିଆର ନଡିଆ ସେତିକି ଆକର୍ଷଣୀୟ । ରତ୍ନସିଂହାସନ ଓ ରଥଯାତ୍ରା ଛାଡି ଭାବଗ୍ରାହୀ ଜଗନ୍ନାଥ ଯୋଜନ ଯୋଜନ ଦୂର ବାଲିଗାଁକୁ ଛୁଟି ଆସିଛନ୍ତି । ଭକ୍ତର ମନ ଜାଣି ଆରତ ନାଶନ ବାନା ଉଡାଇଛନ୍ତି । ଉତ୍କଳର ମାନ ରକ୍ଷା ଲାଗି କାଂଚି ଅଭିଯାନ କରିଛନ୍ତି । ଏହି ହେଉଛି ସେହି କରୁଣାମୟଙ୍କର ଭକ୍ତ ବତ୍ସଳ ପଣିଆ । ଜାତି, ଧର୍ମ, ବର୍ଣ୍ଣ, ନିର୍ବିଶେଷରେ ତାଙ୍କର କରୁଣା ସ୍ରୋତ ପ୍ରାପ୍ତି ପାଇଁ ଚାତକ ପାଲଟିଛି ମାନବ ଜାତି । ଉର୍ଜସ୍ୱଳ ହୋଇଛି ଆଦର୍ଶ ପରମ୍ପରା ଓ ତ୍ୟାଗ ଭିତ୍ତିକ ହୋଇଛି ଐତିହ୍ୟର ଜୟଯାତ୍ରା ରଥ ଯାତ୍ରା । ନବ ନିର୍ମିତ ନବୀନ ସୁନ୍ଦର ନୀଳ ଇନ୍ଦିବର ଘନ ବିଗ୍ରହ ରୂପରେ ଶ୍ରୀଜଗନ୍ନାଥ ଭକ୍ତଙ୍କ ଗହଣରେ ବିକଶିତ ହୋଇ ରତ୍ନସିଂହାସନରୁ ଉହ୍ଲାଇ ଆସନ୍ତି ବଡଦାଣ୍ଡ ନନ୍ଦିଘୋଷକୁ । ଗୁଣ୍ଡିଚା ନାମରେ ଯାତ୍ରା ବଢ଼ାଇବା ପାଇଁ ।

ସଂପାଦକ, ଗୋପବନ୍ଧୁ ସାହିତ୍ୟ ସଂସଦ
ଚାନ୍ଦବାଲି, ଭଦ୍ରକ



# ରାଜା ଶ୍ରୀପୁରୁଷୋତ୍ତମଃ

ପ୍ରଭାତ କୁମାର ନନ୍ଦ

ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ସମସ୍ତ ଦେବାଦେବୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ବୋଲି ବହୁ ଧର୍ମଗ୍ରନ୍ଥ ପ୍ରମାଣ କରିଛନ୍ତି । ସେ ଦେବଶ୍ରେଷ୍ଠ ଓ ପୁରୁଷଶ୍ରେଷ୍ଠ ଭାବେ ନିଜର ମହିମାକୁ ଅଧିକ ଗୌରବାନ୍ୱିତ କରିଛନ୍ତି । କଳିଯୁଗରେ ସେ ମାନବଭଳି ଲୀଳା କରୁଛନ୍ତି । ସ୍କନ୍ଦ ପୁରାଣ ପ୍ରମାଣ କରିଛନ୍ତି ଯେ, ପୁରୁଷୋତ୍ତମ ରୂପେ ସେ କ୍ଷେତ୍ରାଧିପତି ଓ ସୁମହତ୍ କ୍ଷେତ୍ର । ଶ୍ରୀକ୍ଷେତ୍ରରେ, ଲକ୍ଷ୍ମୀକାନ୍ତ ନାରାୟଣ ମାନବଲୀଳାର ପରିପ୍ରକାଶ ନିମିତ୍ତ ଦାରୁମୟ କଳେବର ଧାରଣ କରି ବିରାଜମାନ କରିଅଛନ୍ତି ।



ଭାରତର ଚତୁର୍ଧାମ ମଧ୍ୟରୁ କେବଳ ନୀଳାଚଳ ଧାମରେ ମହାପ୍ରଭୁ ମାନବ ସମାଜକୁ ସର୍ବଶ୍ରେଷ୍ଠ ପୁରୁଷର ଗୁଣାବଳୀ ଓ କର୍ତ୍ତବ୍ୟ ବିଷୟରେ 'ଉଦାହରଣ ପ୍ରଦର୍ଶନ ପୂର୍ବକ, ସମସ୍ତ ଜନଙ୍କଠାରୁ ସେହିଭଳି ଉନ୍ନତ ଓ ଦିବ୍ୟ ଆଚରଣ ଆଶା କରୁଛନ୍ତି । ଜଗତଜନଙ୍କ ଉଦ୍ଧାର ନିମିତ୍ତ ସେ ପୁରୁଷୋତ୍ତମ ଓ ପତିତପାବନ । ସେ ଦେଶର ରାଜାଙ୍କ ପରି ଶ୍ରେଷ୍ଠ । ସେ ସ୍ୱୟଂ ଶ୍ରେଷ୍ଠ ଓ ତାଙ୍କର ନିବାସସ୍ଥଳ ଶ୍ରୀକ୍ଷେତ୍ର ମଧ୍ୟ ଶ୍ରେଷ୍ଠକ୍ଷେତ୍ର ବା କ୍ଷେତ୍ରରାଜ ରୂପେ ଗୃହୀତ ।

ଧର୍ମଗ୍ରନ୍ଥ କପିଳ ସଂହିତା ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଶ୍ରେଷ୍ଠଭାବ ବିଷୟରେ ବିଶଦଭାବେ ବର୍ଣ୍ଣନା କରିଛନ୍ତି ।

'ସର୍ବେଷାମପି କ୍ଷେତ୍ରାଣାଂ ରାଜା ଶ୍ରୀପୁରୁଷୋତ୍ତମଃ
ସର୍ବେଷାମପି ଦେବାନାଂ ରାଜା ଶ୍ରୀ ପୁରୁଷୋତ୍ତମଃ ।'

ଉପରୋକ୍ତ ଉଲ୍ଲେଖ ଅନୁସାରେ ସବୁ କ୍ଷେତ୍ର ମଧ୍ୟରେ ପୁରୁଷୋତ୍ତମ କ୍ଷେତ୍ର ଯେପରି ଶ୍ରେଷ୍ଠ, ସମସ୍ତ ଦେବତାମାନଙ୍କ ମଧ୍ୟରେ ମଧ୍ୟ ସେ ତଦନୁସାରେ ଶ୍ରେଷ୍ଠ । ସମସ୍ତ ଶ୍ରେଷ୍ଠଭାବର ସମାହାର ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ଛତ୍ରେଛତ୍ରେ ଅନୁଭୂତ । ସେ କ୍ଷେତ୍ରରେ ସବୁ ବଡ଼ : ବଡ଼ ଦେଉଳ, ବଡ଼ ଦିଅଁ, ବଡ଼ ପଣ୍ଡା, ବଡ଼ ଦାଣ୍ଡ, ବଡ଼ ଠାକୁର । ତେଣୁ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ସବୁଠାରୁ ବଡ଼ ବା ଶ୍ରେଷ୍ଠ ଭାବରେ ରାଜା ରୂପେ ଗ୍ରହଣ କରାଇଛି । ତାଙ୍କୁ ଦାରୁ ବ୍ରହ୍ମ ଭାବରେ ଆରାଧନା କରାଯାଏ । ତାଙ୍କର ରୂପ ମାଧୁରୀ ଯେପରି ଅତୁଳନୀୟ, ତାଙ୍କର ତତ୍ତ୍ୱ ମାଧୁରୀ ସେହିଭଳି ସମସ୍ତ ବେଦର ସାରା ମହାପୁରୁଷ ବିଦ୍ୟାରେ ବର୍ଣ୍ଣିତ ହୋଇଛି ।

'ନୀଳାଦ୍ରୌ ଶଙ୍ଖମଧ୍ୟେ ଶତଦଳ କମଳେ ରତ୍ନ ସିଂହାସନସ୍ଥଂ ସର୍ବାଳଙ୍କାର ଯୁକ୍ତଂ ନବଘନ ରୁଚିରଂ ସଂଯୁତଂ ଜାଗ୍ରଯେନ





ଭଦ୍ରାୟା ବାମଭାଗେ ରଥଚରଣଯୁତଂ ବ୍ରହ୍ମରୁଦ୍ରେନ୍ଦ୍ରବନ୍ଦ୍ୟଂ ବେଦାନାଂ ସାରମୀଶଂ ସ୍ୱଜନ ପରିବୃତଂ ବ୍ରହ୍ମଦାରୁ ଭଜେହମ୍'

ଜଣେ ନୀତିବାନ୍ ଓ ନିରପେକ୍ଷ ରାଜା ଭାବରେ ତାଙ୍କର ଅଜସ୍ର ଲୀଳାମାଧୁରୀ ମଧ୍ୟରୁ ସର୍ବଧର୍ମ ଓ ସର୍ବଚେତନାର ସମନ୍ୱୟ ଭାବ ପ୍ରଦର୍ଶନ ଓ ପ୍ରବର୍ତ୍ତନ ତତ୍ତ୍ୱର ନିର୍ଯ୍ୟାସ, ଆଧୁନିକ ଯୁଗୋପଯୋଗୀ ଓ ସର୍ବକାଳୀନ ମୂଲ୍ୟବୋଧ ବହନକାରୀ ।

ଏକବିଂଶ ଶତାବ୍ଦୀରେ ଜନମାନସକୁ ନିୟନ୍ତ୍ରଣ କରିବାରେ ସବୁଠାରୁ ବଡ଼ ପ୍ରତିବନ୍ଧକ ହେଉଛି, ବିଚ୍ଛିନ୍ନତାବାଦ ଓ ମତ ବିଭେଦ । ମାନବ ଏ ଯୁଗରେ ବିଜ୍ଞାନକୁ ଏଭଳି ଭାବରେ ବଳବତ୍ତର କରିଛି ଯେ, ତାହାରି ମାଧ୍ୟମରେ ସେ ଜଗତର ସମସ୍ତ ଭୌତିକ ସୁବିଧାକୁ ହାସଲ କରିପାରିବ । ନିଜର ସର୍ବନିମ୍ନ ଜୀବନ ଧାରଣ ସାଧନ, ସହଜରେ ଉପଲବ୍ଧ ହେବାପରେ ମଣିଷ ମାନସିକ ସ୍ତରରେ ତର୍କବିତର୍କରେ ଅଧିକ ଶକ୍ତି ଓ ସମୟ ବିନିଯୋଗ କରୁଛି । ଚେତନ ସ୍ତରର ଦ୍ୱନ୍ଦ୍ୱ ହିଁ ସମଗ୍ର ମାନବ ସମାଜର ଆଧୁନିକ ଯୁଗୀୟ ସମସ୍ୟା । ଏହି ଆନ୍ତର୍ଜାତିକ ଦ୍ୱନ୍ଦ୍ୱକୁ ସମାଧାନ ନକଲେ, ହୁଏତ ପରମାଣୁ ଶକ୍ତି ସମସ୍ତ ଜଗତକୁ ଧ୍ୱଂସ କରିଦେବ । ଏଣୁ ବିଶ୍ୱ ଭ୍ରାତୃତ୍ୱ ଓ ସମସ୍ତ ଚେତନାର ସମନ୍ୱୟ ନିମିତ୍ତ ବିଶ୍ୱର ସମସ୍ତ ରାଷ୍ଟ୍ରନାୟକମାନେ ଦୃଢ଼ ମତ ପୋଷଣ କରିଛନ୍ତି ।

ବିଶ୍ୱ ଭ୍ରାତୃତ୍ୱ ସଂପର୍କରେ ବହୁ ତର୍ଜମା ହୋଇଥିଲେ ମଧ୍ୟ ତାହାର ସାକାର ରୂପ ନିମିତ୍ତ ଜଗନ୍ନାଥ ସଂସ୍କୃତିର ସର୍ବଧର୍ମ ସମନ୍ୱୟ ଭାବ ସର୍ବାଧିକ ଉପଯୋଗୀ । ଜଗନ୍ନାଥ ମହାପ୍ରଭୁଙ୍କ ସଂସ୍କୃତିର ଇତିହାସକୁ ସର୍ବ ଚେତନାର ସମନ୍ୱୟ ଭାବର କ୍ରମାଗତ ଉଦ୍ରେକ କହିଲେ ଅତ୍ୟୁକ୍ତି ହେବନାହିଁ । ମାନବ ସମାଜ ଇତିହାସରେ ସର୍ବ ପ୍ରାଚୀନ ଶାବର ସଂସ୍କୃତିରୁ ହିଁ ଜଗନ୍ନାଥ ଚେତନାର ସୃଷ୍ଟି । ସରଳ, ସାବଲୀଳ, ପ୍ରାକୃତିକ, ଚିରନ୍ତନ ସତ୍ୟ ଉପରେ ଆଧାରିତ ନୀଳମାଧବ ପୂଜା ପରମ୍ପରା । ପରବର୍ତ୍ତୀ କାଳରେ ଆର୍ଯ୍ୟ ସଂସ୍କୃତିର ବିକାଶ କ୍ରମେ ସୁଦୃଶ୍ୟ ମନ୍ଦିରର ନିର୍ମାଣ କରାଯାଇ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା ଓ ଶ୍ରୀସୁଦର୍ଶନଙ୍କୁ ରତ୍ନସିଂହାସନରେ ପ୍ରତିଷ୍ଠା କରାଗଲା ।

ଆର୍ଯ୍ୟ ସଂସ୍କୃତି ପର୍ଯ୍ୟାୟରେ ଶୈବ, ଶାକ୍ତ ଓ ବୈଷ୍ଣବ ଚେତନା ଭାରତର ବିଭିନ୍ନ କ୍ଷେତ୍ରରେ ପ୍ରସିଦ୍ଧି ଲାଭ କରିଥିଲା । ଏହି ମୁଖ୍ୟ ଚେତନାକୁ ଆଧାର କରି ବହୁ ଉପଚେତନା ସୃଷ୍ଟି ହୋଇଥିଲା । ଏ ସମସ୍ତ ସୃଷ୍ଟିର କାରଣ ପ୍ରତି ଦୃଷ୍ଟି ନିକ୍ଷେପ କଲେ, କେବଳ ବ୍ୟକ୍ତିଗତ ଭାବର ପରିପୁଷ୍ଟି ହିଁ ପ୍ରତିଭାତ ହୁଏ । ମୁଖ୍ୟ ଗୁରୁଙ୍କର ବହୁ ଶିଷ୍ୟ ନିଜର ପ୍ରତିଷ୍ଠା ସୃଷ୍ଟି ନିମିତ୍ତ ମୁଖ୍ୟ ଚେତନାରୁ କିଞ୍ଚିତ୍ ପରିବର୍ତ୍ତନ ଆଣି, ନୂତନ ସଂପ୍ରଦାୟ ଆରମ୍ଭ କରନ୍ତି । ଏହାର ମୂଳରେ ଚେତନାର ଗାମ୍ଭୀର୍ଯ୍ୟ ଅପେକ୍ଷା ବ୍ୟକ୍ତିଗତ ପ୍ରତିଷ୍ଠା ଅଧିକ ସ୍ପଷ୍ଟ ହୋଇଥାଏ ।

ଦଶମ ଶତାବ୍ଦୀର ପରବର୍ତ୍ତୀ ଇତିହାସକୁ ଲକ୍ଷ୍ୟକଲେ ଶ୍ରୀଜଗନ୍ନାଥଙ୍କ ସଂସ୍କୃତିରେ ଆରାଧନା ପଦ୍ଧତିରେ ବହୁ ପରିବର୍ତ୍ତନ କରାଯାଇଛି । ପୂର୍ବରୁ 'ପୁରୁଷ ମଣ୍ଡପ' ଗ୍ରାମରେ ଶ୍ରୀପୁରୁଷୋତ୍ତମ ବିଜେ କରିଥିବା ପ୍ରସଙ୍ଗ ସୋମବଂଶୀ ମହାରାଜା ମହାଭବ ଗୁପ୍ତ ଯନ୍ମେଜୟ ଫଳକରେ ଲେଖାଯାଇଛି । ମଧ୍ୟପ୍ରଦେଶର ମହିୟାରଠାରେ ପ୍ରତିଷ୍ଠିତ ସରସ୍ୱତୀ ମନ୍ଦିର ଗାତ୍ରରେ ନବମ ଶତାବ୍ଦୀରେ ସ୍ଥାପିତ ଶିଳାଲେଖରେ ବର୍ଣ୍ଣନା କରାଯାଇଛି ଯେ, 'ଦାମୋଦର ନାମକ ବାଳକ ମହୋଦଧିରେ ସ୍ନାନ କଲାବେଳେ ଶ୍ରୀପୁରୁଷୋତ୍ତମଙ୍କର ମୁଖ ଦର୍ଶନ କରି ସଲୀଳ ସମାଧି ଲାଭ କରି ସ୍ୱର୍ଗପ୍ରାପ୍ତ ହୋଇଥିଲେ ।' ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ମହୋଦଧିରେ ସ୍ନାନ କଲାବେଳେ କୂଳରେ ଥିବା ମୁକ୍ତ ମଣ୍ଡପରେ ଅଧିଷ୍ଠିତ ଶ୍ରୀପୁରୁଷୋତ୍ତମଙ୍କୁ ଦର୍ଶନ କରିବା ବାଳକ ପକ୍ଷରେ ସମ୍ଭବପର ହୋଇପାରିଥିଲା । ନାଟ୍ୟକାର ମୁରାରୀ 'ଅନର୍ଘ–ରାଘବ' ସଂସ୍କୃତ ନାଟକରେ ଶ୍ରୀପୁରୁଷୋତ୍ତମ ଯାତ୍ରା ବିଷୟରେ ବର୍ଣ୍ଣନା କରିଛନ୍ତି । ଦଶମ ଶତାବ୍ଦୀରେ ଏହି ନାଟକ ରଚନା କରାଯାଇଥିଲା । ପୁରାଣର ପରିଧି ମଧ୍ୟରୁ ମୁକ୍ତ କରାଯାଇ, ପ୍ରମାଣ ସାପେକ୍ଷ ଇତିହାସର ପରିଧି ମଧ୍ୟରେ ଶ୍ରୀଜଗନ୍ନାଥଙ୍କ ସଂସ୍କୃତିର

ପର୍ଯ୍ୟାଲୋଚନା କଲେ, ଜଣାଯାଏ ଯେ ଦଶମ ଶତାବ୍ଦୀ ପୂର୍ବରୁ ଶ୍ରୀପୁରୁଷୋତ୍ତମଙ୍କର କୌଣସି ସ୍ଥାୟୀ ମନ୍ଦିର ନଥିଲା ଓ ଏକ ଖୋଲା ମଣ୍ଡପ ଉପରେ ମହୋଦଧି କୂଳରେ ଶ୍ରୀଜଗନ୍ନାଥ, ଶ୍ରୀପୁରୁଷୋତ୍ତମ ରୂପେ ଆରାଧିତ ହେଉଥିଲେ । ସେତେବେଳେ ତାଙ୍କ ସହିତ ଶ୍ରୀବଳଭଦ୍ର ଓ ଶ୍ରୀ ସୁଭଦ୍ରା ନଥିଲେ । ସେହି ସମୟରେ ଶ୍ରୀପୁରୁଷୋତ୍ତମଙ୍କୁ ନାରାୟଣ ମନ୍ତ୍ରରେ ଆରାଧନା କରାଯାଉଥିଲା । ଚାଲୁକ୍ୟ ବଂଶୀୟ ରାଜା ରାଜରାଜଙ୍କର ୧୦୨୨ ଖ୍ରୀଷ୍ଟାବ୍ଦରେ ଖୋଦିତ ତାମ୍ର ଫଳକରେ ନିମ୍ନମତେ ବର୍ଣ୍ଣନା ହୋଇଛି ।

‘ଶ୍ରୀଧାମଃ ପୁରୁଷୋତ୍ତମସ୍ୟ
ମହେତ୍ୟେ ନାରାୟଣସ୍ୟ ପ୍ରଭୋ ।’

ପରବର୍ତ୍ତୀ ସମୟରେ ଏକାଦଶ ଶତାବ୍ଦୀରେ ସୋମବଂଶୀୟ ରାଜା ଯଯାତିକେଶରୀ ସମୁଦ୍ର ତଟର ଉଚ୍ଚ ସ୍ଥାନରେ ସ୍ୱତନ୍ତ୍ର ମନ୍ଦିର ନିର୍ମାଣ କରି ଚତୁର୍ବାହୁ ବିଶିଷ୍ଟ ଶ୍ରୀପୁରୁଷୋତ୍ତମ ପ୍ରସ୍ତର ବିଗ୍ରହ ପ୍ରତିଷ୍ଠା କରିଥିଲେ । ସୋମବଂଶୀୟ ରାଜାମାନଙ୍କର ସାହାଯ୍ୟ ଲାଭ କରିଥିବା ବ୍ରାହ୍ମଣମାନଙ୍କ ମଧ୍ୟରୁ ଅଧିକ ଶିବଭକ୍ତ ଥିଲେ ଓ ଶଙ୍କରାଚାର୍ଯ୍ୟଙ୍କ ଅଦ୍ୱୈତ ମତବାଦୀ ଥିଲେ । ତେଣୁ ଭୁବନେଶ୍ୱରରେ ଯଯାତିକେଶରୀ ବିଶାଳ ଲିଙ୍ଗରାଜ ମନ୍ଦିର ପ୍ରତିଷ୍ଠା କରି ଶୈବାଚାର୍ଯ୍ୟମାନଙ୍କର ପ୍ରିୟପାତ୍ର ହୋଇଥିଲେ । ତାଙ୍କର ରାଣୀ କୋଳାବତୀ ଭୁବନେଶ୍ୱରଠାରେ ବ୍ରହ୍ମେଶ୍ୱର ମନ୍ଦିର ପ୍ରତିଷ୍ଠା କରି ଶୈବଧର୍ମର ଗରିମାକୁ ଅଧିକ ପ୍ରତିଷ୍ଠିତ କରିଥିଲେ । ତେଣୁ ଏକାଦଶ ଶତାବ୍ଦୀରେ ପୁରୀର ଶ୍ରୀପୁରୁଷୋତ୍ତମ ମନ୍ଦିର ଅପେକ୍ଷା ଭୁବନେଶ୍ୱରର ଶ୍ରୀଲିଙ୍ଗରାଜ ମନ୍ଦିରକୁ ଅଧିକ ଗୁରୁତ୍ୱ ଦିଆଯାଉଥିଲା ।

ପରେ ଧର୍ମୀୟ ବିଚାର ଧାରାରେ ପରିବର୍ତ୍ତନ ଦେଖାଦେଲା । ଯଯାତିକେଶରୀଙ୍କ ପରେ ଶଙ୍କରାଚାର୍ଯ୍ୟଙ୍କ ଅଦ୍ୱୈତ ମତ ବା ମାୟାବାଦ ସ୍ଥଳରେ ବୈଷ୍ଣବ ଧର୍ମାବଲମ୍ବୀ ‘ରାମାନୁଜାଚାର୍ଯ୍ୟ’ଙ୍କ ବିଶିଷ୍ଟାଦ୍ୱୈତ ମତ ପ୍ରସାର ଲାଭ କରିଥିଲା । କାଞ୍ଚିର ଚୋଳବଂଶୀୟ ରାଜା ଓ କଳିଙ୍ଗର ଗଙ୍ଗବଂଶୀୟ ରାଜାମାନେ ମିଳିତ ଭାବରେ ବୈଷ୍ଣବ ଚେତନାର ବିକାଶ କଳ୍ପେ ଶ୍ରୀନାରାୟଣଙ୍କ ମନ୍ଦିରମାନ ନିର୍ମାଣ କରାଇଥିଲେ । ସିଂହାଚଳର ବରାହ–ନରସିଂହ ମନ୍ଦିର ଓ ଶ୍ରୀ କୂର୍ମପାଟକରେ ଶ୍ରୀକୂର୍ମ ମନ୍ଦିର ଏବଂ ପୁରୀର ଶ୍ରୀଜଗନ୍ନାଥ ମନ୍ଦିର ତନ୍ମଧ୍ୟରୁ ପ୍ରଧାନ । କଳିଙ୍ଗର ମହାରାଜା ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱ କାଳରେ ଶାସ୍ତ୍ରଜ୍ଞ ‘ରାମାନୁଜ’ ଦକ୍ଷିଣ ଭାରତରୁ ଆସି କଳିଙ୍ଗରେ ବାସ କଲେ । ସେ ନୀଳାଚଳ ଧାମରେ ବୈଷ୍ଣବ ଧର୍ମରେ ପ୍ରସାର ନିମିତ୍ତ ଚେଷ୍ଟାକଲେ । ସେହି ସମୟରେ କଳିଙ୍ଗର ଧର୍ମଜଗତରେ ସମନ୍ୱୟବାଦର ପ୍ରାରମ୍ଭ ହେଲା କହିଲେ ଅତ୍ୟୁକ୍ତି ହେବନାହିଁ । ଚୋଡ଼ଗଙ୍ଗ ଦେବ ତାଙ୍କର ପୂର୍ବପୁରୁଷଙ୍କର ଶୈବଧର୍ମ ଗ୍ରହଣ କରି ‘ପରମ ମାହେଶ୍ୱର’ ଉପାଧି ବ୍ୟବହାର କରୁଥିଲେ ସୁଦ୍ଧା, ବୈଷ୍ଣବ ଗୁରୁ ରାମାନୁଜଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ‘ପରମ ବୈଷ୍ଣବ’ ଓ ‘ପରମ ବ୍ରହ୍ମଣ୍ୟ’ ଉପାଧି ଧାରଣ କଲେ । ଏହିଠାରୁ ବୈଷ୍ଣବ ଓ ଶୈବ ଚେତନା ମଧ୍ୟରେ ସମନ୍ୱୟ ନୀଳାଚଳ କ୍ଷେତ୍ରରୁ ଆରମ୍ଭ ହେଲା ।

ପୂର୍ବରୁ ଯଯାତିକେଶରୀଙ୍କ ଦ୍ୱାରା ପ୍ରତିଷ୍ଠିତ ଶ୍ରୀପୁରୁଷୋତ୍ତମ ମନ୍ଦିର ଉପଯୁକ୍ତ ରକ୍ଷଣାବେକ୍ଷଣ ଅଭାବରୁ ଭଗ୍ନପ୍ରାୟ ହୋଇଯାଇଥିଲା । କଳିଙ୍ଗର ରାଜା ଚୋଡ଼ଗଙ୍ଗଦେବ ଭଗ୍ନ ମନ୍ଦିରର ସଂସ୍କାର କରି, ପୂର୍ବରୁ ଯଯାତିକେଶରୀଙ୍କ ଦ୍ୱାରା ସ୍ଥାପିତ ଜଗନ୍ନାଥଙ୍କ ଚତୁର୍ଭୁଜ ମୂର୍ତ୍ତି ବଦଳରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା ଓ ଶ୍ରୀସୁଦର୍ଶନଙ୍କ ହସ୍ତପଦଯୁକ୍ତ ପ୍ରତିମାମାନ ସ୍ଥାପନ କଲେ । ରୁଦ୍ରରୂପୀ ଶଙ୍କର୍ଷଣ, ଶକ୍ତି ସ୍ୱରୂପିଣୀ ସୁଭଦ୍ରାଙ୍କ ସହ ଶ୍ରୀପୁରୁଷୋତ୍ତମ ବିଷ୍ଣୁଙ୍କୁ ସ୍ଥାପନାକରି, ନୀଳାଚଳ କ୍ଷେତ୍ରରୁ ବୈଷ୍ଣବ, ଶାକ୍ତ ଓ ଶୈବଙ୍କ ମଧ୍ୟରେ ସମନ୍ୱୟ ବାଦର ଚେତନା ସୃଷ୍ଟି କଲେ । ଏହା ଦ୍ୱାଦଶ ଶତାବ୍ଦୀର ପ୍ରଥମ ଚରଣର କଥା । ପରେ ୧୨୩୦ ଖ୍ରୀଷ୍ଟାବ୍ଦରେ ମହାରାଜା ଅନଙ୍ଗଭୀମଦେବ (ତୃତୀୟ) ଶ୍ରୀମନ୍ଦିରର ନିର୍ମାଣ ଶେଷକରି ବିଭିନ୍ନ ସେବାୟତ ପରମ୍ପରା ପ୍ରତିଷ୍ଠା କରି ଶ୍ରୀମନ୍ଦିର ପରିଚାଳନା ନିମିତ୍ତ ଖସଡ଼ା ପ୍ରସ୍ତୁତ କରିଥିଲେ । ରାମାନୁଜପନ୍ଥୀ ଅଲବାରମାନେ ନିଜର ସ୍ୱାତନ୍ତ୍ର୍ୟ ରକ୍ଷା



କରିବା ନିମିତ୍ତ ବ୍ରହ୍ମଗିରିଠାରେ 'ଅଲାରନାଥ'ଙ୍କ ମନ୍ଦିର ନିର୍ମାଣ କରି ପ୍ରତିଷ୍ଠା କରିଥିଲେ । ସେହି ଅଲବାରମାନଙ୍କ ପ୍ରଭାବରେ ଶ୍ରୀପୁରୁଷୋତ୍ତମଙ୍କ ପୂଜାବିଧି ପଞ୍ଚରାତ୍ରିକ ପଦ୍ଧତିରେ ପରିଚାଳିତ ହେଲା । ତାହା ପୂର୍ବରୁ ନାରାୟଣ ମନ୍ତ୍ରରେ ଶ୍ରୀପୁରୁଷୋତ୍ତମଙ୍କୁ ଯଯାତିକେଶରୀଙ୍କ କାଳରୁ ପୂଜା କରାଯାଉଥିଲା । ପରବର୍ତ୍ତୀ କାଳରେ ତଥା ଷୋଡଶ ଶତାବ୍ଦୀରେ ମହାପ୍ରଭୁଙ୍କୁ ଗୋପାଳ ମନ୍ତ୍ରରେ ପୂଜା କରାଗଲା । ସେହି ମନ୍ତ୍ରକୁ 'ମନ୍ତ୍ରରାଜ' ଆଖ୍ୟା ମଧ୍ୟ ଦିଆଗଲା ।

ନୀଳାଚଳ କ୍ଷେତ୍ରରେ ଶ୍ରୀମନ୍ଦିର ମଧ୍ୟରେ ରାଧା ରାଣୀଙ୍କର ପ୍ରତିଷ୍ଠା ବୃଦ୍ଧି ନିମିତ୍ତ ବହୁ ବୈଷ୍ଣବ ସଂପ୍ରଦାୟ ଚେଷ୍ଟା କରିଛନ୍ତି । ମାତ୍ର ତାହା ସଫଳ ହୋଇ ପାରିଲା ନାହିଁ । ଶ୍ରୀରାଧାଙ୍କର ସ୍ୱତନ୍ତ୍ର ମନ୍ଦିର ଜଗନ୍ନାଥ ମନ୍ଦିର ପରିସର ମଧ୍ୟରେ ନାହିଁ । ମାତ୍ର ଜୟଦେବ ରଚିତ ଗୀତଗୋବିନ୍ଦ ପାଠକୁ ସ୍ୱତନ୍ତ୍ର ମର୍ଯ୍ୟାଦା ଦିଆଯାଇ ରାଧାକୃଷ୍ଣ ଲୀଳାକୁ ଗ୍ରହଣ କରାଯାଇଛି । ତନ୍ତ୍ରବାଦୀମାନଙ୍କ ପ୍ରତିପତ୍ତିକୁ ବର୍ଦ୍ଧନ କରାଯାଇ ଶ୍ରୀମନ୍ଦିର ପରିସରରେ ବିମଳାଙ୍କୁ ପ୍ରତିଷ୍ଠା କରାଯାଇଛି । ଶ୍ରୀଜଗନ୍ନାଥଙ୍କୁ ସମର୍ପିତ ପ୍ରସାଦ ମାତା ବିମଳାଙ୍କୁ ସମର୍ପଣ କରାଯିବା ପରେ ତାହା ସାଧାରଣ ପ୍ରସାଦ ସ୍ତରରୁ ଉନ୍ନୀତ ହୋଇ ମହାପ୍ରସାଦରେ ପରିଗଣିତ ହୁଏ । ଭାରତରେ ତନ୍ତ୍ରବାଦୀମାନେ ଶୈବ ଓ ଶାକ୍ତ ଚେତନାର ଅନୁଗାମୀ ।

କେବଳ ହିନ୍ଦୁ ଧର୍ମର ବିଭିନ୍ନ ସଂପ୍ରଦାୟ ମଧ୍ୟରେ ନୁହେଁ, ହିନ୍ଦୁଧର୍ମ ପରି ଅନ୍ୟାନ୍ୟ ଧର୍ମ ଯଥା ଇସ୍‌ଲାମ, ଖ୍ରୀଷ୍ଟ, ଶିଖ, ବୌଦ୍ଧ, ଜୈନ ପ୍ରଭୃତି ଧର୍ମର ଆଚାର୍ଯ୍ୟମାନେ ନୀଳାଚଳ ଧାମକୁ ପରିଦର୍ଶନ କରି, ଶ୍ରୀଜଗନ୍ନାଥଙ୍କର ମହିମା କୀର୍ତ୍ତନ କରିଛନ୍ତି । ଆଧୁନିକ ଯୁଗରେ ଜଗନ୍ନାଥ ମନ୍ଦିର ମଧ୍ୟକୁ ବିଭିନ୍ନ ପ୍ରଶାସନିକ କାରଣରୁ ହିନ୍ଦୁଧର୍ମ ବ୍ୟତୀତ ଅନ୍ୟ ଧର୍ମାବଲମ୍ବୀଙ୍କୁ ପ୍ରବେଶ ସୁବିଧା ଦିଆଯାଉ ନଥିବା ବେଳେ ପୂର୍ବରୁ ଜଗତର ଯେକୌଣସି ବ୍ୟକ୍ତି ଜଗନ୍ନାଥ ମନ୍ଦିରରେ ପ୍ରବେଶ କରିପାରୁଥିଲେ । ବର୍ତ୍ତମାନ ବହୁ ଧର୍ମର ଲୋକମାନେ ଜଗନ୍ନାଥ ମନ୍ଦିରରେ ପ୍ରବେଶ କରି ଶ୍ରୀପୁରୁଷୋତ୍ତମଙ୍କୁ ଦର୍ଶନ କରିବାପାଇଁ ଯୁକ୍ତି ଉପସ୍ଥାପନ କରି ଆସୁଅଛନ୍ତି ।

ସର୍ବଧର୍ମ ଓ ଚେତନାର ସମନ୍ୱୟ ଦେବତା ଶ୍ରୀପୁରୁଷୋତ୍ତମଙ୍କ କ୍ଷେତ୍ରରୁ ହିଁ ସମନ୍ୱୟ ବାଦର ଚିନ୍ତନ ପରିପୁଷ୍ଟ ଓ ପରିବ୍ୟାପ୍ତ ହୋଇ ସମଗ୍ର ବିଶ୍ୱରେ ବିଶ୍ୱଭ୍ରାତୃତ୍ୱର ପ୍ରତିଷ୍ଠା କରିବା କ୍ଷେତ୍ରରେ ସଫଳ ହେବା ଏକବିଂଶ ଶତାବ୍ଦୀରେ ଉନ୍ନତ ତଥା ବିଜ୍ଞାନ କ୍ଷେତ୍ରରେ ପାରଦର୍ଶିତା ଲାଭ କରିଥିବା ସମସ୍ତ ବିଶ୍ୱବାସୀଙ୍କୁ ଜଣେ ଶୁଭଚିନ୍ତକ ରାଜା ଭାବରେ ଶ୍ରୀଜଗନ୍ନାଥ ସଂସ୍କୃତି ସମ୍ପନ୍ନ କରାଇ, ବିଶ୍ୱଶାନ୍ତି ନିମିତ୍ତ ସନ୍ଦେଶ ଦେଇ ଆସୁଛନ୍ତି । ବିଶ୍ୱ ଭ୍ରାତୃତ୍ୱ ଦ୍ୱାରା ହିଁ, ଅଧମ ବିଶ୍ୱବାସୀଙ୍କୁ ପୁରୁଷୋତ୍ତମ ସ୍ତରକୁ ଉତ୍ତୀର୍ଣ୍ଣ କରିହେବ । ତାହା କେବଳ ଦେଶ ଦେଶ ମଧ୍ୟରେ ବନ୍ଧୁତାପୂର୍ଣ୍ଣ ଭାବ ସୃଷ୍ଟି ସମ୍ଭବପର ହେବ । ମିତ୍ରତା ଦ୍ୱାରା ହିଁ ଶତ୍ରୁତାକୁ ପ୍ରଶମିତ କରାଯାଇପାରେ । ନିଜକୁ ଶତ୍ରୁଠାରୁ ବଳଶାଳୀ କରିବାକୁ ଚେଷ୍ଟାକରି ଯୁଦ୍ଧ ବା କନ୍ଦଳରେ ଲିପ୍ତ ରହିଲେ, ଏ ବିଶ୍ୱ ଧ୍ୱଂସ ପାଇଯିବ । ରାଜା ଶ୍ରୀପୁରୁଷୋତ୍ତମଙ୍କର ସନ୍ଦେଶ ସମଗ୍ର ପୃଥିବୀରେ ପ୍ରଚାରିତ ଏବଂ କାର୍ଯ୍ୟକାରୀ ହେଲେ ଏ ଧରା ଶାନ୍ତି ଓ ପ୍ରେମର ବୈଜୟନ୍ତୀ ଉଡ଼ାଇ ପାରିବ ।

ଆତିଥ୍ୟ, ଏମ୍.ଆଇ.ଜି–୧/୨୨୭
ସତ୍ୟସାଇ ଏନ୍‌କ୍ଲେଭ, ଲେନ୍–୨୨
କୋଳଥିଆ, ଖଣ୍ଡଗିରି, ଭୁବନେଶ୍ୱର–୩୦



# ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଦିବ୍ୟ ଶ୍ରୀମହାପ୍ରସାଦ

**ଡକ୍ଟର ଭାସ୍କର ମିଶ୍ର**

ସମଗ୍ର ପୃଥିବୀରେ ସମସ୍ତ କ୍ଷେତ୍ର ଓ ତୀର୍ଥମାନଙ୍କ ମଧ୍ୟରେ ଶ୍ରେଷ୍ଠ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ବିରାଜିତ ଦାରୁବ୍ରହ୍ମରୂପୀ ଚତୁର୍ଦ୍ଧା ବିଗ୍ରହ ରାଜାଧିରାଜ ତଥା ଦେବାଧିଦେବ ରୂପେ ପୁରାଣମାନଙ୍କରେ ଅଭିହିତ ହୋଇଛନ୍ତି । ବୈଚିତ୍ର୍ୟମୟ ଶ୍ରୀମନ୍ଦିରର ବହୁ ବୈଚିତ୍ର୍ୟ ମଧ୍ୟରେ ଶ୍ରେଷ୍ଠତ୍ୱ ଲାଭ କରିଛି ଦିବ୍ୟ ଶ୍ରୀମହାପ୍ରସାଦ । ଭାରତବର୍ଷରେ ସୁପ୍ରତିଷ୍ଠିତ ବିଭିନ୍ନ ପ୍ରସିଦ୍ଧ ବିଷ୍ଣୁ ମନ୍ଦିରମାନଙ୍କରେ ଅର୍ପିତ ନୈବେଦ୍ୟ ଭୋଗ ପ୍ରସାଦକୁ ନେଇ ଯେଉଁ ପ୍ରସିଦ୍ଧି ରହିଛି, ତନ୍ମଧ୍ୟରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ବା ପୁରୀସ୍ଥିତ ଚତୁର୍ଦ୍ଧା ବିଗ୍ରହଙ୍କୁ ନୈବେଦ୍ୟ ରୂପେ ଅର୍ପିତ ରାଜଭୋଗ ବା ମହାପ୍ରସାଦର ମହତ୍ତ୍ୱ ସର୍ବଶ୍ରେଷ୍ଠ । ଉତ୍କଳର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥାଦି ଚତୁର୍ଦ୍ଧା ବିଗ୍ରହଙ୍କୁ ନିବେଦିତ ଅନ୍ନ ବ୍ୟଞ୍ଜନ, ବିଭିନ୍ନ ପ୍ରକାରର ସୁମିଷ୍ଟ ପିଷ୍ଟକ ଆଦି 'ମହାପ୍ରସାଦ' ନାମରେ ଅଭିହିତ ଅଟେ । ଏହାର ସ୍ୱତନ୍ତ୍ରତା ତଥା ମାହାତ୍ମ୍ୟ ସଂପର୍କରେ ବିଭିନ୍ନ ପୁରାଣରେ ଉଲ୍ଲେଖ ରହିଛି । କଥିତ ଅଛି ଯେ ଅନ୍ୟ ବିଷ୍ଣୁ ପୀଠମାନଙ୍କରେ ଯେଉଁ ଭୋଗ ନୈବେଦ୍ୟ ଅର୍ପଣ କରାଯାଏ, ସେଠାରେ ପ୍ରଭୁ କେବଳ ଦୃଷ୍ଟି ନିକ୍ଷେପ କରିଥାନ୍ତି, ମାତ୍ର ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ସ୍ୱୟଂ ମହାଲକ୍ଷ୍ମୀ ପାଚିକା ଓ ଭୋକ୍ତ ଜନାର୍ଦ୍ଦନ ହେତୁ ମହାପ୍ରସାଦର ସର୍ବଶ୍ରେଷ୍ଠତା ପ୍ରତିପାଦିତ ହୋଇଛି । ଏହି ମହାପ୍ରସାଦ ଏପରି ପବିତ୍ର ଯେ ତାହାର ପ୍ରଶସ୍ତି ସମ୍ବନ୍ଧରେ ୨୫ରୁ ଉର୍ଦ୍ଧ୍ୱ ପୁରାଣ, ଉପ-ପୁରାଣ ଓ ତନ୍ତ୍ର ଗ୍ରନ୍ଥମାନଙ୍କରେ ବର୍ଣ୍ଣିତ ହୋଇଛି । 'ନୀଳାଦ୍ରି ମହୋଦୟ' ଗ୍ରନ୍ଥରେ ଉଲ୍ଲେଖ ପ୍ରକାରେ–

''ଯଚ୍ଚାନ୍ନଂ ପଚତେ ଲକ୍ଷ୍ମୀର୍ଭୋକ୍ତା ଚ ପୁରୁଷୋତ୍ତମଃ ।
ତତ୍ତୁ ଯତ୍ନେନ ଭୋକ୍ତବ୍ୟଂ ନାତ୍ର କାର୍ଯ୍ୟା ବିଚାରଣା ।।''

ଅର୍ଥାତ୍, ଯେଉଁ ଅନ୍ନ ସ୍ୱୟଂ ମହାଲକ୍ଷ୍ମୀ ରନ୍ଧନ କରନ୍ତି ଓ ଭୋକ୍ତା ସ୍ୱୟଂ ପୁରୁଷୋତ୍ତମ ଜଗଦୀଶ ସେହି ଦିବ୍ୟ ମହାପ୍ରସାଦକୁ କାଳ ବିଚାର ନରଖି ଆଗ୍ରହର ସହିତ ସେବନ କରିବା ବିଧେୟ । ସେହିପରି ବ୍ରହ୍ମାଣ୍ଡ ପୁରାଣରେ ମଧ୍ୟ ବର୍ଣ୍ଣିତ ଅଛି ଯେ–

''ଅତ୍ର ପାଚୟତେ ଲକ୍ଷ୍ମୀର୍ଭୋକ୍ତାହଂ ଯଜ୍ଞଭୁକ୍ ସ୍ୱୟମ୍ ।
ଭୋକ୍ତବ୍ୟଂ ମୁନିଭିର୍ବିପ୍ରୈର୍ଯତ୍ର କାର୍ଯ୍ୟା ବିଚାରଣା ।।''

ଅର୍ଥାତ୍, ସ୍ୱୟଂ ଲକ୍ଷ୍ମୀ ଏହା ରନ୍ଧନ କରନ୍ତି, ମୁଁ ସ୍ୱୟଂ ତାହା ଭୋଜନ କରେ । ସୁତରାଂ ମୁନି ଓ ବ୍ରାହ୍ମଣଗଣ ଅବଶ୍ୟ ନିର୍ବିଚାରରେ ଏହା ଭୋଜନ କରିବେ । ପୁରାଣର ବର୍ଣ୍ଣନାନୁସାରେ ଶ୍ରୀମହାପ୍ରସାଦ ହେଉଛି ଅତ୍ୟନ୍ତ ମୁକ୍ତିପ୍ରଦ ।

ବ୍ରହ୍ମ ପୁରାଣ, ସ୍କନ୍ଦ ପୁରାଣ ଉତ୍କଳ ଖଣ୍ଡ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟ, କପିଳସଂହିତା, ବାମଦେବ ସଂହିତା, ବାୟୁ ପୁରାଣ, ବିଷ୍ଣୁ ପୁରାଣ, ଭବିଷ୍ୟ ପୁରାଣ, ପଦ୍ମ ପୁରାଣ, ଗରୁଡ ପୁରାଣ, ନୀଳାଦ୍ରି ମହୋଦୟ, ନାରଦ ପୁରାଣ, ବ୍ରହ୍ମାଣ୍ଡ ପୁରାଣ, ବୃହଦ୍ବିଷ୍ଣୁ ପୁରାଣ, ବ୍ରହ୍ମ ବୈବର୍ତ୍ତ ପୁରାଣ, ରୁଦ୍ର ଯାମଳ, ବିଷ୍ଣୁ ଯାମଳ, ତତ୍ତ୍ୱ ଯାମଳ, ମୁକ୍ତି ଚିନ୍ତାମଣି, ମହାପୁରୁଷ ବିଦ୍ୟା, ଚତୁର୍ବର୍ଗଯୋଗୀଶ୍ୱର ଇତ୍ୟାଦି ବିଭିନ୍ନ ପୁରାଣ, ତନ୍ତ୍ରଗ୍ରନ୍ଥ ଓ ଅନ୍ୟାନ୍ୟ ଶାସ୍ତ୍ରମାନଙ୍କରେ 'ମହାପ୍ରସାଦ'ର ମାହାତ୍ମ୍ୟ, ପବିତ୍ରତା ତଥା ଏହାର ଭୂରି ଭୂରି ପ୍ରଶସ୍ତି ସମ୍ବନ୍ଧରେ ବିସ୍ତୃତ ଭାବେ ଉଲ୍ଲେଖ ହୋଇଛି ।





ଓଡ଼ିଶାର ସାଂସ୍କୃତିକ ଗ୍ରନ୍ଥାବଳୀ ଗ୍ରନ୍ଥରେ ମହାପ୍ରସାଦ ସଂପର୍କରେ ଉଲ୍ଲେଖ ଅଛି, ''ଶତାବ୍ଦୀ ଶତାବ୍ଦୀ ଧରି ଶ୍ରୀକ୍ଷେତ୍ରର ଆଧ୍ୟାତ୍ମିକ ଜଗତରେ ଯେଉଁ ପ୍ଲାବନ ସୃଷ୍ଟି ହୋଇଛି ତା'ର କାରଣ କେବଳ ଶ୍ରୀଜଗନ୍ନାଥ ନୁହଁନ୍ତି ବରଂ ତାଙ୍କୁ ସମର୍ପଣ କରାଯାଉଥିବା ମହାପ୍ରସାଦ'' । ପ୍ରସାଦର ଅର୍ଥ ଆନନ୍ଦ, ପ୍ରୀତି, ପ୍ରେମ, ପ୍ରସନ୍ନତା, ନିର୍ମଳତା, ପବିତ୍ରତା ଓ ପାବନତା । ଶ୍ରୀଜଗନ୍ନାଥଙ୍କ ପ୍ରସାଦର ନାମ ମହାପ୍ରସାଦ । ଏହା ମହାନନ୍ଦ, ମହାପ୍ରେମ, ମହାଭାବ ଓ ମହା ପବିତ୍ର ଭାବର ପରିଚାୟକ । ଏହା ପୁଣି କୈବଲ୍ୟ ବା ନିର୍ମାଲ୍ୟ ଭାବରେ ଅଭିହିତ । ସେହିପରି ପୂର୍ଣ୍ଣଚନ୍ଦ୍ର ଭାଷାକୋଷର ଉଲ୍ଲେଖ ପ୍ରକାରେ 'ମହାପ୍ରସାଦ'ର ବ୍ୟୁତ୍ପତ୍ତି ହେଉଛି ମହାପ୍ରସହ ଧାତୁ ଅର୍ଥାତ୍ ହୃଷ୍ଟ ହେବା ବା ପ୍ରସନ୍ନ ହେବା । ପ୍ରାବନ୍ଧିକ ଶରତ ଚନ୍ଦ୍ର ମହାନ୍ତି ମହାପ୍ରସାଦର ଅର୍ଥକୁ ଅତ୍ୟନ୍ତ ସୁନ୍ଦର ଭାବେ ବିଶ୍ଳେଷଣ କରିଛନ୍ତି । ତାଙ୍କ ମତରେ 'ଶ୍ରୀମହାପ୍ରସାଦ' ଏକ ଯୌଗିକ ଶବ୍ଦ ଏବଂ ଏହା ତିନି ଶବ୍ଦର ସମଷ୍ଟିରୁ ସୃଷ୍ଟି । ପ୍ରଥମ ଶବ୍ଦ 'ଶ୍ରୀ' ଏକ ଏକାକ୍ଷରୀ ଶବ୍ଦ । ଏହାର ଅର୍ଥଗତ ବ୍ୟାପକତା ବହୁତ, ତାତ୍ତ୍ୱିକ ଦୃଷ୍ଟିକୋଣରୁ ଏହାର ଉପସ୍ଥିତି ମୂଳ ଶବ୍ଦର ମାନବୃଦ୍ଧି କରିବାରେ ସହାୟକ ହୋଇଥାଏ । ଦ୍ୱିତୀୟ ଶବ୍ଦ ହେଲା 'ମହା' । ଏହା ଏକ ଶ୍ରେଷ୍ଠତ୍ୱ ପ୍ରତିପାଦକ ଶବ୍ଦ । ଯେପରିକି ମହା ସମୁଦ୍ର, ମହାଲକ୍ଷ୍ମୀ, ମହାଭାବ, ମହାଯାତ୍ରା ଇତ୍ୟାଦି । ତୃତୀୟ ଏବଂ ଶେଷ ଶବ୍ଦ 'ପ୍ରସାଦ' ଏହାର ଆଭିଧାନିକ ଅର୍ଥ ଦୟା, କୃପା, କରୁଣା, ଅନୁଗ୍ରହ ଇତ୍ୟାଦି । ଏଣୁ ଏହି ତ୍ରିଶବ୍ଦ ବିଶିଷ୍ଟ ଶ୍ରୀମହାପ୍ରସାଦର ପରିବ୍ୟାପ୍ତି ଯଥେଷ୍ଟ ଅଧିକ ଗୁରୁତ୍ୱ ବହନ କରେ । ସୁତରାଂ ପୁରାଣ, ଉପ ପୁରାଣ ଓ ତନ୍ତ୍ର ଗ୍ରନ୍ଥାଦିରେ 'ମହାପ୍ରସାଦ'କୁ ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କରାଯାଇଛି ।

ପଦ୍ମ ପୁରାଣରେ କୁହାଯାଇଛି ଯେ ବିଧିବଦ୍ଧ ଭାବେ ବ୍ରତ, ଉପବାସ କଷ୍ଟସାଧ୍ୟ ଚାନ୍ଦ୍ରାୟଣବ୍ରତ ସାଧନ ଯଜ୍ଞକ୍ରିୟା, ଜପ, ହୋମାନୁଷ୍ଠାନ, ଅସଂଖ୍ୟ ବ୍ରାହ୍ମଣ ଭୋଜନ, ସମସ୍ତ ସଦାଚାର ଦ୍ୱାରା ଯେଉଁ ଫଳ ଲାଭ ହୁଏ, ସାଧାରଣ ମଣିଷ ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦ ସେବନରେ ସେହି ଫଳପ୍ରାପ୍ତି ହୋଇଥାଏ । ଏଥିରେ ବର୍ଣ୍ଣିତ ଅଛି ଯେ, ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଅନ୍ନ ନୈବେଦ୍ୟ ଦେବତାମାନଙ୍କ ପାଇଁ ମଧ୍ୟ ଦୁର୍ଲଭ । ଏବେ ବି ପରମ୍ପରା ଅନୁଯାୟୀ ଶ୍ରୀକ୍ଷେତ୍ରସ୍ଥିତ ବିଭିନ୍ନ ଦେବ ଦେବୀଙ୍କୁ ମହାପ୍ରଭୁଙ୍କୁ ଅର୍ପିତ ମହାପ୍ରସାଦ ସମର୍ପଣ କରାଯିବାର ବିଧି ରହିଅଛି । ଶ୍ରୀଜଗନ୍ନାଥଙ୍କ ନୈବେଦ୍ୟାନ୍ନ ବିଷୟରେ ବୃହଦ୍ ବିଷ୍ଣୁ ପୁରାଣରେ ଉଲ୍ଲେଖ ଅଛି ଯେ, ପରଂବ୍ରହ୍ମରୂପୀ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀମହାପ୍ରସାଦ ବ୍ରହ୍ମ ଭଳି ନିର୍ବିକାର ଅଟେ । ଏପରିକି ବ୍ରହ୍ମ ଯେପରି ତାହା ମଧ୍ୟ ସେହିପରି ଯଥା– ''ବ୍ରହ୍ମବତ୍ ନିର୍ବିକାରୋ ହି ଯଥା ବ୍ରହ୍ମ ତଥୈବ ତତ୍'' । ସେହିପରି ବ୍ରହ୍ମ ବୈବର୍ତ୍ତ ପୁରାଣର ବର୍ଣ୍ଣନାନୁସାରେ ପରମ ପବିତ୍ର ନୀଳାଚଳ କ୍ଷେତ୍ରରେ ଦାରୁବ୍ରହ୍ମରୂପୀ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲେ ଯେଉଁ ଫଳ ମିଳେ, ତାଙ୍କ ଶ୍ରୀମହାପ୍ରସାଦ ସେବନ ଦ୍ୱାରା ସେହି ଫଳ ପ୍ରାପ୍ତି ହୁଏ । ଯଥା–

''ସତ୍ୟଂ ସତ୍ୟଂ ପୁନଃ ସତ୍ୟଂ ସତମେବ ସୁନିଶ୍ଚିତମ୍ ।
ଭକ୍ତ୍ୟା ମମାନ୍ନଂ ଭୁକ୍ତ୍ୱା ତୁ ସାନ୍ନିଧ୍ୟଂ ମମ ଗଚ୍ଛତି ॥''

ଏଥିରେ କୁହାଯାଇଛି ଯେ, ଶ୍ରୀଜଗନ୍ନାଥଙ୍କର ନୈବେଦ୍ୟ ମହାପାପ ବିନାଶକ । କୋଟିଏ ଧେନୁ ଦାନ କଲେ ଯେଉଁ ଫଳ ମିଳେ, ଥରେ ସେହି ନୈବେଦ୍ୟ ଭକ୍ଷଣ କଲେ ତା'ଠାରୁ ଅଧିକ ଫଳ ମିଳିଥାଏ । ଭବିଷ୍ୟ ପୁରାଣରେ ବର୍ଣ୍ଣିତ ଅଛି ଯେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ମହାପ୍ରସାଦ ସେବନ କଲେ ପାପ, ମହାପାପ, ଅତି ପାତକ ବିନିଷ୍ଟ ହୋଇଥାଆନ୍ତି । ଶ୍ରୀଜଗନ୍ନାଥଙ୍କ ମହିମା ଓ ମାହାତ୍ମ୍ୟ ସମ୍ବନ୍ଧରେ ସୁବିସ୍ତୃତ ଭାବେ ବର୍ଣ୍ଣନା ହୋଇଥିବା ସ୍କନ୍ଦ ପୁରାଣୋକ୍ତ ପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟର ନିର୍ମାଲ୍ୟ ମହିମା ପ୍ରସଙ୍ଗରେ କୁହାଯାଇଛି ଯେ, ସେହି ଅନ୍ନ ଅମୃତ ତୁଲ୍ୟ । ତାହାକୁ ମସ୍ତକରେ ଧାରଣ କଲେ ମହାପାପ ଦୂର ହୁଏ, ଭକ୍ଷଣ କଲେ ସମସ୍ତ ପାପ ସହିତ ବିପଦ ମଧ୍ୟ ବିଖଣ୍ଡିତ ହୋଇଥାଏ ।

ମହାପ୍ରସାଦକୁ ଆଘ୍ରାଣ କଲେ ମାନସିକ ପାପ, ଦର୍ଶନ କଲେ ଦୃଷ୍ଟିଦୋଷଜନିତ ପାପ, ଭକ୍ଷଣ କଲେ ବାକ୍ୟ

ଦ୍ୱାରା କରିଥିବା ପାପ ଓ କର୍ଣ୍ଣର ଶ୍ରବଣଜନିତ ପାପ ଦୂର ହୁଏ । ଅନ୍ୟ ଏକ ଶ୍ରୀଜଗନ୍ନାଥ ମାହାତ୍ମ୍ୟ ଓ ଚେତନା ଆଧାରିତ ଆଧ୍ୟାତ୍ମିକ ସଂସ୍କୃତ ଗ୍ରନ୍ଥ ''ମହାପୁରୁଷ ବିଦ୍ୟାରେ'' ବର୍ଣ୍ଣିତ ତଥ୍ୟ ଅନୁଯାୟୀ ସ୍ୱୟଂ ଭଗବାନ ନାରଦଙ୍କୁ କହିଛନ୍ତି ଯେ ତପସ୍ୱୀଗଣ, ନିରାହାରୀ, ବ୍ରତାଚାରୀ ଓ ଅଗ୍ନିହୋତ୍ରୀମାନେ ମହାପ୍ରସାଦ ଦ୍ୱାରା ଶୁଦ୍ଧ ହୁଅନ୍ତି । ସୁବର୍ଣ୍ଣ ଏବଂ ରତ୍ନରେ ଯେପରି ସ୍ୱର୍ଶ ଦୋଷ ନଥାଏ, ସେହିପରି ଭଗବାନଙ୍କ ନୈବେଦ୍ୟରେ ସ୍ପର୍ଶ ଦୋଷ ନଥାଏ । ପ୍ରାପ୍ତ ହେବା ମାତ୍ରେ ଯେ ମହାପ୍ରସାଦ ସେବନ କରେ ସେ ବାହ୍ୟ ଏବଂ ଅଭ୍ୟନ୍ତର ଉଭୟ ପବିତ୍ର ହୁଏ । ଅନ୍ୟ ଏକ ଗ୍ରନ୍ଥ ଚତୁଃବର୍ଗ ଯୋଗୀଶ୍ୱରେ ଉଲ୍ଲେଖ କରାଯାଇଅଛି ଯେ, ପୁରୁଷୋତ୍ତମ ଦାରୁବ୍ରହ୍ମ ହେଲା ବେଳେ ତାଙ୍କ ନୈବେଦ୍ୟ ଅନ୍ନ ବ୍ରହ୍ମ ପଦବାଚ୍ୟ । ଏହିପରେ ବହୁ ପୁରାତନ ପୁରାଣ, ଶାସ୍ତ୍ରରେ ମହାପ୍ରସାଦର ମହିମା ଗାନ କରାଯାଇଛି । ଲୋକଶ୍ରୁତିରେ କୁହାଯାଇଛି ଯେ, ନୀଳାଚଳ ଭଗବାନଙ୍କର ଭୋଜନ କ୍ଷେତ୍ର, ଏଠାରେ ସ୍ୱୟଂ ପରିପୂର୍ଣ୍ଣ ରୂପେ ଛପନ ପଉଟି ଭୋଗ ଭୋଜନ କରିଥାଆନ୍ତି । ଅନ୍ୟତ୍ର ଭଗବାନ ଆତ୍ମା ରୂପରେ ଅଛନ୍ତି ମାତ୍ର ଏଠାରେ ଦାରୁ ଦେହ ଧାରଣ କରି ସାକ୍ଷାତ୍ ଜଗନ୍ନାଥ ରୂପେ ବିଦ୍ୟମାନ ।

ଦାରୁବ୍ରହ୍ମରୂପୀ ଶ୍ରୀଜଗନ୍ନାଥଙ୍କ ନିକଟରେ ଅର୍ପିତ ନୈବେଦ୍ୟ 'ମହାପ୍ରସାଦ'ରେ ପରିଣତ ହେବାରେ କେତେକ ମୁଖ୍ୟ କାରଣ ସନ୍ନିହିତ ରହିଛି । ତନ୍ମଧ୍ୟରେ ପ୍ରଥମତଃ ପ୍ରସାଦର ଷଡ଼ଙ୍ଗ ସଂସ୍କାର ଦ୍ୱାରା ଅନ୍ନତ୍ୱର ବିଲୋପ କରାଯାଇ ବ୍ରହ୍ମତ୍ୱର ଆରୋପ କରାଯିବାରୁ ଏହା ମହାପ୍ରସାଦ ପଦବାଚ୍ୟ କହନ୍ତି । ଏହି ଷଡଙ୍ଗ ସଂସ୍କାର ହେଲା ମହାଲକ୍ଷ୍ମୀଙ୍କ ଦ୍ୱାରା ବୈଷ୍ଣବାଗ୍ନିରେ ରନ୍ଧନ, ଶ୍ରୀଯନ୍ତ୍ର ରୂପକ ଠାଆ ମୁରୁଜ ଉଠାରେ ପ୍ରସ୍ତୁତ ଭୋଗ ପରିବେଷଣ, ଦ୍ୱାବିଂଶାକ୍ଷରୀ ନୃସିଂହ ତାପନୀୟ ପାତାଳ ନୃସିଂହ ମନ୍ତ୍ରରେ ପ୍ରେକ୍ଷିତ ଅଥବା ଅଷ୍ଟାଦଶକ୍ଷର ଗୋପାଳ ମନ୍ତ୍ରରେ ନିବେଦିତ, ଭୈରବୀ ଚକ୍ରର ଉଚ୍ଛିଷ୍ଟ ଭୈରବୀ ବିମଳାଙ୍କୁ ସମର୍ପଣ, ବିଶ୍ୱକ୍‌ସେନ, ଶୁକ, ପ୍ରହଲ୍ଲାଦ, ହନୁମାନ, ବୈନତେୟ, ଦେବନ୍ଦ ଓ ଇନ୍ଦ୍ରଦ୍ୟୁମ୍ନାଦି ଅଷ୍ଟ ସାତ୍ତ୍ୱିକ ବୈଷ୍ଣବଙ୍କୁ ଅବଶେଷାନ୍ନ ବଳି ଦିଆଯିବା । ଉଲ୍ଲେଖଯୋଗ୍ୟ ଯେ ଶ୍ରୀଯନ୍ତ୍ର କାରିକାରେ ଶ୍ରୀଚକ୍ର ବା ତ୍ରିପୁର ଭୈରବୀ ଯନ୍ତ୍ର ସଂପର୍କରେ ଆସିଲେ ଚଣ୍ଡାଳ ମଧ୍ୟ ଦ୍ୱିଜତ୍ୱ ପ୍ରାପ୍ତ ହୋଇଥାନ୍ତି । ତେଣୁ ଏହି ଯନ୍ତ୍ର ଉପରେ ନୈବେଦ୍ୟ ବଢ଼ା ଯାଉଥିବାରୁ ଏଠାରେ ଅନ୍ନ ହିଁ 'ବ୍ରହ୍ମ' ପଦବାଚ୍ୟ ହୋଇଥାଏ ।

**ଶ୍ରୀମନ୍ଦିରର ରାଜଭୋଗ**

ବିଶିଷ୍ଟ ଐତିହାସିକ ଜଗବନ୍ଧୁ ସିଂହଙ୍କ ରଚିତ ''ପ୍ରାଚୀନ ଉତ୍କଳ'' ଗ୍ରନ୍ଥରେ ବର୍ଣ୍ଣିତ ତଥ୍ୟାନୁସାରେ ପରଂବ୍ରହ୍ମଙ୍କର ନୀତିକୁ ପରିବର୍ଦ୍ଧିତ କରି ସୋମବଂଶୀୟ ରାଜାମାନେ ପରମେଶ୍ୱରଙ୍କର ତିନୋଟି ଧୂପରେ ଅନ୍ନ ମହାପ୍ରସାଦର ବ୍ୟବସ୍ଥା କରାଇଥିଲେ । ସେହିପରି ଅନ୍ୟତମ ଐତିହାସିକ ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ ମତରେ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କ ପରାମର୍ଶରେ ଯଯାତି କେଶରୀଙ୍କ ଶ୍ରୀଜଗନ୍ନାଥଙ୍କ ସେବା ନୀତିରେ ଅନ୍ନ ମହାପ୍ରସାଦ ପ୍ରବର୍ତ୍ତିତ ହୋଇଥିଲା । ନାଗରୀ ତାମ୍ର ଶାସନର ସୂଚନା ଅନୁଯାୟୀ ଗଙ୍ଗ ବଂଶର ପ୍ରଖ୍ୟାତ ନରପତି ଅନଙ୍ଗଭୀମ ଦେବ(ତୃତୀୟ) ୧୨୩୦ ଖ୍ରୀଷ୍ଟାବ୍ଦରେ ପରିଦୃଶ୍ୟମାନ ଶ୍ରୀମନ୍ଦିରର ପ୍ରତିଷ୍ଠା କାର୍ଯ୍ୟ ସମ୍ପନ୍ନ କରିବା ପରେ ଶ୍ରୀବିଗ୍ରହମାନଙ୍କୁ ନୂତନ ସିଂହାସନରେ ଅଧିଷ୍ଠିତ କରାଇବା ସଙ୍ଗେ ସଙ୍ଗେ ମହାପ୍ରଭୁଙ୍କ ସେବା, ପୂଜା, ଭୋଗ ଇତ୍ୟାଦି ପରିବର୍ଦ୍ଧିତ କରାଇ ଶ୍ରୀମନ୍ଦିରରେ ଛତିଶା ନିଯୋଗ ବ୍ୟବସ୍ଥାର ପ୍ରବର୍ତ୍ତନ କରାଇଥିଲେ । (ନାଗରୀ ତାମ୍ର ଶାସନ) ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ରାଜାଧିରାଜ ଭାବେ ଉପାସନା କରାଯିବା ସଙ୍ଗେ ସଙ୍ଗେ 'ରାଜଭୋଗ' ପ୍ରବର୍ତ୍ତିତ ହୋଇଥିଲା । ମାଦଳାପାଞ୍ଜି (ଦ୍ୱିତୀୟ)ର ଉଲ୍ଲେଖ ପ୍ରକାରେ ଅନଙ୍ଗଭୀମ ଦେବଙ୍କ ସମୟରେ ମହାପ୍ରଭୁଙ୍କୁ ରତ୍ନ ସିଂହାସନରେ ବିଜେ କରାଇଲା ଉତ୍ତାରୁ ୮୪ ମଡ଼ଫୁଲି ସଙ୍ଖୁଡ଼ି ଭୋଗ କଲା । ଏବେ ବି ମକର ସଂକ୍ରାନ୍ତି ଦିନ ଶ୍ରୀମନ୍ଦିରରେ ବିପୁଳ ପରିମାଣର ପ୍ରାୟ ୮୪ ପ୍ରକାର ଭୋଗ ନୈବେଦ୍ୟ ହେଉଅଛି । ବର୍ଷକେ ଏହି ଗୋଟିଏ ଦିନ ଶ୍ରୀବିଗ୍ରହଙ୍କ ନିକଟରେ ବିଭିନ୍ନ ପ୍ରକାରର ସର୍ବାଧିକ ସଂଖ୍ୟକ





ଭୋଗ ଦ୍ରବ୍ୟାଦି ନୈବେଦ୍ୟ କରାଯିବାର ପରମ୍ପରା ରହିଛି । ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ ଉଲ୍ଲେଖ ପ୍ରକାରେ ଅନଙ୍ଗଭୀମ ଦେବ ଯଯାତିଙ୍କ ସମୟରେ ଯାହା ଥିଲା ତାହା ଉପରେ ଅଧିକ ଭୋଗ ବଢ଼ାଇଲେ । ସ୍ୱତନ୍ତ୍ର ଭାବେ ବିଭିନ୍ନ ସୂପକାର ଗୋଷ୍ଠୀ ସେବକଙ୍କୁ ଏହି 'ରାଜଭୋଗ' ବା 'କୋଠ ଭୋଗ' ପ୍ରସ୍ତୁତି ନିମନ୍ତେ ନିୟୋଜିତ କରାଯାଇଥିଲା । ଏ ସମ୍ବନ୍ଧରେ ଶ୍ରୀମନ୍ଦିର ଭିତର ବେଢ଼ାସ୍ଥ ପାତାଳେଶ୍ୱର ମନ୍ଦିର ଗାତ୍ରରେ ଖୋଦିତ ୭ଟି ଅଭିଲେଖ ମଧ୍ୟରୁ ୬ଟି ଅନଙ୍ଗଭୀମ ଦେବଙ୍କ ସମୟର ଅଭିଲେଖ ମିଳୁଅଛି । ଏହି ଅଭିଲେଖରେ ଜନୈକ ପାଢ଼ୀ ସଂଜ୍ଞାଧାରୀ ସୁଆର ସେବକ ଓ ବିଭିନ୍ନ ଭୋଗ, କ୍ଷୀର, ଦହି, ଘୃତ(ଘିଅ), ତାମ୍ବୁଳ ଅର୍ପଣ ବ୍ୟବସ୍ଥା, ଭୋଗ ପାଇଁ ଜମି ଦାନ ଇତ୍ୟାଦି ବିଷୟ ଉଲ୍ଲେଖ ରହିଅଛି ।

ଗଙ୍ଗବଂଶ ମହାରାଜାଙ୍କ ରାଜତ୍ୱ ସମୟରେ ଶ୍ରୀମନ୍ଦିରରେ ରାଜଭୋଗ ବା କୋଠଭୋଗର ପରିମାଣ ବହୁଳ ଭାବେ ବୃଦ୍ଧି ଘଟିଥିଲା । ବିଶେଷ କରି ଅନଙ୍ଗଭୀମ ଦେବ (ତୃତୀୟ)ଙ୍କ ସମୟରେ କେତେକ ନୂତନ ଭୋଗର ସୃଷ୍ଟି ହୋଇଥିଲା । ଏଥିପାଇଁ ହଜାର ହଜାର ବାଟି ଅମୃତ ମଣୋହି ସମ୍ପତ୍ତି ବିଭିନ୍ନ ବ୍ୟକ୍ତିବିଶେଷ ଓ ମଠାନୁଷ୍ଠାନମାନଙ୍କ ମାରଫତ୍‌ରେ ଖଞ୍ଜା ଯାଇଥିଲା । ଶ୍ରୀମନ୍ଦିର ସ୍ୱତ୍ୱଲିପିର ଉଲ୍ଲେଖ ପ୍ରକାରେ ପୂର୍ବେ ୪୫୦ ପ୍ରକାରର ଭୋଗ ଦ୍ରବ୍ୟାଦି ସମେତ ଷାଠିଏ ପଉଟି ପରିମାଣ ଭୋଗ ନିତ୍ୟ ବଲ୍ଲଭ ଧୂପମାନଙ୍କରେ ନୈବେଦ୍ୟ ହେଉଥିଲା । କାଳକ୍ରମେ ଏହି ପରିମାଣ ଓ ପ୍ରକାରର ହ୍ରାସ ଘଟିଥିଲେ ହେଁ ଏବେ ବି ପ୍ରତ୍ୟହ ୬୦ରୁ ଊର୍ଦ୍ଧ୍ୱ ପ୍ରକାରର ଭୋଗ ଠାକୁରମାନଙ୍କୁ ଅର୍ପିତ ହେଉଅଛି ।

ମହାପ୍ରସାଦ ମୁଖ୍ୟତଃ ଦୁଇ ପ୍ରକାରର ଯଥା (୧) ଶୁଖିଲି ଭୋଗ (୨) ନିଃସଙ୍ଖୁଡ଼ି ଭୋଗ । ଶ୍ରୀଜଗନ୍ନାଥ ମନ୍ଦିରରେ ଅନୁଷ୍ଠିତ ବିଭିନ୍ନ ଧୂପରେ ପ୍ରଶାସନ ପକ୍ଷରୁ ରାଜଭୋଗ ବା କୋଠଭୋଗ ହୋଇଥାଏ । ଗୋପାଳବଲ୍ଲଭ ଭୋଗ ଧୂପ ଅନ୍ତର୍ଭୁକ୍ତ ନ ହେଲେ ହେଁ ଏହା ରାଜଭୋଗ ଭାବେ ସୁପରିଚିତ । ସାଧାରଣତଃ ଦୈନନ୍ଦିନ ନୀତି ମଧ୍ୟରେ ଶ୍ରୀବିଗ୍ରହମାନଙ୍କର ଗୋପାଳ ବଲ୍ଲଭ ଭୋଗ, ତତ୍ପରେ ସକାଳଧୂପ, ମଧ୍ୟାହ୍ନ(ଦ୍ୱିପ୍ରହର) ଧୂପ, ସନ୍ଧ୍ୟା ଧୂପ ଓ ବଡସିଂହାର ଭୋଗ ଅନୁଷ୍ଠିତ ହୋଇଥାଏ । ସେହିପରି ସକାଳ ଧୂପ ପରେ ବିକ୍ରୟ, ଖଟଣି ଓ ବରାଦି ଭୋଗ ନିମନ୍ତେ ଭୋଗମଣ୍ଡପ ଭୋଗ ହୋଇଥାଏ ।

ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ପ୍ରତ୍ୟହ ବଲ୍ଲଭ ଭୋଗ ପ୍ରସ୍ତୁତି ନିମନ୍ତେ ୧୨ଟି ନଡ଼ିଆ, ୫ ଗଉଣୀ ବା ୨ କିଲୋଗ୍ରାମ ଲିଆ, ଅଳେଇଚ, ଗୁଡ, ଚିନି, ଜାଳେଣି କାଠ ଇତ୍ୟାଦି ବଲ୍ଲଭ ଗୁଡ଼ିଆଙ୍କୁ ଯୋଗାଯାଇଥାଏ । ଶ୍ରୀମନ୍ଦିର ଆନନ୍ଦବଜାରର ଉତ୍ତର ପଟକୁ ଥିବା ବଲ୍ଲଭ ରୋଷ ଘରେ ଏହି ବଲ୍ଲଭ ଭୋଗ ସାମଗ୍ରୀମାନ ପ୍ରସ୍ତୁତ ହୋଇଥାଏ । ବଲ୍ଲଭ ଭୋଗରେ ସାଧାରଣତଃ ଦୁଇ ପ୍ରକାରର ନଡିଆ କୋରା, ପାଗ ଖଇ, ଖୁଦି(ପାତି) ନଡିଆ ସମେତ ଖୁଆପେଡ଼ା, ଖୁଆମଣ୍ଡା, ଦହି, ସର, ରାବିଡ଼ି, ପାଚିଲା କଦଳୀ, ସେଓ, କମଳା, ଚାଉଳିଆ, ଅଙ୍ଗୁର, କାକୁଡ଼ି ଇତ୍ୟାଦି ଭୋଗ ହୋଇଥାଏ । ବିଭିନ୍ନ ଧୂପ ଭୋଗ (ରାଜ ଭୋଗ ବା କୋଠଭୋଗ) ନିମନ୍ତେ ପ୍ରତ୍ୟହ ଶ୍ରୀମନ୍ଦିର ପରିସରସ୍ଥ କୋଠଭୋଗ ଗୋଦାମରୁ କୋଠ ଭୋଗ ସାମଗ୍ରୀମାନ ରୋଷଶାଳାକୁ ନିର୍ଦ୍ଦିଷ୍ଟ ସେବକ ମାଧ୍ୟମରେ ଯୋଗାଯାଇଥାଏ । ଯୋଗାଯାଉଥିବା ଜିନିଷାଦ୍‌ମାନ ମଧ୍ୟରେ ଆଳିଚାଉଳ, ଚୁନାଚାଉଳ, ମୁଗ, ବିରି, ଓମ୍‌ଫେଡ୍ ଘିଅ, କିସ୍‌ମିସ୍, ଗୁଡ, ଅଟା, ସୁଜି, ବେସନ, ଜିରା, ଗୋଲମରିଚ, ଖଣ୍ଡ(ସର୍କରା), ଅଳେଇଚ, ଲୁଣ, ହଳଦୀଗୁଣ୍ଡ, ମଧୁରୀ, ତେନ୍ତୁଳି, ଡାଲଚିନି, ଲବଙ୍ଗ, ହେଙ୍ଗୁ, ଜାଇଫଳ ସମେତ କଖାରୁ, ବାଇଗଣ, ପୋଟଳ, ଦେଶୀଆଳୁ, କାଙ୍କଣ, ଅଦା, କଞ୍ଚା କଦଳୀ, କୋଶଳା ଶାଗ ଇତ୍ୟାଦି ଧାର୍ଯ୍ୟ ପରିମାଣର ଉଭୟ ସାମଗ୍ରୀମାନ କୋଠଭୋଗ ପ୍ରସ୍ତୁତି ନିମିତ୍ତ ଯୋଗାଯାଇଥାଏ ।

ସେହିପରି ଶ୍ରୀବିଗ୍ରହମାନଙ୍କ ଦୈନନ୍ଦିନ ସେବାପୂଜା ତଥା ରାଜଭୋଗ ପ୍ରସ୍ତୁତିରେ କେତେକ ମାଟିପାତ୍ରର ଆବଶ୍ୟକତା ପଡିଥାଏ । ଏହି ମାଟିପାତ୍ରଗୁଡ଼ିକ ଇଷତ୍ ଲାଲ ରଙ୍ଗର ଅଟେ ଓ ଏହାର ବିଭିନ୍ନ ପ୍ରକାର ନାମ ରହିଛି । ରାଜଭୋଗ ଦ୍ରବ୍ୟାଦି ବିଭିନ୍ନ ତାଡ, ସରା, ଓଳି,





ହାଣ୍ଡି, କୁଡୁଆମାନଙ୍କରେ ରଖାଯାଇ ଧୂପ ପୂଜାରେ ମଣୋହି ନିମନ୍ତେ ପନ୍ତିରେ ବଢ଼ା ଯାଇଥାଏ । ଏହିମାଟି ପାତ୍ର ମଧ୍ୟରେ ଦୈନନ୍ଦିନ ଢଳା କୁଡୁଆ ୪୦ଟି, ଅଙ୍ଗବାସ ଓଳି ୧୯୫ଟି, ତାଡ଼–୬ଟି, ଟିପେଇ ହାଣ୍ଡି୨୧ଟି, ପାହାନ୍ତି ୨ଟି, ଅଧା ୧ଟି, ସାନପୁଳି ସରା ୮୧ଟି, ପୁଳି ସରା ୨୪ଟି, ପାଳିସରା ୬୦ଟି, ବଡ଼ା ୬୦ଟି, କଟାସରା ୧୪ଟି, ନିମାଳି ୨୪ଟିର ଆବଶ୍ୟକତା ପଡିଥାଏ । ଏତଦ୍‌ବ୍ୟତୀତ ଭୋଗମଣ୍ଡପ ପୂଜା ନିମିତ୍ତ ବିକ୍ରୟ ଓ ବରାଦି ଭୋଗରେ ବ୍ୟବହୃତ ହେଉଥିବା ବାଇହାଣ୍ଡି, ସମାଧି, ଦାସିଆ, ଏମାର ହାଣ୍ଡି, ବଡ଼ ମଠ କୁଡୁଆ, ସାନମଠ କୁଡୁଆ, ନମ୍ବରି କୁଡୁଆ, ଢଳା କୁଡୁଆ, ଭାତକୁଡୁଆ, ଅଙ୍ଗବାସ ଓଳି, ପଖାଳ ଓଳି, ଚକ ଓଳି, ମୁଗ ଓଳି ଇତ୍ୟାଦି ସ୍ଥାନୀୟ କୁମ୍ଭକାରମାନଙ୍କଠାରୁ ସୂପକାରମାନେ କ୍ରୟ କରିଥାନ୍ତି ।

**ରୋଷଶାଳା**

ଦୈନନ୍ଦିନ ଶ୍ରୀମନ୍ଦିର ରୋଷଶାଳାରେ ରାଜଭୋଗ ପ୍ରସ୍ତୁତି ନିମିତ୍ତ ୭ଗୋଟି ଚୁଲିର ବ୍ୟବହାର ହୋଇଥାଏ । ପ୍ରତ୍ୟହ ଭୋଗ ରନ୍ଧନ ନିମିତ୍ତ ମନ୍ଦିର ପ୍ରଶାସନ ପକ୍ଷରୁ ଦୁଇ କ୍ୱିଣ୍ଟାଲ ଜାଳେଣି କାଠ କୋଠଭୋଗ ରୋଷଶାଳାକୁ ଯାଇଥାଏ । ଶ୍ରୀମନ୍ଦିର ସ୍ୱତ୍ୱଲିପିର ଉଲ୍ଲେଖ ପ୍ରକାରେ ରୋଷଶାଳାରେ ମୋଟ୍ ୨୪୦ ଗୋଟି ଚୁଲା ରହିଅଛି । ଏଥି ମଧ୍ୟରୁ ପ୍ରାୟ ୨୩୨ଟି ଚୁଲାରେ ମଠର ଖଟଣି, ବିକ୍ରୟ, ବରାଦି ଓ ଅନ୍ୟ ସେବକମାନଙ୍କ ଖଟଣି ଭୋଗ ରନ୍ଧନ ହୋଇଥାଏ । ରୋଷଶାଳାରେ ଥିବା ବିଭିନ୍ନ 'ରୋଷ'ର ନାମକରଣ ମଧ୍ୟ ରହିଅଛି । ତନ୍ମଧ୍ୟରେ– ୧) କୋଠଭୋଗ ରୋଷ, ୨) ବଡବାଡ ରୋଷ, ୩) ସାତପୁରୀ ରୋଷ, ୪) ଥାଳିଆଡ଼ ରୋଷ, ୫) ବଡ ଓଡିଆ ମଠ ରୋଷ, ୬) ଏମାର ରୋଷ, ୭) ପିଠା ରୋଷ, ୮) ଶ୍ରୀରାମ ଦାସ ରୋଷ, ୯) ଉତ୍ତର ପାର୍ଶ୍ୱ ମଠ ରୋଷ, ୧୦) ରାଘବ ଦାସ ରୋଷ ଓ ୧୧) ଭିତରଛ ରୋଷ । କୋଠଭୋଗ ରୋଷରେ ସ୍ୱତନ୍ତ୍ର ଭାବେ ଏକ ସାତପୁରୀ ରୋଷ ନାମରେ ଚୁଲି ରହିଅଛି ।

ଶ୍ରୀମନ୍ଦିର ରୋଷଶାଳାରେ ଥିବା ଚୁଲିଗୁଡ଼ିକ ସାଧାରଣତଃ ତିନି ଭାଗରେ ବିଭକ୍ତ କରାଯାଇଥାଏ । ସେଗୁଡ଼ିକ ହେଲା ଅନ୍ନ ଚୁଲି, ଅହିଆ ଓ ପିଠା ଚୁଲି । ଚୁଲିଗୁଡ଼ିକ ଚଟାଣ ଉପରୁ ପ୍ରାୟ ୩ ଫୁଟ୍ ଉଚ୍ଚତା ବିଶିଷ୍ଟ ଏବଂ ଏହା ଧାଡି ଧାଡି ହୋଇ ରହିଥାଏ । ଅନ୍ନ ଚୁଲିଗୁଡ଼ିକରେ ଏକାଥରକେ ପ୍ରାୟ ୯ଗୋଟି କୁଡୁଆ ରଖାଯାଇ ଅନ୍ନ ରନ୍ଧା ଯାଇଥାଏ । ଉଲ୍ଲେଖଯୋଗ୍ୟ ଯେ ପ୍ରଥମେ ୫ଟି କୁଡୁଆକୁ ଚୁଲିରେ ୬ଟି ଝିଙ୍କା(ଇଣ୍ଡା) ଉପରେ ରଖାଯାଏ । ଏହାପରେ ଏହି କୁଡୁଆଗୁଡ଼ିକର ଫାଙ୍କରେ ଥିବା ସ୍ଥାନମାନଙ୍କରେ ୩ଟି କୁଡୁଆ ରଖାଯାଏ ତପୂରେ ଅନ୍ୟ ଏକ କୁଡୁଆ ରଖାଯାଇଥାଏ ।

ଅହିଆଗୁଡ଼ିକରେ କାଠ କୋଇଲା ରଡ଼କୁ ବେଡ୍ ଆକାରରେ ସମତଳ ଭାବେ ଖଞ୍ଜାଯାଇ ତହିଁ ଉପରେ ଡାଲି, ବେସର, ମହୁର, ଶାଗ, ଖଟା ଆଦି ରନ୍ଧନ ହୋଇଥାଏ । କାଠ କୋଇଲା ରଡକୁ ଏକ ବିଞ୍ଚଣା ସାହାଯ୍ୟରେ ବିଞ୍ଚା ଯିବା ଫଳରେ ଏହା ଅତ୍ୟଧିକ ପରିମାଣରେ ଉତ୍ତପ୍ତ ହୋଇଥାଏ । ସେହିପରି ପିଠା ଚୁଲିରେ କରେଇ, ତଇ, ପଲମ ଇତ୍ୟାଦିରେ ଘିଅକୁ ଗରମ କରାଯାଇ ବିଭିନ୍ନ ପିଠା, ଅମାଲୁ ପ୍ରସ୍ତୁତ ହୋଇଥାଏ । ସାଧାରଣତଃ ଅନ୍ନ ରନ୍ଧନ ପାଇଁ ୧୫ମିନିଟ୍ ସମୟ ଲାଗିଥାଏ । ବିଶ୍ୱର ଏହି ବୈଚିତ୍ର୍ୟମୟ ରୋଷଶାଳାର ଐତିହ୍ୟ ଆଶ୍ଚର୍ଯ୍ୟଜନକ ଅଟେ । ଶ୍ରୀମନ୍ଦିରର ଏହି ରୋଷ ଘର ଏକ ବିରାଟ ଅନୁଷ୍ଠାନ । ଏକ ସମୟରେ ରୋଷଶାଳାରେ ଲକ୍ଷାଧିକ ଲୋକଙ୍କ ପାଇଁ ପ୍ରସାଦ ରନ୍ଧନ ହେବାର ପ୍ରମାଣ ରହିଅଛି । ଶ୍ରୀମନ୍ଦିର ରୋଷଘର ବ୍ୟତୀତ ପୃଥିବୀର ଅନ୍ୟ କୌଣସି ଧାର୍ମିକ ଅନୁଷ୍ଠାନର ଏଭଳି ବୃହତ୍ତମ ରୋଷଶାଳା ପରିଦୃଷ୍ଟ ହୋଇନଥାଏ ।

ବର୍ତ୍ତମାନର ରୋଷ ଘରଟି ଭୋଇ ବଂଶର ରାଜା ଦିବ୍ୟସିଂହ ଦେବ(ଖ୍ରୀ୧୬୮୨–୧୭୧୩)ଙ୍କ ସମୟରେ ନିର୍ମିତ ହୋଇଥିବା ଜଣାଯାଏ । ଦିବ୍ୟସିଂହ ଦେବଙ୍କ ମନ୍ତ୍ରୀ ଗୋବିନ୍ଦଙ୍କ ତତ୍ତ୍ୱାବଧାନରେ କଟକ ଜିଲ୍ଲାର ଶ୍ରୀ ରାଜେନ୍ଦ୍ର ରାୟ ଏହି ରୋଷଶାଳାଟିର ନିର୍ମାଣ ବାବଦ





ସମସ୍ତ ଅର୍ଥ ବହନ କରିଥିଲେ । ପରବର୍ତ୍ତୀ ସମୟରେ ୧୯୫୭ ମସିହାରେ ରୋଷଶାଳାର ନବୀକରଣ, ସଂରକ୍ଷଣ, ମରାମତି ଆଦି ହୋଇଥିବା ଜଣାଯାଏ । ଅତୀତରେ ବର୍ତ୍ତମାନର ରୋଷଶାଳା ପୂର୍ବରୁ ଶ୍ରୀମନ୍ଦିର ଭିତର ବେଢ଼ାସ୍ଥ ସତ୍ୟନାରାୟଣ ମନ୍ଦିର ପଛ ପାର୍ଶ୍ୱରେ ଥିବା ମେରେଦା ରୋଷରେ ରାଜଭୋଗ ପ୍ରସ୍ତୁତ ହେଉଥିଲା । ବର୍ତ୍ତମାନର ରୋଷଶାଳାଟି ଶ୍ରୀମନ୍ଦିରର ପୂର୍ବ ଦିଗଠାରୁ ଦକ୍ଷିଣ ଦିଗ ଆଡକୁ ନକ୍‌ସା ଅନୁଯାୟୀ ପ୍ଲଟ ନଂ ୨୦୫ରେ ଅବସ୍ଥିତ(ଶ୍ରୀମନ୍ଦିର ସ୍ୱତ୍ତ୍ୱ ଲିପି ମୁତାବକ) । ଏହା ବାରଗୋଟି କୋଠରିକୁ ନେଇ ଗଠିତ । ଏହାର ଲମ୍ବ ୧୦୦ଫୁଟ ଏବଂ ଓସାର ୮୦ ଫୁଟ । ରୋଷଶାଳାର ଦୁଇ ପାର୍ଶ୍ୱରେ ଯଥା ପୂର୍ବ ପାର୍ଶ୍ୱରେ 'ଗଙ୍ଗା' ଓ ଦକ୍ଷିଣ ପାର୍ଶ୍ୱରେ 'ଯମୁନା' ନାମରେ ଦୁଇଗୋଟି କୂପ ଅବସ୍ଥିତ । ଏହି କୂପର ଜଳରେ ଶ୍ରୀବିଗ୍ରହମାନଙ୍କର ସମସ୍ତ ରାଜଭୋଗ, ଖଟଣି ଭୋଗ ତଥା ବିକ୍ରୟ, ବରାଦି ଭୋଗ ପ୍ରସ୍ତୁତ ହୋଇଥାଏ ।

ରୋଷଶାଳାର ମୁଖ୍ୟ ପ୍ରବେଶ ପଥର ଗୁମୁଟ ନିକଟରେ ଥିବା ଏକ କ୍ଷୁଦ୍ର ଠଣାରେ ଏକ ଗଣେଶ ମୂର୍ତ୍ତି ପ୍ରତିଷ୍ଠିତ ପୂର୍ବକ ଦୈନନ୍ଦିନ ପୂଜାର୍ଚ୍ଚନା ପାଉଛନ୍ତି । ଏହି ଗଣେଶ ''ରୋଷ ଗଣେଶ'' ନାମରେ ସୁପରିଚିତ ଅଟନ୍ତି । ପ୍ରତ୍ୟେକ ସୂପକାର ରୋଷଶାଳାକୁ ପ୍ରବେଶ କରିବା ପୂର୍ବରୁ ଏହି ଗଣେଶଙ୍କୁ ପ୍ରଣାମ ଜଣାଇ ତାଙ୍କର ରନ୍ଧନ କାର୍ଯ୍ୟ ଆରମ୍ଭ କରିଥାନ୍ତି । ରୋଷଶାଳାରେ ପ୍ରତ୍ୟହ ୩୦୦ରୁ ୪୦୦ ସୂପକାର ରନ୍ଧନ କାର୍ଯ୍ୟରେ ନିୟୋଜିତ ହେଉଥିବା ବେଳେ ତାଙ୍କୁ ରୋଷ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ଯଥା ଚାଉଳ, ଡାଲି ପାଣିରେ ଧୁଆଯିବା, ପରିବା କଟା, ହାଣ୍ଡିକୁଡୁଆ ଧୁଆ, କୂପରୁ ପାଣି ଯୋଗାଇବା, ନଡ଼ିଆ କୋରେଇବା, ମସଲା ପ୍ରସ୍ତୁତ କରି ଯୋଗାଇବା ଆଦି କାର୍ଯ୍ୟରେ ପ୍ରାୟ ୨୦୦ରୁ ଉର୍ଦ୍ଧ୍ୱ ଯୋଗାଣିଆ ବ୍ୟକ୍ତି ସହାୟତା କରିଥାନ୍ତି ।

ଶ୍ରୀମନ୍ଦିର ରାଜଭୋଗ ପ୍ରସ୍ତୁତି ନିମିତ୍ତ ଦୈନନ୍ଦିନ ୧୬ରୁ ଉର୍ଦ୍ଧ୍ୱ କୋଠଭୋଗ ସୂପକାର ସମେତ ୧୫ରୁ ଉର୍ଦ୍ଧ୍ୱ ଅନ୍ୟାନ୍ୟ ରୋଷ ସମ୍ପୃକ୍ତ ସେବକ ନିୟୋଜିତ ହୋଇଥାନ୍ତି । ତନ୍ମଧ୍ୟରେ ମହାସୁଆର, ଅମିନ ମହାସୁଆର, ରୋଷ ପାଇକ, ଗନ୍ଧଣ ନିକାପ ସମେତ ବଡୁସୁଆର ସେବା ଅନ୍ତର୍ଭୁକ୍ତ ପିଠାସୁଆର, ଚଣାପୁଆ, ପାଗୁଆ, ଅମାଲୁ ସୁଆର, ବିଣ୍ଟୁଆ, ଥାଳି ସୁଆର, ତୁଣ ସୁଆର, ତୋଳାବଡୁ ଓ ପନ୍ତିବଡୁ, ବିଡୁଆ ପନ୍ତିବଡୁ, ବେହେରା ପନ୍ତିବଡୁ, ବିରିଭୁହା ଇତ୍ୟାଦି ସେବକ ୬୦ରୁ ଉର୍ଦ୍ଧ୍ୱ ବିଭିନ୍ନ ପ୍ରକାରର ପିଠା, ଅନ୍ନ, ଖେଚେଡ଼ି, କାନିକା, ଶାଗ, ଭଜା, ଓରିଆ, ସୁବାସ ପଖାଳ, କାଞ୍ଜି କ୍ଷୀର ଆଦି ପ୍ରସ୍ତୁତ କରିବା ସହିତ ପନ୍ତିରେ ଭୋଗ ବାଢ଼ିଥାନ୍ତି । ଏତଦ୍‌ବ୍ୟତୀତ ରୋଷର ନିର୍ମଳ, ସଫା କରାଯିବା, ରାଜଭୋଗ ସାମଗ୍ରୀ ଯୋଗାଣ ତଥା ଅନ୍ୟାନ୍ୟ କାର୍ଯ୍ୟରେ ଧୋପଖାଳ, ଅଙ୍ଗାରୁଆ, ଗୋବର ପାଣିଆ, ରବାଡିଆ, ଚୁନାମୁଣ୍ଡା, ହାଣ୍ଡି ଯୋଗାଣିଆ, କୋଠ ଭୋଗ ଯୋଗାଣିଆ, କୋଠଭୋଗ ପାଣିଆ, ବିରିବଟା ସମର୍ଥା ଆଦି ସେମାନଙ୍କର ନିଜ ନିଜ କର୍ତ୍ତବ୍ୟ ସମ୍ପାଦନ କରିଥାନ୍ତି । କୋଠଭୋଗ ସୂପକାରମାନେ ରାଜ ଭୋଗ ରନ୍ଧନ କରିବା ସମୟରେ ଅମୁଣିଆ ପ୍ରସାଦ ଯେପରି ପୋଡ଼ା ବା କଞ୍ଚା ନ ହେବ ତାହା ଦେଖିବା ନିମନ୍ତେ ପାଳିଆ ମହାସୁଆର, ରୋଷ ଅମିନ, ରୋଷ ପରିଚ୍ଛା ଆଦି ରୋଷ ଭିତରେ ତଦାରଖ କରିଥାନ୍ତି । ସେହିପରି ରୋଷର ନିର୍ମଳ, ପବିତ୍ରତା, ଭୋଗର ଶୁଦ୍ଧତା ଇତ୍ୟାଦି କାର୍ଯ୍ୟର ତଦାରଖ ପାଇଁ ଶ୍ରୀମନ୍ଦିରର କେତେକ ପ୍ରମୁଖ ଯଥା ଭିତରଛ, ତଳୁଛ ଓ ପାଟଯୋଷୀ ମହାପାତ୍ରଙ୍କ ଉପରେ ସ୍ୱତନ୍ତ୍ର ପରିଚ୍ଛା ଭାବେ ଅଧିକାର ନ୍ୟସ୍ତ ହୋଇଛି । ରାଜଭୋଗ ବା କୋଠଭୋଗ ସରିବା ପରେ ଦେଉଳକରଣ ସେବକଙ୍କ ଦ୍ୱାରା ଧାର୍ଯ୍ୟ ମୁତାବକ କୋଠଭୋଗ ମହାପ୍ରସାଦ ସେଦିନର ନୀତି ସମ୍ପୃକ୍ତ ସେବକ, ଗଜପତି ମହାରାଜା, ମଠାନୁଷ୍ଠାନ ଓ ବ୍ୟକ୍ତିବିଶେଷଙ୍କୁ ଖେଇ ସ୍ୱରୂପ ବଣ୍ଟନ କରାଯାଇଥାଏ ।

### ଶ୍ରୀମନ୍ଦିରର ବିଭିନ୍ନ ଧୂପ

ଦୈନନ୍ଦିନ ରାଜଭୋଗରେ ସକାଳ ଧୂପର ଥାଳି ଖେଚେଡ଼ି, ତାଟ ଖେଚେଡ଼ି, ମଝୁରି ଖେଚେଡ଼ି, କାନିକା, ନୁଖୁରା ଖେଚେଡ଼ି, ବଡକାନ୍ତି, ସାନକାନ୍ତି, ମାଠପୁଳି,

ହଂସକେଳି, ଚଣ୍ଡ ମାଠପୁଳି, ଝିଲି, ଏଣ୍ଡୁରି, ଶାଗ, ଭଜା, ଅଦା ପାଚେଡ଼ି ଇତ୍ୟାଦି ରତ୍ନସିଂହାସନାଧିଷ୍ଠିତ ଶ୍ରୀବିଗ୍ରହମାନଙ୍କୁ ଷୋଡଶ ଉପଚାରରେ ନୈବେଦ୍ୟ ହୋଇଥାଏ । ସେହିପରି ମଧ୍ୟାହ୍ନ ଧୂପରେ ମରିଚିଲଡୁ, ସାନପିଠା, ୫ପଟିଆ ପିଠା, ବଡ଼ା, ଗଜା, ଆରିସା, ସୁଆର ଆରିସା, କଡମ୍ବା, ବୁନ୍ଦିଆ, ତାଟ ମନୋହର, ମାଠପୁଳି, ତିପୁରି, ସାକରା, ଥାଳି ଅନ୍ନ, ପଣା ଇତ୍ୟାଦି ଭୋଗ ହେଉଥିବା ବେଳେ ସନ୍ଧ୍ୟା ଧୂପରେ କଅଁଳପୁଳି, ଟାକୁଆ, ମାଠପୁଳି, ଗୋଟାଳି, କାକେରା, ଅମାଲୁ, ସୁଆର ପିଠା, ଝଡେଇନେଦା, ସୁବାସ ପଖାଳ, ଚୁପୁଡ଼ା ପଖାଳ, ହାତପୋଡା ଅମାଲୁ, ବିରିବୁହା ପିଠା ଏବଂ ବଡସିଂହାର ଧୂପରେ କଦଳୀ ବଡ଼ା, କ୍ଷୀରି, ସାକରା, ପିଠା, କାଞ୍ଜି, ମିଠା ପଖାଳ, ରୋଷ ପାଇକ ପିଠା ଇତ୍ୟାଦି ଠାକୁରମାନଙ୍କୁ ନୈବେଦ୍ୟ ହୋଇଥାଏ ।

ଉପରିଲିଖିତ ଧୂପମାନଙ୍କରେ ହେଉଥିବା ରାଜଭୋଗ ବ୍ୟତୀତ ଦୈନିକ ଭୋଗ ମଣ୍ଡପରେ ବିକ୍ରୟ, ବରାଦି ତଥା ଖଟଣି ଭୋଗରେ ସାଧାରଣତଃ ସାଧା ଅନ୍ନ, ଘିଅ ଅନ୍ନ, ଖେଚେଡ଼ି, କାନିକା, ମିଷ୍ଟାନ୍ନ, ଡାଲି, ଡାଲେମା, ବେସର, ମହୁର, ଶାଗ, ମଧୁରୁଚି, ଗୋଟି ବାଇଗଣ, ଫାଳ ସୋଲା, ଗୋଟି ପୋଟଳ, ଦହି ବାଇଗଣ, ଛେନାବଡ଼ି ତରକାରୀ, ଗୋଟା ମୁଗ ତରକାରୀ, କଦଳୀ ରସା, ଦେଶୀଆଳୁ ରସା, ପିତା ଇତ୍ୟାଦି ବିଭିନ୍ନ ପ୍ରକାରର ଅନ୍ନ ବ୍ୟଞ୍ଜନାଦି ରୋଷରେ ପ୍ରସ୍ତୁତ ହୋଇ ଭୋଗ ହୋଇଥାଏ । ବ୍ୟଞ୍ଜନମାନଙ୍କରେ ମୁଖ୍ୟତଃ ଜିରା, ଗୋଲମରିଚ, ଡାଲଚିନି, ମଧୁରୀ ଇତ୍ୟାଦି ମସଲା ରୂପେ ବ୍ୟବହୃତ ହୋଇଥାଏ । ଉଲ୍ଲେଖଯୋଗ୍ୟ ଯେ ହଜାର ହଜାର ବର୍ଷ ଧରି ମହାପ୍ରଭୁଙ୍କର ଏହି ଅନ୍ନ, ଡାଲି, ତରକାରୀ ଇତ୍ୟାଦି ମହାପ୍ରସାଦ ପ୍ରସ୍ତୁତିରେ ନିର୍ଦ୍ଦିଷ୍ଟ ପନିପରିବା, ମସଲା ବ୍ୟବହୃତ ହୋଇ ଆସୁଅଛି । ଅଦ୍ୟାବଧି ଆଳୁ, ଟମାଟୋ, ବିନ୍ସ, କୋବି, କଞ୍ଚାଲଙ୍କା, ଶୁଖିଲା ଲଙ୍କା, ସଜନା ଛୁଇଁ ଇତ୍ୟାଦିର ବ୍ୟବହାର ହୋଇନାହିଁ । ଏଗୁଡ଼ିକ ମନ୍ଦିର ମଧ୍ୟକୁ ପ୍ରବେଶ ନିଷେଧ ଏବେ ବି ରହିଛି ।

ସାଧାରଣତଃ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଗୋପାଳବଲ୍ଲଭ ଭୋଗ, ଭୋଗମଣ୍ଡପ ପୂଜା ଓ ବଡସିଂହାର ଧୂପ ପୂଜା ପଞ୍ଚୋପଚାର ବିଧିରେ ସଂପନ୍ନ ହେଉଥିବା ବେଳେ ସକାଳ ଧୂପ, ମଧ୍ୟାହ୍ନ ଧୂପ ଓ ସନ୍ଧ୍ୟା ଧୂପ ଇତ୍ୟାଦି ପୂଜା ଷୋଡ଼ଶ ଉପଚାର ବିଧିରେ ଅନୁଷ୍ଠିତ ହୋଇଥାଏ । ଶ୍ରୀମନ୍ଦିରରେ ପୂଜା ବ୍ୟବସ୍ଥା ମୁଖତଃ ତିନି ବାଡରେ ହୋଇଥାଏ । ତିନି ଜଣ ପୂଜାପଣ୍ଡା ସେବକ ଏହି ସମସ୍ତ ଧୂପ ପୂଜା ସମାପନ କରିଥାନ୍ତି । ପ୍ରଚଳିତ ପୂଜା ବ୍ୟବସ୍ଥା ଅନୁଯାୟୀ– ୧) ଶ୍ରୀବଳଭଦ୍ରଙ୍କର ବାସୁଦେବ ପୂଜା ପଦ୍ଧତି–ମନ୍ତ୍ର– ଓଁ ନମୋ ଭଗବତେ ବାସୁଦେବାୟ (ଦ୍ୱାଦଶାକ୍ଷରୀ), (୨) ଦେବୀ ସୁଭଦ୍ରା– ଭୁବନେଶ୍ୱରୀ ପୂଜାପଦ୍ଧତି, ମନ୍ତ୍ର–ହ୍ରୀଂ(ଏକାକ୍ଷରୀ), ୩) ଶ୍ରୀଜଗନ୍ନାଥ– ଗୋପାଳାର୍ଚ୍ଚନ ପୂଜା ପଦ୍ଧତି– ମନ୍ତ୍ର– ଓଁ କ୍ଲୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନ ବଲ୍ଲଭାୟ (ଅଷ୍ଟଦଶାକ୍ଷରୀ) । ଏତତ୍‌ବ୍ୟତୀତ ଶ୍ରୀସୁଦର୍ଶନ ଦେବଙ୍କର 'ଓଁ ସହସ୍ରାରହୁଂ ଫଟ୍' ମନ୍ତ୍ରରେ ପୂଜା କରାଯାଇଥାଏ ।

ଶ୍ରୀମହାପ୍ରସାଦର ସୁଗନ୍ଧି, ଅମୃତତ୍ୱ, ଅନ୍ନ ବ୍ରହ୍ମରେ ରୂପାନ୍ତରିତ ହେବାରେ ଅନେକ ରହସ୍ୟ ରହିଛି । ପ୍ରାଚୀନ ସମୟରୁ ଅନେକ ବ୍ରହ୍ମଦର୍ଶୀ ଆଚାର୍ଯ୍ୟ, ସାଧୁ, ସନ୍ଥ, ପଣ୍ଡିତ ଏହି ଦିବ୍ୟ ମହାପ୍ରସାଦକୁ ସେବନ କରି ପରମାନନ୍ଦ ପ୍ରାପ୍ତ ହୋଇଥିବାର ପ୍ରମାଣ ରହିଛି । ସାଧାରଣରେ ଏହି ମହାପ୍ରସାଦର ରହସ୍ୟ ସଂପର୍କରେ କୁହାଯାଇଛି ଯେ, ଶ୍ରୀମନ୍ଦିର ରୋଷଶାଳାରେ ଅମୋଣିଆ ଅରୁଆ ଚାଉଳ ସିଝିଗଲେ ବା ପାକ ହେଲେ ତାହା 'ଅନ୍ନ' ପଦବାଚ୍ୟ ହୋଇଥାଏ । ସେହି ଅନ୍ନକୁ ସୂପକାରମାନେ ଯେଉଁ ଭାରରେ ଆଣନ୍ତି ତାକୁ ଛେକ କୁହାଯାଏ । ଛେକରେ ଆସୁଥିବା ଅନ୍ନକୁ ଭୋଗ କୁହାଯାଏ । ମହାପ୍ରଭୁଙ୍କ ସମ୍ମୁଖରେ ଠାଆ ମୁରୁଜରେ ପନ୍ତିରେ ବଢ଼ା ହେଲେ ତା'ର ନାମ ପାଲଟିଯାଏ ନୈବେଦ୍ୟ, ପୂଜାପଣ୍ଡା ସେବକ ନିର୍ଦ୍ଦିଷ୍ଟ ମନ୍ତ୍ର, ବିଭିନ୍ନ ମୁଦ୍ରା, ଉପଚାର, ଜପ ଓ ଶଙ୍ଖ ପାଣି ପକାଇବା ପରେ ତାହା ପାଲଟି ଯାଏ ମହାପ୍ରସାଦ । ସେହି ମହାପ୍ରସାଦର ଥାଳି ଅନ୍ନ ସମର୍ପିତ ହୁଏ ମା' ବିମଳାଙ୍କୁ । ମହାପ୍ରସାଦ ଆସି



ଆନନ୍ଦ ବଜାରରେ ପହଞ୍ଚିଲେ ତାହା ଭକ୍ତ ଶ୍ରଦ୍ଧାଳୁମାନଙ୍କ ଦୃଷ୍ଟି ପଡ଼ିଯାଏ, ସେତେବେଳେ ସେ ବଦଳିଯାଏ କୈବଲ୍ୟକୁ ଅର୍ଥାତ୍ ମୁକ୍ତିର ପଥ ବା ମୁକ୍ତିପ୍ରଦ । ସେହି କୈବଲ୍ୟକୁ ଯେତେବେଳେ ସୂର୍ଯ୍ୟଙ୍କ ରଶ୍ମିରେ ଶୁଖାଇ ଦିଆଯାଏ ତାହା ପାଲଟିଯାଏ 'ନିର୍ମାଲ୍ୟ'ରେ । ସେହି ନିର୍ମାଲ୍ୟ(ଅନ୍ନବ୍ରହ୍ମ) ପ୍ରାପ୍ତି ମାତ୍ରେ ମନୁଷ୍ୟର ମନ ଓ ଶରୀରରେ ଆସେ ନିର୍ମଳତା, ପ୍ରସନ୍ନତାର ଭାବ, ପୁଣି ପ୍ରାପ୍ତ ହୁଏ ପରଂବ୍ରହ୍ମଙ୍କ ସାନ୍ନିଧ୍ୟ ।

**ଉପସଂହାର**

ପରଂବ୍ରହ୍ମରୂପୀ ଚତୁର୍ଦ୍ଧାବିଗ୍ରହଙ୍କର ନୈବେଦ୍ୟ ଶ୍ରୀମହାପ୍ରସାଦ ପରି ସ୍ୱାଦଯୁକ୍ତ, ରୁଚିକର ତଥା ପୁଷ୍ଟିକର ପ୍ରସାଦ ବିଶ୍ୱରେ ବିରଳ । ଶ୍ରୀମହାପ୍ରସାଦରୁ ସାମାନ୍ୟ ପ୍ରାପ୍ତ ହେଲେ ତତ୍କ୍ଷଣାତ୍ ମୁକ୍ତି ମିଳିବାର ବିଶ୍ୱାସ ଏବେ ବି ସନାତନ ଧର୍ମୀ ତଥା ଜଗନ୍ନାଥ ପ୍ରାଣ ଭକ୍ତ ମନରେ ଅତୁଟ ବିଶ୍ୱାସ ରହିଛି । ସେଇଥିପାଇଁ ତା'ର ନାମ ନିର୍ମାଲ୍ୟ, ଯାହାର ସ୍ପର୍ଶରେ ସମସ୍ତ ଅପବିତ୍ର, ପବିତ୍ର ହୋଇଯାଏ, ଯାହାର ଦର୍ଶନରେ ମହାପାପୀ ମଧ୍ୟ ନିଷ୍ପାପ ହୋଇଯାଏ । ସୁତରାଂ ଦିବ୍ୟ ଶ୍ରୀମହାପ୍ରସାଦର ଗରିମା ଅବର୍ଣ୍ଣନୀୟ ତଥା ଅତୁଳନୀୟ ।

ଓ.ଏସ୍.ଡ଼ି(ଶ୍ରୀମନ୍ଦିର ପ୍ରଶାସନ)
ବିଧି ବିଭାଗ, ଓଡ଼ିଶା
ଶ୍ରୀଜଗନ୍ନାଥ ଧାମ, ପୁରୀ-୧

# ଅନ୍ତର୍ଯ୍ୟାମୀଙ୍କର ଅନ୍ତର ବାଣୀ

**ଉର୍ମିଳା ଷଡ଼ଙ୍ଗୀ**

ହୋ ଭକତେ...
ନିକିତି ତଉଲ ସାନ ବଡ଼କୁ
ଭାରି ପଲା ସଦା ରହେ ତଳକୁ
ସବୁ ସେବା ପୂଜା ଉପରେ ଥାଏ
ମୋ ଭକତ ପଲାଟି ତଳକୁ ରହେ ।
ଏ ସାରା ସୃଷ୍ଟିକୁ ଦେଖିବା ପାଇଁ
ମୋ ନୟନର ପତା ରଖିଲି ନାହିଁ
ତୁମ ଦୁଃଖ ସୁଖ ବୁଝିବା ପାଇଁ
ବଡ଼ ଦେଉଳରୁ ଆସିଛି ଧାଇଁ ।
ଭୋଜନରେ ଲୋଭ ମୋର ଥାଏ
ଷାଠିଏ ପଉଟି ଭୁଞ୍ଜିଣ ଦିଏ
ଛପନ ଭୋଗକୁ ଚାହିଁଲି ନାହିଁ
ଧାଡି ପହଣ୍ଡିରେ ଆସିଛି ମୁହିଁ ।





ଏଇ ବରଷର ପଞ୍ଜୁକରେ
ଦରଶନ କର ମତେ ନାଗାର୍ଜୁନ ବେଶରେ
ଶୃଙ୍ଖଳିତ ଦର୍ଶନ ଯିଏ କରିବ
ମୋର କୃପାବନ୍ଧୁ ସିଏ ଲଭିବ ।
କଥା ଏ କହୁଚି ମନେ ରଖିବ
ସତ୍ୟ ନ୍ୟାୟ ପଥେ ପଥିକୀ ହେବ
ଦୟା କ୍ଷମା ଶାନ୍ତି କର ଭୂଷଣ
ଯଥା ସମୟରେ କର ଅର୍ପଣ
ତେବେ ସିନା ଭକ୍ତ ମୋତେ ପାଇବ
ତୁମ ଦୁର୍ଲଭ ଜନମ ସାର୍ଥକ ହେବ
ଅହିଂସା ଧର୍ମେ ମୁଁ ବିହରଇ
ମୋ ସଙ୍ଗେ ଭକତେ ଆସ ହେ ଧାଇଁ ।

ନନ୍ଦ ଏନ୍‌କ୍ଲେଭ୍, ଭୁବନେଶ୍ୱର





# କୈକେୟୀ

ବଦ୍ରି ମିଶ୍ର

ପ୍ରତୀକ୍ଷାର ଗୋଟାଏ ମୁହୂର୍ତ୍ତ ଗୋଟିଏ ଯୁଗପରି ଲାଗିଯାଏ । ଅଥଚ, ତୋ ଘୋଷଯାତ୍ରା ପାଇଁ ପୂରା ଏକବର୍ଷର ପ୍ରତୀକ୍ଷା ଦରକାର ହୁଏ । ଜାଣୁ କାଳିଆ, ତୋ ପାଇଁ ପୋଡପିଠାଟେ କରିବାକୁ ମୋତେ କେତେ ମାସ ଲାଗିଯାଏ ? ପୂରା ଏଗାର ମାସ ଲାଗିଯାଏ ତୋ ପିଠା ପାଇଁ ଲବଣି, ଖଣ୍ଡ, ଦ୍ରାକ୍ଷା, ପେସ୍ତା, କର୍ପୂର, ଅଳେଇଚ, ଗୁଜୁରାତି, ଲବଙ୍ଗ, ବାଦାମ, କିସ୍‌ମିସ୍ ଯୋଗାଡ କରିବାରେ । ଏଗାର ମାସ କିପରି କଟେ ମୁଁ ଜାଣିପାରେନି । ତୋ ଘୋଷଯାତ୍ରା ରହିଯାଏ ଅଳ୍ପଦିନ । ରଜନୀ ରଜନୀ ବିନିଦ୍ର ରହି ତୋତେ ଅପେକ୍ଷା କରିଥାଏ, ତୁ କେବେ ଆସିବୁ । ରଥ ଅଟକାଇ, ମୋ କୋଳକୁ ଡେଇଁପଡି କହିବୁ, ''ମାଉସୀମା, ତୁମେ ତୁମ ହାତରେ ଏ ପିଠା ଖୁଆଇ ଦିଅ'' । ବେଳେବେଳେ ବହୁତ ଭାବେ, କୋଟି କୋଟି କ୍ଷମତାଧାରୀ ଓ ଧନୀ ମଣିଷଙ୍କ ସ୍ୱାର୍ଥଯୁକ୍ତ ପ୍ରାର୍ଥନା ଭିତରେ ତୋତେ ମୋ କଥା ଭାବିବାକୁ କେତେବେଳେ ସମୟ ମିଳେରେ ଜଗନ୍ନାଥ ?

ଏଇ ଶ୍ରୀକ୍ଷେତ୍ରର ବଳଗଣ୍ଡିଠାରେ ମାଉସୀମା ହୋଇ ବର୍ଷ ବର୍ଷ ଧରି ବସିରହିଛି । ଦେଖୁଛି ପ୍ରତ୍ୟହ ଲକ୍ଷ ଲକ୍ଷ ଭକ୍ତ ତୋ ନିକଟକୁ ଯାଉଛନ୍ତି । ହେଲେ ମୁଁ.... କେତେଦିନ ସତ୍ୟରକ୍ଷା କରି ଚାଲିଥିବି? ତ୍ରେତୟା ଯୁଗର ପ୍ରତିଜ୍ଞାକୁ କ'ଣ ମୁଁ ଏ ଯାଏଁ ପାଳନ କରି ତୋ ରହସ୍ୟ ଲୁଚାଇବା ପାଇଁ ଏମିତି ହନ୍ତସନ୍ତ ହେଉଥିବି? କେଉଁ ମା' ଏମିତି ଧୈର୍ଯ୍ୟ ଧରି ଦୂରରେ ରହିପାରେ କିରେ? ବେଳେବେଳେ ମନ ବୁଝେନି । ମା' ମନ ତ । ଲୁଚି ଲୁଚି ଅରୁଣ ସ୍ତମ୍ଭ ପାଖେ ସିଂହକୁ ଆଉଜି ତୋ ମନ୍ଦିରକୁ ଚାହିଁ ରହେ । କେତେବେଳେ ଯେ ସକାଳ ଯାଇ ସଞ୍ଜ ଆସିଯାଏ ଜାଣିପାରେନି । କାହିଁକି ଏତେ ଲୁହ ଏ ଅମାନିଆ ଆଖିରୁ ବହିଯାଏ ବୁଝିପାରେନି । ଦେଖେ କେତେ ଲଣ୍ଡିତମୁଣ୍ଡ, ପାଟପିତାମ୍ବରୀ, ଯଜ୍ଞୋପବୀତ ପିନ୍ଧି ତୋ ପାଦ ତଳେ ମୁଣ୍ଡ ପାତିବାକୁ ଯାଉଛନ୍ତି । ଦେଖେ କେତେ ବାପା ମା ତାଙ୍କ ରୋଗଣା ପିଲାଙ୍କୁ ତୋ ବାଇଶ ପାହାଚରେ ଗଡାଇ ଦେଉଛନ୍ତି । ଦେଖେ କେତେ ସ୍ତ୍ରୀ-ପୁରୁଷ ଦୀପ ଧରି ତୋ ମନ୍ଦିରରେ ଭଜନ ଗାଇ ଗାଇ ପଶି ଯାଉଛନ୍ତି । କିଏ ଧନ ମାଗୁଛି, କିଏ ସମ୍ମାନ ମାଗୁଛି, କିଏ ପୁଅ ମାଗୁଛି, କିଏ ଚାଖଣ୍ଡେ ଜମି ମାଗୁଛି, ଆଉ କିଏ ବାହୁଟେକି କହୁଛି, ''କାଳିଆ ମୋର କିଛି ଲୋଡା ନାହିଁରେ, ମୋତେ ଦୁଃଖ ସହିବାକୁ ଟିକେ ଶକ୍ତି ଦେ ।'' ତୁ କ'ଣ ସତରେ ସବୁକଥା ଶୁଣିପାରୁ ଜଗା! ତୁ କୁ'ଣ ତୋ ନିକଟକୁ ଯାଇଥିବା ଲକ୍ଷ ଲକ୍ଷ ଭକ୍ତଙ୍କୁ ଦେଖିପାରୁ ! ଫେରିଲା ବାଟରେ ଲୋକେ କୁହାକୋହି ହେଉଛନ୍ତି, ଥରେ ରଥଯାତ୍ରାରେ ଏଇ ଦିବ୍ୟସିଂହଦେବ ମହାରାଜାଙ୍କ ଆକୁଳ ନିବେଦନରେ ତୁ କୁଆଡେ ଚାରମାଳରୁ ରଥ ଉପରକୁ ଉଠିଥିଲୁ । ତା' ହେଲେ ମୋତେ କ'ଣ ତୋର ଭକ୍ତଟିଏ ହେବାକୁ ପଡିବ! ତୁ ପରା ସବୁ ଦେଖୁ, ସବୁ ଶୁଣୁ, ସଭିଙ୍କୁ ଉଦ୍ଧାର କରୁ!!!

ମନେପଡୁଛି ଅତୀତ କଥା । ଅଯୋଧ୍ୟାରେ ତୁ ସେଦିନ ରାମଚନ୍ଦ୍ର ହୋଇ ଜନ୍ମିଥିଲୁ । ଆଉ ମୁଁ ହୋଇଥିଲି ତୋର ସାନ ମା' କୈକେୟୀ । ନିଜ ମା' କୌଶଲ୍ୟାଙ୍କଠାରୁ ମଧ୍ୟ ତୁ ମତେ ଅଧିକ ଭଲ ପାଉଥିଲୁ । ମୋ ପାଖେ





ଗେହ୍ଲା ହେଉଥିଲୁ, ମୋ କୋଳରେ ଜାକିଜୁକି ହୋଇ ଶୋଇଯାଉଥିଲୁ, ମୋ ହାତରୁ ପିଠା ଖାଉଥିଲୁ । ସେଦିନ ଖାଇବା କଥାରେ ଅଝଟ ହୋଇ କହିଥିଲୁ, ''ସାନ ମା', ତୁମେ ହିଁ ମୋ ଜନନୀ ହେବାକୁ ଯୋଗ୍ୟା । ସତ୍ୟ ପ୍ରତିଷ୍ଠା ପାଇଁ, ତୁମେ ମୋ ପାଇଁ କିଛି ତ୍ୟାଗ କରିପାରିବନି?'' ମୁଁ ହସିଥିଲି ତୋ ପ୍ରଶ୍ନ ଶୁଣି । ବକଟେ ପିଲା, 'ସତ୍ୟ' ଓ 'ତ୍ୟାଗ'ର କି ଅର୍ଥ ଜାଣିଛି ଯେ ଏମିତି କହୁଛି । ଅଥଚ ମୁଁ ରତ୍ନୁଣୀ ମା' ତୋ ମନ ବୁଝିବା ପାଇଁ ସେଦିନ ତ୍ରିବାର ସତ୍ୟ କରି ଦେଇଥିଲି । ତୁ ମତେ ଜାକି ଧରି ମୋ ମୁହଁରେ ଅସଂଖ୍ୟ ଚୁମା ଦେଇ ଚାଲିଥିଲୁ । ତୁ ମହାପୁରୁଷଙ୍କ ଭଳି ମୋତେ କହିଥିଲୁ- ''ଜାଣ ସାନ ମା', ସତ୍ୟ ସହ ପିତା, ମାତା, ସ୍ୱାମୀ, ଗୁରୁ, ଜୀବନ କେହି ସମାନ ନୁହେଁ । ଆଉ ସେ ସତ୍ୟ ପ୍ରତିଷ୍ଠା ପାଇଁ ମୁଁ ଜନ୍ମ ହୋଇଛି ରାବଣ ନାମକ ଏକ ମହାପ୍ରତାପୀ ରାକ୍ଷସକୁ ନିଧନ କରିବା ପାଇଁ, ଅଯୋଧ୍ୟାର ରାଜା ହେବା ପାଇଁ ନୁହେଁ ।'' ମୁଁ ଭୟରେ ନିର୍ବାକ୍ ହୋଇ ଯାଇଥିଲି । ତୁ କହି ଚାଲିଲୁ, ''ମା', ଦିନେ ଅସୁର ସହ ଯୁଦ୍ଧରେ, ତୁମ ଦିଗ୍‌ଦର୍ଶନ ଓ ସହଚର୍ଯ୍ୟରେ ବାପା ବିଜୟୀ ହେବା ପରେ ତୁମକୁ ଦୁଇଟି ବର ଦେଇଥିଲେ । ମୋ ପାଇଁ ସେ ବର ଦୁଇଟି ତୁମେ ମାଗିପାରିବ ମା'?'' ମୋ ଆଖିରୁ ଅଶ୍ରୁବହି ଚାଲିଥିଲା । ଧର୍ମ ସଂସ୍ଥାପନା ପାଇଁ ନର ଦେହ ନେଇ ଜନ୍ମିଥିବା ମୋ ରାମଚନ୍ଦ୍ର ପାଇଁ, ମୁଁ ବର ମାଗିପାରିବିନି ତ, ଆଉ କାହା ପାଇଁ ମାଗିବି । ତୁ କହିଥିଲୁ- '' ମା', ତୁମ ବର ମାଧ୍ୟମରେ ହିଁ, ମୁଁ ଚଉଦବର୍ଷ ବନବାସ ଯାଇ ରାବଣ ବଧ କରିବି ଓ ସେ ଚଉଦବର୍ଷ ଭରତ ଅଯୋଧ୍ୟାରେ ରାଜା ହେବ ।'' ମୁଁ ଅନ୍ଧ ହୋଇଗଲି । ମୁଁ ମୂକ ହୋଇଗଲି । ମୁଁ ଅଥର୍ବ ହୋଇ ଯାଉ ଯାଉ ଭୂ-ପତିତ ହେଲି । ମୋ ମୁଣ୍ଡରୁ ରକ୍ତସ୍ରାବ ହେଲା । ଆଉ ସେଦିନ ତୁ ତୋର କୁନି କୋଳରେ ମୋର ମୁଣ୍ଡ ରଖି ଆଉଁସି ଦେଉ ଦେଉ ମୋ ପେଟ ଉପରେ ବସିଯାଇ କହିଲୁ, ''ତୁମେ କ'ଣ କେବଳ ଭରତର ମା', ସାନ ମା'? ତୁମେ କ'ଣ ମୋତେ କ୍ଷୀର ଦେବନି?'' ଏହା କହୁ କହୁ ମୋ ସ୍ତନରେ ତୁ ମୁହଁ ଲଗାଇ ଦେଇଥିଲୁ । ପେଟ ଭରି କ୍ଷୀର ଖାଇ ସାରି ହସି ହସି କହିଲୁ- ''ତୁମ ବକ୍ଷର ଅମୃତ ସତରେ କେତେ ମିଠା ମା' ! ତେବେ ତୁମ ମନ, ହୃଦୟ କେତେ ମିଠା ହୋଇନଥିବ !!''

ମୁଁ ମୋର ଅମୃତର ସନ୍ତାନକୁ ଅପଲକ ନୟନରେ ଅନାଇ ରହିଥିଲି । ତୁ କହିଚାଲିଥିଲୁ, ''ତୁମେ ବ୍ୟସ୍ତ ହୁଅନି ମା', ମୋ ସତ୍ୟରକ୍ଷା ପାଇଁ ତୁମେ ଚଉଦବର୍ଷ କଷ୍ଟ ପାଇଲେ ମଧ୍ୟ ମୁଁ ଅଯୋଧ୍ୟାରେ ପହଞ୍ଚି ମୁହୂର୍ତ୍ତକରେ ସବୁ ଯନ୍ତ୍ରଣାକୁ ଧୋଇ ଧାଇ ଦେବି । ଦ୍ୱାପର ଯୁଗରେ ଦେବକୀ ଗର୍ଭରେ କଂସ ନିଧନ ପାଇଁ ଜନ୍ମ ହେଲେ ବି, ତୁମେ ମୋ' ମା' ଯଶୋଦା ହେବ, ଆଉ ମୁଁ ତୁମ କୋଳରେ ତୁମର କାହ୍ନୁ ହୋଇ ବଞ୍ଚି ରହିବି । ଦ୍ୱାପର ପରେ କଳିଯୁଗରେ ଶ୍ରୀକ୍ଷେତ୍ରରେ ମୁଁ ଦାରୁବ୍ରହ୍ମ ହୋଇ ପୂଜା ହେବି ଏବଂ ତୁମେ ମୋ ମାଉସୀମା ହୋଇ ପ୍ରତିବର୍ଷ ନିଜ ହାତରେ ମୋତେ ପିଠା ଖୁଆଇ ଦେବ ।'' ତୋ କଥା ଶୁଣୁ ଶୁଣୁ ମୋ ରକ୍ତସ୍ରାବ ବନ୍ଦ ହୋଇଯାଇଥିଲା । ତୁ କ'ଣ ମନ୍ତ୍ରତନ୍ତ୍ର ଜାଣିଥିଲୁ କିରେ? ମୁଁ ଯେମିତି ନବଜନ୍ମ ପାଇଥିଲି ।

ଦିନେ ସେ ଦୁଃଖର ଦିନ ଆସିଲା । ତୋ ସତ୍ୟ ପାଇଁ ମୁଁ ସ୍ୱାମୀ ଦଶରଥଙ୍କୁ ବର ମାଗିଲି । ତୁ ବନବାସ ଗଲୁ । ସାରା ରାଜ୍ୟବାସୀ ଅଶ୍ରୁ ବିସର୍ଜନ ସହ ମୋତେ ନାନା କଟୁ ମନ୍ତବ୍ୟ ଦେଇ ଭର୍ତ୍ସନା କଲେ । ତିନିରାଣୀଙ୍କଠାରୁ ମୋତେ ଅଧିକ ଭଲ ପାଉଥିବା ଦଶରଥ, ମୋର ଏ ବିଶ୍ୱାସଘାତକତାକୁ ଘୃଣା କରୁ କରୁ ଦେହତ୍ୟାଗ କଲେ । ତୋ ପାଇଁ ମୁଁ ମୋ ଶଙ୍ଖା ସିନ୍ଦୂର ଭୁଲିଗଲି, ଏ ସମାଜକୁ ଭୁଲିଗଲି, ଲୋକନିନ୍ଦାକୁ ଭୁଲିଗଲି । ଦୀର୍ଘ ଚଉଦବର୍ଷ ଧରି ମୋ ପୁଅ ଭରତ ମୋ ମୁହଁ ଚାହିଁଲାନି । ତୋ ପାଇଁ ମୁଁ ପୁତ୍ରସୁଖ ହରାଇଲି । ତୋ କଥା ମାନି କେବେ ବି ଲୁହ ଗଡାଇ ନଥିଲି । କି ମା' କିରେ ମୁଁ ? ଅପେକ୍ଷା କରିଥିଲି, ତୁ କେବେ ଫେରିବୁ ।

ତୁ ଫେରିଥିଲୁ ସୀତା ଓ ଲକ୍ଷ୍ମଣ ସହ । ସମସ୍ତେ କୌଶଲ୍ୟାଙ୍କ ପାଦ ସ୍ପର୍ଶ କଲା ବେଳେ ତୁ ସମଗ୍ର ଅଯୋଧ୍ୟାବାସୀଙ୍କ ସମ୍ମୁଖରେ ଦଉଡି ଆସି, ମୋ ବକ୍ଷରେ





ଗଡିଯାଇ ଆନନ୍ଦାଶ୍ରୁ ଢ଼ାଳୁ ଢ଼ାଳୁ ମୋ କାନରେ ଚୁପି ଚୁପି କହିଥିଲୁ- '' ଦେଖିଲ ମା', ମୁଁ କିପରି ତୁମ ନିକଟକୁ ଫେରି ଆସିଛି ।'' ମୋ ଆଖିରୁ ଲୁହ ବୋହିଗଲା । ସେଦିନ ଯେମିତି ତୋ ଦୋଷ ପାଇଁ, ମୁଁ ଭୋଗିଥିବା ଦଣ୍ଡ ନିମନ୍ତେ ସାରା ବିଶ୍ୱବାସୀଙ୍କଠାରୁ କ୍ଷମା ମାଗି ନେଇଥିଲୁ । ମୁଁ ଜୀବନ ଫେରି ପାଇଥିଲି ଦୀର୍ଘ ୧୪ବର୍ଷ ପରେ । ତୋ କଥା ମାନି ଭରତ ସେଦିନ ମୋତେ ପାଦ ଧରି ମା' ବୋଲି ଡାକିଥିଲା । ହେଲେ ଯେଉଁଦିନ ସୀତାର ଅଗ୍ନି ପରୀକ୍ଷା ହେଲା ? ଯେଉଁଦିନ ସେ ଧରିତ୍ରୀ କୋଳରେ ଲୀନ ହୋଇଗଲା ? ନିଜ ସ୍ତ୍ରୀକୁ ଏତେ ଦଣ୍ଡ ଦେଇପାରିଲୁ ରଘୁନନ୍ଦନ । ମୁଁ କିନ୍ତୁ ନିଜକୁ କ୍ଷମା ଦେଇପାରୁନଥିଲି । ମୋ ଯୋଗୁଁ ସିନା ତୁ ବନବାସ ଗଲୁ । ଆଉ ପ୍ରଜାଙ୍କ କଥାରେ ସୀତାକୁ ଏତେ ଦଣ୍ଡ ଦେଲୁ । ରାତ୍ରିର ତୃତୀୟ ପ୍ରହରରେ ମୁଁ ତୋ ପାଖେ ଦାବି ରଖିଥିଲି- ''ସୀତାକୁ ଏତେ ଦଣ୍ଡ ଦେବାର ଅଧିକାର ତୋର ନାହିଁ ରାମଚନ୍ଦ୍ର ।'' ତୁ ହସି ହସି କହିଥିଲୁ, ''ମା' ସୀତାଙ୍କ ଜନ୍ମ ହେବାର କାର୍ଯ୍ୟ ଶେଷ ହୋଇଛି ।'' ସୀତା ହଜିଗଲା, ମିଶିଗଲା ଆଉ ଏକ ପୃଥିବୀରେ । ତୋତେ କ'ଣ ସ୍ତ୍ରୀ ବିଚ୍ଛେଦ ପାଇଁ କାଣିଚାଏ ଦୁଃଖ ନଥିଲା? ଅନୁଶୋଚନା ନଥିଲା ?

ସୀତା ଯିବା ପରେ ପରେ ମୋର ମରଣ ଦିନ ପାଖେଇ ଆସିଲା । ମୋ ମୃତ୍ୟୁର ଅନ୍ତିମ ସମୟରେ ମୋ ମୁଣ୍ଡକୁ କୋଳରେ ଧରି କେତେ ଲୁହ ବୁହାଇଦେଲୁ । କେତେ ରାତି ଅନିଦ୍ରା ରହିଗଲୁ । ସେ ଲୁହ ଥିଲେ ତ ସମୁଦ୍ର ହୋଇ ସମାଜର ଦୁଃଖ ଯନ୍ତ୍ରଣାକୁ ଧୋଇ ଦେଇପାରିଥାନ୍ତା! ସେ ରାତି ରାତି ଅନିଦ୍ରା ବଦଳରେ ତୁ ନିଦ୍ରା ଯାଇ ରାମରାଜ୍ୟ ପ୍ରତିଷ୍ଠା ପାଇଁ ଅନେକ କଥା ତ ଭାବି ପାରିଥାନ୍ତୁ ! ସେଦିନ ମୋ ଯନ୍ତ୍ରଣାକୁ ତୁ ସହି ପାରିନଥିଲୁ । ମୋ ମୁହଁକୁ ତୋଳି ଧରି କାନ୍ଦି କାନ୍ଦି କହୁଥିଲୁ- ''ସାନ ମା' ତୁମ ବିଚ୍ଛେଦରେ କିଏ ମୋତେ ଅମୃତ ଦେବ? କିଏ ପୋଡପିଠା ଦେବ? ତୁମେ ବଞ୍ଚିରହ ସାନ ମା'! ନହେଲେ ଏ ରାମଚନ୍ଦ୍ର ଯେ ନିଃସ୍ୱ ହୋଇଯିବ ।'' ତୋର ହାତ ଦୁଇଟିକୁ ଆବେଗରେ ଜାବୁଡି ଧରି ନେଇଥିଲି । ମୋର ଛାତି ଭିତରଟା ଶୂନ୍ୟ ହୋଇଯାଉଥିଲା । ମୁଁ ଭାବି ପାରୁନଥିଲି ମୋ ରଘୁନନ୍ଦନକୁ ଛାଡି ସତରେ କ'ଣ ମୁଁ ଚାଲିଯାଇପାରେ! ଭାବଗ୍ରାହୀର ମନ ବୁଝିପାରି ସେଦିନ ମୋ ଶୁଷ୍କ ବକ୍ଷରୁ ଅମୃତ ବୋହି ଚାଲୁଥିଲା, ତୋର ଅସହାୟତାର ତୃଷ୍ଣା ନିବାରଣ ପାଇଁ ।

ଏହା ଭିତରେ ମୋର ଯଶୋଦା ଜନ୍ମ ସରିଯାଇଛି । କାହ୍ନୁ ହୋଇ ମୋର ପାଖରେ ରହି ଶେଷରେ ଦ୍ୱାରକାରେ ପ୍ରଭାସ ଯଜ୍ଞ ଦିନ ସାରାବିଶ୍ୱ ଆଗରେ ଦେବକୀଙ୍କୁ ପ୍ରତ୍ୟାଖ୍ୟାନ କରି ତୁ ଦଉଡି ଆସିଛୁ ମୋର ରଘୁନନ୍ଦନ, ନନ୍ଦନନ୍ଦନ, ବଂଶୀବଦନ, କଳାକାହ୍ନୁ ହୋଇ ।

ଆଉ ଆଜି...! ସମସ୍ତେ ତୋ ନିକଟକୁ ଯାଉଛନ୍ତି । ସମସ୍ତେ ତୋତେ ଦେଖୁଛନ୍ତି । ସମସ୍ତେ ତୋତେ ମାଗୁଛନ୍ତି । ହେଲେ ମୁଁ ଆଉ କେତେଦିନ ଏ ବଡଦାଣ୍ଡରେ ତୋତେ ବରଷକେ ଥରେ ପୋଡପିଠା ଖୁଆଇବା ପାଇଁ ଅପେକ୍ଷା କରି ରହିବିରେ ଚକାଆଖି ! ଏମିତି କେତେ ଯୁଗ ଧରି ତୋତେ ସ୍ନେହ, ବାତ୍ସଲ୍ୟ ଓ ମମତା ଦେଇ ପାଳି ଚାଲିଥିବି । କୈକେୟୀ ହୋଇ ତୋତେ କ୍ଷୀର ପିଆଇଛି । କୋଳରେ ଧରିପାରିଛି । ଯଶୋଦା ହୋଇ ଲବଣି ସର ଖୁଆଇଛି । ଆଉ ମଥୁରା ଯିବା ଦିନ କେତେ ଲୁହ ଢ଼ାଳିଛି । ଆଉ ଏ ଜନ୍ମରେ ତୁ ଦାରୁବ୍ରହ୍ମ ହୋଇ ବସିରହିଛୁ ଶ୍ରୀମନ୍ଦିରରେ । ଆଉ ମୁଁ ଶିଳାମୂର୍ତ୍ତିଟିଏ ହୋଇ ଏହି ବଳଗଣ୍ଡିରେ ତୋତେ ଅନାଇ ରହିଛି । ନା ତୋତେ ଛୁଇଁପାରୁଛି, ନା ତୋତେ ପ୍ରତିଦିନ ଦେଖିପାରୁଛି । ଏହି ଜନ୍ମରେ ଏତେ ଦୂରତ୍ୱକୁ ମୁଁ ସହିପାରୁନିରେ କାଳିଆସୁନା । ବରଂ ତୁ ପଥର ଖଣ୍ଡେ କରି ତୋ ବାଇଶ ପାହାଚରେ ରଖିଦେ । ବରଂ ତୁ କାଠ ଖଣ୍ଡ କରି ତୋ ଦେହରେ ଖଞ୍ଜିଦେ । ବରଂ ତୁ ମୋତେ କଦଳୀ ପଟୁକା ଟିଏ କରି ତୋର ହୃଦପଲ୍ଲବରେ ରଖିଦେ ସେହି ମୋର ସ୍ୱର୍ଗ । କଳିଯୁଗ ପରା ଶେଷ ହେଲାଣିରେ । ସତ୍ୟ ପ୍ରତିଷ୍ଠା ପାଇଁ ତୋର ପରା ପୁନର୍ଜନ୍ମ ହେବ । ତେବେ ଡେରି କାହିଁକି । ତୁ ଆ... ଆବିର୍ଭାବ ହୁଅ...ବଇଂଶୀ ବଜେଇଦେ, ଶଙ୍ଖ ଫୁଙ୍କିଦେ ।

ମୁଁ ଜାଣେ, ତୁ ନିଶ୍ଚୟ ମୋ କଥା ରଖିବୁ । ସତ୍ୟଯୁଗର ଆରମ୍ଭ ପାଇଁ ଗୋଟିଏ ଯୁଗ ନହେଲେ ବି



ଦିନଟିଏ ପାଇଁ ମୋ ଗର୍ଭରୁ ଜନ୍ମ ହୋଇଯା'ରେ କାଳିଆ! ଦେଖିବୁ ସେହି ଗୋଟାଏ ଦିନର ମାତୃତ୍ୱକୁ ନେଇ ମୁଁ କେତେ ଖୁସି ହେବି । ଧନ, ମାନ, ଗୋପ, ଲକ୍ଷ୍ମୀ ବଦଳରେ ତୋତେ ମାଗିବି, ମୋତେ ଆହୁରି କଷ୍ଟ ଦେ, ଆହୁରି ଦୁଃଖ ଦେ ଓ ଆହୁରି ଯନ୍ତ୍ରଣା ଦେ । କ'ଣ ବିଶ୍ୱାସ ହେଉନି? ତୋର ବିଶ୍ୱାସ ହେଉ ବା ନ ହେଉ ଏହି ଆଶାରେ ଶ୍ରୀକ୍ଷେତ୍ର ବଡଦାଣ୍ଡର ବଳଗଣ୍ଡିଠାରେ ତୋତେ ଅପେକ୍ଷା କରିଛି ।

ସତ୍ୟ, ତ୍ୟାଗ, ଆଦର୍ଶ ଓ ଭକ୍ତିର ଚାରିଛକର ସିଂହଦ୍ୱାରରେ, ଆଶା ଓ ବିଶ୍ୱାସର ଆଖିରେ ମୁଁ ଦେଖୁଛି ଦୀପ, ଧୂପ, ଚନ୍ଦନ ଓ ନୈବେଦ୍ୟ ଭିତରେ ତୁ କିପରି ସର୍ବବ୍ୟାପୀ ହୋଇଯାଉଛୁ । ତୁ ହୋଇଯାଉଛୁ ମୋର ସେ ଦିନର ରଘୁନନ୍ଦନ ଓ ମୟୂର ପୁଛିଆ କଳାକାହ୍ନୁ । ଅନୁଭବର ଆଖିରେ ମୁଁ ଦେଖୁଛି ତୁ ଶିଶୁଟିଏ ହୋଇ ମୋ ସ୍ତନକୁ ଭିଡି ଧରୁଛୁ । ଆତ୍ମପ୍ରସାଦରେ ବିଭୋର ହୋଇ ଝୁଣ୍ଟି ପଡୁଥିବା ବେଳେ ମୋ ଅସହାୟତା ଦେଖି ଶିଶୁଟିଏ ହୋଇ ତୁ କିପରି ବଢ଼ାଇ ଦେଉଛୁ ମୋତେ ପ୍ରତ୍ୟାଶାର ବାଡି!!

---

ଗୁଣ୍ଡିଚା ବିହାର, ସର୍ବୋଦୟ ନଗର, ପୁରୀ-୨

# କେବେ ହସି ଉଠିବ ବଡ଼ଦାଣ୍ଡ

ଦିଲୀପ କୁମାର ସ୍ୱାଇଁ

ତମକୁ ଦେଖିବି ବୋଲି
ଏତେ ବାଟରୁ ଆସିଲି ଯେ
ହଠାତ୍ ସମଗ୍ର ପୃଥିବୀ ସ୍ତବ୍ଧ ହୋଇଗଲା ବିସ୍ମୟରେ ।
ମୋ ପରି ଅନେକ ଗୁହାରିଆଙ୍କୁ
ଫେରାଇ ଦିଆଗଲା ବଡ଼ଦାଣ୍ଡରୁ
ଘୋଷଣା କରାଗଲା ତାଲା ବନ୍ଦ
କରୋନାର ସନ୍ଦେହୀ ପୃଥିବୀ
ତମ ଆଉ ମୋ ଭିତରେ ତିଆରିଲା ଦୁର୍ଗଟିଏ
ମୁଁ ଲୁହରେ ଗୃହବନ୍ଦୀ
ବନ୍ଦ ହୋଇଗଲା ମୋ ପାଇଁ
ତୁମ କରୁଣାର ଯାଉଁଳି କବାଟ ।
ମୁଁ ତ ମେଘମାଳାଙ୍କୁ ଚାହିଁ
ମୁଗ୍ଧ ହେବା ମଣିଷ
କୋଇଲିର ସ୍ୱରରେ ମୋ ସ୍ୱରକୁ ମିଶାଇ
ତମ ପାଖକୁ ପଠାଇ ଦିଏ ମୋର ଦୁଃଖ ।
ନୀଳ ଆକଶର ନୀଳିମାରେ ମୋ ଲୁହକୁ ଫେଣ୍ଟି
ଆଙ୍କିଦିଏ ତୁମର ପ୍ରତିବିମ୍ବ ।
ହେ ବିମୁଗ୍ଧ ଈଶ୍ୱର !
ତୁମେ ଥିବ ଭକ୍ତ ବିରହରେ ରତ୍ନ ସିଂହାସନରେ
ବାଇଶ ପାହାଚ ଖୋଜୁଥିବେ ଦୁଃଖର ପାଦଶବ୍ଦ ।
କେଉଁଠି ତୁମେ ହେ ଈଶ୍ୱର !
କେବେ ପୃଥିବୀ ସୁନ୍ଦର ହେବ କୁହ
କୋଇଲିର ଗୀତରେ ଖୁସି ହେବ ବସନ୍ତ ଋତୁ
ଆକାଶର ମେଘମାଳାକୁ ଦେଖି
ହସି ଉଠିବ ବଡ଼ଦାଣ୍ଡ ।

---

ସ୍ନାତକୋତ୍ତର, ଓଡ଼ିଆ ବିଭାଗ
ସାମନ୍ତ ଚନ୍ଦ୍ରଶେଖର ସ୍ୱୟଂଶାସିତ ମହାବିଦ୍ୟାଳୟ, ପୁରୀ







# ବିଲାତରେ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନର ଅଶୀ ବର୍ଷ ପୂର୍ତ୍ତି ଓ ବିଜୁ ଜନ୍ମ ଶତବାର୍ଷିକୀ ଉତ୍ସବ

ମନୋରଞ୍ଜନ ପାଣିଗ୍ରାହୀ

ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନର ଅଶୀବର୍ଷ ପୂର୍ତ୍ତି ଏବଂ ୨୦୧୬ ମସିହାରେ ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକଙ୍କ ଜନ୍ମ ଶତବାର୍ଷିକୀ ଆଡମ୍ବରରେ ପାଳନ କରିବା ପାଇଁ ଓଡିଶା



ସରକାର ସ୍ଥିର କଲେ । ସରକାରୀ ସ୍ତରରେ ନିଷ୍ପତ୍ତି ନିଆଗଲା ଯେ ଏଇ ଦୁଇଟି ଐତିହାସିକ ଘଟଣାକୁ କେବଳ ଓଡିଶାରେ ନୁହେଁ, ଭାରତର ପ୍ରମୁଖ ସହର ଏବଂ ଭାରତ ବାହାରେ ମଧ୍ୟ ଧୁମ୍‌ଧାମ୍‌ରେ ପାଳନ କରାଯିବ । ମୁଁ ସେତେବେଳେ ସୂଚନା ଓ ଲୋକ ସମ୍ପର୍କ ବିଭାଗର କମିଶନର-ତଥା-ଶାସନ ସଚିବ ଭାବରେ କାର୍ଯ୍ୟ କରୁଥାଏ । ସରକାରଙ୍କର ବିଭିନ୍ନ କାର୍ଯ୍ୟକ୍ରମକୁ ରୂପାୟନ କରିବାର ଦାୟିତ୍ୱ ମୁଖ୍ୟତଃ ଦୁଇଟି ବିଭାଗ ଯଥା ସୂଚନା ଓ ଲୋକ ସମ୍ପର୍କ ବିଭାଗ ଏବଂ ପର୍ଯ୍ୟଟନ ଓ ସଂସ୍କୃତି ବିଭାଗ ଉପରେ ନ୍ୟସ୍ତ ଥିଲା । ଏହି ଦୁଇଟି ଉତ୍ସବ ସରକାରୀ ସ୍ତରରେ ପାଳନ କରିବା ପାଇଁ ଦୁଇଟି 'ଲୋଗୋ' ପ୍ରସ୍ତୁତ କରାଗଲା । ଓଡିଶାର କେଉଁ ଜାଗାରେ ଉତ୍ସବ ପାଳନ କରାଯିବ ତାହା ସ୍ଥିରୀକୃତ ହେଲା । ଗୁରୁତ୍ୱପୂର୍ଣ୍ଣ ବିଷୟ ହେଲା ବିଦେଶରେ କେଉଁ ସହରରେ ଉତ୍ସବ ପାଳିତ ହେବ । ବର୍ଷବ୍ୟାପୀ ସମସ୍ତ କାର୍ଯ୍ୟକ୍ରମର ରୂପରେଖ ପ୍ରସ୍ତୁତ କରାଯାଇ ଏକ କମିଟି ଦ୍ୱାରା ଅନୁମୋଦନ କରାଗଲା । ଭାରତ ବାହାରେ ନିଶ୍ଚିତ ଭାବରେ ଯୁକ୍ତ ରାଜ୍ୟର ରାଜଧାନୀ ଲଣ୍ଡନ ସରକାରଙ୍କର ପ୍ରଥମ ପସନ୍ଦ ହେଲା । ଏହା ହେବା ସ୍ୱାଭାବିକ । ବ୍ରିଟିଶ୍ ସାମ୍ରାଜ୍ୟବାଦର ୨୦୦ ବର୍ଷର ପରାଧୀନତାରେ ଯେଉଁ ଭାରତବର୍ଷ ରହିଥିଲା, ସେହି ସାମ୍ରାଜ୍ୟର ନାଭିକେନ୍ଦ୍ର ହେଉଛି ଲଣ୍ଡନ ସହର । ବକିଂହାମ୍ ପ୍ୟାଲେସ୍ ହେଉଛି ଔପନିବେଶିକତାର ପ୍ରତୀକ ଏବଂ ବ୍ରିଟିଶ୍ ପାର୍ଲିଆମେଣ୍ଟ ହେଉଛି ସାମ୍ରାଜ୍ୟବାଦ ଜଗତୀକରଣର କେନ୍ଦ୍ରବିନ୍ଦୁ । ବ୍ରିଟିଶ୍ ଶାସନରେ ଦୀର୍ଘ ବର୍ଷ ଶାସିତ ହେଲାପରେ ଆମର ମାନସିକତାର ଏହି ଦେଶ ପ୍ରତି ଏକ ସ୍ୱତନ୍ତ୍ର ମୋହ ନିହିତ ଅଛି । ଭାରତୀୟମାନଙ୍କୁ ଆଧୁନିକତାର ସ୍ୱାଦ ଚଖାଇବାରେ ବ୍ରିଟିଶ୍ ଶିକ୍ଷା ଓ ସଂସ୍କୃତିର ପ୍ରମୁଖ ଅବଦାନ ଅଛି ।

ଲଣ୍ଡନ ସହର କଥା ଉଚ୍ଚାରଣ କଲେ ବ୍ରିଟିଶ୍ ପାର୍ଲିଆମେଣ୍ଟ ସହିତ ଟାୱାର ବ୍ରିଜ୍, ଲଣ୍ଡନ ବ୍ରିଜ୍ ମନରେ ଭାସି ଉଠେ । ଅନେକ ଭାରତୀୟ ଏବଂ ଓଡିଆମାନେ ମଧ୍ୟ ଲଣ୍ଡନ ସହରରେ ଅଧୁନା ବସବାସ କରୁଛନ୍ତି । ଏହି ବ୍ରିଟିଶ୍ ରାଜତ୍ୱ ସମୟରେ ୧୯୩୬ ମସିହାରେ ଓଡିଶା





ପ୍ରଥମ ଭାଷାଭିତ୍ତିକ ସ୍ୱତନ୍ତ୍ର ପ୍ରଦେଶରେ ଗଠିତ ହୋଇଥିଲା । ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନରେ ଯେଉଁ ସୁଦୀର୍ଘ ଐତିହାସିକ ଘଟଣାର ପ୍ରବହମାନ ଧାରା ଜଡିତ, ସେଥିରେ ଅନେକ ଇଂରେଜ ବ୍ୟକ୍ତିତ୍ୱ ଓ ଅନୁଷ୍ଠାନମାନଙ୍କର ମଧ୍ୟ ଭୂମିକା ଅଛି । ଲର୍ଡ କର୍ଜନଙ୍କଠାରୁ ଆରମ୍ଭ କରି ସାଇମନ୍ କମିଶନ, ଓଡନେଲ୍ କମିଟି, ଅଟ୍‌ଲି ସବ୍‌କମିଟି ମଧ୍ୟ ଏହି ଧାରାରେ ସାମିଲ୍ ।

ଲଣ୍ଡନ ସହରରେ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନର ୮୦ବର୍ଷ ପୂର୍ତ୍ତି ଏବଂ ବିଜୁ ଜନ୍ମ ଶତବାର୍ଷିକୀ ପାଳନର ରୂପରେଖ ପ୍ରସ୍ତୁତିର ଅଂଶସ୍ୱରୂପ ଓଡିଶା ସୋସାଇଟି ଅଫ୍ ୟୁନାଇଟେଡ୍ କିଙ୍ଗ୍‌ଡମ୍ (OSUK)ସହ ଯୋଗାଯୋଗ କରାଗଲା । ସେମାନେ ମଧ୍ୟ ଓଡିଶା ସରକାରଙ୍କର ମିଳିତ ଆନୁକୂଲ୍ୟରେ ଏହି ଉତ୍ସବ ପାଳନ କରିବା ପାଇଁ ଆଗ୍ରହୀ ଥିଲେ । ଓ.ଏସ୍.ୟୁ.କେ.ର ସଭାପତି ସୁଶ୍ରୀ ୱେଲସ୍ ଏ ବିଷୟରେ ତଦାନୀନ୍ତନ ବରିଷ୍ଠ ମନ୍ତ୍ରୀ ଏବଂ ବର୍ତ୍ତମାନର ବିଧାୟକ ଶ୍ରୀଯୁକ୍ତ ଦେବୀ ପ୍ରସାଦ ମିଶ୍ର ଏବଂ ପର୍ଯ୍ୟଟନ ଓ ସଂସ୍କୃତି ମନ୍ତ୍ରୀ ଶ୍ରୀ ଅଶୋକ ଚନ୍ଦ୍ର ପଣ୍ଡାଙ୍କ ସହ ପାରମ୍ପରିକ ଆଲୋଚନା କରିଥିଲେ । ସେସମୟର ସୂଚନା ଓ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀଯୁକ୍ତ ଅତନୁ ସବ୍ୟସାଚୀ ନାୟକଙ୍କ ସହ ମଧ୍ୟ ବିଭାଗ ତରଫରୁ ଆଲୋଚନା କରାଗଲା । ତିନିଜଣ ମନ୍ତ୍ରୀ, ସୂଚନା ଓ ଲୋକ ସମ୍ପର୍କ ବିଭାଗର ଶାସନ ସଚିବ (ମୁଁ) ଏବଂ ପର୍ଯ୍ୟଟନ ପ୍ରମୁଖ ଶାସନ ସଚିବଙ୍କୁ ନେଇ ଏକ ବୈଠକ ଡକାଯାଇ ଉତ୍ସବର ବିସ୍ତୃତ ରୂପରେଖ ତିଆରି ହେବା ସହିତ ଖର୍ଚ୍ଚର ଏକ ଅଟକଳ ପ୍ରସ୍ତୁତ କରାଗଲା । ବୈଠକରେ ସ୍ଥିର ହେଲା ଯେ ଓଡିଶା ସରକାରଙ୍କର ତିନୋଟି ବିଭାଗ ସୂଚନା ଓ ଲୋକ ସମ୍ପର୍କ, ପର୍ଯ୍ୟଟନ ଏବଂ ସଂସ୍କୃତି ବିଭାଗ, ଓଡିଶା ସୋସାଇଟ୍ ଅଫ୍ ୟୁକେକୁ ସ୍ଥିରୀକୃତ ୨୨ଲକ୍ଷ ଅନୁଦାନ ରାଶି ମିଳିତ ଭାବରେ ଯୋଗାଇଦେବେ । ଓ.ଏସ୍.ୟୁ.କେ.ତରଫରୁ ଯୁକ୍ତ ରାଜ୍ୟର ବିଭିନ୍ନ ସ୍ଥାନରେ ଯେଉଁ ଉତ୍ସବ ପାଳିତ ହେବ (ମୁଖ୍ୟ ଉତ୍ସବ ଲଣ୍ଡନକୁ ମିଶାଇ) ସେଥିରେ ମାନ୍ୟବର ତିନିଜଣ ମନ୍ତ୍ରୀ ଯୋଗଦେବେ, ତା'ସହିତ ସୂଚନା ଓ ଲୋକ ସମ୍ପର୍କ ବିଭାଗର ଶାସନ ସଚିବ ଏବଂ ନିର୍ଦ୍ଦେଶକ ଯୋଗଦେବେ ।

ଓ.ଏସ୍.ୟୁ.କେ.ର ସୁଶ୍ରୀ ୱେଲ୍‌ସ ଇଂଲଣ୍ଡର କେଉଁ ଜାଗାରେ କେଉଁ ତାରିଖରେ କି ପ୍ରକାର ଉତ୍ସବ ପାଳନ କରାଯିବ ତାହାର ସବିଶେଷ ତଥ୍ୟ ଆମ ପାଖକୁ ଇ–ମେଲ୍‌ରେ ପଠାଇଲେ । ତା'ସହିତ ୟୁ.କେ. ଭ୍ରମଣ କରିବା ପାଇଁ ନିମନ୍ତ୍ରଣ ପତ୍ର ମଧ୍ୟ ପଠାଇଲେ, ଯାହାଫଳରେ ଆମ୍ଭେମାନେ ଭିସା ପାଇବା ପାଇଁ ଅସୁବିଧା ହେବ ନାହିଁ । ଯଥା ସମୟରେ ଭିସା ପାଇଁ ଆବେଦନ ପତ୍ର ପଠାଗଲା । ମନ୍ତ୍ରୀମାନଙ୍କର ରାଜନୈତିକ ଭିସା ଦରକାର । ସେଥିପାଇଁ ବୈଦେଶିକ ବ୍ୟାପାର ବିଭାଗର ଅନୁମତି ଲୋଡା । ମୁଁ ଏବଂ ସୁଶୀଲ ବାବୁ (ସୂଚନା ଓ ଲୋକ ସମ୍ପର୍କ ବିଭାଗର ନିର୍ଦ୍ଦେଶକ) ଯଥା ସମୟରେ ଭିସା ପାଇଁ ଦିଲ୍ଲୀ ଗଲୁ । ସୁଶ୍ରୀ ୱେଲ୍‌ସଙ୍କ ଆମନ୍ତ୍ରଣକ୍ରମେ ଓ.ଏସ୍.ୟୁ.କେ.ର ଉତ୍ସବରେ ଯୋଗ ଦେବା ପାଇଁ ଆମ୍ଭେ ଯାଉଥିବାରୁ ଭିସା ପାଇବା ପାଇଁ ଅସୁବିଧା ହେଲା ନାହିଁ । ଆମ ଦୁଇଜଣଙ୍କର ଭିସା ପ୍ରସ୍ତୁତ ହୋଇଗଲା । ଓ.ଏସ୍.ୟୁ.କେ. ଓଡିଶାରୁ ଏକ ସାଂସ୍କୃତିକ ଦଳକୁ ଆମନ୍ତ୍ରଣ କରିଥିଲେ ଇଂଲଣ୍ଡର ବିଭିନ୍ନ ଜାଗା ବୁଲି ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରିବା ପାଇଁ । ଏହି ଦଳରେ ଓଡିଶାର ସ୍ୱନାମଧନ୍ୟ କଳାକାରମାନେ ଥିଲେ ଯଥା ବିଶିଷ୍ଟ କଣ୍ଠଶିଳ୍ପୀ ଗୁରୁ ରାମହରି ଦାସ୍, ଖ୍ୟାତନାମା ମର୍ଦ୍ଦଳ ବାଦକ ଶ୍ରୀ ଧନେଶ୍ୱର ସ୍ୱାଇଁ ଏବଂ ଅନ୍ୟମାନେ । ସମସ୍ତେ ନିଜ ନିଜ କ୍ଷେତ୍ରରେ ପ୍ରତିଷ୍ଠିତ ଧୁରୀଣ କଳାକାର ।

ସୁଶ୍ରୀ ୱେଲ୍‌ସଙ୍କ ସହ କଥା ହେଲାପରେ ଉତ୍ସବ ପାଳନର ଦିନ ଧାର୍ଯ୍ୟ କରାଗଲା । ଅଗଷ୍ଟ ୨୬ ତାରିଖରୁ ଅଗଷ୍ଟ ୩୧ପର୍ଯ୍ୟନ୍ତ । ଅଗଷ୍ଟ ୨୫ ତାରିଖରେ ବାଙ୍ଗାଲୋରରେ ଓଡିଶାରେ ପୁଞ୍ଜି ନିବେଶରେ ଆଗ୍ରହୀ ନିବେଶକମାନଙ୍କର ଏକ କନ୍‌କ୍ଲେଭ୍ ଅନୁଷ୍ଠିତ ହେଲା । ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ସହିତ ମନ୍ତ୍ରିମଣ୍ଡଳର କେତେଜଣ ସଦସ୍ୟ, ଉଚ୍ଚ ପଦସ୍ଥ ଅଧିକାରୀମାନେ ଏଥିରେ ଯୋଗ ଦେଇଥିଲେ । ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ଏଚ୍.ଡି.

ଦେବଗୌଡାଙ୍କୁ ଏଠାକୁ ମୁଖ୍ୟ ଅତିଥି ଭାବରେ ଆମନ୍ତ୍ରଣ କରାଯାଇଥିଲା । ବାସ୍ତବିକ ଏହା ବାଙ୍ଗାଲୋରରେ ରହୁଥିବା ପ୍ରବାସୀ ଓଡିଆମାନଙ୍କର ଏକ ଉତ୍ସବ ଥିଲା । ଏହି ଉତ୍ସବକୁ ଆହୁରି ଆକର୍ଷଣୀୟ କରିବା ପାଇଁ ଏହା ସହିତ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ଏବଂ ବିଜୁ ଜନ୍ମ ଶତବାର୍ଷିକୀ ଉତ୍ସବ ମଧ୍ୟ ଯୋଡି ଦିଆଗଲା ।

ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ଓଡିଶା ପ୍ରଦେଶ ଗଠନର ବିଭିନ୍ନ ଫଟୋ ଏବଂ ବିଜୁବାବୁଙ୍କର ଜୀବନୀ ସମ୍ବନ୍ଧୀୟ ଅନେକ ଚିତ୍ରକୁ ନେଇ ଏକ ପ୍ରଦର୍ଶନୀର ଆୟୋଜନ କରାଯାଇଥିଲା । ଅତ୍ୟନ୍ତ ସୁନ୍ଦର ଓ କମନୀୟ ଢଙ୍ଗରେ ଫଟୋଗୁଡିକୁ ବିଭିନ୍ନ ଫ୍ରେମ୍‌ରେ ସ୍ଥାନିତ ହୋଇଥାଏ । ପ୍ରବାସୀ ଓଡିଆମାନେ ଓଡିଶା ଗଠନର ସୁବିସ୍ତୃତ ଇତିହାସ ଏବଂ ବିଜୁବାବୁଙ୍କ କର୍ମମୟ ଜୀବନ ଚରିତ ସମ୍ବନ୍ଧୀୟ ଫଟୋ ପ୍ରଦର୍ଶନୀ ଦେଖି ଆମୋଦିତ ହେଉଥାଆନ୍ତି । ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ସହିତ ମନ୍ତ୍ରୀ ଶ୍ରୀ ଅରୁଣ ସାହୁ, ଶ୍ରୀ ଅତନୁ ସବ୍ୟସାଚୀ ଏହି ଉତ୍ସବରେ ଯୋଗ ଦେଇ ଫଟୋ ପ୍ରଦର୍ଶନୀ ବୁଲି ଦେଖିଥିଲେ । ବାଙ୍ଗାଲୋରରେ ଆୟୋଜିତ ଏହି ଉତ୍ସବ ଥିଲା ଲୋକାରଣ୍ୟ । ପ୍ରବାସୀ ଓଡିଆମାନଙ୍କ ମଧ୍ୟରେ ଅପୂର୍ବ ଉତ୍ସାହ ଓ ଉଦ୍ଦୀପନା । ସାଂସ୍କୃତିକ ଦଳ ଓଡିଶାରୁ ଯାଇ ନୃତ୍ୟ ଏବଂ ସଙ୍ଗୀତ ପରିବେଷଣ କରିଥିଲେ । ମୋଟ ଉପରେ ବାଙ୍ଗାଲୋରରେ ଆୟୋଜିତ ଏହି ଓଡିଆ ଉତ୍ସବ ମହାଆଡମ୍ବରରେ ସମାହିତ ହୋଇଥିଲା ।

ମୁଁ ଏବଂ ସୁଶୀଲ ବାବୁ ଏହି ଉତ୍ସବ ପରେ ବାଙ୍ଗାଲୋରରୁ ବମ୍ବେ ହୋଇ ଲଣ୍ଡନ ଯିବାର ଥିଲା । ମନ୍ତ୍ରୀ ୩ଜଣ ବିଭିନ୍ନ କାରଣରୁ ଲଣ୍ଡନ ଗମନରୁ ଓହରି ଯାଇଥିଲେ । ଜେଟ୍ ଏୟାର୍ ୱେଜ୍‌ର ବିମାନରେ ଆମେ ଦୁଇଜଣ ବମ୍ବେରୁ ଲଣ୍ଡନ ଅଭିମୁଖେ ପ୍ରସ୍ଥାନ କଲୁ । ସାତ, ଆଠ ଘଣ୍ଟାର ଏହି ଯାତ୍ରା ଖୁବ୍ ଉପଭୋଗ୍ୟ ଥିଲା । ଖାଦ୍ୟ ପାନୀୟ ସାଙ୍ଗକୁ ସିଟ୍‌ରେ ଲାଗିଥିବା ଟି.ଭି.ରେ ବିଭିନ୍ନ ହିନ୍ଦୀ ଚଳଚିତ୍ର ଦେଖିବାର ମଜା ଯାତ୍ରାକୁ ସୁଖପ୍ରଦ କରିଥିଲା ।

ଅଗଷ୍ଟ ୨୬ ତାରିଖ ସକାଳୁ ଜେଟ୍ ଏୟାର୍ ୱେଜ୍‌ର ଏହି ବିମାନ ଲଣ୍ଡନର ହିଥ୍ରୋ ବିମାନବନ୍ଦରରେ ପହଞ୍ଚିଲା । ଆମକୁ ସ୍ୱାଗତ ଜଣାଇବା ପାଇଁ ଜଣେ ଓଡିଆ ବନ୍ଧୁ ଫୁଲ ଧରି ଆସିଥିଲେ । ତାଙ୍କ ଗାଡିରେ ଆମକୁ ନେଇ ଆମ ପାଇଁ ଉଦ୍ଦିଷ୍ଟ 'ରମଦା ଇଣ୍ଟରନ୍ୟାସ୍‌ନାଲ୍' ହୋଟେଲ୍‌ରେ ଆମକୁ ଛାଡିଲେ । ଓ.ଏସ୍.ୟୁ.କେ.ର ଉତ୍ସବ ଲଣ୍ଡନ ମଧ୍ୟରେ ଅବସ୍ଥିତ ଏକ ସ୍କୁଲର ଅଡିଟୋରିୟମ୍‌ରେ ଆୟୋଜନ କରାଯାଇଥିଲା । ୨୬ ତାରିଖ ଅପରାହ୍ଣରେ ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନ । ଓଡିଆ ବନ୍ଧୁ ମଧ୍ୟାହ୍ନ ଭୋଜନ ପରେ ଆମକୁ ସେ ସ୍ଥାନକୁ ନେବା ପାଇଁ କହିଥିଲେ । ସେହି ହିସାବରେ ଆମେ ଗାଧୁଆ ପାଧୁଆ କରି ମଧ୍ୟାହ୍ନ ଭୋଜନ ଖାଇ ଉତ୍ସବରେ ଯୋଗ ଦେବା ପାଇଁ ପ୍ରସ୍ତୁତ ହୋଇ ବସିଥିଲୁ । ଠିକ୍ ସମୟରେ ବନ୍ଧୁ ଆସି ତାଙ୍କ ଦାମୀ ଗାଡିରେ ଆମକୁ ଉତ୍ସବ ସ୍ଥଳକୁ ନେଇଗଲେ । ସେଠାରେ ଉପସ୍ଥିତ ପ୍ରବାସୀ ଓଡିଆ ଯାହା ମଧ୍ୟରେ ବିଶିଷ୍ଟ ଡାକ୍ତର, ଇଞ୍ଜିନିୟର୍, ଅଧ୍ୟାପକ ଇତ୍ୟାଦି ଥିଲେ ଆମକୁ ସମ୍ବର୍ଦ୍ଧନା ଜଣାଇଲେ । ଓଡିଶା ସରକାରଙ୍କ ତରଫରୁ ପ୍ରତିନିଧି ହୋଇ ଆମେ ଯାଇଛୁ ଏହି ଉତ୍ସବରେ ଯୋଗ ଦେବା ପାଇଁ ଏବଂ ପ୍ରବାସୀ ଓଡିଆମାନଙ୍କୁ ମାନସିକ ପ୍ରୋତ୍ସାହନ ଯୋଗାଇବା ପାଇଁ । ଉତ୍ସବସ୍ଥଳ ମୁଖରିତ । ସ୍ୱାଭାବିକ ଭାବରେ ଆମ କଥୋପକଥନ ସଂସ୍କୃତିର ସଙ୍କେତ ସ୍ୱରୂପ ଉଚ୍ଚ ସ୍ୱରରେ କଥାବାର୍ତ୍ତା ସ୍ଥାନକୁ କୋଳାହଳମୟ କରିଦେଇଛି । ଉତ୍ସବ ସ୍ଥଳର ପ୍ରବେଶ ପଥରେ ଓଡିଶାର ଦର୍ଶନୀୟ ସ୍ଥାନ ଯଥା ଜଗନ୍ନାଥ ମନ୍ଦିର, ବିଶ୍ୱ ଐତିହ୍ୟ କୋଣାର୍କ ସୂର୍ଯ୍ୟ ମନ୍ଦିର, ଲିଙ୍ଗରାଜ ମନ୍ଦିର, ରାଜରାଣୀ, ସମଲେଶ୍ୱରୀ ମନ୍ଦିର, ହୀରାକୁଦ ଡ୍ୟାମ୍, ରାଉରକେଲା ଇସ୍ପାତ କାରଖାନା ଇତ୍ୟାଦିର ବଡ ବଡ ଫଟୋ ଚିତ୍ରର ଷ୍ଟାଣ୍ଡି ସ୍ଥାନିତ ହୋଇଛି । ମଝିରେ ମଝିରେ ପ୍ରବାଦ ପୁରୁଷ ବିଜୁବାବୁଙ୍କର କଟ୍‌ଆଉଟ ଲଗାଯାଇଛି । ଉତ୍ସବସ୍ଥଳ ସୁସଜ୍ଜିତ ଏବଂ ସୁଶୋଭିତ । ଔପଚାରିକତା ଦୃଷ୍ଟିରୁ ଓ.ଏସ୍.ୟୁ.କେ.ର ପରିଚୟପତ୍ର ଆମ ଗଳାରେ ଲଗାହେଲା । ଓଡିଆମାନଙ୍କର ଏହି ସାଂସ୍କୃତିକ ପ୍ରବାହରେ ଆମେ ଦୁଇଜଣ ବି ସାମିଲ୍ ହୋଇଗଲୁ ।





ବିଲାତରେ ଦୀର୍ଘ ଦିନ ଧରି ରହି ଆସୁଥିଲେ ମଧ୍ୟ ସମସ୍ତେ ଓଡିଆରେ କଥାବାର୍ତ୍ତା ହେଉଛନ୍ତି । ଓଡିଆ ନାରୀମାନଙ୍କର ଚିରାଚରିତ ହାବଭାବ, କଥା କହିବାର ଶୈଳୀ ଦେଖି ଆମକୁ ଖୁସି ଲାଗୁଥାଏ ଯେ ଏତେ ଦିନ ବିଲାତ ମାଟିରେ ରହିଥିଲେ ମଧ୍ୟ ମନ ଏବଂ ହୃଦୟ ଓଡିଆ ସଂସ୍କୃତି ମନସ୍କ । ଏହା ହିଁ ଜନ୍ମ ଭୂମିର ଦୁର୍ବାର ଆକର୍ଷଣ- ନିଜ ଜନ୍ମ ମାଟି ପ୍ରତି ଆତ୍ମୀୟତା ଓ ମୋହ, ନିଜ ଦେଶ ଓ ରାଜ୍ୟ ପ୍ରତି ଅହେତୁକ ଭଲପାଇବା । ଓଡିଆ ସ୍ତ୍ରୀ ଲୋକମାନେ ଶାଢୀ ପରିହିତା, ନିଜେ ସୁଶ୍ରୀ ୱେଲ୍‌ସ ଏକ ସୁନ୍ଦର ସମ୍ବଲପୁରୀ ଶାଢୀ ପିନ୍ଧିଛନ୍ତି । ସୁଶ୍ରୀ ହେଉଛନ୍ତି ସମ୍ବଲପୁରର ଝିଅ ଯିଏ ଜଣେ ଇଂଲିଶ୍ ଭଦ୍ର ବ୍ୟକ୍ତିଙ୍କୁ ବିବାହ କରିଛନ୍ତି । ଅନ୍ୟମାନଙ୍କ ପୋଷାକ ପରିପାଟୀରେ ଓଡିଆ ମାଟିର ବାସନା ବାରି ହୋଇପଡୁଛି ।

ଯେଉଁ ସ୍କୁଲରେଏହି ଉତ୍ସବର ଆୟୋଜନ ହୋଇଥିଲା ତାହା ୧୮୦୪ ମସିହାରେ ସ୍ଥାପିତ ହୋଇଥିବା ଏକ ପବ୍ଲିକ୍ ସ୍କୁଲ୍ । ମୁଁ ସ୍କୁଲର କ୍ୟାମ୍ପସ୍ ଏବଂ କ୍ଲାସ୍ ରୁମ୍ ବୁଲି ଦେଖୁଥାଏ । ଓଡିଶାରେ ବର୍ତ୍ତମାନର ରେଭେନ୍ସା କଲିଜିଏଟ୍ ସ୍କୁଲ୍ ୧୮୬୮ ମସିହାରେ ସ୍ଥାପିତ ହୋଇଥିଲା । ଲଣ୍ଡନର ଏହି ପବ୍ଲିକ୍ ସ୍କୁଲ୍‌ଟି ତା'ଠାରୁ ମଧ୍ୟ ପୁରୁଣା । ଏହିଥିରୁ ଅନୁମେୟ ଇଂଲଣ୍ଡ ଜାତି ଶିକ୍ଷା ଦୃଷ୍ଟିରୁ କାହିଁକି ଅନ୍ୟମାନଙ୍କଠାରୁ ଆଗୁଆ ଥିଲା । ସ୍କୁଲର ପ୍ରାଙ୍ଗଣରେ ପ୍ରବାସୀ ଓଡିଆମାନଙ୍କର ପିଲାମାନେ ବୁଲାବୁଲି କରୁଥାଆନ୍ତି । ଅପରାହ୍ନରେ ସ୍କୁଲ୍‌ର ଅଡିଟୋରିୟମ୍‌ରେ ଏକ ସଭାର ଆୟୋଜନ କରାହେଲା । ଇଂଲଣ୍ଡରେ ରହୁଥିବା ଅଧିକାଂଶ ଓଡିଆମାନଙ୍କର ଏହା ମଧ୍ୟ ଏକ ବାର୍ଷିକ ବନ୍ଧୁମିଳନ । ଅଧିକାଂଶଙ୍କର ପିଲାମାନେ ଇଂଲଣ୍ଡରେ ଜନ୍ମ ଏବଂ ସେମାନେ ଚମତ୍କାର ଇଂରାଜୀରେ କଥାବାର୍ତ୍ତା କରୁଥାନ୍ତି । ଖଣ୍ଟି ଖଣ୍ଟି ଓଡିଆ ମଧ୍ୟ କହୁଛନ୍ତି । ପିଲାମାନଙ୍କର କଥାବାର୍ତ୍ତା ଚାଲିଚଳଣିରେ କିନ୍ତୁ ଉତ୍କଳୀୟ ସଂସ୍କୃତି ପ୍ରତିଫଳିତ । ପିଲାମାନଙ୍କର ଖୁସି ଯେ ସ୍କୁଲ୍‌ରେ ଅଡିଟୋରିୟମ୍‌ରେ ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନ କରାଯାଇଛି । ଏହା ଏକ ଇନ୍‌ହାଉସ୍ ପ୍ରୋଗ୍ରାମ୍ । ଇଂଲଣ୍ଡରେ ବସବାସ କରୁଥିବା ପ୍ରବାସୀ ଓଡିଆଙ୍କର ପିଲାମାନେ ଏଥିରେ ଗୀତ ଓ ନୃତ୍ୟ ପରିବେଷଣ କରିବେ । ଯଥା ସମୟରେ ସାଂସ୍କୃତିକ କାର୍ଯ୍ୟକ୍ରମ ଆରମ୍ଭ ହେଲା । ଓ.ଏସ୍.ୟୁ.କେ.ର ସଭାପତି, ସମ୍ପାଦକ ଏବଂ ଅନ୍ୟ କର୍ମକର୍ତ୍ତାମାନେ ଉପସ୍ଥିତଥାନ୍ତି । ଅଡିଟୋରିୟମ୍ ପରିପୂର୍ଣ୍ଣ । ମୁଁ ଏବଂ ସୁଶୀଲ ବାବୁ ସେଠାରେ ଆଗଧାଡିରେ ବସିଥାଉ । ସମ୍ପାଦକ ଉପସ୍ଥିତ ଜନତାଙ୍କୁ ଆମ୍ଭମାନଙ୍କୁ ପରିଚୟ କରାଇଦେଇ କହିଲେ ଯେ ''ଓଡିଶା ସରକାରଙ୍କର ପ୍ରତିନିଧି ଭାବେ ସଂସ୍କୃତି ସଚିବ ଏବଂ ନିର୍ଦ୍ଦେଶକ ଆମ୍ଭମାନଙ୍କ ଦ୍ୱାରା ଆୟୋଜିତ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନର ୮୦ବର୍ଷ ପୂର୍ତ୍ତି ଏବଂ ବିଜୁ ଜନ୍ମ ଶତବାର୍ଷିକୀ ଉତ୍ସବରେ ଯୋଗଦେବା ପାଇଁ ସୁଦୂର ଓଡିଶାରୁ ଆସିଛନ୍ତି ।'' ସମବେତ ଜନତାଙ୍କର ମୃଦୁ କରତାଳିରେ ଏହା ସମର୍ଥନ ଲାଭ କଲା ।

ସାଂସ୍କୃତିକ କାର୍ଯ୍ୟକ୍ରମର ପ୍ରଥମ ଆକର୍ଷଣ ଥିଲା ଓଡିଶୀ ନୃତ୍ୟ । ଡାକ୍ତରୀ ପାଠ ପଢୁଥିବା ବିଲାତରେ ଜନ୍ମିତ ଝିଅଟିଏ ଅତି ଚମତ୍କାର ଓଡିଶୀ ନୃତ୍ୟ ପ୍ରଦର୍ଶନ କଲା । ଓଡିଶୀ ନୃତ୍ୟର ବିଷୟ ବସ୍ତୁକୁ ସେ ଉଭୟ ଓଡିଆ ଏବଂ ଇଂରାଜୀରେ ବ୍ୟାଖ୍ୟା କରୁଥାଏ । ଓଡିଶୀ ନୃତ୍ୟ ଆଜି ବିଶ୍ୱରେ ପ୍ରସାରିତ ହୋଇଛି । ପ୍ରାୟ ସବୁ ବଡ ବଡ ଦେଶମାନଙ୍କରେ ଓଡିଶୀ ସ୍କୁଲ୍ ସ୍ଥାପିତ ହେଲାଣି । ବିଦେଶୀମାନେ ମଧ୍ୟ ଏହି ନୃତ୍ୟ ପ୍ରତି ଆକର୍ଷିତ ହୋଇ ଏହାକୁ ଶିକ୍ଷା କରୁଛନ୍ତି । ଲଣ୍ଡନରେ ଜନ୍ମିତ ଓଡିଆ ଝିଅଟି ନିଜ ସଂସ୍କୃତିର ମହକରେ ଆକୃଷ୍ଟ ହୋଇ ଆମ ଶାସ୍ତ୍ରୀୟ ନୃତ୍ୟ ଓଡିଶୀକୁ ବିଦେଶୀ ମାଟିରେ ପରିବେଷଣ କରୁଛି ତାହା ଭାବିଲେ ଖୁସି ଲାଗୁଥାଏ । ଓଡିଶୀ ନୃତ୍ୟ ପରେ କିଛି ପୁରୁଣା ଓଡିଆ ସିନେମା ଗୀତକୁ ପିଲାମାନେ ଗାଇଲେ । ସମ୍ବଲପୁରୀ ନୃତ୍ୟ ମଧ୍ୟ ପରିବେଷିତ ହେଲା, ମଝିରେ ମଝିରେ ସଭାପତି ଓ ସମ୍ପାଦକ ମଞ୍ଚକୁ ଯାଇ ଓଡିଆରେ କିଛି ବକ୍ତବ୍ୟ ପ୍ରଦାନ କରୁଥାନ୍ତି । ସାଂସ୍କୃତିକ ଉତ୍ସବ ମଝିରେ ଓ.ଏସ୍.ୟୁ.କେ.ର ସମ୍ପାଦକ ଏହାର ସମବେତ ସଦସ୍ୟମାନଙ୍କୁ କିଛି ଉଦ୍‌ବୋଧନ ଦେବା ପାଇଁ ମୋତେ ମଞ୍ଚ ଉପରକୁ ଆମନ୍ତ୍ରଣ କଲେ । ଉପସ୍ଥିତ ସଜ୍ଜନ





ଶ୍ରୋତୃ ମଣ୍ଡଳୀକୁ ଦେଖି ମୁଁ ଅଭିଭୂତ ହୋଇଗଲି । ପ୍ରେକ୍ଷାଳୟରେ ବସି ମୁଁ ଗୋଟାଏ କଥା ଭାବୁଥାଏ ଯେ ସୁଦୂର ଲଣ୍ଡନ ମାଟିରେ ପାଖାପାଖି ୫୦୦ ଓଡିଆ ଏକଜୁଟ ହୋଇ ଓଡିଆ ସଂସ୍କୃତି ଏବଂ ଅସ୍ମିତାକୁ ପ୍ରଚାର କରୁଛନ୍ତି । ମନେପଡିଲା ଉତ୍କଳଗୌରବ ମଧୁସୂଦନ ଦାସଙ୍କ ୧୮୯୭ ମସିହାରେ ପ୍ରଥମ ବିଲାତ ଯାତ୍ରା । ଓଡିଶାର ସେ ଥିଲେ ବିଧିବଦ୍ଧ ଭାବେ ପ୍ରଥମ ବିଲାତଯାତ୍ରୀ । ସାତ ସମୁଦ୍ର ତେର ନଈ ପାର ହୋଇ ସେ ଯାଇଥିଲେ ବିଲାତକୁ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ପ୍ରତି ବ୍ରିଟିଶ୍ କର୍ତ୍ତୃପକ୍ଷଙ୍କ ଧ୍ୟାନ ଆକର୍ଷଣ କରିବା ପାଇଁ । ସେତେବେଳେ ସେ ଭାରତ ସଚିବ ଲର୍ଡ ହାମିଲ୍ଟନ୍‌କୁ ଭେଟି ସ୍ୱତନ୍ତ୍ର ଓଡିଶା ଗଠନ ପାଇଁ ଦାବି କରିଥିଲେ । ବ୍ରିଟିଶ୍ ପାର୍ଲିଆମେଣ୍ଟର କେତେକ ସଦସ୍ୟଙ୍କୁ ମଧ୍ୟ ଭେଟିଥିଲେ । ବିଲାତ ଗଲାବେଳେ ଗୋଟିଏ ସୁଟ୍‌କେଶ୍‌ରେ କିଛି କାରୁକାର୍ଯ୍ୟ ବିମଣ୍ଡିତ ତାରକସୀ ପଦାର୍ଥ ନେଇଥିଲେ । ଲଣ୍ଡନ ସହରରେ ଉତ୍କଳୀୟ ହସ୍ତକଳା ନୈପୁଣ୍ୟକୁ ପ୍ରଦର୍ଶନ କରିବା ଥିଲା ଏହାର ଉଦ୍ଦେଶ୍ୟ ।

ସେତେବେଳେ ମଧୁବାବୁ 'ଓଡିଆ ଆର୍ଟ୍ ୱେୟାର୍‌ସ' ଗଠନ କରିଥିଲେ ଏବଂ ଏହି ସଂସ୍ଥାରୁ ଉତ୍ପନ କାରୁକାର୍ଯ୍ୟକୁ ଲଣ୍ଡନରେ ପ୍ରଦର୍ଶନ କରିବା ଥିଲା ତାଙ୍କର ଲକ୍ଷ୍ୟ । ଇଂରେଜମାନେ ଜାଣନ୍ତୁ ଓଡିଶାର ଚାରୁ, କାରୁକଳା, ସଂସ୍କୃତି କେତେ ସମୃଦ୍ଧ । ମଧୁବାବୁଙ୍କର ଉତ୍କଳର ଅସ୍ତିତ୍ୱ ଓ ଅସ୍ମିତାକୁ ବିଲାତ ମାଟିରେ ପ୍ରତିପାଦନ କରିବାର ଏ ଥିଲା ଏକ ଅନନ୍ୟ ପ୍ରୟାସ । ଉର୍ଦ୍ଧ୍ୱ ଶହେ ବର୍ଷ ପରେ ଏତେ ସଂଖ୍ୟକ ଓଡିଆ ସମବେତ ହୋଇ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନର ସ୍ମୃତିକୁ ଆଜି ବିଲାତ ମାଟିରେ ସାଂସ୍କୃତିକ ଉତ୍ସବ ଓ ପ୍ରଦର୍ଶନୀ ମାଧ୍ୟମରେ ମନେ ପକାଇବା ନିଶ୍ଚୟ ପ୍ରଶଂସନୀୟ । ମୁଁ ମୋର ସଂକ୍ଷିପ୍ତ ବକ୍ତବ୍ୟରେ କହିଲି ''ଜଣେ ଓଡିଆ ମଧୁବାବୁ ୧୦୦ବର୍ଷ ତଳେ ବିଲାତ ଆସିଥିଲେ ଓଡିଆ ଭୂଖଣ୍ଡର ଅସ୍ତିତ୍ୱକୁ ଏକ ପରିଚୟ ମାଗିବା ପାଇଁ । ଆଜି ଶହ ଶହ ଓଡିଆ ସମବେତ ହୋଇ ଲଣ୍ଡନରେ ଉତ୍ସବ ଆୟୋଜନ କରୁଛନ୍ତି ଅସ୍ତିତ୍ୱ ପାଇଁ ନୁହେଁ, ଶକ୍ତି ପ୍ରଦର୍ଶନ ପାଇଁ । ସେତେବେଳେ ପ୍ରଦର୍ଶନୀରେ ସ୍ଥାନ ପାଇଥିଲା ଓଡିଶାର ହସ୍ତକଳାର ନୈପୁଣ୍ୟ । ବର୍ତ୍ତମାନର ପ୍ରଦର୍ଶନୀରେ ସ୍ଥାନ ପାଇଛି ହସ୍ତକଳା ସହ ହୀରାକୁଦ ଡ୍ୟାମ୍, ରାଉରକେଲା ଇସ୍ପାତ କାରଖାନା, ମିଗ୍ ବିମାନ କାରଖାନା ଇତ୍ୟାଦି ବିଜ୍ଞାନ ଓ ବୈଷୟିକ ଜ୍ଞାନର ଶ୍ରେଷ୍ଠ ନିଦର୍ଶନ । ଏହା ହିଁ ଏକ ଜାତିର ପ୍ରଗତିର ମାପକାଠି । ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନର ୮୦ବର୍ଷ ମଧ୍ୟରେ ଓଡିଶାରେ କେତେ କଳକାରଖାନା ଗଢି ଉଠିଲାଣି, ରାସ୍ତାଘାଟ, ବନ୍ଧବାଡ ନିର୍ମିତ ହେଲାଣି– ବିକାଶର ପଥରେ ଓଡିଶା ଆଜି ଦ୍ରୁତ ଧାବମାନ ।'' ସମସ୍ତଙ୍କ ମନକୁ ବୋଧହୁଏ ଏହା ପାଇଲା, ଯାହା କରତାଳିରେ ପ୍ରତୀୟମାନ ହେଲା ।

ସାଂସ୍କୃତିକ ଉତ୍ସବ ସରିଲା । ସମସ୍ତଙ୍କ ପାଇଁ ରାତ୍ରି ଭୋଜନର ବ୍ୟବସ୍ଥା । କର୍ମକର୍ତ୍ତାମାନେ ଆମ ଦୁଇଜଣଙ୍କୁ ସସମ୍ମାନେ ରାତ୍ରି ଭୋଜନ ପାଇଁ ଆମନ୍ତ୍ରଣ କଲେ । ରାତ୍ରି ଭୋଜନରେ ଓଡିଆ ଖାଦ୍ୟ ଓ ବ୍ୟଞ୍ଜନ । ପୋଟଳ ତରକାରୀଠାରୁ ଆରମ୍ଭ କରି କୋବି ତରକାରୀ, ବିଲାତି ବାଇଗଣ ଖଟା, ରସଗୋଲାର ସମ୍ଭାର କ୍ଷଣିକ ପାଇଁ ମତେ ଅନୁଭବ ହେଲା ଯେ ମୁଁ ଲଣ୍ଡନରେ ନାହିଁ, ଓଡିଶାରେ ଅଛି । ପ୍ରବାସୀ ଓଡିଆ ଭଦ୍ର ବ୍ୟକ୍ତି ଓ ଭଦ୍ର ମହିଳା ନିଜ ମଧ୍ୟରେ ଉଚ୍ଚ ସ୍ୱରରେ କଥୋପକଥନ କରୁଥାନ୍ତି । ଚିରାଚରିତ ଓଡିଶା ଟିପ୍ପଣୀ, ସମ୍ଭାଷଣ କଥାବାର୍ତ୍ତାରେ ସ୍ଥାନ ପାଉଥାଏ । ଇଂଲଣ୍ଡରେ ରହିଲେ ମଧ୍ୟ ପରସ୍ପର ମଧ୍ୟରେ ବର୍ଷକରେ ଥରେ ଏହି ଉତ୍ସବ ଆୟୋଜନ ଅବସରରେ ଦେଖା ସାକ୍ଷାତ ହୁଏ । ତେଣୁ ମନରେ ଖୁବ୍ ଉତ୍ସାହ ଓ ଆବେଗ । ରାତ୍ରି ଭୋଜନ ଏକ ଓଡିଆ ପରିବେଶ ମଧ୍ୟରେ ସମାପ୍ତ ହେଲା । ପରବର୍ତ୍ତୀ ଉତ୍ସବର ଆୟୋଜନ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ଅଡିଟୋରିୟମ୍‌ରେ ଅଗଷ୍ଟ ୨୯ ତାରିଖରେ ।

ସୁଶୀଲ୍ ବାବୁ ଏବଂ ମୁଁ ସ୍ଥିର କଲୁ ଲଣ୍ଡନରେ ଦୁଇଦିନ ମଧ୍ୟରେ କିଛି ଦର୍ଶନୀୟ ସ୍ଥାନ ବୁଲି ଦେଖିବୁ । ଓ.ଏସ୍.ୟୁ.କେ.ର ସଭାପତି ସୁଶ୍ରୀ ୱେଲ୍‌ସଙ୍କ ପତି କ୍ରିସ୍ ଜଣେ ଇଂରେଜ ଭଦ୍ର ବ୍ୟକ୍ତି । ସେ ଆମ ଦୁଇଜଣଙ୍କୁ ଲଣ୍ଡନ ବୁଲାଇବେ ବୋଲି ସ୍ଥିର ହେଲା । କ୍ରିସ୍ ୱେଲ୍‌ସ





ଯଥା ସମୟରେ ଆସି ତାଙ୍କର କାର୍‌ରେ ଆମକୁ ଲଣ୍ଡନ ବୁଲାଇଲେ । କ୍ରିସ୍‌ଙ୍କର ଜନ୍ମ ଲଣ୍ଡନରେ । କିଛି ଦିନ ପାଇଁ ସେ କଲିକତାରେ ଚାକିରି କରୁଥିଲେ ଯେଉଁଠାରେ ସୁଶ୍ରୀଙ୍କ ସହ ତାଙ୍କର ପରିଚୟ ହୋଇଥିଲା ଏବଂ ପରେ ସେମାନେ ବିବାହ କରିଥିଲେ । କ୍ରିସ୍‌ଙ୍କୁ ଲଣ୍ଡନର ଗଳି କନ୍ଦି ଜଣା । ସେ ପ୍ରଥମେ ଆମକୁ ଟାୱାର୍ ମ୍ୟୁଜିୟମ୍ ନେଲେ । ମୁଁ ପୂର୍ବରୁ ୨୦୦୦ ମସିହାରେ ଲଣ୍ଡନ ଯାଇଥିଲି, ମାତ୍ର ସେତେବେଳେ ଟାୱାର ମ୍ୟୁଜିୟମ୍ ବୁଲିବାକୁ ସମୟ ମିଳିନଥିଲା । କ୍ରିସ୍ ଟାୱାର ମ୍ୟୁଜିୟମ୍ ବିଷୟରେ ସଂକ୍ଷିପ୍ତ ଧାରଣା ଦେଲେ । ଭାରତୀୟମାନଙ୍କ ପାଇଁ ଏହି ମ୍ୟୁଜିୟମର ଆକର୍ଷଣ ହେଲା ଯେ ଏହିଠାରେ ବିଶ୍ୱ ପ୍ରସିଦ୍ଧ ''କୋହିନୂର୍ ହୀରା'' ସ୍ଥାନିତ କରାଯାଇଛି । 'କୋହିନୂର ହୀରା' ଭାରତର ସମ୍ପଦ ମାତ୍ର ଅନେକ ହାତ ଦେଇ ଏହା ଶେଷରେ ଇଂଲଣ୍ଡର ଟାୱାର ମ୍ୟୁଜିୟମରେ ରଖାଯାଇଛି । କୋହିନୂର୍ ସହିତ ଅନ୍ୟାନ୍ୟ ହୀରା ଦେଖି ଆମେ ଅଭିଭୂତ ହେଲୁ । ମୁଁ ଯଦିଓ ଆଗରୁ ଲଣ୍ଡନ ଦେଖିଥିଲି ତଥାପି ଦୁଇଦିନ ମଧ୍ୟରେ ବକିଂ ହାମ୍ ପ୍ୟାଲେସ୍, ୱେଷ୍ଟ ମିନିଷ୍ଟର ଆବେ, ପାର୍ଲିଆମେଣ୍ଟ, ହାଇଡ୍‌ପାର୍କ, ଲଣ୍ଡନ ଆଇ ଇତ୍ୟାଦି ଆଉଥରେ ବୁଲିଦେଖିଲୁ । ସୁଶୀଲ୍ ବାବୁଙ୍କର ଏହା ଥିଲା ପ୍ରଥମ ଇଂଲଣ୍ଡ ଗସ୍ତ । ସେ ଏହି ସବୁ ଦର୍ଶନୀୟ ସ୍ଥାନ ଦେଖି ଖୁସିରେ ବିଭୋର ହୋଇପଡୁଥାନ୍ତି ।

ଅଗଷ୍ଟ ୨୯ ତାରିଖ ଦିନ ସନ୍ଧ୍ୟାବେଳେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ଅଡିଟୋରିୟମ୍‌ରେ ସାଂସ୍କୃତିକ ଉତ୍ସବ ଅନୁଷ୍ଠିତ ହେବାର ଥାଏ । କ୍ରିସ୍ ପ୍ରାତଃ ଭୋଜନ ପରେ ଆମେ ରହୁଥିବା ହୋଟେଲ୍‌ରେ ଆସି ପହଞ୍ଚିଲେ । ଆମେ ତିନିଜଣ କ୍ରିସ୍‌ଙ୍କ କାର୍‌ରେ କେମ୍ବ୍ରିଜ୍ ଅଭିମୁଖେ ଗମନ କଲୁ । କେମ୍ବ୍ରିଜ୍ ଲଣ୍ଡନରୁ ଦୁଇ ତିନି ଘଣ୍ଟାର ରାସ୍ତା । କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ପହଞ୍ଚି ବିଶ୍ୱବିଦ୍ୟାଳୟ ଅଧୀନସ୍ଥ କେତୋଟି କଲେଜ ଦେଖିଲୁ । କିଙ୍ଗ୍‌ସ କଲେଜର କ୍ୟାମ୍ପସ୍ ଖୁବ୍ ସୁନ୍ଦର–ବିସ୍ତୃତ ସବୁଜ ବନାନୀ, ପାଖରେ କ୍ୟାମ୍ ନାମକ ଛୋଟ ନଈ ବହିଯାଇଛି । ନଈ ମଧ୍ୟରେ ନୌକାରେ କିଛି ଲୋକ ବିହାର କରୁଛନ୍ତି । କିଙ୍ଗସ୍ କଲେଜରେ ଏକଦା ଯୁବରାଜ ଚାର୍ଲସ ପାଠ ପଢୁଥିଲେ । କିଙ୍ଗ୍‌ସ କଲେଜକୁ ଲାଗି ଟ୍ରିନିଟ୍ କଲେଜ ଯେଉଁଠାରେ ପୂର୍ବତନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ୍ ନେହେରୁ, ଡଃ ମନମୋହନ ସିଂହ ଇତ୍ୟାଦି ପଢୁଥିଲେ । ଏହାର କ୍ୟାମ୍ପସ୍ ମଧ୍ୟ ଖୁବ୍ ସୁନ୍ଦର । ତା'ପରେ ଲାଗିଲାଗି ଅନେକ କଲେଜ ଅଛି । ସବୁ କଲେଜ ବହୁ ପୁରୁଣା । କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ପାଇଁ କ୍ୟାମ୍ବ୍ରିଜ୍ ସହର । ବିଶ୍ୱବିଦ୍ୟାଳୟକୁ ନେଇ ସହର ଗଢ଼ିଉଠିଛି । ଆଠ ଶହ ବର୍ଷ ତଳର ବିଶ୍ୱବିଦ୍ୟାଳୟ ।

ଯଥା ସମୟରେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ଅଡିଟୋରିୟମ୍‌ରେ ସାଂସ୍କୃତିକ କାର୍ଯ୍ୟକ୍ରମ ଆରମ୍ଭ ହେଲା । ଗୁରୁ ରାମହରି ଦାସ୍, ଗୁରୁ ଧନେଶ୍ୱର ସ୍ୱାଇଁ ପ୍ରମୁଖଙ୍କୁ ସେଠାରେ ଦେଖି ଏକ ନୂତନ ଭାବାବେଗ ଜାଗ୍ରତ ହେଲା ଯେ ଏମାନେ ଓଡ଼ିଆ ସଂସ୍କୃତିର ଧାରକ ଏବଂ ଇଂରେଜମାନଙ୍କ ଆଗରେ ଏଇମାନେ ଆମ ସଂସ୍କୃତିର ବିଜୟ ବାନା ଉଡାଇବେ । ପ୍ରୋଗ୍ରାମ୍ ଆରମ୍ଭ ପୂର୍ବରୁ କେମ୍ବ୍ରିଜ୍‌ରେ ଏବଂ ଆଖପାଖରେ ରହୁଥିବା ଓଡିଆମାନେ ସମବେତ ହେଇଥାଆନ୍ତି । ଇଂରେଜମାନେ ସମୟାନୁବର୍ତ୍ତୀ । ସେମାନେ ଠିକ୍ ସମୟରେ ପ୍ରେକ୍ଷାଳୟରେ ପହଞ୍ଚିଲେ । ପ୍ରଥମେ ଗୁରୁ ରାମହରି ଦାସ୍ ଓଡିଶୀ ସଙ୍ଗୀତ ପରିବେଷଣ କଲେ । ବିଷୟବସ୍ତୁକୁ ଇଂରାଜୀରେ ଶ୍ରୋତାମାନଙ୍କୁ ବୁଝାଇଲେ । ତା'ପରେ ଆରମ୍ଭ ହେଲା ତାଳବାଦ୍ୟ, ବିଭିନ୍ନ ବାଦ୍ୟଯନ୍ତ୍ରକୁ ଏକ ତାଳରେ ବଜାଇବା ଏହାର ଆକର୍ଷଣ । ତାଳବାଦ୍ୟର ମାଧୁର୍ଯ୍ୟରେ ଇଂରେଜ ଶ୍ରୋତାମାନେ ତଲ୍ଲୀନ ହୋଇଯାଉଥାନ୍ତି । ଆମ ବାଦ୍ୟଶିଳ୍ପୀମାନଙ୍କର ଛନ୍ଦଯୁକ୍ତ ବାଦ୍ୟ ଶ୍ରୋତୃମଣ୍ଡଳୀରେ ପ୍ରଶଂସା ଲାଭ କରୁଥାଏ । ସାହେବମାନଙ୍କ ମଧ୍ୟରୁ କେହି କେହି ବ୍ରାଭୋ...ବ୍ରାଭୋ ବୋଲି କହୁଥାନ୍ତି ।

ମୁଁ ଆଗଧାଡିରେ ବସି ପଛକୁ ଚାହିଁ ଶ୍ରୋତାମାନଙ୍କର ପ୍ରତିକ୍ରିୟା ଦେଖୁଥାଏ । ପ୍ରାୟ ଦୁଇଘଣ୍ଟା ପ୍ରୋଗ୍ରାମ୍ ଚାଲିଲା । ମଝିରେ ସୁଶ୍ରୀ ୱେଲ୍‌ସ ମଞ୍ଚ ଉପରକୁ ଯାଇ ଇଂରାଜୀ ଭାଷାରେ ଶ୍ରୋତାମାନଙ୍କୁ ଏହି ତାଳବାଦ୍ୟର

ବିଶେଷତ୍ୱ ଉପରେ କହୁଥାନ୍ତି । ଆମର ଶିଳ୍ପୀମାନେ ଅଧିକ ଉତ୍ସାହର ସହିତ ପରିବେଷଣ କରୁଥାନ୍ତି । ସାଂସ୍କୃତିକ କାର୍ଯ୍ୟକ୍ରମ ଦର୍ଶକମାନଙ୍କର ଉଚ୍ଛ୍ୱସିତ କରତାଳି କୂଟରେ ସମାପ୍ତ ହେଲା । ଓଡିଶା ପାଇଁ ଏକ ଗୌରବର ବିଷୟ ! ମୁଁ ଏବଂ ସୁଶୀଲବାବୁ, ରାମହରିବାବୁ, ଧନେଶ୍ୱର ବାବୁ



ଏବଂ ଅନ୍ୟମାନଙ୍କୁ ସାବାସି ଦେଲୁ । ଗୁରୁ ରାମହରି ଦାସଙ୍କୁ କହିଲି ''ଅତି ଚମତ୍କାର ପରଫର୍ମାନ୍ସ୍'' । ସାହେବମାନଙ୍କ ଆଗରେ ଆମ ରାଜ୍ୟର ଟେକ ରଖିଦେଲେ । ରାମହରିବାବୁ ସ୍ମିତ ହସରେ କହିଲେ ଆମ ସଚିବ ଓ ନିର୍ଦ୍ଦେଶକ ଆମ ସହ ଅଛନ୍ତି, ତେଣୁ ଆମେ କ'ଣ ଛାଡିବୁ । ଏଇ ହେଉଛି ଆମ କଳାକାରମାନଙ୍କର ସ୍ୱାଭିମାନ ଏବଂ ଓଡିଆ ଅସ୍ମିତାକୁ ବାହାରେ ପ୍ରଦର୍ଶନ କରିବାର ଦୁର୍ବାର ପ୍ରୟାସ । କାର୍ଯ୍ୟକ୍ରମ ଶେଷରେ କିଛି ଓଡିଆମାନଙ୍କ ସହ ବାର୍ତ୍ତାଳାପ ହେଲା ଏବଂ ମୋବାଇଲ୍‌ରେ ଫଟୋ ମଧ୍ୟ ଉଠାଗଲା । ଲଣ୍ଡନ ଫେରିବା ପାଇଁ କ୍ରିସ୍ ରାଜି ହେଲେନାହିଁ । ତାଙ୍କର ଅନ୍ୟତ୍ର ଯିବାର ଥିଲା ଏବଂ ସୁଶ୍ରୀଙ୍କୁ ନେଇ ସେ ପ୍ରସ୍ଥାନ କଲେ । ସେଠାରେ ଆମର ଦେଖାହେଲେ ଡଃ ପ୍ରଶାନ୍ତ ମହାନ୍ତି । ପ୍ରାୟ ୩୫ବର୍ଷ ଧରି ସେ ଇଂଲଣ୍ଡରେ କାର୍ଯ୍ୟରତ । ସେ ଲଣ୍ଡନ ଫେରୁଥିବାରୁ ଆମଙ୍କୁ ଆମ ହୋଟେଲ୍ ପାଖରେ ଛାଡି ଦେବାକୁ ରାଜିହେଲେ । କେମ୍ବ୍ରିଜ୍ ଫେରୁଥିବା ସମୟରେ ଡଃ ମହାନ୍ତି ଓଡିଶାରେ ତାଙ୍କ ଜନ୍ମସ୍ଥାନ ଏବଂ କର୍ମସ୍ଥାନର ସ୍ମୃତି ଚାରଣ କଲେ । କେମ୍ବ୍ରିଜ୍ ପରେ ପରବର୍ତ୍ତୀ ସାଂସ୍କୃତିକ କାର୍ଯ୍ୟକ୍ରମର ସ୍ଥାନ ଥିଲା କାର୍ଡିଫ୍ । ଆମର କିନ୍ତୁ ଫେରିବାର ଥିଲା ୩୦ ତାରିଖ ରାତିରେ । ତେଣୁ ପରବର୍ତ୍ତୀ କାର୍ଯ୍ୟକ୍ରମରେ ଯୋଗଦାନ ସମ୍ଭବ ହେଲାନାହିଁ । ଯେଉଁ ବ୍ରିଟିଶ୍ ସାମ୍ରାଜ୍ୟବାଦରୁ ବହୁ କଷ୍ଟ କରି ଉତ୍କଳଗୌରବ ମଧୁସୂଦନଙ୍କ ସହିତ ଅନ୍ୟ ବରପୁତ୍ରମାନେ ବର୍ଷ ବର୍ଷ ଧରି ସଂଗ୍ରାମ କରିଥିଲେ ଯାହାର ଫଳସ୍ୱରୂପ ୧୯୩୬ ଏପ୍ରିଲ୍ ପହିଲାରେ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନ ହୋଇଥିଲା, ଆଜି ସେହି ଓଡିଶା ପ୍ରଦେଶ ଗଠନର ୮୦ବର୍ଷ ପୂର୍ତ୍ତି ଇଂଲଣ୍ଡରେ ଧୂମ୍‌ଧାମ୍‌ରେ ପ୍ରବାସୀ ଓଡିଆମାନଙ୍କ ଦ୍ୱାରା ପାଳିତ ହେଉଛି, ଯେକୌଣସି ସ୍ୱାଭିମାନୀ ଓଡିଆଙ୍କୁ ଆହ୍ଲାଦିତ କରିବ ।

ପ୍ରମୁଖ ଶାସନ ସଚିବ
ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ବିଭାଗ
ଓଡ଼ିଶା ସରକାର
ଲୋକସେବା ଭବନ, ଭୁବନେଶ୍ୱର







# ଭକ୍ତ ଗଣପତି ଭଟ୍ଟ

ଡକ୍ଟର ହେମନ୍ତ କୁମାର ଛୋଟରାୟ

ଯୁଗେ ଯୁଗେ ପ୍ରଭୁଙ୍କର ନାନା ଅବତାର ଓ ଲୀଳାରେ ଭକ୍ତଙ୍କର ନିଷ୍ଠା ଯେପରି କାରଣ ହୋଇଛି, ସେହିପରି ଏହି କଳିଯୁଗରେ ମଧ୍ୟ ଜଣେ ଭକ୍ତର ନିଷ୍ଠା ଓ ଭକ୍ତିରେ ନୀଳାଚଳ ବିହାରୀ ପ୍ରଭୁ ଶ୍ରୀଜଗନ୍ନାଥ ଏକ ନୂତନ ରୂପ ଧାରଣ କରି ଭକ୍ତ-ବିଜୟର ଯଶୋଗାଥା ସର୍ବତ୍ର କୀର୍ତ୍ତିତ କରିଛନ୍ତି । ସେହି ପରମ ଭକ୍ତ ହେଉଛନ୍ତି ଗଣପତି ଭଟ୍ଟ । ତାଙ୍କ ଧାମ ଥିଲା ସୁଦୂର କର୍ଣ୍ଣାଟ ଦେଶରେ । ଜାତିରେ ବ୍ରାହ୍ମଣ ଥିବା ସେହି ଭକ୍ତ ଦାରୁବ୍ରହ୍ମଙ୍କୁ ଦର୍ଶନ କରିବା ପାଇଁ ଶ୍ରୀକ୍ଷେତ୍ର ପୁରୀକୁ ଧାଇଁ ଆସିଥିଲେ ତାଙ୍କ ସୁଦୂର ଧାମରୁ । ସେ ଶୈଶବରୁ ଅନେକ ସମୟରେ ଐଶ୍ୱରିକ ଭାବରେ ତନ୍ମୟ ରହୁଥିଲେ । ଭଗବାନଙ୍କ ଭକ୍ତ ଯେତେବେଳେ, ତାଙ୍କ ହୃଦୟରେ ଦିବ୍ୟଗୁଣ ଜାତ ହେବା ସ୍ୱାଭାବିକ । ସେ ଥିଲେ ବିଜ୍ଞ, ସତ୍ୟନିଷ୍ଠ, ସଂଯମୀ, ନିର୍ଲୋଭୀ, ନିର୍ମୋହୀ ଓ ଦୟାଳୁ । ଶାସ୍ତ୍ର-ପୁରାଣ ଅଧ୍ୟୟନର ଫଳସ୍ୱରୂପ ସେ ସଂସାରର ନଶ୍ୱରତାକୁ ଭଲଭାବେ ବୁଝି ପାରିଥିଲେ । ଭକ୍ତଙ୍କର ଏଭଳି ଦିବ୍ୟଜ୍ଞାନ ଦେଖି ଭଗବାନ ତାଙ୍କ ପ୍ରତି ସନ୍ତୁଷ୍ଟ ଥାଆନ୍ତି ।

ଗଣପତି ଭଟ୍ଟ ଥିଲେ ଶ୍ରଦ୍ଧାଳୁ ଓ ଜଣେ ଶ୍ରେଷ୍ଠ ଯୋଗୀ । ତାଙ୍କର ଦୃଢ଼ ନିର୍ଣ୍ଣୟ ଯେ ସେ ବ୍ରହ୍ମଙ୍କ ସହିତ ଭେଟ ହେବେ । ତେଣୁ ତାଙ୍କୁ ଜ୍ଞାନୀ ଓ ପ୍ରେମୀ ଭକ୍ତ କହିବା ଯଥାର୍ଥ ହେବ । ଆର୍ତ୍ତ, ଜିଜ୍ଞାସୁ, ଅର୍ଥାର୍ଥୀଙ୍କ ଅପେକ୍ଷା ନିଷ୍କାମତା ଦୃଷ୍ଟିରେ ସେ ଶ୍ରେଷ୍ଠ । ସେ ବିବେକକୁ ଜାଗ୍ରତ କରିଛନ୍ତି । ଭଗବାନଙ୍କ ପ୍ରତି ଲୟ ଲଗାଇଛନ୍ତି । ସେ ଜାଣିଛନ୍ତି ଯେ ସଂସାରର ସବୁ ଶୁଭାଶୁଭ କର୍ମ ଈଶ୍ୱରଙ୍କ ଇଚ୍ଛାରେ ହୋଇଥାଏ । ସୃଷ୍ଟି-ସ୍ଥିତି-ପ୍ରଳୟ ମଧ୍ୟ ତାଙ୍କରି ଇଙ୍ଗିତରେ ହୋଇଥାଏ । ସ୍ଥାବର, ଜଙ୍ଗମ, ଚରାଚର ସମସ୍ତ ଜୀବ ତାଙ୍କରି ଦ୍ୱାରା ପରିଚାଳିତ ହୋଇଥାନ୍ତି । ପ୍ରାଣୀମାନେ କେବଳ ତାଙ୍କରି ପାଦପଦ୍ମଙ୍କୁ ଆଶ୍ରା କରି ଏ ଭବସାଗରରୁ ଉଦ୍ଧାର ପାଇଥାନ୍ତି । ପରଂବ୍ରହ୍ମଙ୍କୁ ଦର୍ଶନ କଲେ ପ୍ରାଣୀ ଯମ-ଯାତନା ପାଇବ ନାହିଁ, ଏସବୁ କଥା ଜାଣି ସେ ପରଂବ୍ରହ୍ମଙ୍କୁ ଦର୍ଶନ କରିବାର ଅଭିଳାଷ ମନରେ ରଖିଥାନ୍ତି ।

ଥରେ ବ୍ରହ୍ମପୁରାଣରୁ ଗଣପତି ପଢ଼ିଲେ ଯେ ନୀଳଗିରିରେ ବ୍ରହ୍ମ ବିରାଜମାନ କରିଛନ୍ତି । ତାଙ୍କୁ ଯେଉଁମାନେ ଦର୍ଶନ କରନ୍ତି, ସେମାନେ ଯମଯାତନା ଭୋଗ କରନ୍ତି ନାହିଁ । ଏକଥା ଜାଣି ଗଣପତିଙ୍କ ମନରେ ଆଲୋଡ଼ନ ସୃଷ୍ଟି ହେଲା । ତାଙ୍କ ମନ କାହିଁ କେଉଁ ଅଜଣା ଆନନ୍ଦରେ ପୁଲକିତ ହୋଇଉଠିଲା । କୋଟିନିଧି ପାଇଲା ପରି ସେ ଚଳଚଂଚଳ ହୋଇଉଠିଲେ । ବ୍ରହ୍ମ ଦର୍ଶନ ପାଇଁ ତାଙ୍କ ମନ ବ୍ୟାକୁଳ ହେଲା । ସେ ବ୍ରହ୍ମପ୍ରାପ୍ତିର ଉଦ୍ଦେଶ୍ୟକୁ ବିଚାର କଲେ । ସାଂସାରିକ ବ୍ୟବସ୍ଥାକୁ ମଧ୍ୟ ଅନୁଶୀଳନ କଲେ । ଶେଷରେ ସଂସାର ପ୍ରତି ବୀତସ୍ପୃହ ହୋଇ ତାହାର ନଶ୍ୱରତାକୁ ମର୍ମେ ମର୍ମେ ଅନୁଭବ କଲେ । ଭାବିଲେ - ସ୍ତ୍ରୀ, ପୁତ୍ର, ଧନ, ସମ୍ପଦ ସବୁକିଛି ଅସାର, ପରିବର୍ତ୍ତନଶୀଳ ଓ କ୍ଷଣସ୍ଥାୟୀ । ଦେହର ସାମର୍ଥ୍ୟ ଥିବାଯାଏ ସମସ୍ତେ ନିଜର ବୋଲି ଭାବିବେ । କିନ୍ତୁ ଶରୀର ଅସମର୍ଥ ହେଲେ କେହି ପଚାରିବେ ନାହିଁ । ବରଂ ଘୃଣା କରିବେ । ସେଥିପାଇଁ ସେ ସ୍ଥିର କଲେ- ବହୁ ସମୟ ତ ବିତିଗଲାଣି, ଯେତିକି ବାକି ଅଛି ତାହାକୁ ଯଥାର୍ଥ ଉପଯୋଗ କରିବା ଦରକାର ।





ବେଳ ଥାଉଥାଉ ଜୀବନର ଉଦ୍ଦେଶ୍ୟକୁ ଚରିତାର୍ଥ କରିବା ଉଚିତ । ଏହିସବୁ ବିଚାର ତାଙ୍କ ମନରେ ଜାଗ୍ରତ କରାଇଲା ଦୃଢ଼ ବୈରାଗ୍ୟ । ସେ ସ୍ତ୍ରୀ, ପୁତ୍ର, ମାୟା, ମମତା ପ୍ରଭୃତି ସାଂସାରିକ ଜଞ୍ଜାଳର ଶୃଙ୍ଖଳ ଛିଣ୍ଡାଇ ବ୍ରହ୍ମପ୍ରାପ୍ତି ନିମନ୍ତେ ବ୍ୟାକୁଳ ହୋଇଉଠିଲେ । ଏଣୁ ସେ ବ୍ରହ୍ମପୁରାଣଖଣ୍ଡିକୁ ହାତରେ ଧରି ବ୍ରହ୍ମଙ୍କ ଅନୁସନ୍ଧାନରେ ଶ୍ରୀକ୍ଷେତ୍ର ଅଭିମୁଖେ ବାହାରିପଡ଼ିଲେ ।

କର୍ଣ୍ଣାଟ ଦେଶରୁ ଶ୍ରୀକ୍ଷେତ୍ର ପୁରୀ କାହିଁ କେତେଦୂର । ତଥାପି ଆତ୍ମବିଶ୍ୱାସ ବଳରେ ଗଣପତି ବାହାରିଲେ । ଦୀର୍ଘପଥ ଅତିକ୍ରମ କଲାବେଳେ ଭିକ୍ଷା ମାଗି ଉଦର ପୋଷଣ କଲେ । ଫଳ, ମୂଳ, ପତ୍ର ଯେଉଁଠି ଯାହା ମିଳିଲା ସେତିକିରେ ସନ୍ତୁଷ୍ଟ ହେଲେ । ଏପରିକି କିଛି ନ ମିଳିଲେ ବିନା ଦ୍ୱିଧାରେ ଉପବାସ ମଧ୍ୟ ରହିଲେ । ସବୁ ସେହି ପରଂବ୍ରହ୍ମଙ୍କର ଇଚ୍ଛା ବୋଲି ଧରିନେଲେ । ଭାବିଲେ, ଦୁଃଖ କଷ୍ଟ ସହି ଭଗବାନଙ୍କଠାରେ ଭକ୍ତ ନିଜର ମନ ରଖୁଛି କି ନାହିଁ – ଏହା ନିଶ୍ଚୟ ଭଗବାନଙ୍କ ପରୀକ୍ଷା ହୋଇଥାଇ ପାରେ । ସେଥିପାଇଁ ବ୍ରହ୍ମଙ୍କଠାରେ ଲୟ ରଖି ମନରେ ଆଂଟ ବାନ୍ଧିଲେ । ସୁଦୂର ପଥ ଅତିକ୍ରାନ୍ତ ସମୟରେ ତାଙ୍କର ପାଦ ଗତିର ତାଳେତାଳେ ମନ ମଧ୍ୟ ନାଚି ଉଠୁଥାଏ । କେତେବେଳେ ଭାବପ୍ରବଣ ହୋଇ ପ୍ରଭୁଙ୍କ ନାମ ଗାଇ ଗାଇ ନାଚି ଯାଉଥାଆନ୍ତି ତ ଆଉ କେବେ ବ୍ରହ୍ମଙ୍କ ସହ ଏକାତ୍ମତା ସ୍ଥିତି କଥା ବିଚାର କରି ସ୍ଥବିର ଭଳି ନିସ୍ତବ୍ଧ ହୋଇଯାଉଥା'ନ୍ତି । ତାଙ୍କର ଗୋଟିଏ ଚିନ୍ତା, ସେ ବ୍ରହ୍ମଙ୍କୁ ଦର୍ଶନ କରିବେ । ତେଣୁ ରାସ୍ତାରେ ଭଗବାନଙ୍କ ନାମ, ଗୁଣ ଗାଇ ଗାଇ ସେ ସମୟ ବିତାଉଥାଆନ୍ତି ।

ସେ ସୁଦୂର ପଥ ଅତିକ୍ରମ କରି ଶ୍ରୀକ୍ଷେତ୍ରର ଅନତିଦୂର ଅଠରନଳାଠାରେ ପାଦଦେବା ମାତ୍ରେ ମନରେ ଆଶ୍ୱସ୍ତି ଲାଭ କଲେ । ଭାବିଲେ, ''ଅଠରନଳାରେ ପ୍ରବେଶ କରିଥିବା ପ୍ରାଣୀମାନେ ଯମଯାତନାରୁ ତରିଯାଆନ୍ତି ବୋଲି ଶୁଣିଛି । ଆଜି ମୋର ସେହି ସୌଭାଗ୍ୟ । ଏଭଳି ଦିବ୍ୟ ସ୍ଥାନରେ ମୁଁ ଆସି ପ୍ରବେଶ କରିସାରିଛି ।'' ସେହି ସ୍ଥାନକୁ ଦର୍ଶନ କରି ତାଙ୍କ ନେତ୍ର ପବିତ୍ର ହୋଇଗଲା । ସେଠାରେ ସେ ଆସନ ବିଛାଇ ବ୍ରହ୍ମଙ୍କଠାରେ ଲୟ ଲଗାଇ ନିଶ୍ଚଳ ହୋଇ ବସିପଡ଼ିଲେ । ଧୀରେ ଧୀରେ ବ୍ରହ୍ମଙ୍କ ଦର୍ଶନ ନିମନ୍ତେ ତାଙ୍କ ମନ ବ୍ୟାକୁଳ ହୋଇଉଠୁଥାଏ । ଦେହରେ ଶିହରଣ ଖେଳି ଯାଉଥାଏ । ସେ ଆନନ୍ଦରେ ବିଭୋର ହୋଇ ଉଠୁଥାନ୍ତି । ଭକ୍ତଟିଏ ତା' ଆରାଧ୍ୟ ଦେବଙ୍କ ନିକଟବର୍ତ୍ତୀ ହେବାକୁ ଯାଉଛି । ଅଳ୍ପ ସମୟ ପରେ ପ୍ରଭୁଙ୍କୁ ଦର୍ଶନ କରି ଆଜି ତା'ର ଚିରବାଞ୍ଛିତ ସ୍ୱପ୍ନ ସାକାର ହୋଇଯିବ । ଏହାଠାରୁ ବଳି ସୌଭାଗ୍ୟର ବିଷୟ ଆଉ କ'ଣ ବା ହୋଇପାରେ? ସେ ଆଜି ବହୁତ ସୁଖୀ । ଅନ୍ତରାତ୍ମାରେ ମଧ୍ୟ ଆତ୍ମସନ୍ତୋଷ ପାଇଲେ । ମନ ତାଙ୍କର ଉତ୍‌ଫୁଲ୍ଲ ଓ ପ୍ରଶାନ୍ତ । ଉଦ୍‌ବୃତ୍ତ ପ୍ରେମରେ ଚି ଆପ୍ଲୁତ, ଆନନ୍ଦରେ ବିଭୋର । ସେ ଦାରୁବ୍ରହ୍ମଙ୍କୁ ଦେଖିନାହାନ୍ତି, ତଥାପି ତାଙ୍କ ମାନପଟରେ ପ୍ରଭୁଙ୍କର ଏକପ୍ରକାର ଚିତ୍ରପଟ ଆଙ୍କି ସାରିଛନ୍ତି । ଆଜି ସେ ଦାରୁବ୍ରହ୍ମଙ୍କୁ ଦେଖିବେ, ନେତ୍ର ତାଙ୍କର ପବିତ୍ର ହେବ । ଏହିପରି କେତେ କ'ଣ ଚିନ୍ତା, ଚେତନା, ଆଶା ଓ ଭରସା ନେଇ ଗଣପତି ନିଶ୍ଚଳରେ ବସିଥାନ୍ତି । ଦେଖିଲେ, କେତେଜଣ ବ୍ରାହ୍ମଣ ହାତରେ ଅବଢ଼ା କୁଡୁଆ ଧରି ହସଖୁସିରେ ଆସୁଛନ୍ତି । ସେ ସେମାନଙ୍କୁ ହାତଯୋଡ଼ି ଏତେ ଖୁସିର କାରଣ ପ୍ରଶ୍ନ କଲେ । ''ଆପଣମାନେ କୁଆଡ଼େ ଯାଇଥିଲେ? ଏବେ କେଉଁଠିକି ଯିବେ? ଆଜି କେଉଁଠୁ କିଛି ଲାଭ ମିଳିଛିକି?''

ସବୁକଥା ଖୋଲି କହିବାକୁ ସେ ପଥୁକି ବ୍ରାହ୍ମଣମାନଙ୍କୁ ବାରମ୍ବାର ଅନୁରୋଧ କଲେ । ସେମାନେ ମଧ୍ୟ ଭକ୍ତଟିର ଜିଜ୍ଞାସା ଦେଖି ସ୍ପଷ୍ଟ ଭାବେ ବୁଝାଇ କହିଲେ ଯେ, ''ଆମ୍ଭେମାନେ ଦାରୁବ୍ରହ୍ମଙ୍କ ଦର୍ଶନ ନିମନ୍ତେ ଶ୍ରୀକ୍ଷେତ୍ର ଗମନ କରିଥିଲୁ । ସେଠାରେ ପାଂଚଦିନ ରହି ମନଭରି ବ୍ରହ୍ମଙ୍କୁ ଦର୍ଶନ କଲୁ । ଶେଷରେ ଶ୍ରଦ୍ଧା ସହିତ ମହାପ୍ରସାଦ କୁଡୁଆ ସାଙ୍ଗରେ ଧରି ଘରକୁ ଫେରୁଛୁ । ଏହାଠାରୁ ବଳି ବଡ଼କଥା ଆଉ ସଂସାରରେ କ'ଣ ଅଛି?'' ବ୍ରାହ୍ମଣମାନଙ୍କ ମୁଖରୁ ଏକଥା ଶୁଣି ଗଣପତି ଆଶ୍ଚର୍ଯ୍ୟ ହୋଇଗଲେ । ତାଙ୍କ ମନରେ ଏଥିପାଇଁ ସଂଶୟ ଜାତ ହେଲା । ଭାବିଲେ, ଏମାନେ ଯେବେ ବ୍ରହ୍ମଦର୍ଶନ କଲେ, ତେବେ ସ୍ୱଦେହରେ





ଫେରିଲେ କିପରି? ମୁଁ ତ ଶୁଣିଛି, ଯେଉଁମାନେ ବ୍ରହ୍ମ ଦର୍ଶନ କରନ୍ତି, ସେମାନେ କୁଆଡ଼େ ତାଙ୍କ ଦେହରେ ଲୀନ ହୋଇଯାଆନ୍ତି ! ତେବେ ଏମାନେ କ'ଣ ପ୍ରକୃତରେ ବ୍ରହ୍ମ ଦର୍ଶନ କରି ନାହାନ୍ତି? ପଥରେ ଆସୁଥିବା ଅନ୍ୟ ତୀର୍ଥଯାତ୍ରୀମାନଙ୍କୁ ସେଇ ପ୍ରଶ୍ନ ପଚାରିଲେ ଗଣପତି । କିନ୍ତୁ ତୀର୍ଥଯାତ୍ରୀମାନେ ଯେଉଁ ଉତ୍ତର ଦେଲେ, ତାହା ତାଙ୍କ ମନରେ ସନ୍ତୋଷ ପ୍ରଦାନ କଲାନାହିଁ । ତାଙ୍କ ମନରେ ସନ୍ଦେହ ଅଧିକ ଘନୀଭୂତ ହେବାକୁ ଲାଗିଲା । ସେଥିପାଇଁ ପାଖରେ ଥିବା ବ୍ରହ୍ମପୁରାଣକୁ କାଢ଼ିଲେ । ବାରମ୍ବାର ତାହାକୁ ପଢ଼ିଲେ । ବ୍ରହ୍ମପୁରାଣରେ ସ୍ପଷ୍ଟ ଲେଖା ଅଛି, ସ୍ୱୟଂ ପରଂବ୍ରହ୍ମ ହିଁ ନୀଳାଚଳ ନୀଳକନ୍ଦରରେ ବିରାଜମାନ ଅଛନ୍ତି । ତାଙ୍କୁ ଦର୍ଶନ କରି ଜୀବ ମୁକ୍ତିଲାଭ କରେ। କିନ୍ତୁ କାହିଁ ସେକଥା ତ ଦେଖାଯାଉ ନାହିଁ । ତାଙ୍କ ମନରେ ସଂଶୟ ବୃଦ୍ଧି ପାଇଲା ।

ଅନ୍ତର୍ଯ୍ୟାମୀ ପ୍ରଭୁ ଶ୍ରୀଜଗନ୍ନାଥ ଭକ୍ତର ଅନ୍ତରର କଥାକୁ ଜାଣି ପାରିଲେ । ଏ କ୍ଷେତ୍ରରେ ଆଉ କାଳବିଳମ୍ବ ନ କରି ଛଦ୍ମ ବ୍ରାହ୍ମଣ ବେଶରେ ମହାବାହୁ ଶ୍ରୀଜଗନ୍ନାଥ ଗଣପତିଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲେ । ତାଙ୍କୁ ଚାହିଁ ପଚାରିଲେ, ''ହେ ବିପ୍ରବର! ତୁମ ଘର କେଉଁଠି? ତୁମ ମନରେ କି ଦୁଃଖ ? କାହା କଥା ତୁମ ମନକୁ ଘାରିଛି? ତୁମେ କ୍ଳାନ୍ତ ହୋଇଥିବା ପରି ଲାଗୁଛ । ବହୁଦୂର ପଥ ଚାଲି ଚାଲି ଆସିଛ କି ? ମୋତେ କିଛି ଲୁଚାଅ ନାହିଁ । ସବୁକଥା ଖୋଲି ବ୍ୟକ୍ତ କର ।'' ଗଣପତି ଏକା ନିଃଶ୍ୱାସରେ ତାଙ୍କ ଅନ୍ତର ବେଦନା ସବୁ ପ୍ରକାଶ କଲେ, ''ହେ ବ୍ରାହ୍ମଣଦେବ ! ମୁଁ ବ୍ରହ୍ମପୁରାଣରୁ ପଢ଼ିଲି ଯେ ବ୍ରହ୍ମ ସ୍ୱୟଂ ନୀଳଗିରିରେ ବିଜେ କରିଛନ୍ତି । ତାଙ୍କୁ ଦର୍ଶନ କରି ଜୀବ ଦୁଃଖ ସଂସାରରୁ ମୁକ୍ତି ପାଏ । ତା'ର ଦୁଃଖ ସନ୍ତାପ ସବୁଦିନ ପାଇଁ ହରଣ ହୋଇଯାଏ । କିନ୍ତୁ ଏଠାରେ ପହଂଚି ମୁଁ ଯାହା ଦେଖୁଛି, ବ୍ରହ୍ମପୁରାଣର ତଥ୍ୟ ମିଥ୍ୟା ଅଟେ । ଏଣୁ ମୁଁ ସଂଶୟରେ ରହିଛି ।'' ଏହା ଶୁଣି ଛଦ୍ମବେଶଧାରୀ ଭଗବାନ ପଚାରିଲେ, ''ବ୍ରହ୍ମ ନାହାନ୍ତି ବୋଲି ତୁମେ କିପରି ଜାଣିଲ?'' ସଙ୍ଗେ ସଙ୍ଗେ ଭକ୍ତ ଗଣପତି କହିଲେ, ''ଜୀବ ବ୍ରହ୍ମଙ୍କୁ ଭେଟିଲେ ସେ ବ୍ରହ୍ମରେ ଲୀନ ହୋଇଯାଏ । କିନ୍ତୁ ମୁଁ ସାକ୍ଷାତ୍‌ରେ ଦେଖୁଛି, ବ୍ରହ୍ମଙ୍କୁ ଦର୍ଶନ କରି ମଧ୍ୟ ଲୋକେ ପ୍ରତ୍ୟାବର୍ତ୍ତନ କରି ଆସୁଛନ୍ତି । ଏଣୁ ମୋର ଘୋର ସନ୍ଦେହ ଜାତ ହୋଇଛି ।'' ବ୍ରାହ୍ମଣରୂପୀ ଭଗବାନ କହିଲେ, ''ବ୍ରହ୍ମ ନ ଥିବା କଥା ମୋ'ଠାରୁ ଶୁଣ । ମୋ' କଥାରେ ନିଶ୍ଚୟ ତୁମ ମନର ସଂଶୟ ଦୂର ହୋଇଯିବ । ଦେଖ, ବ୍ରହ୍ମଙ୍କୁ ବାଞ୍ଛାନିଧି କୁହାଯାଇଥାଏ । ତା'ର କାରଣ, ସେ ଭକ୍ତର ମନ ଅନୁସାରେ ଫଳ ପ୍ରଦାନ କରିଥାଆନ୍ତି । ଯେଉଁ ପ୍ରାଣୀ ଶ୍ରୀକ୍ଷେତ୍ରକୁ ଆସି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କରି ଫେରିଯିବାକୁ ଇଚ୍ଛା କରନ୍ତି, ସେ ତାଙ୍କୁ ଦର୍ଶନ ଦେଇସାରି ଫେରାଇ ଦିଅନ୍ତି । ଯିଏ ଯାହା ଚିନ୍ତା କରେ, ସେ ସେହି ଅନୁସାରେ ଫଳ ପାଇଥାଏ । ଭଗବାନ କେବଳ ଭକ୍ତର ଅଭିଳାଷ ପୂରଣ କରି ତାକୁ ସନ୍ତୋଷ ପ୍ରଦାନ କରିଥାନ୍ତି । ତେବେ ଯେଉଁ ଭକ୍ତ ଫେରିଯିବାକୁ ଚାହିଁବ, ସେ ଫେରିଯିବ । ଯିଏ ତାଙ୍କଠାରେ ଲୀନ ହେବାକୁ ଇଚ୍ଛା ପ୍ରକଟ କରିବ, ସେ ଲୀନ ହୋଇଯିବ । ତେଣୁ ତୁମେ ଯାଇ ଶୀଘ୍ର ଦାରୁବ୍ରହ୍ମଙ୍କୁ ଦର୍ଶନ କର । କରୁଣାମୟ ଦାରୁବ୍ରହ୍ମ ନିଶ୍ଚୟ ତୁମର ଅଭିଳାଷ ପୂର୍ଣ୍ଣ କରିବେ ।''

ବ୍ରାହ୍ମଣଙ୍କ ମୁହଁରୁ ଏସବୁ ଶୁଣି ଗଣପତିଙ୍କର ସଂଶୟ ଦୂର ହୋଇଗଲା । ପୂର୍ଣ୍ଣମୀ ଚାନ୍ଦ ଭଳି ତାଙ୍କ ମୁଖମଣ୍ଡଳରେ ପ୍ରସନ୍ନତାର ଛବି ଉକୁଟି ଉଠିଲା । ସେ ମନ ଆନନ୍ଦରେ ଯାଇ ପହଂଚିଲେ ବଡ଼ଦାଣ୍ଡରେ । ପ୍ରଥମେ ତାଙ୍କର ଦୃଷ୍ଟି ପଡ଼ିଲା ନୀଳଚକ୍ର ପତାକା ଉପରେ । ସେ ଆନନ୍ଦରେ ବିଭୋର ହୋଇଉଠିଲେ । ଶ୍ରୀମନ୍ଦିର ଯେତିକି ପାଖେଇ ଆସୁଥାଏ ତାଙ୍କ ମନରେ ସେତେ ଅଧିକ ଉଦ୍‌ବେଗ ସୃଷ୍ଟି ହେଉଥାଏ । ସେ ପ୍ରଭୁଙ୍କୁ ଦର୍ଶନ କରିବେ! ତାଙ୍କର ଇଚ୍ଛା ପୂରଣ ହେବ । ସେଥିପାଇଁ ମନ ତାଙ୍କର ନାଚିଯାଉଥାଏ । ଏମିତି ପୁଲକିତ ମନ ନେଇ ସେ ଯାଇ ପହଂଚିଲେ ସିଂହଦ୍ୱାର ସମ୍ମୁଖରେ । ସେଦିନ ଥିଲା ଜ୍ୟେଷ୍ଠ ପୂର୍ଣ୍ଣିମା । ପ୍ରଭୁଙ୍କର ସ୍ନାନଯାତ୍ରା । ଦାରୁବ୍ରହ୍ମ ଚତୁର୍ଦ୍ଧାମୂର୍ତ୍ତି ସେଦିନ ମହାସ୍ନାନ କରି ଲକ୍ଷ ଲକ୍ଷ ଭକ୍ତଙ୍କ ମେଳରେ ଅପୂର୍ବ ଲୀଳା ବିସ୍ତାର କରିବାକୁ ଦେଉଳରୁ ବାହାରି ସ୍ନାନବେଦୀରେ ବିଜେ





କରିଛନ୍ତି । ପଣ୍ଡା, ପଡ଼ିଆରୀ, ସେବାୟତ ପ୍ରଭୃତି ନିଯୋଗୀମାନେ ଚାରିପାଖରେ ବେଢ଼ି ରହିଛନ୍ତି । ସୁବର୍ଣ୍ଣ କଳସରେ ତୀର୍ଥଜଳ ପୂର୍ଣ୍ଣ ହୋଇ ସୁବର୍ଣ୍ଣ କୂପରୁ ଆସି ଢଳା ହେଉଛି ଶ୍ରୀଜୀଉଙ୍କ ମସ୍ତକରେ । ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଜୟଘୋଷ ଚାଲିଛି । ହରିବୋଲ ହୁଳହୁଳି ଧ୍ୱନିରେ ଚତୁର୍ଦ୍ଦିଗ କମ୍ପି ଉଠୁଛି । ଭକ୍ତମାନେ ପ୍ରଭୁଙ୍କୁ ଧୂପଦୀପ ଦାନ କରି ବନ୍ଦାପନାପୂର୍ବକ କେତେ କ'ଣ ମନାସୁଛନ୍ତି । ସ୍ୱର୍ଗର ଇନ୍ଦ୍ରାଦି ଦେବଗଣ ନୀଳାଦ୍ରିବିହାରୀଙ୍କ ଅପୂର୍ବ ଲୀଳା ଦର୍ଶନ କରିବାକୁ ଅପେକ୍ଷାରତ । ପ୍ରଭୁଙ୍କର ଏଭଳି ଅପୂର୍ବ ଲୀଳା ଦର୍ଶନ କରି ଦେବ, ଗନ୍ଧର୍ବଙ୍କ ସମେତ ଲକ୍ଷ ଲକ୍ଷ ଭକ୍ତ ଆନନ୍ଦରେ କୋଳାହଳ କରୁଥିବାବେଳେ ଭକ୍ତ ଗଣପତିଙ୍କ ବଦନରେ ବିଷାଦର ଛାୟା । ତାଙ୍କ ମନ ଭାଙ୍ଗିପଡ଼ିଛି । ସେ ତାଙ୍କ ମନ ଭିତରେ ମନାସିଥିବା ଦାରୁବ୍ରହ୍ମଙ୍କଠାରେ ଗଣପତି ରୂପ ନ ଦେଖି ଦୁଃଖିତ ହୋଇଯାଇଛନ୍ତି । ସେ ଭାବୁଛନ୍ତି, କାହିଁ ଦାରୁବ୍ରହ୍ମଙ୍କ ମୁଖରେ ଗଣେଶଙ୍କ ପରି ବଡ଼ ବଡ଼ ହାତୀଦାନ୍ତ ନାହିଁ କି ବିରାଟକାୟ ଥୋଡ଼ପାହାଡ଼ ନାହିଁତ? କିମ୍ବା ମତଗଜର ଭଙ୍ଗିମା ଦେଖାଯାଉ ନାହିଁତ? ସେ ବାରମ୍ବାର ନିରୀକ୍ଷଣ କରି ଚାହିଁଲେ । ମାତ୍ର ଦାରୁବ୍ରହ୍ମଙ୍କର ଗଜାନନ ବେଶ ନ ଦେଖି ସେ ଦୁଃଖରେ ଭାଙ୍ଗିପଡ଼ିଲେ । ତାଙ୍କ ବିଚାରରେ ଏହି ପ୍ରଭୁ ଦାରୁବ୍ରହ୍ମ ନୁହନ୍ତି । ତାଙ୍କର ଇଚ୍ଛା ପୂରଣ ହେଲା ନାହିଁ । ସେଠାରୁ ସେ ନିରାଶ ହୋଇ ପ୍ରତ୍ୟାବର୍ତ୍ତନ କଲେ । ଏପରିକି ଠାକୁରଙ୍କୁ କରଯୋଡ଼ି ପ୍ରଣାମ ମଧ୍ୟ ହେଲେନାହିଁ ।

ଭକ୍ତ ଜଣେ ମୋ' ଦ୍ୱାରରୁ ଫେରିଗଲା, ଏକଥା ଅନ୍ତର୍ଯ୍ୟାମୀ ପ୍ରଭୁ ଜଗନ୍ନାଥ ଜାଣି ଚଳଚଂଚଳ ହୋଇଉଠିଲେ । ଗଜାନନ ବ୍ରହ୍ମଙ୍କୁ ଦର୍ଶନ କରିବାକୁ ମନରେ ଦୃଢ଼ ଆଶା ବାନ୍ଧିଥିବା ଭକ୍ତର ଅନ୍ତର ବ୍ୟଥାକୁ ପ୍ରଭୁ ଜାଣିପାରିଲେ । ବୋଧହୁଏ ଭକ୍ତ ଗଣପତି ମୋର ଗଜାନନ ରୂପ ଦେଖିବାକୁ ଚାହୁଁଥିଲା, ସେଥିପାଇଁ ମୋତେ ମୁଣ୍ଡିଆଟିଏ ମଧ୍ୟ ମାରିଲା ନାହିଁ । ମହାପ୍ରଭୁ ଆଉ ସମ୍ଭାଳି ପାରିଲେ ନାହିଁ । ଭକ୍ତକୁ ବୁଝାଇ ଆଣିବା ପାଇଁ ସୁନ୍ଦର ଉପାୟଟିଏ ଅବଲମ୍ବନ କଲେ । ଜଗମୋହନରେ ନିଦ୍ରା ଯାଇଥିଲେ ମୁଦିରଥ ସେବକ । ଗତ ରାତିରେ ପ୍ରଭୁଙ୍କ ସେବା କରି ଜାଗରଣ ରହିଥିବାରୁ ତାଙ୍କ ଆଖିକୁ ନିଦ୍ରା ଘାରି ଯାଇଥିଲା । ଶ୍ରୀଜଗନ୍ନାଥ ତାଙ୍କୁ ସ୍ୱପ୍ନାଦେଶ ଦେଲେ - ''ହେ ମୁଦିରଥେ! ମୋ' କଥା ମନଦେଇ ଶୁଣ । ସୁଦୂର କର୍ଣ୍ଣାଟ ଦେଶରୁ ବହୁ ଆଶା ଭରସା ନେଇ ଜଣେ ଭକ୍ତ ମୋ' ଦର୍ଶନ ପାଇଁ ଆସିଥିଲା । ତା'ର ନାମ ହେଉଛି ଗଣପତି ଭଟ୍ଟ । କିନ୍ତୁ ତା'ର ମନକଳ୍ପିତ ଗଣପତି ବେଶ ନଦେଖି ସେ ଫେରିଯାଉଛି । ଏବେ ତୁମେ ଯଥାଶୀଘ୍ର ଯାଇ, ତାକୁ ବୁଝାଇ ସୁଝାଇ ଫେରେଇ ନେଇଆସ ।''

ପ୍ରଭୁଙ୍କ ଗମ୍ଭୀର ବାଣୀରେ ମୁଦିରଥଙ୍କ ନିଦ ଭାଙ୍ଗିଗଲା । ସେ ଉଠିପଡ଼ି ଚାରିଆଡ଼କୁ ନିରୀକ୍ଷଣ କଲେ । ଏବେତ ତାଙ୍କୁ ପ୍ରଭୁଙ୍କ ଆଜ୍ଞା ପାଳନ କରିବାକୁ ହେବ । ତାଙ୍କର ମହିମା ଅକ୍ଷୁଣ୍ଣ ରଖିବାକୁ ହେବ । ତେଣୁ କାଳବିଳମ୍ବ ନ କରି ସେ ଦୌଡ଼ିଲେ ଗଣପତିଙ୍କ ନିକଟକୁ । ଭଗବାନଙ୍କ ନାମ ସ୍ମରଣ କରି ସେ ଖୋଜି ଖୋଜି ପାଇଲେ ଗଣପତିଙ୍କୁ । ତାଙ୍କୁ ପରିଚୟ ପଚାରି କହିଲେ, ''ହେ ଭକତେ ! ତୁମ ନାଁ ଗଣପତି ଭଟ୍ଟ ? ତୁମେ ପ୍ରଭୁଙ୍କ ଉପରେ ଅଭିମାନ କରିଛ ? ଏବେ ଫେରିଚାଲ । ମନରୁ ସବୁ ଅଭିମାନ ଦୂର କର । ପରଂବ୍ରହ୍ମ ନିଶ୍ଚୟ ତୁମର ଅଭିଳାଷ ପୂରଣ କରିବେ । ଭକ୍ତମାନଙ୍କ ପାଇଁ ସେ ନୀଳକନ୍ଦରରେ ବିଜେ କରିଛନ୍ତି । ତୁମେ ତାଙ୍କୁ ଯେଉଁ ଗଜାନନ ରୂପରେ ଦେଖିବାକୁ ଚାହଁ, ସେ ନିଶ୍ଚୟ ସେହି ରୂପରେ ତୁମକୁ ଦର୍ଶନ ଦେବେ । ଚାଲ ମୋ' ସାଙ୍ଗରେ ଫେରିଚାଲ ।'' ଗଣପତି ମୁଦିରଥଙ୍କ କଥାକୁ ବିଶ୍ୱାସ କଲେ ନାହିଁ । କହିଲେ, ''ତୁମେ କେବଳ ମୋତେ ଭଣ୍ଡିବାକୁ ଆସିଛ । ଯାଅ, ମୁଁ ତୁମଠୁ ଅଧିକ କିଛି ଶୁଣିବାକୁ ଚାହୁଁନାହିଁ । ହଇହୋ ! ମୁଁ ପରା ସାକ୍ଷାତ୍‌ରେ ଦେଖି ଆସିଛି । ତୁମ ପ୍ରଭୁଙ୍କ ଶ୍ରୀମୁଖରେ ଥୋଡ଼ପାହାଡ଼ ନାହିଁ କି ଗଜଦନ୍ତ ନାହିଁ । ଯାହାର ଗଜାନନ ନାହିଁ, ସେ କେମିତି ବ୍ରହ୍ମ ହେବେ ? ଏକଥା ଆଦୌ ସମ୍ଭବ ନୁହେଁ ।'' ଗଣପତିଙ୍କର ଏଭଳି ଉକ୍ତି ଶୁଣି ମୁଦିରଥେ ସ୍ତମ୍ଭୀଭୂତ ହୋଇଗଲେ । ତାଙ୍କୁ କେଉଁ ଉପାୟରେ ବୁଝାଇବେ, ସେଥିପାଇଁ ପ୍ରଭୁଙ୍କୁ ସ୍ମରଣ କଲେ । ତା'ପରେ





କହିଲେ, ''ଆହେ ଭକ୍ତବୀର! ତୁମେ ମନସ୍ଥିର କରି ମୋ' କଥା ଶୁଣ । ଠାକୁରଙ୍କ ସ୍ୱପ୍ନାଦେଶ କ'ଣ କେବେ ମିଥ୍ୟା ହୁଏ ? ଦାରୁବ୍ରହ୍ମଙ୍କର ତୁମ ପ୍ରତି ଆଶିଷ ରହିଛି । ନ ହେଲେ ପ୍ରଭୁ କାହିଁକି ଆଦେଶ ଦେଇଥା'ନ୍ତେ ତୁମକୁ ଫେରେଇ ନେବାକୁ?'' ସ୍ୱପ୍ନାଦେଶ କଥା ଶୁଣି ଗଣପତିଙ୍କର ମନରେ ବିଶ୍ୱାସ ଜାତ ହେଲା । ସେ ମନରେ ଆଉ କୌଣସି ଦ୍ୱନ୍ଦ୍ୱ ନ ରଖି ମୁଦିରଥଙ୍କ ସହ ଫେରିଚାଲିଲେ ଶ୍ରୀମନ୍ଦିର ।

ଭକ୍ତ ଗଣପତି ଫେରିଯାଇ ପ୍ରଭୁଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲେ । ମନରୁ କ୍ରୋଧ ଦୂର କରି ମନ ଓ ଚେତନାକୁ ଏକାତ୍ମ କଲେ। ନେତ୍ରତୋଳି ଭକ୍ତିଭାବରେ ଚାହିଁଲେ କଳା ଶ୍ରୀମୁଖକୁ । କି ଅଦ୍ଭୁତ ଦୃଶ୍ୟ ସେ ଦେଖିଲେ! ସାକ୍ଷାତ୍ ଗଜାନନବ୍ରହ୍ମ ତାଙ୍କ ସମ୍ମୁଖରେ ବିରାଜମାନ । ପ୍ରଭୁଙ୍କର ମୁଖମଣ୍ଡଳରେ ସୁଦୀର୍ଘ ଥୋଡ଼ପାହାଡ଼ ଓ ଦୁଇଟି ହସ୍ତୀଦନ୍ତ ଶୋଭା ପାଉଛି । ପ୍ରଭୁଙ୍କର ଏ ରୂପ ଦେଖି ସେ ପ୍ରଥମେ ବିଶ୍ୱାସ କରିପାରିଲେ ନାହିଁ । ବାରମ୍ବାର ଆଖି ପୋଛି ଚାହିଁଲେ । ଯେତେଥର ଚାହିଁଲେ ମଧ୍ୟ ସେଇ ରୂପ । ଏଥର ସେ ପରମ ସନ୍ତୋଷ ଲାଭ କଲେ । ସେ ଭକ୍ତି ରସରେ ନିମଗ୍ନ ହୋଇଗଲେ । ଦେହସାରା ଶିହରଣ ଖେଳିଗଲା । ଦୁଇ ନେତ୍ରରୁ ଲୋତକ ଧାର ଧାର ହୋଇ ଝରି ଆସିଲା । ସେ ଆଉ କିଛି କହିବାକୁ ସମର୍ଥ ହୋଇପାରିଲେ ନାହିଁ । କେବଳ ନିର୍ନିମେଷ ନୟନରେ ଚାହିଁରହିଲେ ଗଜାନନରୂପଧାରୀ ପରଂବ୍ରହ୍ମଙ୍କୁ । କି ଅପୂର୍ବ ଶୋଭା ! ଭକ୍ତର ବିଜୟ ହୋଇଛି । ପ୍ରଭୁ ଆଜି ଭକ୍ତ ନିକଟରେ ହାରି ଯାଇଛନ୍ତି । ଭକ୍ତ ମନରେ ଆନନ୍ଦ ଭରିଦେବା ପାଇଁ ସେ ଧାରଣ କରିଛନ୍ତି ଗଜାନନ ବେଶ । ଗଣପତି ଭଟ୍ଟ ଆଖି ଛଳ ଛଳ କରି ଗାଇଉଠିଲେ –

ତବ ଦର୍ଶନେ ଦାରୁବ୍ରହ୍ମ
ତୁଟିଲା ମୋର ମତିଭ୍ରମ ।
ଲଭିଲି ପରମ କାରଣ
ଏବେ ଯା ମାଗୁଅଛି ଶୁଣ ।
ଆଜିଠୁ ଦେବସ୍ନାନ ଯାତ
ଯେବେ ହୋଇବ ଜଗନ୍ନାଥ ।
କେବଳ ହସ୍ତୀବେଶ ହୋଇ
ବିଜେ କରିବ ଭାବଗ୍ରାହୀ ।
ଏତକ ମାତ୍ର ଆଜ୍ଞା ହେଉ
ଏକଥା ଯୁଗେ ଯୁଗେ ଥାଉ ।
(ଦାର୍ଢ୍ୟତା ଭକ୍ତି)

ଏହା ଥିଲା ଭଗବାନଙ୍କ ନିକଟରେ ଭକ୍ତର ଆନ୍ତରିକ ନିବେଦନ । ଏପରି ସ୍ତୁତି କରୁ କରୁ ଗଣପତି ପ୍ରଭୁଙ୍କ ସମ୍ମୁଖରେ ଲୋଟିପଡ଼ିଲେ । ଭାବବିହ୍ୱଳ ଗଣପତିଙ୍କୁ ଧୂଳିରେ ଲୋଟିପଡ଼ିବା ଦେଖି କାହାର ଚିତ୍ତ ବା ଦ୍ରବୀଭୂତ ନ ହେବ ? ଏ ଦୃଶ୍ୟରେ ସେବାୟତ ଓ ଭକ୍ତମାନେ ଆଶ୍ଚର୍ଯ୍ୟ ହୋଇଗଲେ । ଭକ୍ତ ଓ ଭଗବାନଙ୍କର ଜୟ ଜୟକାରରେ କମ୍ପିଉଠିଲା ସିଂହଦ୍ୱାର । ହରିବୋଲ ହୁଳହୁଳି ଧ୍ୱନିରେ ଗଗନ ପବନ ମୁଖରିତ ହୋଇଉଠିଲା ।

ଭକ୍ତ ଗଣପତି କିନ୍ତୁ ଏତିକିରେ ସନ୍ତୁଷ୍ଟ ନଥିଲେ । ତାଙ୍କର ଦରକାର ଥିଲା ଦାରୁବ୍ରହ୍ମ ଗଜାନନଙ୍କର ସହ ଏକାତ୍ମତା । ତେଣୁ ସେ ଯୋଡ଼ହସ୍ତ ହୋଇ ଠାକୁରଙ୍କୁ ପ୍ରଣାମ କଲେ । ସତେ ଅବା ନମସ୍କାର ମାଧ୍ୟମରେ ସେ ତାଙ୍କ ଶରୀର, ମନ, ବୁଦ୍ଧିର ପ୍ରତୀକ ମସ୍ତିଷ୍କକୁ ଓ କର୍ମର ପ୍ରତୀକ ଦୁଇ କରକୁ ଏକତ୍ର କରି ପ୍ରଭୁଙ୍କ ପାଦତଳେ ସମର୍ପି ଦେଲେ । ହଠାତ୍ ଏକ ଅଦ୍ଭୁତ ଘଟଣା ଘଟିଲା । ଭଗବାନ ଶ୍ରୀଜଗନ୍ନାଥ ଭକ୍ତ ଗଣପତିର ନୀରବ ନିବେଦନକୁ ସ୍ୱୀକାର କଲେ । ଭକ୍ତ ଓ ସେବାୟତଙ୍କ ହରିବୋଲ, ହୁଳହୁଳି ଧ୍ୱନିର କୋଳାହଳ ମଧ୍ୟରେ ଭକ୍ତ ଗଣପତି ଦାରୁବ୍ରହ୍ମଙ୍କଠାରେ ଲୀନ ହୋଇଗଲେ । ସେହିଦିନଠାରୁ ଭକ୍ତ ଓ ଭଗବାନଙ୍କର ଏଭଳି ମଧୁର ମିଳନ ଗାଥା ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଗଲା । ଭକ୍ତ ଗଣପତି ଅମର ହୋଇଗଲେ । ସେବେଠାରୁ ପ୍ରତିବର୍ଷ ସ୍ନାନ ପୂର୍ଣ୍ଣମୀ ଦିନ ପ୍ରଭୁଙ୍କର ଗଣପତି ବେଶ ଦେଖି ଭକ୍ତମାନେ ଭକ୍ତ ଗଣପତି ଭଟ୍ଟଙ୍କୁ ମନେ ପକାଇ ଆସୁଛନ୍ତି ।

---

ନାଗାବଗିଚା, ମଧୁବନ, ପୁରୀ –୨





# ଜାତି, ବର୍ଣ୍ଣ ଓ ଧର୍ମ ସମନ୍ୱିତ ଶ୍ରୀଜଗନ୍ନାଥ

ଡାକ୍ତର ଦୀନବନ୍ଧୁ ମହାରଣା

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ସର୍ବଧର୍ମ ସମନ୍ୱୟର ପ୍ରତୀକ ଭାବେ ଗ୍ରହଣ କରାଯାଇଥାଏ । ସେ ହିଁ ଓଡିଶାର ଜାତୀୟ ଦେବତା । ଓଡିଆମାନଙ୍କର ଆରାଧ୍ୟ ଦେବତା ମହାପ୍ରଭୁ ଶ୍ରୀଜଗନ୍ନାଥ ବିଶ୍ୱ ଜନମାନସରେ ଅବୋଧ ରହସ୍ୟମୟ ହୋଇ ରହିଯାଇଛନ୍ତି । ଓଡିଶାର ଜନଜୀବନ, ସଂସ୍କୃତି ଓ ଚେତନାରେ ସେ ସର୍ବଦା ପ୍ରତିଫଳିତ । ସ୍ଥୂଳତଃ ଜଗନ୍ନାଥ ସଂସ୍କୃତି ହିଁ ଓଡିଆ ଜାତିର ସଂସ୍କୃତି । ଜଗନ୍ନାଥ ଚେତନା ହିଁ ଓଡିଆ ଜାତିର ପରମ୍ପରା । ଜଗନ୍ନାଥଙ୍କୁ କେନ୍ଦ୍ର କରି ବିଭିନ୍ନ ପୁରାଣ, ଅଭିଲେଖ, ପ୍ରତ୍ନତାତ୍ତ୍ୱିକ ଅବଶେଷ, ଚିତ୍ରକଳା, ଲୋକସାହିତ୍ୟ, ଲୋକ ସଂଗୀତ ଏପରିକି ଲୋକନୃତ୍ୟ ମଧ୍ୟ ସମୃଦ୍ଧ ହୋଇଛି ।

ଶ୍ରୀଜଗନ୍ନାଥ ମହାପ୍ରଭୁ ଶବରମାନଙ୍କର ଦେବତା ଭାବରେ ବହୁ କାଳରୁ ପରିଚିତ । ଶବର ରାଜା ବିଶ୍ୱାବସୁ ଯେଉଁ ନୀଳମାଧବଙ୍କର ଉପାସନା କରୁଥିଲେ, ତାହା ହିଁ ଶ୍ରୀଜଗନ୍ନାଥଙ୍କ ଆଦି ରୂପ ବୋଲି ବିଶ୍ୱାସ କରାଯାଏ । ଶୂଦ୍ରମୁନି ସାରଳା ଦାସଙ୍କ ରଚିତ ମହାଭାରତ, ସ୍କନ୍ଦ ପୁରାଣ ଓ ଦାରୁବ୍ରହ୍ମ ଗୀତାରେ ଜଗନ୍ନାଥଙ୍କ ସମ୍ବନ୍ଧରେ ବର୍ଣ୍ଣନା କରାଯାଇଥିବା ଜଣାପଡେ । କିମ୍ବଦନ୍ତୀ ଅନୁସାରେ ନୀଳକନ୍ଦରରେ ନୀଳମାଧବ ଶବର ସମ୍ପ୍ରଦାୟର ମୁଖ୍ୟ ବିଶ୍ୱାବସୁଙ୍କ ଦ୍ୱାରା ପୂଜା ପାଉଥିଲେ । ରାଜା ଇନ୍ଦ୍ରଦ୍ୟୁମ୍ନ ନୀଳମାଧବଙ୍କୁ ସ୍ୱପ୍ନରେ ଦେଖିଥିଲେ ଏବଂ ତାଙ୍କୁ ଠାବ କରିବାକୁ ବିଦ୍ୟାପତି ନାମକ ଜଣେ ବ୍ରାହ୍ମଣଙ୍କୁ ନିଯୁକ୍ତ କରିଥିଲେ । ବିଦ୍ୟାପତି ବିଶ୍ୱାବସୁଙ୍କ କନ୍ୟା ଲଳିତାଙ୍କୁ ବିବାହ କରିଥିଲେ । ଲଳିତାଙ୍କ ଅନୁରୋଧରେ ବିଶ୍ୱାବସୁ ବିଦ୍ୟାପତିଙ୍କ ଆଖିରେ ଅନ୍ଧପୁଟୁଳି ବାନ୍ଧି ତାଙ୍କୁ ନୀଳମାଧବଙ୍କ ଦର୍ଶନ ପାଇଁ ନେଇଯାଇଥିଲେ । ବିଦ୍ୟାପତି ନିଜର ବୁଦ୍ଧି ପ୍ରୟୋଗ କରି ନୀଳମାଧବଙ୍କୁ ଦର୍ଶନ କରିବାକୁ ଯିବା ବାଟରେ ସୋରିଷ ବୁଣି ବୁଣି ଯାଇଥିଲେ । ଏହା ବିଶ୍ୱାବସୁଙ୍କ ଅଗୋଚରରେ ହିଁ ହୋଇଥିଲା । ଯେତେବେଳେ ବର୍ଷା ହେଲା, ସେତେବେଳେ ସୋରିଷ ଗଜା ହୋଇ ଗଛ ସୃଷ୍ଟି ହେଲା । ଫଳରେ ଏହି ଉପାୟ ଦ୍ୱାରା ବିଦ୍ୟାପତି ନୀଳକନ୍ଦରକୁ ଯିବାର ରାସ୍ତା ପାଇପାରିଥିଲେ । ଏକଥା ସେ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଜଣାଇବାରୁ ଇନ୍ଦ୍ରଦ୍ୟୁମ୍ନ ସୈନ୍ୟସାମନ୍ତଙ୍କ ସହ ନୀଳକନ୍ଦରରେ ପହଞ୍ଚିବା ବେଳକୁ ନୀଳମାଧବ ଅନ୍ତର୍ଦ୍ଧାନ ହୋଇଯାଇଥିଲେ । ତେବେ ନୀଳମାଧବ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ବିବ୍ରତ ମନୋଭାବ ଜାଣିପାରି ରାଜାଙ୍କୁ ସେ ମହୋଦଧି ତଟରେ ମହାଦାରୁ ରୂପରେ ଆବିର୍ଭାବ ହେବେ ବୋଲି ସ୍ୱପ୍ନରେ କହିଥିଲେ । ରାଜା ଇନ୍ଦ୍ରଦ୍ୟୁମ୍ନ ସମୁଦ୍ର ତଟରୁ ସେହି ଦାରୁ ଆଣି ଶିଳ୍ପୀଙ୍କ ଦ୍ୱାରା ମୂର୍ତ୍ତି ଗଢାଇଥିଲେ । ମୂର୍ତ୍ତି ଗଠନ କାର୍ଯ୍ୟ ଦ୍ୱାର ବନ୍ଦ କୋଠରୀରେ ଚାଲିଥିଲା । ଶିଳ୍ପୀଙ୍କ ନିର୍ଦ୍ଦେଶ ଥିଲା ମନ୍ଦିର ଦ୍ୱାର ନ ଖୋଲିବା ପାଇଁ । ପ୍ରତିଦିନ ମନ୍ଦିର ମଧ୍ୟରୁ ଶିଳ୍ପୀଙ୍କ ନିହଣ ଶବ୍ଦ ଶୁଭୁଥିଲା । ମାତ୍ର ପନ୍ଦର ଦିନ ବିତିଯିବା ପରେ ମନ୍ଦିର ଭିତରୁ ଆଉ କୌଣସି ଶବ୍ଦ ନ ଶୁଭିବାରୁ ଇନ୍ଦ୍ରଦ୍ୟୁମ୍ନଙ୍କ ରାଣୀ ଗୁଣ୍ଡିଚା ମନ୍ଦିରର ଦ୍ୱାର ଖୋଲିଦେଇଥିଲେ । ମାତ୍ର ମୂର୍ତ୍ତି ତିନିଟି ପୂର୍ଣ୍ଣାଙ୍ଗ ହୋଇ ନପାରି ଅର୍ଦ୍ଧନିର୍ମିତ ଅବସ୍ଥାରେ ରହିଗଲା । ରତ୍ନବେଦୀ ଉପରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ଅର୍ଦ୍ଧନିର୍ମିତ ମୂର୍ତ୍ତି ଦୃଶ୍ୟମାନ ହେଲା ଏବଂ ଏହି ଅର୍ଦ୍ଧନିର୍ମିତ





ମୂର୍ତ୍ତି ଗୁଡିକୁ ସେବେଠାରୁ ଶ୍ରୀମନ୍ଦିରରେ ପୂଜା ପାଇଆସୁଛନ୍ତି । ଲଳିତା-ବିଦ୍ୟାପତିଙ୍କ ବଂଶଧରମାନେ ଶ୍ରୀମନ୍ଦିରରେ ଦଇତାପତି ଭାବେ କାର୍ଯ୍ୟ କରିଆସୁଛନ୍ତି । ଜଗନ୍ନାଥ ଯେ ଶବର ଅର୍ଥାତ୍ ଆଦିବାସୀଙ୍କ ଦେବତା ଏହା ଏହି ଉପଖ୍ୟାନରୁ ହିଁ ଜଣାପଡେ । ଏହି କାରଣରୁ ଆଦିବାସୀ ସଂସ୍କୃତି ସହିତ ଶ୍ରୀଜଗନ୍ନାଥ ସଂସ୍କୃତି ଅଙ୍ଗାଙ୍ଗୀ ଭାବେ ଜଡିତ ।

ଶ୍ରୀଜଗନ୍ନାଥ ମଧ୍ୟ ଜୈନଧର୍ମର ଦେବତା ବୋଲି କେତେକ ବିଶ୍ୱାସ କରନ୍ତି । ପାର୍ଶ୍ୱନାଥଙ୍କ ଦ୍ୱାରା ଓଡିଶାରେ ଜୈନ ଧର୍ମର ପ୍ରସାର ଘଟିଥିଲା । ଐତିହାସିକମାନେ ବିଶ୍ୱାସ କରନ୍ତି ଯେ, ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ଜୈନଧର୍ମର ପ୍ରଚାରକ ବର୍ଦ୍ଧମାନ ମହାବୀର ଓଡିଶାର କୁମାରୀ ପର୍ବତରେ ଅବସ୍ଥାନ କରି ଜୈନଧର୍ମ ପ୍ରଚାର କରିଥିଲେ । ଜୈନଧର୍ମର ତୀର୍ଥଙ୍କରମାନଙ୍କ ନାମକୁ ଅନୁକରଣ କରି ପୁରୁଷୋତ୍ତମଙ୍କ ନାମ ଜଗନ୍ନାଥ ହୋଇଛି ବୋଲି ଜୈନମାନେ ବିଶ୍ୱାସ କରନ୍ତି । ଜୈନଧର୍ମରେ ଥିବା କଳ୍ପବୃକ୍ଷ ସହିତ ପୁରୀ ମନ୍ଦିରର କଳ୍ପବୃକ୍ଷକୁ ତୁଳନା କରାଯାଇଛି । ଜୈନଧର୍ମର ତ୍ରିରତ୍ନ ଭାବେ ପରିଚିତ ସମ୍ୟକ ଜ୍ଞାନ, ସମ୍ୟକ ଚରିତ୍ର ଓ ସମ୍ୟକ ସଂକଳ୍ପକୁ ଯଥାକ୍ରମେ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ ରୂପେ ଗ୍ରହଣ କରାଯାଏ । ଜୈନଧର୍ମରେ ମୋକ୍ଷପ୍ରାପ୍ତି ନିମନ୍ତେ କୈବଲ୍ୟ ମୁକ୍ତି ସମ୍ପର୍କରେ ବର୍ଣ୍ଣନା କରାଯାଇଥିବା ବେଳେ ପୁରୀ ମନ୍ଦିରରେ ଉପଲବ୍ଧ କୈବଲ୍ୟ ମୁକ୍ତି ପ୍ରଦାନ କରିଥାଏ ବୋଲି କୁହାଯାଏ । ଜୈନଧର୍ମର ପ୍ରତୀକ ବଦ୍ଧମଙ୍ଗଳ ଏବଂ ନନ୍ଦୀପଦ ଜଗନ୍ନାଥଙ୍କଠାରେ ପରିଦୃଷ୍ଟ ହୁଏ ବୋଲି ଐତିହାସିକମାନେ ମତବ୍ୟକ୍ତ କରିଛନ୍ତି । ଜଗନ୍ନାଥ ଯେ ଜୈନ ଦେବତା ଏହା ପ୍ରମାଣିତ ହୁଏ 'ପ୍ରଣୀପତ୍ୟ ଜଗନ୍ନାଥମ୍ ସର୍ବଜନ କରାଚିତମ୍' ପଂକ୍ତିରୁ ।

ବୈଦ୍ଧଧର୍ମ ସହିତ ଜଗନ୍ନାଥ ସଂସ୍କୃତିର ଅନେକ ସାଦୃଶ୍ୟ ରହିଛି । ବୌଦ୍ଧମାନେ ମଧ୍ୟ ଶ୍ରୀଜଗନ୍ନାଥଙ୍କୁ ନିଜର ଦେବତା ବୋଲି ବିଶ୍ୱାସ କରନ୍ତି । ଉତ୍କଳର ଦୁଇ ବଣିକ ତପସୁ ଓ ବହ୍ଲିକ ଗୌତମ ବୁଦ୍ଧଙ୍କର ପ୍ରିୟ ଶିଷ୍ୟ ଥିଲେ । ସେମାନେ ଓଡିଶାରେ ବୌଦ୍ଧ ଧର୍ମର ପ୍ରସାର କରିଥିଲେ । ବୌଦ୍ଧ ଧର୍ମର ବୁଦ୍ଧ, ଧର୍ମ ଓ ସଂଘ ହିଁ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ବୋଲି ବୌଦ୍ଧଧର୍ମୀମାନେ ବିଶ୍ୱାସ କରନ୍ତି । ବୌଦ୍ଧଧର୍ମର ଧର୍ମଚକ୍ର ସହିତ ଶ୍ରୀଜଗନ୍ନାଥଙ୍କର ସୁଦର୍ଶନ ଚକ୍ରକୁ ତୁଳନା କରାଯାଏ । ଭକ୍ତ କବି ଜୟଦେବଙ୍କ ରଚିତ 'ଗୀତଗୋବିନ୍ଦ'ରେ ବୁଦ୍ଧଦେବଙ୍କୁ ଶ୍ରୀଜଗନ୍ନାଥଙ୍କର ନବମ ଅବତାର ଭାବେ ବର୍ଣ୍ଣନା କରାଯାଇଛି । ବୁଦ୍ଧଙ୍କ ଦନ୍ତର ଭଗ୍ନାବଶେଷ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ନାଭିବ୍ରହ୍ମର ଅଂଶବିଶେଷ ବୋଲି ବୌଦ୍ଧମାନେ ବିଶ୍ୱାସ କରନ୍ତି । ବୁଦ୍ଧଙ୍କ ରଥଯାତ୍ରା ପରି ଜଗନ୍ନାଥଙ୍କ ରଥଯାତ୍ରା ହୋଇଥାଏ ବୋଲି ବୌଦ୍ଧମାନେ ବିଶ୍ୱାସ କରନ୍ତି । ବୁଦ୍ଧଙ୍କ ଦନ୍ତର କେତେକ ଅଂଶ ଶ୍ରୀକ୍ଷେତ୍ର ପୁରୀରେ ଥିଲା ବୋଲି ବୌଦ୍ଧମାନେ ବିଶ୍ୱାସ କରିବା ସହିତ ପୁରୀର ପ୍ରାଚୀନ ନାମ 'ଦନ୍ତପୁରୀ' ଥିଲା ବୋଲି ମଧ୍ୟ ମତ ଦିଅନ୍ତି । କାଳକ୍ରମେ ଦନ୍ତପୁରୀରୁ ଦନ୍ତ କଟିଯାଇ ପୁରୀ ହୋଇଅଛି ବୋଲି ବୌଦ୍ଧମାନେ ବିଶ୍ୱାସ କରନ୍ତି ।

ପ୍ରାଚୀନ କାଳରେ ଶୈଳୋଦ୍ଭବ ଭୌମଙ୍କର ସୋମବଂଶ ଓ ଗଙ୍ଗ ରାଜତ୍ୱ କାଳରେ ଶୈବଧର୍ମ ବହୁଳ ଭାବରେ ପ୍ରଚାରିତ ହୋଇଥିଲା । ଦଶମ ଓ ଏକାଦଶ ଖ୍ରୀଷ୍ଟାବ୍ଦରେ ଓଡିଶାରେ ଲିଙ୍ଗରାଜ ମନ୍ଦିର ସମେତ ଅନେକ ଶିବ ମନ୍ଦିର ନିର୍ମିତ ହୋଇଥିଲା । ସମୟକ୍ରମେ ଏହା ଜଗନ୍ନାଥ ସଂସ୍କୃତିକୁ ପ୍ରଭାବିତ କରିଥିଲା । ଯେତେବେଳେ ତାନ୍ତ୍ରିକ ଶୈବ ଧର୍ମ ଓଡିଶାରେ ପ୍ରସାର ଘଟିଲା ସେତେବେଳେ ଶିବଙ୍କୁ ଭୈରବ ରୂପରେ ପୂଜା କରାଗଲା । ସେସମୟରେ ନିର୍ମିତ ଓଡିଶାର ମନ୍ଦିର ଗାତ୍ରରେ ଖୋଦିତ ଏକ ପାଦ ଭୈରବ ମୂର୍ତ୍ତି ସହିତ ଜଗନ୍ନାଥଙ୍କର ସାଦୃଶ୍ୟ ଥିବା ପରିଲକ୍ଷିତ ହୁଏ । ପୁରୀ ଶ୍ରୀମନ୍ଦିର ମଧ୍ୟରେ ଥିବା ଶିବ ମନ୍ଦିରଗୁଡିକରୁ ବିଶ୍ୱାସ କରାଯାଏ ଯେ ଜଗନ୍ନାଥ ସଂସ୍କୃତି ଶୈବଧର୍ମ ଦ୍ୱାରା ପ୍ରଭାବିତ ହୋଇଛି । ଶୈବ ଓ ଜଗନ୍ନାଥ ସଂସ୍କୃତି ମଧ୍ୟରେ 'ହରିହର' ସମନ୍ୱୟ ଘଟିଛି ଏବଂ ଏହାଦ୍ୱାରା ଜଗନ୍ନାଥ ସଂସ୍କୃତି ବିଶେଷ ଭାବେ ପ୍ରଭାବିତ ହୋଇଛି ।

ଶ୍ରୀଜଗନ୍ନାଥ ସଂସ୍କୃତି ସହିତ ଶାକ୍ତ ସଂସ୍କୃତି ମଧ୍ୟ ଜଡିତ । ପୁରୀ ଶ୍ରୀମନ୍ଦିର ପରିସରରେ ବିମଳା ଓ





ମହାଲକ୍ଷ୍ମୀଙ୍କ ଅବସ୍ଥିତି ସୂଚାଇଦିଏ ଯେ ଜଗନ୍ନାଥ ସଂସ୍କୃତି ମଧ୍ୟ ଶାକ୍ତ ସଂସ୍କୃତି ଦ୍ୱାରା ଅନେକାଂଶରେ ପ୍ରଭାବିତ । ଜଗନ୍ନାଥ ମହାପ୍ରଭୁଙ୍କଠାରେ ଭୋଗ ଲାଗିବା ପରେ ତାହା ପ୍ରସାଦ ହୁଏ । ସେହି ପ୍ରସାଦ ବିମଳାଙ୍କୁ ଅର୍ପଣ କଲାପରେ ତାହା ମହାପ୍ରସାଦ ହୋଇଯାଏ । ବିଶ୍ୱାସ କରାଯାଏ ଯେ ଶ୍ରୀଜଗନ୍ନାଥଙ୍କ ରୋଷଶାଳାରେ ଯେଉଁ ପାକ ବା ପ୍ରସାଦ ପ୍ରସ୍ତୁତ ହୁଏ ତାହାକୁ ମହାଲକ୍ଷ୍ମୀ ହିଁ ପ୍ରସ୍ତୁତ କରିଥାନ୍ତି । ଏହା ବ୍ୟତୀତ ନବକଳେବର ସମୟରେ ଓଡିଶାର ଅନ୍ୟତମ ପ୍ରସିଦ୍ଧ ଶକ୍ତିପୀଠ କାକଟପୁର ମା' ମଙ୍ଗଳାଙ୍କ ପାଖରେ ବନଯାଗ ଯାତ୍ରୀମାନେ ପୂଜା କରିଥାନ୍ତି । ମଙ୍ଗଳାଙ୍କ ସ୍ୱପ୍ନାଦେଶ ଅନୁସାରେ ବନଯାଗୀମାନେ ନୂତନ ଦାରୁ ସନ୍ଧାନରେ ବିଭିନ୍ନ ସ୍ଥାନକୁ ଅଗ୍ରସର ହୋଇଥାନ୍ତି । ଏଥିରୁ ପ୍ରମାଣିତ ହୁଏ ଯେ ଜଗନ୍ନାଥ ସଂସ୍କୃତିର ବିକାଶ ଦିଗରେ ଶକ୍ତିପୀଠର ଭୂମିକା ମଧ୍ୟ ରହିଛି । ଏଣୁ ଜଗନ୍ନାଥ ସଂସ୍କୃତି ଓ ଶାକ୍ତ ସଂସ୍କୃତି ମଧ୍ୟରେ ନିବିଡ ସମ୍ପର୍କ ରହିଛି । ପ୍ରକାରାନ୍ତରେ ଏହା ସୂଚାଇଦିଏ ଯେ ପ୍ରକୃତି ଓ ପୁରୁଷ ମଧ୍ୟରେ ଐକତାନ ରହିଛି ଏବଂ ଗୋଟିଏ ବିନା ଆଉ ଗୋଟିଏର ପରିକଳ୍ପନା ଅସମ୍ଭବ । ପ୍ରକୃତି ଓ ପୁରୁଷର ସମନ୍ୱୟ ହିଁ ସ୍ୱୟଂ ଶ୍ରୀଜଗନ୍ନାଥ ।

ବିଷ୍ଣୁଙ୍କ ଉପାସନା କରୁଥିବା ଶ୍ରଦ୍ଧାଳୁମାନେ ବୈଷ୍ଣବ ଭାବରେ ପରିଚିତ । ବିଷ୍ଣୁ ହିଁ ଜଗନ୍ନାଥ । ଏଣୁ ବୈଷ୍ଣବମାନଙ୍କର ଆରାଧ୍ୟ ଦେବତା ଭାବେ ଶ୍ରୀଜଗନ୍ନାଥ ବିବେଚିତ ହୁଅନ୍ତି । ବୈଷ୍ଣବ ଧର୍ମର ବିଶିଷ୍ଟ ପ୍ରଚାରକ ଓ ଉପାସକ ଭାବେ ପରିଚିତ ରାମାନୁଜାଚାର୍ଯ୍ୟ, ନିମ୍ବାର୍କାଚାର୍ଯ୍ୟ ଓ ବଲ୍ଲଭାଚାର୍ଯ୍ୟ ଶ୍ରୀକ୍ଷେତ୍ର ପୁରୀରେ ଅବସ୍ଥାନ କରି ବୈଷ୍ଣବ ଧର୍ମ ପ୍ରଚାର କରିଥିଲେ । ଏହା ବ୍ୟତୀତ ଗୌଡୀୟ ବୈଷ୍ଣବ ଧର୍ମର ବିଶିଷ୍ଟ ସନ୍ଥ ତଥା ପ୍ରଚାରକ ଶ୍ରୀଚୈତନ୍ୟ ଦେବ ୧୫୧୦ ଖ୍ରୀଷ୍ଟାବ୍ଦରେ ଶ୍ରୀକ୍ଷେତ୍ର ପୁରୀରେ ପହଞ୍ଚି ଦୀର୍ଘ ୧୭ ବର୍ଷ କାଳ ପୁରୀରେ ନିଜର ଧର୍ମ ପ୍ରଚାର କରିଥିଲେ । ତାଙ୍କ ଦ୍ୱାରା ଗଜପତି ପ୍ରତାପରୁଦ୍ର ଦେବ ବିଶେଷ ଭାବେ ପ୍ରଭାବିତ ହୋଇ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇଥିଲେ । ସେସମୟରେ ମଧ୍ୟ ରାଜ ପ୍ରଶାସନର ବହୁ ବିଶିଷ୍ଟ ବ୍ୟକ୍ତି ଶ୍ରୀଚୈତନ୍ୟଙ୍କ ଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ଗଙ୍ଗବଂଶର ରାଜତ୍ୱ କାଳରେ ଅର୍ଥାତ୍ ଦ୍ୱାଦଶ ଶତାବ୍ଦୀରେ ଭକ୍ତ କବି ଜୟଦେବ ଗୀତଗୋବିନ୍ଦ ରଚନା କରି ବୈଷ୍ଣବ ଧର୍ମର ମହିମା ପ୍ରତିପାଦିତ କରିଥିଲେ । ବୈଷ୍ଣବ ଧର୍ମର ବହୁ ପର୍ବପର୍ବାଣି ଜଗନ୍ନାଥ ସଂସ୍କୃତିର ରୀତିନୀତିରେ ପରିଣତ ହୋଇଯାଇଛି । ଜନ୍ମାଷ୍ଟମୀ, ନନ୍ଦୋତ୍ସବ, କାଳୀୟଦଳନ, ଚନ୍ଦନ ଯାତ୍ରା ପ୍ରଭୃତି ଶ୍ରୀମନ୍ଦିରରେ ବେଶ୍ ଆଡମ୍ବର ସହକାରେ ପାଳିତ ହୋଇଆସୁଛି । ଏହା ଶ୍ରୀଜଗନ୍ନାଥ ସଂସ୍କୃତି ଓ ବୈଷ୍ଣବ ଧର୍ମ ମଧ୍ୟରେ ଥିବା ଏକାତ୍ମତା ଓ ଅଭିନ୍ନତାକୁ ପ୍ରମାଣିତ କରିଥାଏ ।

ଶ୍ରୀଜଗନ୍ନାଥ ସଂସ୍କୃତିରେ ହିନ୍ଦୁ ଧର୍ମର ବିଭିନ୍ନ ମତ ବା ବାଦ ସମନ୍ୱିତ ହୋଇଯାଇଛି । ଶ୍ରୀଜଗନ୍ନାଥ ହିଁ ସବୁ ମତ, ବାଦ ଓ ବିଶ୍ୱାସର ଊର୍ଦ୍ଧ୍ୱରେ । ଜଗନ୍ନାଥ ସଂସ୍କୃତିର ସାର୍ବଜନୀନ ଗ୍ରହଣୀୟତା ଓ ଉଦାରବାଦ ଯୋଗୁଁ ଅନ୍ୟ ଧର୍ମର ଲୋକେ ମଧ୍ୟ ଜଗନ୍ନାଥ ସଂସ୍କୃତିର ରୀତିନୀତିରେ ନିଜ ନିଜକୁ ପରିଚାଳିତ କରୁଛନ୍ତି । ବିଦେଶରେ ମଧ୍ୟ ଜଗନ୍ନାଥ ସଂସ୍କୃତିର ବ୍ୟାପକ ପ୍ରଚାର ଓ ପ୍ରସାର ଘଟିବାରେ ଲାଗିଛି । ପୃଥିବୀର ବିଭିନ୍ନ ଦେଶରେ ଗଢିଉଠିଥିବା ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ସଂସ୍କୃତିର ପ୍ରସାରରୁ ପ୍ରମାଣିତ ହୁଏ ଯେ ଓଡିଆମାନଙ୍କର ଆରାଧ୍ୟ ଦେବତା ଜଗନ୍ନାଥ ଧର୍ମ, ବର୍ଣ୍ଣ ଓ ଜାତି ନିର୍ବିଶେଷରେ ବିଶ୍ୱବାସୀଙ୍କର ଆରାଧ୍ୟ ହୋଇପାରିଛନ୍ତି, ଏହା ନିଃସନ୍ଦେହ ।

---

ଡିଲିଟ୍ ପ୍ରାପ୍ତ ଗବେଷକ(ଆୟୁର୍ବେଦ)
ରୁମ୍ ନଂ ୧୧୧, ମ୍ୟୁନିସିପାଲିଟି ମାର୍କେଟ
ଓଏମପି ଛକ, କଟକ



# ରଥ ନିର୍ମାଣର ସେବା ଓ ସେବକ

**ଶ୍ୟାମ ପ୍ରକାଶ ସେନାପତି**

ଶ୍ରୀପୁରୁଷୋତ୍ତମ କ୍ଷେତ୍ର ବା ଶ୍ରୀକ୍ଷେତ୍ରରେ ପାଳିତ ହେଉଥିବା ଦ୍ୱାଦଶଯାତ୍ରା ମଧ୍ୟରୁ ଶ୍ରେଷ୍ଠ ଯାତ୍ରା ରୂପେ ବିବେଚିତ ରଥଯାତ୍ରା ବା ଘୋଷଯାତ୍ରା ବିଶ୍ୱପ୍ରସିଦ୍ଧ । କେହି କେହି ଏହାକୁ ମହାବେଦୀ ଯାତ୍ରା, ଦକ୍ଷିଣାଭିମୁଖୀ ଯାତ୍ରା, ନବଦିନ ଯାତ୍ରା, ଦଶାବତାର ଯାତ୍ରା, ପତିତପାବନ ଯାତ୍ରା,



ଆଡ଼ପ ଯାତ୍ରା, ଶ୍ରୀଗୁଣ୍ଡିଚା ମହୋତ୍ସବ ଓ ସାର୍ବଜନୀନ ଯାତ୍ରା ରୂପେ ଅଭିହିତ କରିଥାନ୍ତି । ପବିତ୍ର ବଡ଼ଦାଣ୍ଡରେ ପ୍ରଭୁ ଶ୍ରୀବଳଭଦ୍ରଙ୍କ ତାଳଧ୍ୱଜ, ଦେବୀ ସୁଭଦ୍ରାଙ୍କ ଦର୍ପଦଳନ ଓ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ସୁସଜ୍ଜିତ ନନ୍ଦିଘୋଷ ରଥ ଘର୍ଘର ନାଦ କରି ଶ୍ରୀଗୁଣ୍ଡିଚା ମନ୍ଦିର ଅଭିମୁଖେ ଯାତ୍ରା କରୁଥିବା ସମୟରେ ସମଗ୍ର ଅଞ୍ଚଳ ରୂପାନ୍ତରିତ ହୋଇଯାଏ ଜନସମୁଦ୍ରରେ । ରଥାରୂଢ଼ ମହାପ୍ରଭୁଙ୍କୁ ଦର୍ଶନ କରି ଭକ୍ତ ପରମ ଆହ୍ଲାଦ ଲାଭ କରିଥାଏ । ଭକ୍ତଙ୍କ ମଧ୍ୟରେ ସୃଷ୍ଟି ହୋଇଥାଏ ଦିବ୍ୟଭାବ– ବିହ୍ୱଳତା । ବିଧି ଅନୁଯାୟୀ ରଥ ନିର୍ମାଣ ପାଇଁ ପ୍ରସ୍ତୁତି ପ୍ରକ୍ରିୟା ଆରମ୍ଭ ହୁଏ ଶ୍ରୀପଞ୍ଚମୀରୁ । ଶ୍ରୀପଞ୍ଚମୀ ବା ସରସ୍ୱତୀପୂଜା ଦିନ ପ୍ରଥମ କରି ଶ୍ରୀକ୍ଷେତ୍ରରେ ରଥକାଠ ପହଞ୍ଚେ । ଶ୍ରୀରାମନବମୀରେ କାଠଚିରା ଆରମ୍ଭ ହେଉଥିବାବେଳେ ପବିତ୍ର ଅକ୍ଷୟତୃତୀୟା ତିଥିରେ ରଥନିର୍ମାଣର ଶୁଭାରମ୍ଭ ହୋଇଥାଏ । ନୃସିଂହ ଚତୁର୍ଦ୍ଦଶୀରେ ହୁଏ ଗୁଜ ଅନୁକୁଳ । ଚନ୍ଦନଯାତ ଭଉଁରୀ ଦିନ ତିନିରଥର ୬ଟି ଚକ ଢ଼େରାଯାଏ । ଦେବସ୍ନାନ ପୂର୍ଣ୍ଣିମାରେ ଚାରିନାହାକ ଢ଼େରା ଅନୁକୁଳର ଶୁଭତିଥି । ଶିଳ୍ପଶାସ୍ତ୍ର ଅନୁମୋଦିତ ପନ୍ଥାରେ ନିର୍ମିତ ହେଉଥିବା ରଥ ନିର୍ମାଣରେ ମୁଖ୍ୟତଃ ୮ ପ୍ରକାର ସେବକ ନିୟୋଜିତ ହୋଇଥାନ୍ତି । ଏହି ସେବକମାନେ ହେଲେ ୧) ବିଶ୍ୱକର୍ମା ମହାରଣା, ୨) ଓଝା ମହାରଣା, ୩) ଡାମରା ବିଶୋଇ, ୪) ରୂପକାର, ୫) ଚିତ୍ରକାର, ୬) ଦରଜୀ, ୭) ରଥଭୋଇ, ୮) କରତିଆ । ଏହି ୮ ପ୍ରକାର ସେବକଙ୍କ ସମ୍ମିଳିତ ଶ୍ରମଦାନରେ ନିର୍ମିତ ହୁଏ ତିନୋଟି ସୁଦୃଶ୍ୟ ରଥ । ରଥ ନିର୍ମାଣ କାର୍ଯ୍ୟରେ ଏ ସମସ୍ତ ସେବକଙ୍କ କାର୍ଯ୍ୟ ଗୁରୁତ୍ୱପୂର୍ଣ୍ଣ । ରଥର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ବିଭିନ୍ନ




ସଂପ୍ରଦାୟର ପ୍ରତିନିଧିମାନେ ଏଠାରେ ବିଭିନ୍ନ କାର୍ଯ୍ୟ ପୁରୁଷାନୁକ୍ରମେ କରି ଆସୁଛନ୍ତି । ଏହି ସେବକମାନଙ୍କ ତ୍ୟାଗପୂତ ସମର୍ପଣ ଯୋଗୁଁ ମହାପ୍ରଭୁଙ୍କ ରଥକାର୍ଯ୍ୟ ସମ୍ଭବ ହୋଇଥାଏ । ଖରା-ବର୍ଷା ସହି ଏମାନେ ଏହି କାର୍ଯ୍ୟ କରିବା ନିମନ୍ତେ ସମର୍ପିତ ହୋଇଯାନ୍ତି ।

**(୧) ବିଶ୍ୱକର୍ମା (ମହାରଣା) ସେବକ-** ରଥ ନିର୍ମାଣରେ ନିୟୋଜିତ ୮ ପ୍ରକାର ସେବକଙ୍କ ମଧ୍ୟରୁ ବିଶ୍ୱକର୍ମା ବା ବଢେଇ ମହାରଣାଙ୍କ ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ରଥ ନିର୍ମାଣରେ ସେମାନେ ପ୍ରମୁଖ ଭୂମିକା ଗ୍ରହଣ କରିଥାନ୍ତି । ଏମାନେ ଶାଢ଼ୀବନ୍ଧା ସେବକ ଓ ଏହି ସେବା ବଂଶାନୁକ୍ରମିକ । ପବିତ୍ର ଅକ୍ଷୟତୃତୀୟାଠାରୁ ଆରମ୍ଭ ହୋଇ ନେତ୍ରୋତ୍ସବର ମଧ୍ୟାହ୍ନ ସୁଦ୍ଧା ରଥ ନିର୍ମାଣ କାର୍ଯ୍ୟ ଶେଷ ହୋଇଥାଏ । ରଥ ନିର୍ମାଣ ପାଇଁ ବ୍ୟବହୃତ ହୁଏ ଫାସି, ଧଉରା, ଅସନ, ସାହଜ, ଶିମିଳି, ପାଳଧୁଆ, ମହାନିମ୍ବ, ଗମ୍ଭାରୀ, ମଇ, କଳସୁଆ, କଦମ୍ବ ଓ ଦେବଦାରୁ କାଠ ଇତ୍ୟାଦି । ଶ୍ରୀମନ୍ଦିର ସ୍ୱତ୍ୱଲିପିର ୧୦୫ ନମ୍ବର ସେବାରେ ବିଶ୍ୱକର୍ମା ମହାରଣାଙ୍କ ସେବାର ବିବରଣୀ ଉଲ୍ଲେଖ ରହିଛି । ଏହି ମହାରଣାଙ୍କ ମଧ୍ୟରେ ସୁତାର ମହାରଣା, ତଳି ମହାରଣା ଓ ରଥ ଅମିନ ଅନ୍ତର୍ଭୁକ୍ତ । ଶ୍ରୀନଅର ସମ୍ମୁଖସ୍ଥ ରଥଖଳାରେ ପ୍ରାୟ ଦୀର୍ଘ ୨ ମାସ ଧରି ବିଶ୍ୱକର୍ମା ମହାରଣାମାନେ ସେବା ଓ ସମର୍ପଣ ଭାବ ନେଇ ରଥ ନିର୍ମାଣ କାର୍ଯ୍ୟରେ ନିୟୋଜିତ ରହିଥାନ୍ତି । ଏମାନେ ମୁଖ୍ୟତଃ ସ୍ଥାନୀୟ ମାର୍କଣ୍ଡେଶ୍ୱର ସାହିର ବଢେଇ ଗଳି ଓ ଅନ୍ୟାନ୍ୟ ସାହିର ସ୍ଥାୟୀ ବାସିନ୍ଦା । ଏମାନଙ୍କ ବ୍ୟତୀତ ମାନସିକ କରିଥିବା କେତେକ ମହାରଣା ରାଜ୍ୟର ବିଭିନ୍ନ ସ୍ଥାନରୁ ଆସି ରଥ ନିର୍ମାଣ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥାନ୍ତି । ବିଶ୍ୱକର୍ମା ମହାରଣାମାନେ ପବିତ୍ର ଅକ୍ଷୟ ତୃତୀୟା ଓ ଏହାର ପରବର୍ତ୍ତୀ ଏକାଦଶୀ,ଭଉଁରୀ, ନେତ୍ରୋତ୍ସବ ମଧ୍ୟରେ କୌଣସି ଦିନ ଅଶୌଚ ହେଲେ ରଥକାର୍ଯ୍ୟ କରନ୍ତି ନାହିଁ । ପବିତ୍ର ଅକ୍ଷୟତୃତୀୟା ଦିନ ରଥ ନିର୍ମାଣର ଶୁଭାରମ୍ଭ ହୋଇଥାଏ । ଏଥି ନିମନ୍ତେ ମହାପ୍ରଭୁଙ୍କର ଆଜ୍ଞାମାଳ ଆସିଥାଏ ତିନିବାଡ଼ରୁ । ଏହି ତିଥିରେ ଏକ ହୋମ ଅନୁଷ୍ଠିତ ହୋଇଥାଏ । ଏଥିରେ ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ତିନିରଥର ମୁଖ୍ୟ ମହାରଣାଙ୍କ ମୁଣ୍ଡରେ ଶାଢ଼ୀ ବନ୍ଧାଯାଇ ଶ୍ରୀଫଳ ପ୍ରଦାନ ପୂର୍ବକ ବରଣ କରାଯାଇଥାଏ । ତିନିରଥର ମୁଖ୍ୟ ମହାରଣା ବ୍ୟତୀତ ପ୍ରତ୍ୟେକ ରଥରେ ୨୫ ଜଣ ବିଶ୍ୱକର୍ମା କାର୍ଯ୍ୟ କରିଥାନ୍ତି । ସେବା ଓ ସମର୍ପଣ ଭାବ ନେଇ ଉତ୍ସାହ ଉଦ୍ଦୀପନାର ସହ ବିଶ୍ୱକର୍ମା ମହାରଣାମାନେ ରଥ ନିର୍ମାଣ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥାନ୍ତି । ଆବଶ୍ୟକ ସ୍ଥଳେ ଅଧିକ ସମୟ କଠୋର ଶ୍ରମ କରିବାକୁ ପଡୁଥିଲେ ମଧ୍ୟ ଏହି ସେବା ହିଁ ସେମାନଙ୍କ ପାଇଁ ଆନନ୍ଦ । କେବଳ ସମର୍ପିତ ଭାବ ନେଇ ସେମାନେ ମହାପ୍ରଭୁଙ୍କ ସେବା କରି ଆସୁଛନ୍ତି ।

**(୨) ଓଝା ମହାରଣା (କମାର) ସେବକ-** ରଥ ନିର୍ମାଣରେ ଓଝା ମହାରଣା ବା କମାର ସେବକମାନଙ୍କର ମଧ୍ୟ ବିଶେଷ ଭୂମିକା ରହିଛି । ଏହି ସେବକଙ୍କ ଦ୍ୱାରା ପ୍ରସ୍ତୁତ ବିଭିନ୍ନ ଲୁହା ସାମଗ୍ରୀ ରଥରେ ବ୍ୟବହୃତ ହେବା ସହ ବିଭିନ୍ନ ଅଂଶକୁ ଦୃଢଭାବେ ବାନ୍ଧି ରଖିବାରେ ସମର୍ଥ ହୋଇଥାଏ । ରଥ ନିର୍ମାଣ ପାଇଁ ଶ୍ରୀମନ୍ଦିର ନିକଟ ଦୋଳବେଦୀ କୋଣରେ କମାରଙ୍କ ନିମନ୍ତେ ୩ଟି ଶାଳ କରାଯାଇ ସେଠାରେ ସମସ୍ତ କଣ୍ଟା ପ୍ରସ୍ତୁତ କରାଯାଏ । ଅକ୍ଷୟତୃତୀୟାଠାରୁ ମୁଖ୍ୟତଃ ଏହି ଶାଳରେ ଅରକଣ୍ଟା, ତୁମ୍ବରେ ଲାଗୁଥିବା ପନ୍ଦାରି, ପନ୍ଦାରିଚାବି, ତୁମ୍ବ ବାହାର ବଳା, ମୁହଁବିଡିଆ, ଦଣ୍ଡାବିଡିଆ, ଗରଗରା, ଗୟଳ, ଛନ୍ଦାଗୟଳ, ଯୋଖା, କଇଁଚି, ଭୁଇଁ, ଚାରପରିଚ୍ଛା, କତରା, ଧମକ, ବାହୁଟି ପଠାଲିଆ, ସିଂହାସନରାୟ, ଜଗତଭୂଷଣ ଶେଣି, ସିଂହାସନ ଗୁଣ୍ଠି, ନାରାଜ, ଶିଖର ଡମ୍ବରୁ, ଅନ୍ଧାରିତାଗ, ଧ୍ୱଜବଣ,କଞ୍ଚାଧମକ, କାଣ୍ଡଚୁନାଟ, ଧୂଳିଦଣ୍ଡା, ପ୍ରଭା, ସିଙ୍ଗଡା, ତେର ପରସ୍ତ ପୋଟଳ କଣ୍ଟା ଆଦି କମାର ସେବକମାନଙ୍କ ଦ୍ୱାରା ପ୍ରସ୍ତୁତ କରାଯାଏ । ତାହାକୁ ପ୍ରସ୍ତୁତ କରିବା ପାଇଁ ପ୍ରାୟ ୪ଟନ୍ ଲୁହାର ଆବଶ୍ୟକ ପଡିଥାଏ । ଲୁହାକଣ୍ଟାଗୁଡିକ ୩ରଥ ନିର୍ମାଣରେ ବିଭିନ୍ନ ପର୍ଯ୍ୟାୟରେ ବ୍ୟବହାର କରାଯାଏ । ପ୍ରକାଶଥାଉକି, ସିଙ୍ଗଡା କଣ୍ଟା ଅରରେ ବାଡିଆ ଯାଇଥାଏ । କତରା କଣ୍ଟା ରଥର ସମ୍ମୁଖ





ଭାଗରେ ବାହାରକୁ ବାହାରିଥାଏ । ୨୦ଟି ଧମକ କଣ୍ଟା ୩ ରଥର ସିଂହାସନରେ ବାଡିଆ ଯାଇଥାଏ । ୪୪୦ଟି ତାଗକଣ୍ଟା ପିଣ୍ଡିତଳ ଓ ଗଣ୍ଡି ଉପର ପଟା ବାଡିଆରେ ବ୍ୟବହାର ହୋଇଥାଏ । ପନ୍ଦାରିଗୁଡିକ ତୁମ୍ବର ଭିତର ପାର୍ଶ୍ୱରେ ଲାଗିଥାଏ । ବଳାଗୁଡିକ ତୁମ୍ବ ବାହାରେ ଏବଂ ପନ୍ଦାରିଚାବି ଅଖର ବାହାରପଟୁ ସେଗୁଡିକୁ ଜାବୁଡି ଧରିଥାଏ । ୧୨ଟି ଗରଗରା ତିନିରଥର ଦଣ୍ଡା ଉପରେ ବାଡିଆ ଯାଇଥାଏ । ଯାହା ଫଳରେ ଚାରିନାହାକା ଉଠିଥାଏ । ରଥ ପିଣ୍ଡି ନିର୍ମାଣରେ ଗୟଳ ଓ ଛନ୍ଦାଗୟଳ କଣ୍ଟାର ଆବଶ୍ୟକ ପଡିଥାଏ । ତାହାର ଚାରିପାଖରେ ବାନ୍ଧିଣି ପାଇଁ ଯୋଖାକଣ୍ଟା ଓ ଚାରିନାହାକକୁ ବାନ୍ଧି ରଖିବା ପାଇଁ ୧୫୦ରୁ ଉର୍ଦ୍ଧ୍ୱ କଇଁଚିକଣ୍ଟା ବ୍ୟବହାର ହୋଇଥାଏ । ଚାରମାଳ ବାନ୍ଧିବା ପାଇଁ ୩ ରଥ ସମ୍ମୁଖ ଭାଗରେ ୧୫ ଚାର ପରିଛା କଣ୍ଟା ବ୍ୟବହୃତ ହୋଇଥାଏ । ରଥର ପ୍ରଥମ ଓ ଦ୍ୱିତୀୟ ଭୂଇଁ ମଧ୍ୟରେ ୫୦ରୁ ଉର୍ଦ୍ଧ୍ୱ ବାହୁଟି ଫାଳିଆ କଣ୍ଟା ଲାଗିଥାଏ । ସିଂହାସନ ତଳେ ୯ଟି ସିଂହାସନ ରାୟ ଓ ୯ଟି ଜଗତଭୂଷଣ ଶେଣି କଣ୍ଟା ଲାଗିଥାଏ । ସିଂହାସନ ଧମକରେ ଭାରସାମ୍ୟ ରକ୍ଷା ପାଇଁ ବ୍ୟବହୃତ ହୋଇଥାଏ ୩୦ଟି ସିଂହାସନ ଭୂଇଁ । ପାର୍ଶ୍ୱଦେବତାଗୁଡିକୁ ଧରି ରଖିବା ପାଇଁ ୯୦ଟି ଶିଖର ଡମ୍ବରୁ କଣ୍ଟା ଲାଗୁଥିବାବେଳେ ଧ୍ୱଜବତା କଣ୍ଟାର ମଧ୍ୟ ଆବଶ୍ୟକତା ପଡିଥାଏ । ଏଥିସହିତ ଶ୍ରୀଜୀଉଙ୍କ ନବକଳେବର ସମୟରେ ଏହି ସେବକଙ୍କ ଦ୍ୱାରା ଅଶ୍ୱ, ସାରଥି, ଶୁଆ, କଳସ ଓ ପାର୍ଶ୍ୱ ଦେବାଦେବୀଙ୍କ ସ୍ଥାପନା ପାଇଁ ଲୁହା ଉପକରଣଗୁଡିକ ପ୍ରସ୍ତୁତି କରିବା ସହ ଦାରୁଚ୍ଛେଦନ କୁରାଢି, ଶଗଡ ନିର୍ମାଣ ପାଇଁ ମଧ୍ୟ ଲୁହା ସାମଗ୍ରୀ ଯୋଗାଇଥାନ୍ତି । ଶ୍ରୀମନ୍ଦିର ସ୍ୱତ୍ତ୍ୱ ଲିପିର ୧୦୧ ନମ୍ବର ସେବାରେ ଓଝା ମହାରଣାଙ୍କ ସେବାର ଉଲ୍ଲେଖ ରହିଛି । ଏଥିସହିତ ଓଝା ମହାରଣାଙ୍କ ଏକ ଗୁପ୍ତ ସେବା ରହିଛି । ଦୋଳବେଦୀ ପରିସରରେ ସ୍ନାନପୂର୍ଣ୍ଣିମା ପରଠାରୁ ଏକ ଅସ୍ଥାୟୀ ଗୁପ୍ତଘର ତିଆରି କରାଯାଏ । ଏଠାରେ 'ସହସ୍ର' ସାମଗ୍ରୀ ପ୍ରସ୍ତୁତ କରାଯାଇ ଖଳିଲାଗି ଏକାଦଶୀ ଦିନ ଦଇତାପତିଙ୍କୁ ଏହି ସେବକଙ୍କ ଦ୍ୱାରା ଅର୍ପଣ କରାଯାଇଥାଏ । ଦଇତାପତିଙ୍କୁ 'ସହସ୍ର' ଅର୍ପଣ ଓଝା ମହାରଣାଙ୍କ ଏକ ଗୁପ୍ତସେବା ।

**(୩) ତାମରା ବିଶୋଇ ସେବକ–** ଶ୍ରୀବିଗ୍ରହମାନଙ୍କ ପହଣ୍ଡି ପାଇଁ ଉଦ୍ଦିଷ୍ଟ ବାହୁଟ ଓ ସେନାପଟାରେ ତାମ୍ରପଟା ଲଗାଉଥିବାରୁ ଏହି ସେବକମାନେ 'ତାମରା ବିଶୋଇ' ନାମରେ ପରିଚିତ । ଶ୍ରୀମନ୍ଦିର ସତ୍ତ୍ୱ ଲିପିର ୯୦ ନମ୍ବର ସେବାରେ ଏହି ସେବାର ଉଲ୍ଲେଖ ରହିଛି । ଶ୍ରୀଜୀଉମାନଙ୍କ ପହଣ୍ଡି ସମୟରେ ଶ୍ରୀଅଙ୍ଗରେ ଆଘାତ ନ ଲାଗିବା ପାଇଁ ସେନାପଟା ଓ ବାହୁଟକଣ୍ଟ ଲଗାଯାଇଥାଏ । ସ୍ନାନପୂର୍ଣ୍ଣିମା ପାଇଁ ଜ୍ୟେଷ୍ଠ ତ୍ରୟୋଦଶୀ ତିଥି ମଧ୍ୟରାତ୍ରି, ଶ୍ରୀଗୁଣ୍ଡିଚା ପାଇଁ ନେତ୍ରୋତ୍ସବ ମଧ୍ୟରାତ୍ରି ଏବଂ ବାହୁଡା ଯାତ୍ରା ପାଇଁ ସନ୍ଧ୍ୟା ଦର୍ଶନ ମଧ୍ୟରାତ୍ରିରେ ତାମରା ବିଶୋଇ ବାହୁଟକଣ୍ଟ ଓ ସେନାପଟରେ ତାମର ଦେବା ସେବା କରିଥାନ୍ତି । ଉଲ୍ଲେଖନୀୟ ବିଷୟ ହେଲା କେବଳ ସେବାୟତଙ୍କ ଛଡା ଅନ୍ୟ କାହାକୁ ଏହି ସେବା ଦେଖିବାର ସୁଯୋଗ ମିଳେ ନାହିଁ ।ଏହି ସେବା ବଂଶାନୁକ୍ରମିକ ଓ ଶାଢିବନ୍ଧା ସେବା । ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ଏହି ସେବା ପାଇଁ ତାମରା ବିଶୋଇଙ୍କୁ ଏକ ମୁକୁଟା ଓ ଅର୍ଥରାଶି ପ୍ରଦାନ କରିବା ସହ ସେନାପଟ ଓ ବାହୁଟକଣ୍ଟ ପାଇଁ ଆବଶ୍ୟକ ତମ୍ବା ଏବଂ ପିତ୍ତଳ ଶ୍ରୀମନ୍ଦିର ପ୍ରଶାସନ ଯୋଗାଇ ଦେଇଥାନ୍ତି । ସ୍ନାନପୂର୍ଣ୍ଣିମା, ଶ୍ରୀଗୁଣ୍ଡିଚା ଓ ବାହୁଡା ବ୍ୟତୀତ ସୁନିଆଁ ଦିନ ଶ୍ରୀନଅରରେ ତାଙ୍କର ସେବା ମଧ୍ୟ ରହିଛି । ଏହି ସେବା ବଦଳରେ ତାଙ୍କୁ କିଛି ପାଉଣା ଓ ମହାପ୍ରସାଦ ମିଳେ । ଏହି ସେବକ ଜ୍ୟେଷ୍ଠମାସ ଶୁକ୍ଳ ତ୍ରୟୋଦଶୀଠାରୁ ବାହୁଡାଯାତ୍ରା ପର୍ଯ୍ୟନ୍ତ ଦୀର୍ଘ ଏକ ମାସ ଧରି ହବିଷ କରିଥାନ୍ତି । ତାମରା ବିଶୋଇ ଜାତିରେ କଂସାରୀ । ଏହି ସେବକ ଓଡ଼ିଶାରେ ଥିବା କଂସାରୀ ଜାତିର ହାକିମ ।

**(୪) ରୂପକାର ସେବକ–** ଯେଉଁମାନଙ୍କ କୁଶଳୀ ହସ୍ତର ସ୍ପର୍ଶରେ ନିଷ୍ପ୍ରାଣ ରଥକାଠ କାରୁକାର୍ଯ୍ୟ ମଣ୍ଡିତ ହୋଇଥାଏ ସେମାନେ ହେଲେ ରୂପକାର ସେବକ ବା ସ୍ଥାପତ୍ୟ ମହାରଣା । ରଥ ଗାତ୍ରର ସମସ୍ତ ଖୋଦେଇ ଓ





ରୂପକାର୍ଯ୍ୟ ଏମାନଙ୍କ ଦ୍ୱାରା ସଂପାଦିତ ହୋଇଥାଏ । ଏହି ଶାଢ଼ିବନ୍ଧା ସେବକଙ୍କ ସେବାର ବିବରଣୀ ଶ୍ରୀମନ୍ଦିର ସ୍ୱତ୍ୱ ଲିପିର ୮୮ନମ୍ବର ସେବାରେ ଉଲ୍ଲିଖିତ ରହିଛି । ପବିତ୍ର ଅକ୍ଷୟତୃତୀୟାରେ ଶାଢ଼ି ବନ୍ଧାଇବା ସହ ନୃସିଂହ ଚତୁର୍ଦ୍ଦଶୀ ତିଥିରେ ଏହି ସେବକମାନେ କାର୍ଯ୍ୟ ଅନୁକୂଳ କରନ୍ତି । ହବିଷ୍ୟାନ୍ନ ଭୋଜନ କରି ପବିତ୍ରତା ସହକାରେ ରଥ ନିର୍ମାଣ କାର୍ଯ୍ୟରେ ନିଜକୁ ସେମାନେ ସାମିଲ କରନ୍ତି । ରଥର ସ୍ଥାପତ୍ୟ ବିଶ୍ୱକର୍ମା ଭାବେ ପରିଚିତ ଏହି ରୂପକାରମାନେ ତିନି ରଥର କୋଣଗୁଜ, ପଚ୍ଚଗୁଜ, ଖମ୍ବି, ନାଟଗୋଡ଼, ତାରି ପରିଛ୍ଛା, ସିଂହାସନ, ପ୍ରଭା, ମୁହାଁଟା ଆଦି ଖୋଦେଇ କରନ୍ତି । ପଚ୍ଚାଗୁଜରେ ଗଜ ବିରାଳ, ନାଟଗୋଡ଼ରେ ସିଂହ ବିରାଳ ସହ ରଥର ବିଭିନ୍ନ ସ୍ଥାନରେ ଚିତ୍ତାକର୍ଷକ ଭାବେ ବିଭିନ୍ନ ଡ଼ାଳିଲତା ମଧ୍ୟ ଖୋଦିତ କରନ୍ତି । ପର୍ଯ୍ୟାୟକ୍ରମେ ଖୋଦେଇ କାର୍ଯ୍ୟ ଶେଷ ହେବା ପରେ ଚିତ୍ରକାର ସେବକଙ୍କ ଦ୍ୱାରା ରଂଗ କାର୍ଯ୍ୟ କରାଯାଇଥାଏ । ପ୍ରକାଶଥାଉକି, ରଥ ନିର୍ମାଣରେ ଏହି ଭାସ୍କର୍ଯ୍ୟ ଶିଳ୍ପୀଙ୍କ ଦ୍ୱାରା ନବକଳେବର ସମୟରେ ନୂତନ ଭାବରେ ତିନି ରଥର ସାରଥି, ଘୋଡ଼ା, ପାର୍ଶ୍ୱଦେବତା, ଋଷି, ସଖି, ଓଲଟଶୁଆ, କଳସ ଆଦି ନିର୍ମାଣ କରାଯାଇଥାଏ । ପ୍ରତିବର୍ଷ ରଥଯାତ୍ରା ସମୟରେ ସେହି ନିର୍ମିତ ବିଗ୍ରହମାନଙ୍କର ମରାମତି କାର୍ଯ୍ୟ ଏମାନେ ସଂପନ୍ନ କରିଥାନ୍ତି । ରଥରେ ଠାକୁରମାନେ ବିଜେ କରିବା ପରେ ରଥରେ ଘୋଡ଼ା ବାନ୍ଧିବା ଓ ତିନିରଥରୁ ଘୋଡ଼ା ଖୋଲିବା କାର୍ଯ୍ୟ ମଧ୍ୟ ରୂପକାରମାନେ କରନ୍ତି । ପ୍ରାୟ ୨୦ ଜଣ ରୂପକାର ଏହି କାର୍ଯ୍ୟରେ ନିୟୋଜିତ ହୋଇଛନ୍ତି ।

**(୫) ଚିତ୍ରକାର ସେବକ –** ଶ୍ରୀମନ୍ଦିର ସତ୍ତ୍ୱ ଲିପିର ୮୭ ନମ୍ବର ସେବାରେ ଚିତ୍ରକାର ସେବା ସମ୍ପର୍କରେ ଉଲ୍ଲେଖ ରହିଛି । ରୂପକାର ସେବକମାନେ ରୂପଖୋଦନ କରି ରଥକୁ କାରୁକାର୍ଯ୍ୟ ମଣ୍ଡିତ କରୁଥିବାବେଳେ ଚିତ୍ରକାର ସେବକମାନେ ରଥକୁ ବିଭିନ୍ନ ରଙ୍ଗରେ ଚିତ୍ରିତ କରି ରଥର ଶୋଭା ବୃଦ୍ଧି କରିଥାନ୍ତି । ଚିତ୍ରକାର ସେବା ବଂଶାନୁକ୍ରମିକ । ରଥର ଚକଠାରୁ ଆରମ୍ଭ କରି କଳସ, ଓଲଟଶୁଆ, ଘୋଡା, ସାରଥୀ ପର୍ଯ୍ୟନ୍ତ ସମସ୍ତ ଅଂଶକୁ ଚିତ୍ରିତ କରିବା ଏବଂ ରଥପାର୍ଶ୍ୱ ଦେବଦେବୀଙ୍କ ବିଗ୍ରହମାନଙ୍କୁ ଚିତ୍ରିତ କରିବା ଦାୟିତ୍ୱ ଏହି ଚିତ୍ରକାର ସେବକମାନଙ୍କର । ହିଙ୍ଗୁଳ, ଗେରୁ, ହରତାଳ, ଶଙ୍ଖ, ଷଢେଇକଳା, ପଚାଡୁତିଆ ଆଦି ରଙ୍ଗ ଦ୍ୱାରା ପଟକାଠି (କିଆପଟ) ଓ ମୂଷାଲୋମର ତୂଳୀକା ସାହାଯ୍ୟରେ ସେମାନେ ଏହି ରଙ୍ଗ କାର୍ଯ୍ୟ କରିଥାନ୍ତି । ଖଡିଲାଗି ଏକାଦଶୀ ଦିନ ଚିତ୍ରକାରମାନେ ଚିତ୍ର ଆରମ୍ଭ କରିଥାନ୍ତି । ଚିତ୍ରକାରମାନେ ଯେଉଁ ଚିତ୍ର ଅଙ୍କନ କରନ୍ତି ତାହା ପ୍ରତ୍ୟେକ ବର୍ଷ ସମାନ ହୁଏ । ଏହାହିଁ ଏଇ ଚିତ୍ରକାରିତାର ବିଶେଷତ୍ୱ । ଏଥିପାଇଁ ଚିତ୍ରକାରମାନେ ସେମାନଙ୍କ ପୂର୍ବପୁରୁଷ ଦ୍ୱାରା ଅନୁସୃତ ଚିତ୍ରଶିଳ୍ପ ବିଧିକୁ ହିଁ ପାଳନ କରିଥାନ୍ତି । ଏହି ସେବକମାନେ ପଟିଦିଅଁ ମଧ୍ୟ ଚିତ୍ର କରିଥାନ୍ତି । ସ୍ନାନପୂର୍ଣ୍ଣିମା ଦିନ ଶ୍ରୀଜୀଉମାନେ ପହଣ୍ଡି ବିଜେ ହୋଇ ଅନବସର ପିଣ୍ଡିକୁ ଆସିବା ପରେ ପୂଜାପଣ୍ଡା ସେବକ ଘଣ୍ଟ, ଛତା, କାହାଳି ସହିତ ଆସି ଚିତ୍ରକାର ମୁଖିଆଙ୍କୁ ଡାକରା ଦିଅନ୍ତି । ପଟିଦିଅଁଙ୍କୁ ପଟୁଆରରେ ଶ୍ରୀମନ୍ଦିରକୁ ନିଆଯାଇଥାଏ । ସେଠାରେ ପିଣ୍ଡି ସମ୍ମୁଖରେ ଚାଞ୍ଚ ତାଟି ଉପରେ ପଟିଦିଅଁ ଓହଳାଯାଇ ପୂଜା ପାଇଥାନ୍ତି । ପ୍ରକାଶଥାଉକି, କେବଳ ଶାଢିବନ୍ଧା ସେବକଙ୍କ ଦ୍ୱାରା ପଟିଦିଅଁଙ୍କୁ ଶ୍ରୀମନ୍ଦିରକୁ ଅଣାଯାଏ । ପଟିଦିଅଁ ଭାବେ ଶ୍ରୀବଳଭଦ୍ର ଅନନ୍ତ ବାସୁଦେବ, ଦେବୀ ସୁଭଦ୍ରା ଭୁବନେଶ୍ୱରୀ, ଶ୍ରୀଜଗନ୍ନାଥ ଅନନ୍ତ ନାରାୟଣ ଓ ଶ୍ରୀସୁଦର୍ଶନ ପତିତପାବନ ରୂପରେ ପୂଜା ପାଇଥାନ୍ତି । ଏହି ପଟିଦିଅଁ ଅଣସର ପିଣ୍ଡିରେ ସଂସ୍ଥାପିତ ହୋଇ ଅଣସର ଶେଷ ପର୍ଯ୍ୟନ୍ତ ପୂଜା ପାଇଥାନ୍ତି । ପଟିଦିଅଁ ଓ ରଥକାର୍ଯ୍ୟ ନିମନ୍ତେ ଏମାନଙ୍କ ନେତୃତ୍ୱରେ ୧୫ ଜଣ ଚିତ୍ରକାର ସେବା କରିଥାନ୍ତି । ଶାଢ଼ିବନ୍ଧା ସେବକଙ୍କୁ ଠିକା ମଜୁରୀ ସହ ଏକାଦଶୀ ମହାପ୍ରସାଦ ଓ ବର୍ଷକରେ ଗୋଟେ ତାଡ ଚଢ଼େଇନେଦା ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ପ୍ରଦାନ କରାଯାଇଥାଏ ।

**(୬) ଦରଜୀ ସେବକ–** ରଙ୍ଗୀନ୍ କନାରେ ମଣ୍ଡଣୀ କରି ତିନିରଥକୁ ମନୋରମ କରିବାରେ ଯେଉଁ ସେବକଙ୍କ ଶ୍ରମ ନିହିତ ରହିଥାଏ ସେମାନେ ହେଲେ ଦରଜୀ ସେବକ । ରଥକନା ସିଲାଇ ହେଉଛି ଏହି ସେବକମାନଙ୍କର ମୁଖ୍ୟ ସେବା । ସ୍ନାନପୂର୍ଣ୍ଣିମା ପରେ ଶ୍ରୀଜୀଉମାନେ ଅନବସରରେ



ରହିବା ପରେ ଏହି ସେବା ଆରମ୍ଭ ହୋଇ ନେତ୍ରୋତ୍ସବ ଦିନ ତିନିରଥର କନା ମଣ୍ଡଣି ସମ୍ପୂର୍ଣ୍ଣ ହୁଏ । ଶ୍ରୀମନ୍ଦିର ସ୍ୱତ୍ତ୍ୱ ଲିପିର ୯୫ ନମ୍ବର ସେବାରେ ଦରଜୀ ସେବକଙ୍କ ସେବା ବିବରଣୀର ଉଲ୍ଲେଖ ରହିଛି । ତାଳଧ୍ୱଜ ରଥର ମଣ୍ଡଣି ପାଇଁ ୪୨୫ ମିଟର ନାଲି ଓ ନେଳି କନା ବ୍ୟବହୃତ ହେଉଥିବାବେଳେ ନନ୍ଦିଘୋଷ ରଥର ମଣ୍ଡଣି ପାଇଁ ୪୨୫ମିଟର ନାଲି ଓ ହଳଦିଆ କନା ବ୍ୟବହୃତ ହୋଇଥାଏ । ଦେବଦଳନ ରଥର ମଣ୍ଡଣି ହୁଏ ୪୦୦ ମିଟର କଳା ଓ ନାଲିକନାରେ । ଏହିପରି ତିନିରଥ ନିମନ୍ତେ ୧୨୫୦ ମିଟର କନା ଆବଶ୍ୟକ ହୁଏ । ଦରଜୀ ସେବକଙ୍କ ସର୍ଦ୍ଦାର ହେଉଛନ୍ତି ଶାଢ଼ିବନ୍ଧା ସେବକ । ତାଙ୍କ ନେତୃତ୍ୱରେ ଆଉ ୧୧ଜଣ ଦରଜୀ ଏହି ସେବା କରିଥାନ୍ତି । ତିନିରଥ ଘେର ନିମନ୍ତେ ଆଉ ୪୦୦ ମିଟର କନା ଲାଗେ । ଏହା ବ୍ୟତୀତ ଶ୍ରୀବିଗ୍ରହମାନେ ଆଉଜି ବସୁଥିବା ମାଣ୍ଡି ବା ଅପସର ଏହି ସେବକଙ୍କ ଦ୍ୱାରା ନିର୍ମାଣ କରାଯାଇଥାଏ । ଶ୍ରୀଜଗନ୍ନାଥଙ୍କ ଚକା ଅପସର ୨୫ କି.ଗ୍ରା., ଶ୍ରୀ ବଳଭଦ୍ରଙ୍କ ଚକା ଅପସର ୨୦ କି.ଗ୍ରା. ଓ ଦେବୀ ସୁଭଦ୍ରାଙ୍କ ଚକା ଅପସର ୧୫ କି.ଗ୍ରା. ତୁଳାରେ ତିଆରି ହୁଏ । ଏଥିସହିତ ଚତୁର୍ଦ୍ଧାବିଗ୍ରହଙ୍କ ବସିବା ପାଇଁ ଆସନ ମାଣ୍ଡି (ଚକା)କୁ କନା ଓ ପାଟ ଦଉଡିରେ ସେମାନେ ତିଆରି କରିଥାନ୍ତି । ରଥ ମଣ୍ଡଣି ଓ ଅପସର ବ୍ୟତୀତ ଏହି ସେବକଙ୍କ ଦ୍ୱାରା ସ୍ନାନପୂର୍ଣ୍ଣିମା ଦିନ ସ୍ନାନମଣ୍ଡପ ଉପରେ ଟଣା ଯାଉଥିବା ୫୦ ଫୁଟ ଲମ୍ବ ଓ ୫୦ ଫୁଟ ଓସାର ବିଶିଷ୍ଟ ୧୪ଟି ଚାନ୍ଦୁଆ ତିଆରି କରାଯାଇଥାଏ । ଚାନ୍ଦୁଆ ତଳକୁ ୫୫ଫୁଟ ଲମ୍ବ ଝାଲର୍ ଘେରା ହୋଇ ରୁହେ । ପ୍ରତିବର୍ଷ ଏହି ଚାନ୍ଦୁଆ ତିଆରି କରାଯାଏ ନାହିଁ । କେବଳ ଆବଶ୍ୟକ ଅନୁଯାୟୀ ମରାମତି କରାଯାଏ । କେବଳ ଶ୍ରୀଜୀଉଙ୍କ ନବକଳେବର ସମୟରେ ଏମାନଙ୍କ ଦ୍ୱାରା ତିଆରି ହୁଏ ନୂତନ ଚାନ୍ଦୁଆ । ଅନ୍ୟାନ୍ୟ ସମୟରେ ଏହି ଦରଜୀ କାରୀଗରମାନଙ୍କ ଦ୍ୱାରା ମହାପ୍ରଭୁଙ୍କର ବିଭିନ୍ନ ବେଶ ନିମନ୍ତେ ବସ୍ତ୍ର ନିର୍ମାଣ ସହିତ ସୁମଣ୍ଡିତ ଛତ୍ର, ତରାସ ଓ ଆଲଟ ଇତ୍ୟାଦି ତିଆରି କରାଯାଇଥାଏ । ଶ୍ରୀଜୀଉଙ୍କ ପହଣ୍ଡି ସମୟରେ ଶ୍ରୀଅଙ୍ଗରେ ଲାଗୁଥିବା ଶିରୀକପଡା ଏବଂ ହାତରେ ଓ ପିଠିରେ ସେନାପଟା ବାହୁଟ କାର୍ଯ୍ୟ କେବଳ ଦରଜୀ ସର୍ଦ୍ଦାର କରିଥାନ୍ତି । ନିର୍ଦ୍ଦିଷ୍ଟ ୭ଟି ପରିବାରର ଦରଜୀ ସେବାୟତ ଏହି ସେବାରେ ନିୟୋଜିତ ହୋଇଥାନ୍ତି । ଯଦି ସେବାୟତ ପରିବାରରେ କେହି କାମରେ ତ୍ରୁଟି କଲେ କେବଳ ସର୍ଦ୍ଦାର ହିଁ ନୂତନ କାରୀଗରଙ୍କୁ ଆଣି ସୁଚାରୁରୂପେ କାର୍ଯ୍ୟ ତୁଲାଇବେ ବୋଲି ଶ୍ରୀମନ୍ଦିର ସ୍ୱତ୍ତ୍ୱ ଲିପିରେ ଉଲ୍ଲେଖ ରହିଛି । ଏତଦ୍‌ବ୍ୟତୀତ ନରେନ୍ଦ୍ର ସରୋବରରେ ଅନୁଷ୍ଠିତ ଶ୍ରୀଜୀଉଙ୍କ ଚନ୍ଦନଯାତ୍ରାରେ ବ୍ୟବହୃତ ୨ଗୋଟି ଚାପ ଉପରେ କନା ମଣ୍ଡଣି ଏବଂ ଶ୍ରୀମନ୍ଦିର ନୀଳଚକ୍ରରେ ଲଗାଯାଉଥିବା ନେତ ବା ବାନା ସିଲାଇ କାର୍ଯ୍ୟ ଦରଜୀ ସର୍ଦ୍ଦାରଙ୍କ ଏକ ବିଶିଷ୍ଟ ସେବା । ସାଢେ ୪ ହାତ ଓସାରର ୧୪ ହାତ ଲମ୍ବର ବାନା (କେବଳ ନାଲି ଓ ହଳଦିଆ କନା) ମଝିରେ ଏକ ଚନ୍ଦ୍ର ଓ ସୂର୍ଯ୍ୟ ସିଲାଇ କରାଯାଇ ଚୂନରା ସେବକଙ୍କ ଦ୍ୱାରା ଏହି ବାନା ବନ୍ଧାଯାଇଥାଏ । ତିନିରଥରେ ଶ୍ରୀଜୀଉଙ୍କ ମୁଣ୍ଡ ଉପରେ ଲାଗୁଥିବା କନକମୁଣ୍ଡି ଚାନ୍ଦୁଆ, ରଥର ସାମ୍ନାପଟକୁ ଉଡା ଚାନ୍ଦୁଆ ଏବଂ ରଥର ଶୀର୍ଷରେ ଲାଗୁଥିବା ଧ୍ୱଜ (ରଥରେ ଧ୍ୱଜା ବା ବାନା ଲାଗେ ନାହିଁ) ଏହି ସେବକଙ୍କ ଦ୍ୱାରା ତିଆରି କରାଯାଇଥାଏ ।

**(୭) ରଥଭୋଇ ସେବକ–** ରଥ ନିର୍ମାଣରେ ରଥ ଭୋଇ ସେବକଙ୍କ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ତିନିରଥରେ ବିଶ୍ୱକର୍ମା ମହାରଣାଙ୍କ ଭୂମିକା ସାଙ୍ଗକୁ ରଥ ଭୋଇଙ୍କ ସହଯୋଗକୁ ପ୍ରକୃତ ପକ୍ଷେ ଅସ୍ୱୀକାର କରାଯାଇନପାରେ । ରଥର ପରିଶ୍ରମ କାମ ଯଥା– ରଥଖଳାରୁ କାଠ ବୁହାବୁହିଠୁ ଆରମ୍ଭ କରି କଣ୍ଟା ବାଡେଇବା, କାଠ ଖଞ୍ଜାଖଞ୍ଜି ପର୍ଯ୍ୟନ୍ତ ସବୁ କାମ କରିଥାନ୍ତି ଏହି ସେବାକାରୀ । ଶ୍ରୀମନ୍ଦିର ସ୍ୱତ୍ତ୍ୱ ଲିପିର ୯୭ ନମ୍ବର ସେବାରେ ଭୋଇମାନଙ୍କ ସେବାରେ ଏହି ବିବରଣୀ ଉଲ୍ଲେଖ ଅଛି । ରଥ ଭୋଇମାନେ ଶୁଦ୍ରସେବକ ହେଲେ ମଧ୍ୟ ଶାଢ଼ୀବନ୍ଧା ସେବକ । ଅକ୍ଷୟତୃତୀୟାରେ ଅନ୍ୟ ସେବକମାନଙ୍କ ଭଳି ରଥଭୋଇମାନଙ୍କ ମୁଣ୍ଡରେ ମଧ୍ୟ ଶାଢ଼ୀ ବନ୍ଧା ଯାଇଥାଏ । ପ୍ରତିରଥ ପାଇଁ ଦୁଇଜଣ ଲେଖାଏଁ ରଥ ଭୋଇ ମୁଖ୍ୟ ରୂପେ ଶାଢି ବନ୍ଧାଇଥାନ୍ତି । ରଥଭୋଇମାନେ ରଥଖଳାରେ





ଛାମୁଣ୍ଡିଆ ନିର୍ମାଣ କରିବା ସହିତ ରଥଟଣା ବେଳେ ରଥର ବ୍ରେକ୍ ଓ ଦଉଡି ଧରି ବସିଥାନ୍ତି । ନରେନ୍ଦ୍ର ପୁଷ୍କରିଣୀରେ ବୁଡାଇ ରଖାଯାଇଥିବା ଚାପ ଡଙ୍ଗା ଚନ୍ଦନଯାତ୍ରାର ଅବ୍ୟବହିତ ପୂର୍ବରୁ ବାହାର କରିବା, ଶ୍ରୀମନ୍ଦିର ପକ୍ଷରୁ ବିଭିନ୍ନ ଛାମୁଣ୍ଡିଆ ନିର୍ମାଣ, ଦୋଳପୂର୍ଣ୍ଣମୀରେ ଦୋଳବେଦୀରେ ଚାନ୍ଦୁଆ ବାନ୍ଧିବା, ଦୋଳବେଦୀ ଖିଲାଣରେ ଓଡ଼ିଆମଠ ପକ୍ଷରୁ ଯୋଗାଇ ଦିଆଯାଇଥିବା ରାଶିତେଲ ବୋଳିବା ତଥା ରଥଯାତ୍ରା ଶେଷ ପରେ ରଥ ଭାଙ୍ଗିବା କାର୍ଯ୍ୟ ଆଦି ଏହି ସେବକଙ୍କ ସେବାର ଅନ୍ତର୍ଭୁକ୍ତ ଅଟେ । ରଥଭୋଇମାନେ ତିନିରଥରେ ଚାରମାଳ ବାନ୍ଧିଥାନ୍ତି । ଏଥିସହିତ ଜନ୍ତା, ଗାଡ଼ ଖୋଳିବା, ସିଙ୍ଗଡା ବାଡେଇବା ଓ ଚାରି ନାହାକା ଡେରାଠାରୁ ଆରମ୍ଭ କରି ରଥ ନିର୍ମାଣର ଶେଷ ପର୍ଯ୍ୟନ୍ତ କାର୍ଯ୍ୟ କରିଥାନ୍ତି ସେମାନେ । ଏହାଛଡା ରଥରେ ସାରଥି ଉଠାଇବା ରଥଭୋଇ ସେବକମାନଙ୍କ ସେବାର ଅନ୍ତର୍ଭୁକ୍ତ । ରଥ ବିଶ୍ୱକର୍ମାଙ୍କ ସଂଖ୍ୟା ଯେତିକି ଭୋଇ ସେବାକାରୀ ମଧ୍ୟ ସେତିକି ଲାଗିଥାନ୍ତି କାମରେ । ଏହି ସେବକଙ୍କ ମଧ୍ୟରେ ଜଣେ ଭୋଇ ସର୍ଦ୍ଦାର ମଧ୍ୟ ଥାଆନ୍ତି । ସର୍ଦ୍ଦାର ନିଜେ ଶ୍ରମଦାନ କରିବା ସହିତ ଅନ୍ୟମାନଙ୍କୁ ଏଥିପାଇଁ ଯୋଗାଡ କରିଥାନ୍ତି । ଅକ୍ଷୟତୃତୀୟାଠାରୁ ରଥ କାମରେ ନିୟୋଜିତ ହେବା ପରଠୁ ସେମାନେ ହବିଷରେ ରହି ଦିଅଁମାନେ ଘରକୁ ଫେରିବା ପର୍ଯ୍ୟନ୍ତ ଏହି ବିଧି ପାଳନ କରନ୍ତି । ତାଳଧ୍ୱଜ ରଥ ନିର୍ମାଣରେ ୨୯ ଜଣ, ନନ୍ଦିଘୋଷ ରଥ ନିର୍ମାଣ କାର୍ଯ୍ୟ ପାଇଁ ୨୯ ଜଣ ଏବଂ ଦର୍ପଦଳନ ରଥ ନିର୍ମାଣ କାର୍ଯ୍ୟରେ ୨୫ ଜଣ ଭୋଇ ନିୟୋଜିତ ହୋଇଥାନ୍ତି । ଏଥିସହିତ ଖେଇ ଆକାରରେ ଏହି ସେବକଙ୍କୁ ଏକାଦଶୀରେ ଅବଢା ମହାପ୍ରସାଦ, ଚଢେଇନେଦା ଓ ରଥକାଠ ଆଦି ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ମିଳିଥାଏ ।

**(୮) କରତିଆ ସେବକ–** ମହାପ୍ରଭୁଙ୍କ ତିନିରଥ ନିର୍ମାଣରେ କରତିଆ ସେବକଙ୍କ ପ୍ରମୁଖ ଭୂମିକା ରହିଛି । ରଥରେ ବ୍ୟବହୃତ ହେଉଥିବା କାଠମାନଙ୍କୁ ଏହି ସେବକମାନେ କାଟିଥାନ୍ତି । ବର୍ତ୍ତମାନ ରଥର ଅଧିକାଂଶ କାଠ କରତ କଳରେ କଟାଯାଉଥିବାରୁ କରତିଆ ସେବକମାନଙ୍କର ଭୂମିକା ଗୌଣ ହୋଇ ପଡିଛି । ତଥାପି ରଥର ତୁମ୍ବି, କନକ ମୁଣ୍ଡି ପାଇଁ ମହୀକାଠ ଓ ଦଧିନଉତି ତଳେ ଫୁଲ ପାଇଁ ଶିମିଳିକାଠ ଏହି କରତିଆମାନେ ଚିରିଥାନ୍ତି । ଦୁଆର ବେଢାରେ ଲଗା ଯାଇଥିବା ଗାରେଡିକୁ ମଧ୍ୟ ଏମାନେ କରତରେ ଚିରିଥାନ୍ତି । ଏଥିସହ ଗୟଳ, ବାହୁଟ, ଖଦିଓରା ଓ ଚାରମାଳ କାର୍ଯ୍ୟ ମଧ୍ୟ ସମ୍ପାଦନ କରିଥାନ୍ତି । ମହାପ୍ରଭୁ ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ରଙ୍କ ନିମନ୍ତେ ସାକ୍ଷୀଗୋପାଳରୁ ଆସିଥିବା ବଉଳକାଠ ଚିରି ବାହୁଟ ପ୍ରସ୍ତୁତ କରିଥାନ୍ତି । ରଥକାର୍ଯ୍ୟ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଏହି ସେବକମାନଙ୍କ କାର୍ଯ୍ୟ ଥାଏ । ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ଖେଇ ଆକାରରେ ସେମାନଙ୍କୁ ମହାପ୍ରସାଦ, ଲୁଗା, ତାଡ ମିଳିଥାଏ । ଏମାନେ ଶାଢ଼ିବନ୍ଧା ସେବକ । ରଥ ନିର୍ମାଣରେ ମୁଖ୍ୟ କରତିଆ ସେବକଙ୍କ ବ୍ୟତୀତ ୫ଜଣ ସେବକ କାମ କରନ୍ତି । କରତିଆମାନେ କାଠ କାଟି ଯୋଗାଇଲା ପରେ ବିଶ୍ୱକର୍ମାମାନେ କାମ ଆରମ୍ଭ କରିଥାନ୍ତି । ଶ୍ରୀମନ୍ଦିର ସତ୍ତ୍ୱ ଲିପିର ୯୧ ନମ୍ବର ସେବାରେ କରତିଆ ସେବକଙ୍କ ସମ୍ପର୍କରେ ଉଲ୍ଲେଖ ରହିଛି । ପ୍ରକାଶଥାଉକି, ଏବେମଧ୍ୟ ସେମାନଙ୍କ ବୃତ୍ତି ନାମାନୁସାରେ ପୁରୀରେ ଏକ କରତୀସାହି ରହିଅଛି ।

ଏହି ୮ ପ୍ରକାର ମୁଖ୍ୟ ସେବା ବ୍ୟତୀତ ରଥରେ ନିୟୋଜିତ ହେଉଥିବା ସେବକମାନଙ୍କ ମଧ୍ୟରେ ପାଟରା ବିଶୋଇ ସେବକ ଅନ୍ୟତମ । ଏହି ସେବା ଶ୍ରୀମନ୍ଦିର ସ୍ୱତ୍ତ୍ୱଲିପିର ୯୩ ନମ୍ବରରେ ଉଲ୍ଲେଖ ରହିଛି । ଏମାନେ ଶାଢୀବନ୍ଧା ସେବକ ନୁହଁନ୍ତି । ଦେବସ୍ନାନ ପୂର୍ଣ୍ଣିମାଠାରୁ ଘଣାଲାଗି ପର୍ଯ୍ୟନ୍ତ ତେରଦିନ ଏହି ସେବକମାନେ କାର୍ଯ୍ୟକରିଥାନ୍ତି । ମହାଲକ୍ଷ୍ମୀଙ୍କ ମନ୍ଦିରର ଜଗମୋହନରେ ବସି ଏହି ସେବକମାନେ ବିଜେ ଡୋରି ବୋଳନ୍ତି । ଦୁଇ ଇଞ୍ଚ ଗୋଲେଇ ବିଶିଷ୍ଟ ଏହି ବିଜେ ଡୋରି ପହଣ୍ଡି ବେଳେ ଶ୍ରୀବିଗ୍ରହମାନଙ୍କ ସେନାପଟାରେ ବନ୍ଧା ଯାଇଥାଏ । ୨୪ ହାତ ଲମ୍ବ ବିଶିଷ୍ଟ ଏହି ଡୋରି ନାଲି, ନେଳି,ବାଇଗଣି ଓ ହଳଦିଆ ରଙ୍ଗର ପାଟ ସୂତାରେ ତିଆରି ହୁଏ । ଏହାକୁ





ବାସୁଙ୍ଗାପାଟ କୁହାଯାଏ । ମାଣିଆବନ୍ଧରୁ ଏହା ଅଣାଯାଏ । ମହାପ୍ରଭୁଙ୍କର ପଇତା ଓ ଶ୍ରାବଣ ରାକ୍ଷୀ ପୂର୍ଣ୍ଣିମାରେ ମହାପ୍ରଭୁଙ୍କ ରାକ୍ଷୀ ମଧ୍ୟ ଏହି ସେବକ ପ୍ରସ୍ତୁତ କରିଥାନ୍ତି । ଏହି ସେବା ବଂଶାନୁକ୍ରମିକ ନୁହେଁ । ମଜୁରିରେ କାମ ହୁଏ । ସେବା ବନ୍ଦ କଲେ ଅନ୍ୟ ପାଟରା ନିଯୁକ୍ତି କରାଯାଇପାରେ ବୋଲି ଶ୍ରୀମନ୍ଦିର ରେକର୍ଡରେ ଉଲ୍ଲେଖ ରହିଛି ।

ଶେଷରେ ଏତିକି କହିଲେ ଯଥେଷ୍ଟ ହେବ, ରଥ ନିର୍ମାଣର ପରଂପରା କାହିଁ କେଉଁ କାଳରୁ ପ୍ରଚଳିତ ହୋଇ ଆସୁଛି । ଯେଉଁ ରଥରେ ଦିଅଁ ବିଜେ କରିବେ ତାକୁ କ'ଣ ନିର୍ମାଣ କରିବା ସମ୍ଭବ? ଯିଏ ସଂସାରର ରଥ ନିର୍ମାଣ କରୁଛି ତା' ପାଇଁ ରଥ ନିର୍ମାଣ କଲାବେଳେ ପ୍ରତିଟି ସମୟରେ ପ୍ରଭୁଙ୍କ ଆଜ୍ଞା ଦରକାର ପଡିଥାଏ । ଶ୍ରୀମନ୍ଦିରରୁ ଆଜ୍ଞାମାଳ ନ ଆସିଲେ ଏ ଶୁଭକାର୍ଯ୍ୟର ପ୍ରାରମ୍ଭ କି ପରିସମାପ୍ତି ହୋଇପାରେ ନାହିଁ । ପର୍ଯ୍ୟାୟକ୍ରମେ ଏହି ସେବକମାନେ ନିଜର ସହଯୋଗ ଦେଇଥାନ୍ତି । ପାରିଶ୍ରମିକ ଅପେକ୍ଷା ପରଂବ୍ରହ୍ମଙ୍କ କରୁଣାପ୍ରାପ୍ତି ଏମାନଙ୍କ ଲକ୍ଷ୍ୟ । ଏହି କାର୍ଯ୍ୟ ଏକ ଗୋଷ୍ଠୀସେବା । ବର୍ଷସାରା ଏମାନେ ଅପେକ୍ଷା କରିଥାନ୍ତି, କେବେ ମହାପ୍ରଭୁଙ୍କ ନିର୍ଦ୍ଦେଶ ଆସିବ ତାଙ୍କ ସେବାରେ ନିଜକୁ ନିୟୋଜିତ କରିବା ପାଇଁ । ମହାପ୍ରଭୁ ପହଣ୍ଡିରେ ଆସି ରଥାରୂଢ ହେଲେ ଏମାନଙ୍କ ପରିଶ୍ରମ ସାର୍ଥକ ହୁଏ । କେବଳ ଏତିକି ନୁହେଁ, ସିଂହଦ୍ୱାରରୁ ଶ୍ରୀଗୁଣ୍ଡିଚା ମନ୍ଦିର ପୁଣି ବାହୁଡା ଦିନ ଅନୁରୂପ ଭାବରେ ରଥକୁ ଶ୍ରୀମନ୍ଦିରକୁ ଫେରାଇ ଆଣିବା ପର୍ଯ୍ୟନ୍ତ ଏମାନେ ନିଜ କର୍ତ୍ତବ୍ୟରେ ମଗ୍ନ ଥାଆନ୍ତି । କାଳିଆର କରୁଣା ଏହି କାର୍ଯ୍ୟ ସଂପନ୍ନ କରିବାରେ ସେମାନଙ୍କୁ ସହାୟତା କରିଥାଏ । ରଥନିର୍ମାଣ ସେବା ଶ୍ରୀମନ୍ଦିରର ଏକ ବାହ୍ୟ ସେବା । କାଳିଆର ଭକ୍ତଜନଙ୍କୁ ରଥାରୂଢ ଦର୍ଶନ ଦେବାରେ ଏହି ସେବକମାନଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ ।

ସଂପାଦକ – 'ଅଭିନନ୍ଦନିକା'
ସେନାପତି ଭବନ, ବଡ଼ଦାଣ୍ଡ, ପୁରୀ–୧

# ଅଳ୍ପ ଏଇ ଜୀବନ

**ମନୋଜ ମହାନ୍ତି**

ଅଳ୍ପ ଏଇ ଜୀବନରେ ଗଳ୍ପତ ବହୁତ
ସବୁ ଗଳ୍ପ ତୁମଠାରେ ଶେଷ ଜଗନ୍ନାଥ
ମହଭାବ ତୁମେ ପ୍ରଭୁ ସକଳ ଭାବର
ସୂକ୍ଷ୍ମରୂପ ଧରିଅଛ ସବୁ ବିଶ୍ୱାସର
କୋଟି କୋଳାହଳେ ତୁମେ ନିରବ ଶବଦ
ସବୁ ଭାବନାର ତୁମେ ଅମୃତ ସ୍ୱାଦ
ସବୁ ଗଳ୍ପ ତୁମଠାରେ ଶେଷ ଜଗନ୍ନାଥ
ମହାସିନ୍ଧୁ ତୁମେ ପ୍ରଭୁ ସକଳ ବିନ୍ଦୁର
ଆଦି ନାଟ୍ୟକାର ତୁମେ ସୃଷ୍ଟି–ପ୍ରଳୟର
ପବିତ୍ର ଆତ୍ମାର ତମେ ଦିବ୍ୟ ସମର୍ପଣ
ଭକତ କଣ୍ଠର ତୁମେ ପୁଣ୍ୟ ଉଚ୍ଚାରଣ
ତୁମଠାରେ ସରିଅଛି ସବୁତକ ପଥ
ସବୁ ଗଳ୍ପ ତୁମଠାରେ ଶେଷ ଜଗନ୍ନାଥ ।

ଯୁଗ୍ମ ଶାସନ ସଚିବ
ସରକାରୀ ଉଦ୍ୟୋଗ ବିଭାଗ
ଲୋକସେବା ଭବନ, ଭୁବନେଶ୍ୱର





# ଶ୍ରୀଜଗନ୍ନାଥ ସଂସ୍କୃତି

ଡକ୍ଟର ଗଙ୍ଗୋତ୍ରୀ ଦେବୀ

ଶ୍ରୀଜଗନ୍ନାଥ ସଂସ୍କୃତି ଏକ ମହାନ୍ ସଂସ୍କୃତି । ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ଯେଉଁସବୁ ନୀତିକାନ୍ତି, ପୂଜାପର୍ବ ଯାତ୍ରା, ଉତ୍ସବ ଆଦି ପାଳନ କରାଯାଏ, ଯେଉଁସବୁ ବେଶ ଠାକୁର ବିଭିନ୍ନ ଯାତ୍ରା, ପର୍ବରେ ଧାରଣ କରିଥାଆନ୍ତି, ତାହା କେବଳ ଉତ୍କଳର ନୁହେଁ, ସାରା ଦେଶର ସମସ୍ତ ପ୍ରକାର ଧର୍ମଧାରଣା, ବିଶ୍ୱାସରେ ପର୍ଯ୍ୟବସିତ । ଧର୍ମରୂପକ ବୃକ୍ଷଟି ସଂସ୍କୃତି ରୂପି ଭୂମି ଉପରେ ତା'ର ଶାଖା, ପତ୍ର, ଫୁଲ, ଫଳ ଭାବରେ ଭିନ୍ନ ଭିନ୍ନ ଧର୍ମ, ଦର୍ଶନ, ଆଚାର ବ୍ୟବହାର ଓ ମତବାଦର ସହାବସ୍ଥାନ ଓ ଐକ୍ୟତାକୁ ଗୁରୁତ୍ୱ ଦେଇଛି ପୁରୁଷୋତ୍ତମ କ୍ଷେତ୍ର ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥ ସଂସ୍କୃତି । ଶ୍ରୀଜଗନ୍ନାଥ ଧର୍ମରେ ଶୈବ, ଶାକ୍ତ, ସୌର, ଗାଣପତ୍ୟ, ବୈଷ୍ଣବ, ଜୈନ, ବୁଦ୍ଧ, ଖ୍ରୀଷ୍ଟିଆନ, ଇସ୍‌ଲାମ୍ ପ୍ରଭୃତି ଧର୍ମଦର୍ଶନର ମୌଳିକ ତତ୍ତ୍ୱ କେବଳ ପ୍ରତିଭାତ ହୋଇନାହିଁ, ଏହା ସମସ୍ତ ଧର୍ମ ମତବାଦର ମୂଳ ଉତ୍ସ ତାହା ପ୍ରତିପାଦିତ ହୋଇଛି ।



ଏହି ସଂସ୍କୃତି ବିଶ୍ୱର ପ୍ରାଚୀନତମ ସଂସ୍କୃତି । ସ୍କନ୍ଦ ପୁରାଣର ଉତ୍କଳଖଣ୍ଡରେ ବ୍ରହ୍ମା ଦେବତାମାନଙ୍କୁ ସୂଚନା ଦେଇ କହିଛନ୍ତି, ଶ୍ରୀଜଗନ୍ନାଥ ନୀଳକାନ୍ତ ମଣିମୟ ଶରୀରରେ ଆବିର୍ଭୂତ ହୋଇ ମୋର ପୂର୍ବ ପରାର୍ଦ୍ଧ କାଳରୁ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଅବସ୍ଥାନ କରିଅଛନ୍ତି ଏବଂ ମୋର ପରମାୟୁ ଶେଷ ପର୍ଯ୍ୟନ୍ତ ସେ ଏଠାରେ ଅବସ୍ଥାନ କରିବେ । ଏଠାରେ 'ସିଦ୍ଧାନ୍ତ ଦର୍ପଣ'ରେ ନିମ୍ନୋକ୍ତ କଥା ବର୍ଣ୍ଣିତ ଅଛି ।

ଅର୍ଥାତ୍ ସୃଷ୍ଟିର ପ୍ରଥମ ପାଦ୍ୟ ପରାର୍ଦ୍ଧରେ ଶ୍ରୀଜଗନ୍ନାଥ ନୀଳାଚଳର ନୀଳକନ୍ଦରରେ ନୀଳମାଧବ ରୂପରେ ଗୁପ୍ତରେ ବାସ କରୁଥିଲେ । ସୃଷ୍ଟିର ଦ୍ୱିତୀୟ ବରାହ ପରାର୍ଦ୍ଧରେ ପତିତ ଉଦ୍ଧାର ନିମିତ୍ତ ଦାରୁବ୍ରହ୍ମରୂପି ପରିଗ୍ରହ କରି ନୀଳଚକ୍ର ଶୋଭିତ ଶ୍ରୀମନ୍ଦିରରେ ଯୁଗଯୁଗ ଧରି ଅବସ୍ଥାନ କରିଆସୁଛନ୍ତି ।

ପୂର୍ବତନ ପ୍ରଧାନମନ୍ତ୍ରୀ ସ୍ୱର୍ଗତ ଇନ୍ଦିରା ଗାନ୍ଧୀ ଏକଦା ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥ ସଂସ୍କୃତିର ପ୍ରାଚୀନତା ସମ୍ବନ୍ଧରେ ଭାଷଣ ମାଧ୍ୟମରେ କହିଥିଲେ ଯେ, 'ସୃଷ୍ଟି ପ୍ରାରମ୍ଭରୁ ବହୁ ସଭ୍ୟତା, ବହୁ ସଂସ୍କୃତି ଉଦ୍ଭବ ହୋଇଥିଲେ ହେଁ ତାହା ଶ୍ରୀଜଗନ୍ନାଥଙ୍କଠାରେ ବିଲୀନ ହୋଇଯାଇ ପ୍ରାକ୍ ବୈଦିକ

କାଳରୁ ଯେଉଁ ସଂସ୍କୃତି ତିଷ୍ଠି ରହିଛି, ତାହାହିଁ ଜଗନ୍ନାଥ ସଂସ୍କୃତି । ବାସ୍ତବରେ ଶ୍ରୀକ୍ଷେତ୍ରରେ ଏହି ଧର୍ମୀୟ ଅନୁଷ୍ଠାନ ପୃଥିବୀରେ ପ୍ରାଚୀନତମ ତଥା ବୃହତ୍ତମ ଅନୁଷ୍ଠାନ ।' ଶ୍ରୀଜଗନ୍ନାଥ ଆଧ୍ୟାତ୍ମିକ ଜଗତର ଧ୍ରୁବତାରା ସଦୃଶ ଚିର ଦେଦୀପ୍ୟମାନ । ଶ୍ରୀଜଗନ୍ନାଥଙ୍କର ଏକ ସ୍ୱତନ୍ତ୍ର ସ୍ଥିତି ଅଛି । ଶ୍ରୀଜଗନ୍ନାଥ, ଭଳଭଦ୍ର, ସୁଭଦ୍ରା ଓ ଚକ୍ରରାଜ ସୁଦର୍ଶନ ଅରୂପ ମଧ୍ୟରେ ସ୍ୱରୂପ । କୌଣସି ନିର୍ଦ୍ଦିଷ୍ଟ ରୂପର ପରିକଳ୍ପନା ମଧ୍ୟରେ ନଥାଇ ମଧ୍ୟ ସମସ୍ତ ରୂପର ସମଷ୍ଟି । ତାଙ୍କରି ମଧ୍ୟରେ ଶୂନ୍ୟରୂପୀ ଭଗବାନ ଓଁକାର ବା ପ୍ରଣବରୂପ ବୋଲି ବୈଦିକ ଦାର୍ଶନିକଙ୍କ ମତ । ଉପନିଷଦ୍ ଯେଉଁ ପରମାତ୍ମା ପରଂବ୍ରହ୍ମଙ୍କ ରୂପ ବର୍ଣ୍ଣନା କରିଛନ୍ତି, ତାହାହିଁ ଶ୍ରୀଜଗନ୍ନାଥଙ୍କ କଳେବରରେ ଉପଲବ୍ଧ । ଉପନିଷଦ କହିଛନ୍ତି, ପରମପୁରୁଷ ପରଂବ୍ରହ୍ମ ଚକ୍ଷୁ, କର୍ଣ୍ଣ, ନାସା, ପଦବିନା ସମସ୍ତ ବିଷୟ ଦର୍ଶନ କରିପାରନ୍ତି । ଶ୍ରବଣ କରିପାରନ୍ତି, ଗ୍ରହଣ କରିପାରନ୍ତି ଏବଂ ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ବିଚରଣ କରିପାରନ୍ତି । ଏଣୁ ଏହି ଅପାଣିପାଦ ବିହୀନ ଦେବତା ଯେ ସମସ୍ତ ବିଶ୍ୱର ସଂସ୍କୃତିର ପ୍ରତୀକ ନହେବେ କିପରି ।

ମାନବ ଜାତିର ଜୀବନୀ ଶକ୍ତି ହେଉଛି ସଂସ୍କୃତି । ଏହାର ଆଧାରରେ ଜାତି ଉନ୍ନତ ଓ ସମୃଦ୍ଧ ହୋଇଥାଏ । ସଂସ୍କୃତି ବ୍ୟତୀତ ମାନବ ସଭ୍ୟତାର ଅସ୍ତିତ୍ୱ ନାହିଁ । ସମାଜ ଦ୍ୱାରା ସ୍ୱୀକୃତି ପାଇ ସଭ୍ୟତାରେ ପରିଣତ ହୋଇଥାଏ ସଂସ୍କୃତି । ସାଧାରଣତଃ ସମାଜରେ ରହୁଥିବା ବ୍ୟକ୍ତି ବିଶେଷଙ୍କ ପାରସ୍ପରିକ ଦୋଷଗୁଣ ପରିମାର୍ଜିତ ହୋଇ ଯେଉଁ ଗୋଷ୍ଠୀ ଦ୍ୱାରା ଗୃହୀତ ହୋଇଥାଏ, ତାହା ହେଲା ସମାଜ । ସମାଜର ସୁରକ୍ଷା ପାଇଁ ଶକ୍ତି ତଥା ଉତ୍ପାଦନ ବୃଦ୍ଧି ଉନ୍ନତି କଳ୍ପେ ଜୀବନଧାରଣ ମାନ ହିଁ ସଭ୍ୟତା । ସାଂସ୍କୃତିକ ବୈଶିଷ୍ଟ୍ୟର ପ୍ରୋତ୍ସାହନରେ ସମାଜରେ ଭାଷା, ସାହିତ୍ୟ, ସଙ୍ଗୀତ, ନୃତ୍ୟ, ଶିଳ୍ପ, ସ୍ଥାପତ୍ୟ ଆଦି ମାନବଜାତିର ଅତିରେକ ଅନୁଭୂତି ଓ ଅଭିଜ୍ଞତାରେ କର୍ଷିତ ହୋଇ ଯେତେବେଳେ ଉନ୍ନତିର ଚରମ ସୋପାନରେ ପଦାର୍ପଣ କରେ, ସେତେବେଳେ ତାହା ପରମ୍ପରାରେ ପରିଣତ ହୁଏ । ଏହି ପରମ୍ପରା କାଳକ୍ରମେ ମାନବଜାତି ଦ୍ୱାରା ଆଦର୍ଶ ଭାବରେ ପ୍ରତିଷ୍ଠିତ ହୋଇ ନିଜର ଉତ୍କର୍ଷତା ପ୍ରତିପାଦିତ କରେ । ସେତେବେଳେ ତାହା ଐତିହ୍ୟ ସୃଷ୍ଟି କରେ । ସଭ୍ୟତା ମାନବଜାତିର/ସଂସ୍କୃତିର ପରିମାପକ । ଏଣୁ ସଂସ୍କୃତି କୁହାଯାଇଥାଏ ଭାଷା, ସାମାଜିକ ସଭ୍ୟତା, ପରମ୍ପରା, ଐତିହ୍ୟ, ଶୃଙ୍ଖଳିତ ସମାଜ ବ୍ୟବସ୍ଥା, ସୁଦୃଢ ରାଷ୍ଟ୍ରୀୟ ସଙ୍ଗଠନର ସାମଗ୍ରିକ ପ୍ରଗତିଶୀଳ ପ୍ରକ୍ରିୟାତ୍ମକ ପ୍ରତିଷ୍ଠାକୁ ।

ଧର୍ମ ଓ ସଂସ୍କୃତି ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ ଭଳି । କୌଣସି ଏକ ନିର୍ଦ୍ଦିଷ୍ଟ ଆଧ୍ୟାତ୍ମବାଦ ଉପରେ ପ୍ରତିଷ୍ଠିତ ଆଚରଣକୁ ଯଦି 'ଧର୍ମ' ବୋଲି ଗ୍ରହଣ କରିବା, ତେବେ ଗୋଟିଏ ନିର୍ଦ୍ଦିଷ୍ଟ ମାନବ ଗୋଷ୍ଠୀ ଉପରେ ଆଧ୍ୟାତ୍ମବାଦର କ୍ରିୟାଶୀଳ ପ୍ରଭାବ ହିଁ ସଂସ୍କୃତି । ସଭ୍ୟତା ମାନବ ସମାଜର ଅବୟବ ହେଲେ ଧର୍ମ ହେଉଛି ତା'ର ପ୍ରାଣ । ଏଣୁ ଧର୍ମ ଓ ସଂସ୍କୃତି ମାନବ ସମାଜର ଉତ୍କର୍ଷ ଓ ଅପକର୍ଷର ନିୟାମକ ।

ସମୟର ପରିବର୍ତ୍ତନ ଘୂର୍ଣ୍ଣିରେ ଅନେକ ସଂସ୍କୃତିର ବିଲୟ ଘଟିଛି । କେତେକ ପରିମାର୍ଜିତ ହୋଇଛି । କେତେକ ସଂସ୍କୃତି ନୂତନଭାବରେ ଆତ୍ମପ୍ରକାଶ କରିଛି । କିନ୍ତୁ ଏ ସବୁ ବାଦ୍ ବିଶ୍ୱରେ ଶ୍ରୀଜଗନ୍ନାଥ ସଂସ୍କୃତି ଏକ ମହାନ୍ ସଂସ୍କୃତି । ଏକ ଉଚ୍ଚ ପରମ୍ପରା । କୌଣସି ଦେଶର ଉନ୍ନତି ସେହି ଦେଶରେ ଆଚରଣ ହେଉଥିବା ସଂସ୍କୃତିକୁ ବୁଝାଇଥାଏ । ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ଯେଉଁସବୁ ନୀତିକାନ୍ତି, ପୂଜାପର୍ବ, ଯାତ୍ରା ଉତ୍ସବ ଆଦି ପାଳନ କରାଯାଏ, ଯେଉଁସବୁ ବେଶ ଠାକୁର ବିଭିନ୍ନ ଯାତ୍ରା, ପର୍ବରେ ଧାରଣ କରିଥାଆନ୍ତି, ତାହା କେବଳ ଉତ୍କଳର ନୁହେଁ, ସାରା ଦେଶର ସମସ୍ତ ପ୍ରକାର ଧର୍ମ, ଧାରଣା, ବିଶ୍ୱାସରେ ପର୍ଯ୍ୟବସିତ ।

ଅନାର୍ଯ୍ୟ, ଦ୍ରାବିଡ, ଆର୍ଯ୍ୟ, ବ୍ରାହ୍ମଣ୍ୟ, ଜୈନ, ବୌଦ୍ଧ, ଶୈବ, ଶାକ୍ତ, ଗାଣପତ୍ୟ ସୌର, ବୈଷ୍ଣବ, ଶିଖ୍ ଓ ଖ୍ରୀଷ୍ଟୀୟ ପ୍ରଭୃତି ବିଭିନ୍ନ ସଂସ୍କୃତିର ସମନ୍ୱୟ ଜଗନ୍ନାଥ ସଂସ୍କୃତି । ପୁଣି ବିଭିନ୍ନ ଧର୍ମ ମତବାଦୀ, ଧର୍ମଗୁରୁ ଶବର ରାଜା





ବିଶ୍ୱାବସୁ, ବୈଷ୍ଣବ ଇନ୍ଦ୍ରଦ୍ୟୁମ୍ନ, ବୌଦ୍ଧ ଇନ୍ଦ୍ରଭୂତି, ଅଦ୍ୱୈତବାଦୀ ଶୈବ ଶଙ୍କରାଚାର୍ଯ୍ୟ ହୁଅନ୍ତୁ ଅଥବା ମାଧ୍ୱାଚାର୍ଯ୍ୟ, ନିମ୍ବକାଚାର୍ଯ୍ୟ, ଶ୍ରୀଚୈତନ୍ୟ, ଶୂନ୍ୟବାଦୀ ବଳରାମ, ଶିଖ୍‌ଗୁରୁ ନାନକ, ଯବନ ହରିଦାସ, କବୀର, ଗଣପତି ଭଟ୍ଟ ଓ ରାମୋପାସକ ସନ୍ଥ ତୁଳସୀଦାସ ସମସ୍ତ ଧର୍ମ, ସମସ୍ତ ମତବାଦ, ଶ୍ରୀଜଗନ୍ନାଥଙ୍କଠାରେ ଲୀନ ହୋଇଛନ୍ତି । ସମସ୍ତେ ସେହି ଶ୍ରୀଜଗନ୍ନାଥଙ୍କ ଉତ୍କର୍ଷତାକୁ ଗ୍ରହଣ କରି ନେଇଛନ୍ତି । ଶ୍ରୀଜଗନ୍ନାଥ ସଂସ୍କୃତିରେ ବେଦ, ଗୀତା, ତ୍ରିପିଟକ, କଳ୍ପସୂତ୍ର, ଜେନ୍ଦାଭେସ୍ତା, ବାଇବେଲ, କୋରାନ ଓ ଗ୍ରନ୍ଥ ସାହେବ ପ୍ରଭୃତି ଧର୍ମଗ୍ରନ୍ଥର ସାରତତ୍ତ୍ୱ ନିହିତ । ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତି ଗଠନରେ ଶାବରୀ ପ୍ରଭାବ, ଉପାସନାରେ ଦ୍ରାବିଡୀୟ ରୀତି ଓ ଯାନିଯାତ୍ରା, ପର୍ବପର୍ବାଣିରେ ପୌରାଣିକତା ତାଙ୍କର ପ୍ରାଧାନ୍ୟକୁ ପ୍ରତିପାଦିତ କରେ । ପୁଣି ଶବରର ମେଣ୍ଢାମୁଣ୍ଡିଆ ଖେଚେଡ଼ି ସମର୍ପଣ, ବୈଦିକ ଓଁ, ତାନ୍ତ୍ରିକର ହ୍ଲୀଂ ଶ୍ରୀଂ କ୍ଲୀଂ ବୀଜମନ୍ତ୍ର, ବ୍ରାହ୍ମଣର ମୁଦ୍ରାମଣ୍ଡଳ ମନ୍ତ୍ରପାଠ, ଜୈନଧର୍ମର କୈବଲ୍ୟ, ଶୈବର ନିର୍ମାଲ୍ୟ ଓ ଶାକ୍ତର ପଞ୍ଚ'ମ' କାରଙ୍କ ସମନ୍ୱିତ ଭାବ ହିଁ ଜଗନ୍ନାଥ ସଂସ୍କୃତି । ତାଙ୍କର ଉପାସନା, ରୀତିନୀତି, ବେଶ, ଖାଦ୍ୟପେୟ ପର୍ବପର୍ବାଣି ଓ ପରମ୍ପରା ହିଁ କହିଥାଏ ସେ ଆଞ୍ଚଳିକ ସଂକୀର୍ଣ୍ଣତା ମୁକ୍ତ ଜଗନ୍ନାଥ, ସେ ସମସ୍ତ ବିଶ୍ୱର । ପ୍ରତ୍ୟେକଙ୍କ ହୃଦୟର ସ୍ପନ୍ଦନରେ । ଗୋଟିଏ ସ୍ୱର ସେ ନାଥ ଶ୍ରୀଜଗନ୍ନାଥ । ଶ୍ରୀଜଗନ୍ନାଥ ସଂସ୍କୃତି ଏକ ମହନୀୟ ସଂସ୍କୃତି । ଯୁଗେ ଯୁଗେ କେତେ ମତବାଦ, ଧର୍ମ ଓ ଧର୍ମଗୁରୁ ଆସିଯାଉଥିବେ କିନ୍ତୁ ଚିର ଜାଜ୍ୱଲ୍ୟମାନ ରହିଛି ରହିଥିବ ଜଗନ୍ନାଥ ସଂସ୍କୃତି । ସେହି ଜଗନ୍ନାଥ ସଂସ୍କୃତିର ଦାୟାଦ ଭାବରେ ଆମେ ଗର୍ବିତ ।

କେ-୮, କଳିଙ୍ଗ ନଗର
ଭୁବନେଶ୍ୱର-୩

# ବଞ୍ଚିଛି ମୁଁ ସ୍ୱାଭିମାନେ

ଚୈତନ୍ୟ ପ୍ରସାଦ ବେହେରା

ଦୁଃଖ ନାହିଁ ମୋର ହେ କଳା ଠାକୁର
ନଶୁଣିଲ ବୋଲି ଡାକ
ଯେମିତି ରଖିଛ ସେମିତି ଅଛି ମୁଁ
ସେଇ ମୋ ସରଗ ସୁଖ ।
ମାଗିନି ତ କେବେ ରାଜାର ଉଆସ
ହାତୀ ଘୋଡ଼ା ପାଟ ଛତି
ଅନୁରୋଧ ଅବା କରିନାହିଁ କେବେ
ହେବା ପାଇଁ କୋଟିପତି ।
ଏତିକି ପ୍ରାର୍ଥନା କରୁଛି ଖାଲି ମୁଁ
ରଖିଥାଅ ମୋର ଟେକ
ଦୁଃଖ ନାହିଁ ମୋର ହେ କଳା ଠାକୁର
ନଶୁଣିଲ ବୋଲି ଡାକ ।



ସ୍ୱାର୍ଥ ପାଇଁ କେବେ ବିକିନି ନିଜକୁ
ବଞ୍ଚିଛି ମୁଁ ସ୍ୱାଭିମାନେ
ହାତ ବି ପାତିନି କାହାରିକୁ କେବେ
ଲୋଭ ନାହିଁ ପର ଧନେ ।
କରୁଛି ମୁଁ ଅଳି ଆହେ ବନମାଳୀ
ନିତି ଦେଖିବି ଶ୍ରୀମୁଖ
ଦୁଃଖ ନାହିଁ ମୋର ହେ କଳାଠାକୁର
ନଶୁଣିଲେ ବୋଲି ଡାକ ।



ଅଧ୍ୟକ୍ଷ
ଅକ୍ଷୟ ମହାନ୍ତି ଫାଉଣ୍ଡେସନ୍ ଟ୍ରଷ୍ଟ,
ଓଡ଼ିଶା, ଖୋର୍ଦ୍ଧା-୭୫୨୦୫୫





# ଲକ୍ଷ୍ମୀ ମନ୍ଦିରର ନାଟ ମଣ୍ଡପ

**ଦେବୀ ପ୍ରସନ୍ନ ନନ୍ଦ**

ଶ୍ରୀମନ୍ଦିରର ଅନ୍ୟତମ ନିର୍ମାତା ଚୋଡ଼ଗଙ୍ଗଦେବଙ୍କ ଶାସନ କାଳ ଦ୍ୱାଦଶ ଶତାବ୍ଦୀରେ ଶ୍ରୀକ୍ଷେତ୍ରକୁ ଆସିଥିଲେ ମହାନ୍ ସନ୍ଥ, ଶ୍ରୀବୈଷ୍ଣବ ଧର୍ମର ଅନ୍ୟତମ ପ୍ରବର୍ତ୍ତକ ତଥା ଶ୍ରୀଜଗନ୍ନାଥଙ୍କ ପରମ ଭକ୍ତ ଶ୍ରୀରାମାନୁଜାଚାର୍ଯ୍ୟ ସ୍ୱାମୀ । ଶ୍ରୀକ୍ଷେତ୍ରରେ ରହଣି କାଳରେ ସେ ତାଙ୍କର ଅଗାଧ ପାଣ୍ଡିତ୍ୟ ତଥା ବୈଦିକ ଜ୍ଞାନ ଦ୍ୱାରା ଗଜପତିଙ୍କୁ ପ୍ରଭାବିତ କରି ଶ୍ରୀମନ୍ଦିର ପୂଜାବିଧି, ଯାନିଯାତ୍ରାର ପ୍ରଚଳନରେ ବ୍ୟାପକ ସଂସ୍କାର ଆଣିବା ସହିତ କେତେଗୋଟି ନୂତନ ମନ୍ଦିର ଏବଂ ମଠ ନିର୍ମାଣ କରାଇଥିଲେ । ଶ୍ରୀ ରାମାନୁଜାଚାର୍ଯ୍ୟଙ୍କ ଦ୍ୱାରା ପ୍ରଥମେ ରାମାନୁଜକୋଟ ଏବଂ ପରେ ତାଙ୍କର ଜଣେ ଶିଷ୍ୟ ଏମ୍ବାର ସ୍ୱାମୀଙ୍କ ଦ୍ୱାରା ଏମାର ମଠ ପ୍ରତିଷ୍ଠିତ ହୋଇଥିଲା । କୁହାଯାଏ ସେ ଥିଲେ ଜଣେ ଶ୍ରୀ ଉପାସକ, ଶ୍ରୀ ଭାଷ୍ୟର ରଚୟିତା ଏବଂ ଶ୍ରୀକ୍ଷେତ୍ରରେ ଶ୍ରୀ ଉପାସନାର ଆଦି ପ୍ରବର୍ତ୍ତକ । ତାଙ୍କ ପ୍ରଚେଷ୍ଟାରେ ଶ୍ରୀମନ୍ଦିର ପରିସରରେ ଲକ୍ଷ୍ମୀ ମନ୍ଦିରର ନାଟ ମଣ୍ଡପ ନିର୍ମିତ ହୋଇଥିଲା ଏବଂ ଶ୍ରୀଜଗନ୍ନାଥଙ୍କ ବହୁ ନୀତିକାନ୍ତି ମହାଲକ୍ଷ୍ମୀଙ୍କ ସହିତ ସଂଯୁକ୍ତ କରାଯାଇଥିଲା, ଯାହା ଏ ପର୍ଯ୍ୟନ୍ତ ଚଳିଆସୁଅଛି । ଅଣସର ଓ ମହାଅଣସର କାଳରେ ଏହି ମଣ୍ଡପରେ ବିଜେ ଡୋର, ମହାପ୍ରଭୁଙ୍କ ପଇତା ଲାଗି ଡୋର, ବୀରବର ବାନା, ରାହୁ ରେଖା ଓ ଚିତା ଲାଗି ପାଇଁ ଆବଶ୍ୟକୀୟ ଉପକରଣ ପ୍ରସ୍ତୁତ କରାଯାଏ । ଶୀତଳ ଷଷ୍ଠୀ ବେଳେ ଶିବ ପାର୍ବତୀଙ୍କ ବିବାହ ପରେ ପଞ୍ଚମହାଦେବଙ୍କ ପଞ୍ଚଗ୍ରାସୀ ନୀତି ଦୋଳଗୋବିନ୍ଦଙ୍କ ସହିତ ପାଳନ କରାଯାଏ । ଏଥିରେ ଏଗାର ବାଡ଼ ପନ୍ତି ଲାଗି ହୁଏ । ଜନ୍ମାଷ୍ଟମୀ ପରେ ଏହି ମଣ୍ଡପରେ ଗାଈଦୁହାଁ ନୀତି ସହିତ କୃଷ୍ଣ ବଳରାମଙ୍କୁ କ୍ଷୀର ମଣୋହି ମଧ୍ୟ କରାଯାଏ ।

ଶ୍ରୀମନ୍ଦିରର ବାୟୁକୋଣରେ ଅବସ୍ଥିତ ଲକ୍ଷ୍ମୀ ମନ୍ଦିର ନିଚ୍ଛକ ଓଡ଼ିଶୀ ରେଖ ଦେଉଳ ଶୈଳୀରେ ନିର୍ମିତ ପଞ୍ଚରଥ ବିଶିଷ୍ଟ ମନ୍ଦିର । ସାହାଣ ପଥର ନିର୍ମିତ ମୁଖ୍ୟ ମନ୍ଦିର ତଥା ଜଗମୋହନର ଚତୁଃପାର୍ଶ୍ୱର କାନ୍ଥ ବିଭିନ୍ନ କାରୁକାର୍ଯ୍ୟ ମଣ୍ଡିତ । ସମ୍ମୁଖ ଭାଗରେ ରହିଛି ଏକ ପ୍ରଶସ୍ତ ନାଟ ମଣ୍ଡପ । ଏହାର ଛାତ ଚାରିପାଖକୁ ଚାଳ ଭଳି ଗଡ଼ିରହିଛି । ଏହି ମନ୍ଦିରରେ ପୂଜିତା ଶ୍ରୀମହାଲକ୍ଷ୍ମୀଙ୍କ ବିଗ୍ରହ ସମ୍ମୁଖକୁ ନାଟ ମଣ୍ଡପର ପ୍ରବେଶ ଦ୍ୱାର ଗୋଟିଏ ସରଳ ରେଖାରେ ରହିବା ଦ୍ୱାରା ପାଟ ଅଗଣାରୁ ମଧ୍ୟ ଦେବୀଙ୍କ ଦର୍ଶନ କରିହୁଏ । ନାଟମଣ୍ଡପର ଚତୁଃପାର୍ଶ୍ୱରେ କାନ୍ଥ ଓ ଖମ୍ବଗୁଡ଼ିକ ମଧ୍ୟରେ ଆବଶ୍ୟକୀୟ ବ୍ୟବଧାନ ରହିଥିବାରୁ ଉତ୍ତମ ବାୟୁ ସଞ୍ଚାଳନ ସମ୍ଭବ ହୁଏ । ଏଣୁ ଭକ୍ତମାନେ ଦର୍ଶନ ସାରି ଆସି କିଛି ସମୟ ଏହିଠାରେ ବସିବା ପାଇଁ ପସନ୍ଦ କରନ୍ତି । ବୋଧହୁଏ ଏହି କାରଣରୁ ଏହି ମଣ୍ଡପକୁ 'ଅଚିନ୍ତା ମଣ୍ଡପ' କୁହାଯାଏ । ଏହି ମଣ୍ଡପର ଚଟାଣ ମସୃଣ ମାର୍ବଲ ପଥରରେ ନିର୍ମିତ, ଯାହା ଭକ୍ତମାନଙ୍କ ପାଇଁ ଏକ ଆକର୍ଷଣ । ତତ୍‌ସହିତ ନାଟମଣ୍ଡପର ସମସ୍ତ କାନ୍ଥ ଓ ଛାତ ତଳେ କରାଯାଇଥିବା ଆକର୍ଷଣୀୟ ଚିତ୍ରଣ ଭକ୍ତ ମନରେ ଆଧ୍ୟାତ୍ମିକ ଭାବ ଉଦ୍ରେକ କରେ । ମଣ୍ଡପର ପୂର୍ବପଟ କାନ୍ଥର ଉତ୍ତର ପଟେ ସୁଦୃଶ୍ୟ ହନୁମାନଙ୍କ ଚିତ୍ର ରହିଅଛି । ଏହାଙ୍କ ବର୍ଣ୍ଣ ପିଙ୍ଗଳ ଚିତ୍ର ଅତ୍ୟନ୍ତ ପ୍ରାଞ୍ଜଳ ଅଟେ । ଏହି ମହାବୀର ଶିରୁଳି ମହାବୀରଙ୍କ ପ୍ରତିରୂପ ବୋଲି ବିଶ୍ୱାସ କରାଯାଏ । କିମ୍ବଦନ୍ତୀ କହେ,

ପୂର୍ବେ ଏହି ମଣ୍ଡପରେ ହନୁମାନଙ୍କ ମୂର୍ତ୍ତି ରହିଥିଲା, ଯାହାଙ୍କୁ କୌଣସି କାରଣରୁ ଶ୍ରୀ ମହାଲକ୍ଷ୍ମୀଙ୍କ ନିର୍ଦ୍ଦେଶକ୍ରମେ ଅଢ଼େଇ ପାହୁଣ୍ଡ ଘୁଞ୍ଚାଇ ଦିଆଯାଇଛି ଏବଂ ସେହି ସ୍ଥାନରେ କେବଳ ଚିତ୍ର ଶୋଭା ପାଉଛି । ପୂର୍ବପଟ କାନ୍ଥର ଦକ୍ଷିଣ ପାର୍ଶ୍ୱରେ ବିରଳ ବାଇଶି ଭୁଜ ବିଶିଷ୍ଟ ନୃସିଂହଙ୍କ ଚିତ୍ରଣ ରହିଛି, ଯାହା ପ୍ରାୟତଃ ଆଉ କେଉଁଠାରେ ଦେଖାଯାଏ ନାହିଁ । ଦକ୍ଷିଣ ପାର୍ଶ୍ୱ କାନ୍ଥରେ ବହୁ ସର୍ପଫେଣାବେଷ୍ଟିତ ଚତୁର୍ଭୁଜ ବିଶିଷ୍ଟ ଚିନ୍ତାମଣି କୃଷ୍ଣଙ୍କ ଦୁଇ ପାର୍ଶ୍ୱରେ ହାତରେ ପଦ୍ମ ଧାରଣ କରି ଦୁଇଜଣ ସଖୀ ରହିଛନ୍ତି ଏବଂ ଉତ୍ତର ପାର୍ଶ୍ୱ କାନ୍ଥରେ ରକ୍ତବର୍ଣ୍ଣର ପଞ୍ଚମୁଖୀ ଗଣେଶଙ୍କ ଚିତ୍ର ରହିଅଛି । ତାହା ସହିତ ପଶ୍ଚିମ ପାର୍ଶ୍ୱର ଉତ୍ତର ପାଖ କାନ୍ଥରେ ଅନନ୍ତ ଶ୍ରୀ ବିଭୂଷିତ ରାମାନୁଜାଚାର୍ଯ୍ୟ ସ୍ୱାମୀଙ୍କର ଏକ ବିଶାଳ ପ୍ରତିକୃତି ଏହି ଚିତ୍ରଣର ଅନ୍ତର୍ଭୁକ୍ତ । ସ୍ୱାମୀଙ୍କ ଏକ ହାତରେ ତ୍ରିଦଣ୍ଡ ଓ ପତାକା ରହିଅଛି । ଏହି ପ୍ରତିକୃତିରେ ଉପରିଭାଗ ସହସ୍ର ସର୍ପଫଣା ଶୋଭିତ ।

ମଧ୍ୟଭାଗରେ ଥିବା ପ୍ରବେଶ ପଥର ଉପରି ଭାଗରେ ଚତୁର୍ଦ୍ଧାମୂର୍ତ୍ତିଙ୍କ ରୂପ ଅଙ୍କିତ ପଶ୍ଚିମପାର୍ଶ୍ୱ କାନ୍ଥର ଦକ୍ଷିଣ ଭାଗରେ ଚତ୍ତାକର୍ଷକ ଶ୍ରୀ ହୟଗ୍ରୀବଙ୍କ ଏକ ରୂପରେ, କୋଳରେ ଲକ୍ଷ୍ମୀଙ୍କୁ ଧାରଣ କରିଛନ୍ତି । ପଶ୍ଚିମପାର୍ଶ୍ୱ ପ୍ରବେଶ ପଥର ଦକ୍ଷିଣରେ ନାରାୟଣଙ୍କ ରୂପ ରହିଥିଲା ବେଳେ ଅପରପାର୍ଶ୍ୱରେ ଜଣେ ସ୍ୱାମୀଙ୍କର ନୀଳବର୍ଣ୍ଣର ରୂପ ଚିତ୍ରିତ ହୋଇଅଛି । ଏହା ବ୍ୟତୀତ ଆହୁରି ଅନେକ ସ୍ଥାନରେ ବିଭିନ୍ନ ଚିତ୍ରଣ ଯଥା ମଝିରେ ରାମାନନ୍ଦୀ ଚିତା ଥାଇ ଦୁଇ ପାର୍ଶ୍ୱରେ ଶଙ୍ଖ ଚକ୍ର ସହିତ ଗରୁଡ଼ ଓ ଧନୁତୀର ସହିତ ହନୁମାନଙ୍କ ଚିତ୍ର ରହିଅଛି । ଏହା ବ୍ୟତୀତ ଶ୍ରୀକୃଷ୍ଣ, କୃଷ୍ଣକାଳୀ, ଗଜଉଦ୍ଧାରଣ, ଲକ୍ଷ୍ମୀ ନାରାୟଣଙ୍କ ପଶାଖେଳ, ରାମସୀତାଙ୍କ ବିବାହ ତଥା ସ୍ୱୟଂମ୍ବର ଇତ୍ୟାଦି ବିଷୟ ଅପେକ୍ଷାକୃତ କ୍ଷୁଦ୍ରାକାରରେ ଚିତ୍ରିତ ହୋଇଅଛି ।

ମଣ୍ଡପରେ ବିସ୍ତୃତ ଚିତ୍ରଣ ବ୍ୟତୀତ ଏହି ମଣ୍ଡପରେ ଶ୍ରୀ ନୃସିଂହ ଓ ଶ୍ରୀ ନାରାୟଣଙ୍କ କଳାମୁଗୁନି ପଥର ନିର୍ମିତ ମୂର୍ତ୍ତି ମଧ୍ୟ ଶୋଭା ପାଉଅଛି । ସଂପୂର୍ଣ୍ଣ ଓଡ଼ିଶୀ ପଟ୍ଟଚିତ୍ର ଶୈଳୀରେ ଚିତ୍ରିତ ଏହି ରୂପଗୁଡ଼ିକ ସହିତ ଛାତ ତଳକୁ ଶ୍ରୀରାମାନୁଜ ସମ୍ପ୍ରଦାୟର ସ୍ୱାମୀମାନଙ୍କର ଅପେକ୍ଷାକୃତ କ୍ଷୁଦ୍ର ରୂପ ଓ ନାମ ଏବଂ ନିମ୍ନରେ ସ୍ୱାମୀଙ୍କ ଦ୍ୱାରା ପ୍ରଣୀତ ଉପନିଷଦର ଶ୍ଳୋକ କେତୋଟି ଗୋଟିଏ ଧାଡ଼ିରେ ଉଲ୍ଲେଖ ହୋଇଛି । ଏହିସବୁ ବିସ୍ତୃତ ଚିତ୍ରଣ ଶ୍ରୀ ସମ୍ପ୍ରଦାୟର ଅନୁଗାମୀମାନଙ୍କ ଉଦ୍ୟମରେ କରାଯାଇଥିବାର ଜଣାଯାଏ । ସ୍ୱାମୀସମୂହଙ୍କ ରୂପ ଚିତ୍ରଣର ବିବରଣୀ ନିମ୍ନରେ ପ୍ରଦାନ କରାଗଲା ।

**ନାଟମଣ୍ଡପରେ ଚିତ୍ରିତ ଶ୍ରୀରାମାନୁଜ ସମ୍ପ୍ରଦାୟର ସ୍ୱାମୀମାନଙ୍କ ନାମ**

୧. ଶ୍ରୀ ଅନୁଦାସ ସ୍ୱାମୀ
୨. ଶ୍ରୀ ଗୋବିନ୍ଦାଚାର୍ଯ୍ୟ ସ୍ୱାମୀ
୩. ଶ୍ରୀ ଦାସରଥୀ ସ୍ୱାମୀ
୪. ଶ୍ରୀ କୁରେଶ (ଦାଢ) ସ୍ୱାମୀ
୫. ଶ୍ରୀ ଆନ୍ଦ୍ରପୂର୍ଣ୍ଣ ସ୍ୱାମୀ
୬. ଶ୍ରୀ ଭଟ୍ଟନାଥ ଜିୟର ସ୍ୱାମୀ
୭. ଶ୍ରୀ ଦେବରାଜ ସ୍ୱାମୀ
୮. ଶ୍ରୀ ପ୍ରତିବାଦି ଭୟଙ୍କର ସ୍ୱାମୀ
୯. ଶ୍ରୀ ଭେଙ୍କଟେଶ ଜିୟର ସ୍ୱାମୀ
୧୦. ଶ୍ରୀ ଅନନ୍ତ ସ୍ୱାମୀ
୧୧. ଶ୍ରୀ ତୋତାଦ୍ରି ସ୍ୱାମୀ
୧୨. ଶ୍ରୀ ପ୍ରାଣଦାର୍ତ୍ତି ହରାଚାର୍ଯ୍ୟ ସ୍ୱାମୀ
୧୩. ଶ୍ରୀ ରଙ୍ଗନାଥ ସ୍ୱାମୀ
୧୪, ଶ୍ରୀ ମନବଳ ମାମୁନୀ ସ୍ୱାମୀ
୧୫. ଶ୍ରୀ ଗୋଷ୍ଠୀପୂର୍ଣ୍ଣ ସ୍ୱାମୀ
୧୬. ଶ୍ରୀ ସମ୍ପଦକୁମାର ସ୍ୱାମୀ
୧୭. ଶ୍ରୀ ପରକାଳ ସ୍ୱାମୀ
୧୮. ଶ୍ରୀ ଭୂତଯୋଗୀ ସ୍ୱାମୀ





୧୯. ଶ୍ରୀ ସୁରଯୋଗୀ ସ୍ୱାମୀ

୨୦. ଶ୍ରୀ ମହଦ୍‌ଯୋଗୀ ସ୍ୱାମୀ

୨୧. ଶ୍ରୀ ମଧୁର କବି ସ୍ୱାମୀ

୨୨. ଶ୍ରୀ ଭକ୍ତିସାର ସ୍ୱାମୀ

୨୩. ଶ୍ରୀ ଶଠକୋପ ସ୍ୱାମୀ

୨୪. ଶ୍ରୀ କୂଳଶେଖର ସ୍ୱାମୀ

୨୫. ଶ୍ରୀ ଯୋଗୀବାହନ ସ୍ୱାମୀ

୨୬. ଶ୍ରୀ ଭକ୍ତିଘ୍ରିରେଣୁ ସ୍ୱାମୀ

୨୭. ଶ୍ରୀ ଗୋଦାମା ସ୍ୱାମୀ

୨୮. ଶ୍ରୀ ନାଥମୁନୀ ସ୍ୱାମୀ

୨୯. ଶ୍ରୀ ବରବର ମୁନି ସ୍ୱାମୀ

୩୦. ଶ୍ରୀ ଯାମୁନାଚାର୍ଯ୍ୟ ସ୍ୱାମୀ

୩୧. ଶ୍ରୀ ମହାପୂର୍ଣ୍ଣ ସ୍ୱାମୀ

୩୨. ଶ୍ରୀ ଶୈଳପୂର୍ଣ୍ଣ ସ୍ୱାମୀ

୩୩. ଶ୍ରୀ ଗୋଷ୍ଠୀପୂର୍ଣ୍ଣ ସ୍ୱାମୀ

୩୪. ଶ୍ରୀ ନର/ନାରାୟଣ ସ୍ୱାମୀ

୩୫. ଶ୍ରୀ ନାଞ୍ଜାୟର ସ୍ୱାମୀ

୩୬. ଶ୍ରୀ ପିଲାଇ ଲୋକାଚାର୍ଯ୍ୟ ସ୍ୱାମୀ

୩୭. ଶ୍ରୀ ବିଶ୍ୱକ୍‌ସେନ/ ଶ୍ରୀ ଗରୁଡ଼ ସ୍ୱାମୀ

କୁଣ୍ଢେଇବେଣ୍ଟ ସାହି, ପୁରୀ

# ରାଜା ଇନ୍ଦ୍ରଦ୍ୟୁମ୍ନ

**କିଶୋର ଚନ୍ଦ୍ର ପଟ୍ଟନାୟକ**

ନାରଦଙ୍କ ପ୍ରେରଣାରେ ଇନ୍ଦ୍ରଦ୍ୟୁମ୍ନ ବିଚଳିତ ହେଲେ
ନୀଳମାଧବଙ୍କ ସନ୍ଧାନେ ଚତୁର୍ଦ୍ଦିଗେ ଦୂତ ପଠାଇଲେ ।
ଘରେ, ଘରେ, ଗ୍ରାମେ, ଗ୍ରାମେ ନଗରେ ନଗରେ
ପ୍ରାର୍ଥନା କରନ୍ତି ସର୍ବେ ପ୍ରଭୁଙ୍କ କୃପା ଉଦ୍ଦେଶ୍ୟରେ ।
ମାଳବ, ଅବନ୍ତୀ ରାଜା ଭକ୍ତ ଇନ୍ଦ୍ରଦ୍ୟୁମ୍ନ
ବହୁ କଷ୍ଟକରି ନିର୍ମାଣ କରିଥିଲେ ଦାରୁ ପରଂବ୍ରହ୍ମ ।
ତୋଳାଇ ଥିଲେ ସେହୁ ନୃସିଂହ ଓ ଗୁଣ୍ଡିଚା ମନ୍ଦିର
ପ୍ରତିଷ୍ଠା କରିବା ପାଇଁ ଯାଇଥିଲେ ସ୍ୱୟଂ ସ୍ୱର୍ଗପୁର ।
ନାରଦଙ୍କ ସହିତ ପିତାମହ ବ୍ରହ୍ମାଙ୍କୁ ଭେଟିଲେ
ରାଜାଙ୍କ ଅନୁରୋଧେ ବ୍ରହ୍ମବେଦ ସଦୟ ହୋଇଲେ ।
ସ୍ୱର୍ଗପୁରରୁ ଆସି ମର୍ତ୍ତ୍ୟରେ ଅବତୀର୍ଣ୍ଣ ହେଲେ
ଶାସ୍ତ୍ର ମତେ ଶ୍ରୀବିଗ୍ରହ ଓ ମନ୍ଦିର ପ୍ରତିଷ୍ଠା କରିଲେ ।
ରାଜା ଇନ୍ଦ୍ରଦ୍ୟୁମ୍ନଙ୍କର ମନୋବାଞ୍ଛା ପୂରଣ ହୋଇଲା
ମନ୍ଦିର ନିକଟେ ପୁଷ୍କରିଣୀ ଖନନ କରାଗଲା ।
କଥିତ ଅଛି ମନ୍ଦିର ନିର୍ମାଣେ ନିଯୁକ୍ତ ଶ୍ରମିକଗଣ
କୂରୁମ ରୂପରେ ପୁଷ୍କରିଣୀରେ କାଟନ୍ତି ଦୈନନ୍ଦିନ ।
ଭକ୍ତଗଣ ଶ୍ରଦ୍ଧାରେ ବେଣ୍ଟ ମୁଆଁ ଦିଅନ୍ତି ।
କୂରୁମମାନେ ଆନନ୍ଦରେ ଭକ୍ଷଣ କରନ୍ତି
କେହି ରହିନାହିଁ, ରହିବେ ନାହିଁଟି ଏ ଧରା ଧାମରେ
କୀର୍ତ୍ତି ଏକା ସିନା ଶୋଭାପାଏ କର୍ତ୍ତାଙ୍କ ସ୍ମୃତିରେ ।

ଗୋପବନ୍ଧୁ ଲେନ୍
ହେରାଗୋହିରି ସାହି, ପୁରୀ

# ସିଦ୍ଧ ବଳଦେବଙ୍କ ଘୋଷଯାତ୍ରା

ଡକ୍ଟର ବାସୁଦେବ ଦାସ

ସନାତନ ସଂସ୍କୃତିରେ ଘୋଷଯାତ୍ରା ଏକ ପ୍ରଧାନ ଉତ୍ସବ ହୋଇଥିବାରୁ ପ୍ରତ୍ୟେକ ବୈଷ୍ଣବ ପୀଠରେ ଇଷ୍ଟଦେବଙ୍କର ରଥ ପରିକ୍ରମା ହୋଇଥାଏ । ଘୋଷ ଅର୍ଥ ସୁମଙ୍ଗଳ । ବିଶ୍ୱର ମଙ୍ଗଳ କାମନାରେ ଶ୍ରୀବଳଦେବଙ୍କ ପୂଜା ପାଂଚ ହଜାର ବର୍ଷ ଧରି ହେଉଅଛି ।



''ମହାଭାରତ''ରେ ଘୋଷଯାତ୍ରାର ବର୍ଣ୍ଣନା ଥିବାରୁ ଭାରତବର୍ଷରେ ଏହା ଏକ ଆଧ୍ୟାତ୍ମିକ ପରଂପରା ଭାବେ ବିଚାର୍ଯ୍ୟ । ଶ୍ରୀକ୍ଷେତ୍ର ପୁରୀରେ ଶ୍ରୀଜଗନ୍ନାଥଙ୍କୁ ଶ୍ରୀକୃଷ୍ଣ ଭାବେ ବିଚାର କରାଯାଇ ତାଙ୍କର ପ୍ରତିବର୍ଷ ନନ୍ଦିଘୋଷ ଯାତ୍ରା ହୁଏ । ଏହା ଗୁଣ୍ଡିଚା ଯାତ୍ରା ବା ରଥଯାତ୍ରା ବା ଆଡପ ଯାତ୍ରା ଭାବରେ ବିଶ୍ୱ ବିଦିତ । ଜାତି ଧର୍ମ, ବର୍ଣ୍ଣ ଓ ପାଟକ ନିର୍ବିଶେଷରେ ଶ୍ରୀଜୀଉଙ୍କର ଏହି ମହାନ୍ ପର୍ବକୁ ସକଳଜନ ପାଳନ କରନ୍ତି । ରଥରେ ତ୍ରିମୂର୍ତ୍ତି ଦର୍ଶନ କଲେ ଅଶେଷ ପୁଣ୍ୟ ଲାଭ ହୁଏ । ବିଶେଷ କରି ବଳଦେବଙ୍କ ଘୋଷଯାତ୍ରା ବିଶ୍ୱର ମଙ୍ଗଳ ପାଇଁ ଉଦ୍ଦିଷ୍ଟ ।

ତୁଳସୀ କ୍ଷେତ୍ରରେ ଶ୍ରୀସିଦ୍ଧ ବଳଦେବଙ୍କ ରଥ ନାମ ବ୍ରହ୍ମ ତାଳଧ୍ୱଜରଥ । ପୁରାଣ ଯୁଗରେ ଶ୍ରୀବଳଦେବଙ୍କୁ ବ୍ରହ୍ମା ଏହି ସୁବିଖ୍ୟାତ ଭୁବନ ବିଜୟୀ ରଥ ପ୍ରଦାନ କରିଥିଲେ । ଏହି ରଥରେ ଯୁଦ୍ଧ କରି ପଳମ୍ବା ସୁରକୁ ବଳଦେବ ନିହତ କରିଥିଲେ । କେନ୍ଦ୍ରାପଡାର ଏହି ତାଳଧ୍ୱଜ ରଥଯାତ୍ରା ଶ୍ରୀକ୍ଷେତ୍ର ପଦ୍ଧତି ଅନୁସରଣରେ ଅନୁଷ୍ଠିତ ହୋଇଥାଏ । ଯଦିଚ କେତେକ ସ୍ୱତନ୍ତ୍ରତା ରହିଛି, ତାହା ସେହି ପୁରୀର ଭାଷା ବ୍ୟବହାରରେ ଚାଲିଛି । ''ମଣିଶୃଙ୍ଗ'' ବିଜେ ପରିବର୍ତ୍ତେ ନୀଳାଦ୍ରି ବିଜେ ଗୁଣ୍ଡିଚା ଯାତ୍ରା, ଶ୍ରୀମନ୍ଦିର ଆଦି ଶବ୍ଦ ସବୁ ସେବକମାନଙ୍କ ଦ୍ୱାରା ବ୍ୟବହୃତ ହେଉଅଛି । ମାତ୍ର ଏହି ଶବ୍ଦ ଶ୍ରୀକ୍ଷେତ୍ର ବ୍ୟତୀତ ଅନ୍ୟ କୌଣସି କ୍ଷେତ୍ରରେ ବ୍ୟବହୃତ ହୋଇପାରିବ ନାହିଁ ବୋଲି ନିର୍ଦ୍ଦେଶନାମା ରହିଛି । ଷୋଡଶ ଶତାବ୍ଦୀରୁ ପ୍ରାଚୀନ ବଳଦେବ ମନ୍ଦିରରେ ରଥଯାତ୍ରା ଅନୁଷ୍ଠିତ ହେଉଥିଲା । ଅଧୁନା ପୁରୁଣା ବସ୍ଷ୍ଟାଣ୍ଡ ଅର୍ଥାତ୍ ରେକାବି ବଜାରଠାରୁ ସାଆନ୍ତ ସାହି ପର୍ଯ୍ୟନ୍ତ ରଥଦାଣ୍ଡ ଥିଲା । ଚମାର ସାଇରୁ ରାୟସାହେବ ଭୀତରାଉତ ଓ ଅନନ୍ତ ଚାଟାର୍ଜୀଙ୍କ ଘର ପର୍ଯ୍ୟନ୍ତ ଗୁଣ୍ଡିଚା ବେଢା ରହିଥିଲା । ସେଗୁଡିକ କାଳ ଗର୍ଭରେ ଲୀନ ହୋଇଥିଲେ ମଧ୍ୟ ସଂକେତ ରହିଅଛି ।





ଶ୍ରୀକ୍ଷେତ୍ର ରୀତିନୀତି ଅନୁସରଣରେ ବର୍ତ୍ତମାନ ରଥଯାତ୍ରା ଅନୁଷ୍ଠିତ ହେଉଥିଲେ ମଧ୍ୟ ସ୍ୱକୀୟ ମୌଳିକତା ରକ୍ଷା କରାଯାଇଛି । ପ୍ରଥମତଃ ରଥାଙ୍ଗ ନିର୍ମାଣରେ ବ୍ରହ୍ମ ତାଳଧ୍ୱଜ ରଥର ଚକଫମ୍ପା ନହୋଇ ନିଦା ହୋଇଥାଏ । ସୁଦୃଢ ଶକ୍ତଶାଳୀ । ବିଶ୍ୱର ସୁବୃହତ୍ ରଥର ଭାରା ସମ୍ଭାଳିବା ପାଇଁ ଏପରି ନିଦା ହୋଇଥାଏ । ଚକର ପରିକଳ୍ପନା ପ୍ରାଚୀନ ରଥଯାତ୍ରାର ମାନଦଣ୍ଡ କ'ଣ ଥିଲା, ତାହାର କୌଣସି ଇତିହାସ ଉପଲବ୍ଧ ହୁଏନାହିଁ । ପ୍ରଚଳିତ ରଥ ନିର୍ମାଣ ପ୍ରଥମ ଶିଳ୍ପୀ ହେଉଛନ୍ତି ପଙ୍କଜ ମହାରଣା । ପଙ୍କଜ ନିଜର ଆବିଷ୍କୃତ ''ଖୁରିଆ'' ଯଂତ୍ର ସାହାଯ୍ୟରେ ରଥ ନିର୍ମାଣ ଆରମ୍ଭ କରିଥିବା ବଂଶଧରମାନେ କହନ୍ତି । ଅଦ୍ୟାବଧି ମଧ୍ୟ ତାଙ୍କର ବଂଶଧର ପୁରୁଷାନୁକ୍ରମେ ଅନୁସରଣ କରି ଆସିଛନ୍ତି । ପ୍ରାୟ ୨୫୦ବର୍ଷରୁ ଅଧିକକାଳ ଶ୍ରୀ ବଳଦେବ ତ୍ରିମୂର୍ତ୍ତିଙ୍କର ଘୋଷଯାତ୍ରା ଇଚ୍ଛାପୁରରେ ଅନୁଷ୍ଠିତ ହୋଇ ଆସୁଅଛି ।

**ରଥ ନିର୍ମାଣ**

ଦୋଳପୂର୍ଣ୍ଣିମା ପରଦିନ ଚୈତ୍ର କୃଷ୍ଣ ପ୍ରତିପଦ ଦିବସରେ ରଥ ନିର୍ମାଣ ନିମନ୍ତେ ନିର୍ଦ୍ଦିଷ୍ଟ ବୃକ୍ଷରେ ବଳଦେବଜୀଉଙ୍କ ଆଜ୍ଞାମାଳ ବନ୍ଧାଯାଇ ପୂଜା ପୂର୍ବକ ବୃକ୍ଷଛେଦନର ଶୁଭାରମ୍ଭ ହୁଏ । ଅକ୍ଷୟ ତୃତୀୟାରେ ଉକ୍ତ କାଠ ସହ ଯଂତ୍ରାଦି ପୂଜା ପାଇ ରଥ ନିର୍ମାଣ ଅନୁକୂଳ ହୁଏ । ଅନୁକୂଳ ଦିବସରେ ଯେଉଁ କାଷ୍ଠ ଖଣ୍ଡିକ କଟାଯାଇଥାଏ, ତହିଁରେ ହଳାୟୁଧ ନିର୍ମାଣ କରାଯିବାର ବିଧି ଅଛି । ଉକ୍ତ ହଳାୟୁଧ ରଥ ଶୀର୍ଷରେ ଖଂଜା ହୁଏ । ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ଚକ ଉପରେ ''ବରନ୍ଦା'' ବା ଦେବଦାରୁ କାଠଗଡ ପଡେ । ଏକାଦଶୀ ତିଥିରେ ନାହାକା ପୂଜା ପୂର୍ବକ ଯୋଡାଯାଏ । ନେତ୍ରୋତ୍ସବରେ ଦେବତାଙ୍କୁ ରଥର ବିଭିନ୍ନ ଅଙ୍ଗରେ ପାର୍ଶ୍ୱ ଦେବତା ଭାବେ ସ୍ଥାପନ କରି ରଥ ପ୍ରତିଷ୍ଠା ହୁଏ । ଅନନ୍ତର ରଥରେ ବିଭିନ୍ନ ସପ୍ତ ରଙ୍ଗର କପଡା ଆବୃତ କରାଯାଏ ।

ରଥର ଶୀର୍ଷ ଦେଶରେ ସୁବର୍ଣ୍ଣ (ପିତ୍ତଳ) କଳସ ଓ ଶୁକପକ୍ଷୀ ସ୍ଥାପନ କରାଇ ତତ୍‌ପରେ ଛ' ହାତ ଲମ୍ବର ଉନ୍ନତୀ ନେତ ଆକାଶରେ ଉଡେ । ଏହା ଜୀବାତ୍ମା ଓ ପରମାତ୍ମାର ଜୟଯାତ୍ରା ବୋଲି ଶୁକପକ୍ଷୀ ମାଧ୍ୟମରେ ଜଣାଇଦିଏ । ତାପରେ ମଣିଶୃଙ୍ଗର ଶ୍ରୀବିଗ୍ରହମାନଙ୍କୁ ରଥକୁ ଆବାହନ କରାଯାଏ ।

ବିଶ୍ୱର ଏହି ବୃହତ ରଥର ଉଚ୍ଚତା ୪୩ ହାତ ଦଶ ଆଙ୍ଗୁଳି । କଳସ ଓ ନେତକୁ ବାଦ୍ ଦେଲେ କେବଳ ରଥର ଉଚ୍ଚତା ୬୫ ଫୁଟ ୬ ଇଂଚ । ପୁରୀ ନନ୍ଦିଘୋଷ ଅପେକ୍ଷା ତୁଳସୀ କ୍ଷେତ୍ରର ରଥରେ ଅଧିକ କାଷ୍ଠ ଓ ଶିଳ୍ପ ଚାତୁରୀ ରହିଅଛି । ନିକଟରେ ବାରିପଦା ରଥକୁ ସର୍ବବୃହତ ଆଖ୍ୟା ଦିଆଯାଇଛି । ସ୍ମରଣ ଯୋଗ୍ୟ ଯେ କଳସ ଓ ନେତର ଉଚ୍ଚତା ହିସାବ କଲେ ଆଠଫୁଟ ଅଧିକ ହେବ ।

**ପହଣ୍ଡି ବିଜେ**

ତୁଳସୀ କ୍ଷେତ୍ରର ସିଦ୍ଧ ବଳଦେବଙ୍କ ପହଣ୍ଡି ବିଜେ ବଡ ଆକର୍ଷଣୀୟ । ଶ୍ରୀକ୍ଷେତ୍ରରେ ଜୀଉଙ୍କ ପଚ୍ଛପଟରେ ଭାର ଦଣ୍ଡ ଦେଇ ତ୍ରିଭଙ୍ଗୀ ଠାଣିରେ କୃଷ୍ଣଙ୍କ ଛନ୍ଦାଚରଣ ପଡିବା ପରି ବିଜେ କରାଯିବା ବେଳେ ତୁଳସୀ କ୍ଷେତ୍ରାଧିପତି ଫଣିଭୂଷଣ ବଳଦେବ ସେନାପାଟ ବେଶରେ ବୀରଦର୍ପରେ ଆଗକୁ ଅଭିଯାନ କଲାବେଳେ ଭକ୍ତମାନଙ୍କ ମନରେ ଉତଫଣ ଫଣୀ ତୁଲ୍ୟ ପ୍ରତିତ ହୁଏ । କାଳର କରାଳ ଗତିକୁ ବଳଦେବ ପ୍ରତିହତ କରିପାରନ୍ତି । ବଳଦେବ, ଜଗନ୍ନାଥ ଓ ସୁଭଦ୍ରାଙ୍କୁ କପଡା ରଜ୍ଜୁରେ ଗୁଡାଇ ସେନାପାଟ ରୂପରେ ସଜାଯାଏ । ଉକ୍ତ କପଡାର ରଶି ଶ୍ରୀମୂର୍ତ୍ତିଙ୍କୁ ଆଗକୁ ପଡିଥିବା ଗୋଲ ମାଣ୍ଡି ଉପରକୁ ନିଆଯାଏ । ସେଇ ଗୋଲାକାର ମାଣ୍ଡିରେ ପଦପାତ ପୂର୍ବକ ଦିଅଁ ଆଗକୁ ମାଡନ୍ତି । ମଣିଶୃଙ୍ଗ ମନ୍ଦିରରୁ ବାହାରି ସିଂହ ଦରଜା ଅତିକ୍ରମ କଲେ ପୋଲିସ ଘେରରେ ଜୀଉ ଉଠି ଚାର ପାହାଚରେ ରଥାରୂଢ ହୁଅନ୍ତି । ରଥରେ ଚତୁର୍ଦ୍ଧାମୂରତିଙ୍କୁ ବିଧି ମୁତାବକ ପୂଜା ଆଳତି ପ୍ରଦାନ କରାଯାଇ ଚାରଟି ଘୋଡା ଯୋଚା ହୁଏ ଏବଂ ଡାହୁକର ମାଂତ୍ରିକ ଆହ୍ୱାନରେ ଉଦ୍ଦାମତା ସହ ଶ୍ରଦ୍ଧାଳୁ ରଥ ଟାଣନ୍ତି । ରଥ ଦଉଡି ସ୍ପର୍ଶ କରିବା ବା ଟାଣିବା ମହାନ ପୁଣ୍ୟ ଭାବେ ବିବେଚିତ । ରଥରେ ଜଗନ୍ନାଥ





ବଳଦେବ ରୂପୀ ବାମନଙ୍କୁ ଦର୍ଶନ କଲେ ଲୋକେ ସାଯୁଜ୍ୟ ମୁକ୍ତି ପାଇପାରନ୍ତି । ବଳଦେବ ଶ୍ୱେତ ବାମନ ଓ ଜଗନ୍ନାଥ ଦଧିବାମନ ଭାବେ ବିବେଚିତ ।

ଶ୍ରୀଗୁଣ୍ଡିଚା ଦିନ ଏମାର ମଠ କର୍ତ୍ତୃକ ଅମୃତମଣୋହି ନିଷ୍କର ଭୂମି ଗୋପାଳ ଜାତିକୁ ଖଞ୍ଜା ହୋଇଥିଲା । ଯଦିଚ ସେ ଅମୃତମଣୋହି ଜମି ଭୋଗ ଦଖଲରେ ନିଜର ସଂପତ୍ତି ହୋଇ ସାରିଛି, ତଥାପି ସେମାନଙ୍କ ତରଫରୁ ରଥ ଶୀର୍ଷରେ ''ନେତ'' ଦାନ କରିଥାନ୍ତି । ବିଭିନ୍ନ ମାହାଲର ଚାନ୍ଦାରେ ନେତ ମଣ୍ଡଣି ହୁଏ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ମରହଟ୍ଟା ସନ୍ନ୍ୟାସୀ ସନ୍ଥ ଗୋପୀଦାସ ତୁଳସୀକ୍ଷେତ୍ରରେ ଅବସ୍ଥାନ କଲା ପରେ ମାଉସୀ ମା' ମନ୍ଦିର ହୋଇଥିଲା । ଏହା ପ୍ରକୃତରେ ଯଶୋଦା ମନ୍ଦିର ମାତ୍ର ପୁରୀ ରୀତିରେ ଗୁଣ୍ଡିଚା ମନ୍ଦିର କୁହାଯାଉଛି । ପରବର୍ତ୍ତୀ କାଳରେ ମହନ୍ତ ଗୋବିନ୍ଦ ଦାସ ମୁଖ୍ୟ ମନ୍ଦିର ଶୈଳୀରେ ଆଧୁନିକ ମନ୍ଦିର ନିର୍ମାଣ କରାଇଥିଲେ ।

### ଛେରା ପହଁରା

ପୁରୀ ଶ୍ରୀକ୍ଷେତ୍ର ନୀତି ଅନୁସରଣରେ ଗଜପତି ପ୍ରତାପ ରୁଦ୍ରଦେବଙ୍କ କାଳରୁ ଏଠାରେ ଛେରା ପହଁରା ପ୍ରଥା ପ୍ରଚଳନ ଅନୁମତି ହୁଏ । ତେବେ ରଥଯାତ୍ରାରେ ରଥକୁ ଶୁଦ୍ଧ ପବିତ୍ର ଓ ପରିଷ୍କାର କରିବା ଏକ ଧାର୍ମିକ ପରମ୍ପରା ପରିବେଶଜନିତ ସ୍ୱଚ୍ଛତା ବୋଲି ବିଚାର୍ଯ୍ୟ । ଯିଏ କେହି ଏହି ସଫେଇ କଲେ ତ୍ରୁଟି ରହିପାରେ । ଏଣୁ ଦାୟିତ୍ୱସମ୍ପନ୍ନ ତଥା ମୁଖ୍ୟକର୍ତ୍ତା ଏହା ନିର୍ଣ୍ଣୟ କରିବା ବିଧେୟ । ସେହି ଦୃଷ୍ଟିରୁ ପ୍ରତ୍ୟେକ ପୀଠର ରଥରେ ଛେରା ପହଁରା ହେବାର ବିଧି ଅଛି । ରାଜ ପଦବାଚ୍ୟ ବ୍ୟକ୍ତି ଏହା କରନ୍ତି ।

ତୁଳସୀକ୍ଷେତ୍ର କେନ୍ଦ୍ରାପଡାର ବଳଦେବ ମନ୍ଦିର ଛେଦରା ଜମିଦାରୀ ଅନ୍ତର୍ଭୁକ୍ତ । ଏହା ଆଳି ରାଜାଙ୍କର ଦୁର୍ଗ ବିଶେଷ । ଅଦ୍ୟାପି ବାରଙ୍ଗ ଗଡର ଧ୍ୱଂସାବଶେଷ ପରିଦୃଷ୍ଟ ହୁଏ । ଆଳି ରାଜା ପ୍ରଥମେ ଛେରା ପହଁରା କରୁଥିଲେ । ଛେଦରା ଜମିଦାରଙ୍କୁ ଦାୟିତ୍ୱ ଅର୍ପଣ କରିବାରୁ ତାହାଥିଲା ତାଙ୍କର ରାଜସେବା । ୧୮୭୧ ମସିହାରେ ଏହି ବଂଶର ଶେଷ ବିଧବା ରାଣୀପାଟ ମହାଦେଈ ତାଙ୍କର ରାଜସ୍ୱତ୍ୱ ବଡକୋଠା ଜମିଦାର ରାଧାଶ୍ୟାମ ନରେନ୍ଦ୍ରଙ୍କୁ ୧୮୭୨ ମସିହାରେ ବିକ୍ରୟ କରିଦେବାରୁ ବଡକୋଠାର କ୍ରମାନୁବଂଶିକ ଛେରା ପହଁରା କରୁଥିଲେ । ସେମାନେ ବିଭିନ୍ନ ସ୍ଥାନରେ ଅବସ୍ଥାନ କରିବା ଏବଂ ସ୍ୱତ୍ୱ ନିର୍ଣ୍ଣୟରେ ଜଟିଳତା ଦେଖା ଦେବାରୁ ଶ୍ରୀଜୀଉଙ୍କର ପୁରୋହିତ ଗୋସାଇଁ ବଂଶୀ ବ୍ରାହ୍ମଣ ଛେରା ପହଁରା ପରିଚାଳନା କରୁଅଛନ୍ତି ।

### ରଥଟଣା

ରଥଚାଳନା ଏକ ମହତ କାର୍ଯ୍ୟ । ପୂର୍ବେ ରଥଦାଣ୍ଡ ପଡିଆ ଥିଲା, ରଥ ଟାଣିବା ବେଳେ ଚକ ଦବି ଯାଏ । କାଦୁଅ ହୁଏ । ଏଥିଲାଗି ହାତୀ ତଥା କୈବର୍ତ୍ତ ସଂପ୍ରଦାୟଙ୍କୁ ମଧ୍ୟ ସେବା ଦିଆଯାଇଥିଲା । ପ୍ରାୟ ଶହେବର୍ଷ ହେବ ସାର୍ବଜନୀନ ରଥ ଛୁଇଁବାକୁ ଉତ୍ସୁକତା ପ୍ରକାଶ ପାଏ । ରଥର ସାରଥିକୁ ମାତଳି କହନ୍ତି । ଜଣେ ସେବାୟତ ନାଲି ଲୁଗା, କପଡା ଅଣ୍ଟାରେ ବାନ୍ଧି, ମୁଣ୍ଡରେ ନାଲି ପଗଡି ପିନ୍ଧି ବେତ ସାହାଯ୍ୟରେ ଇଙ୍ଗିତ ଦିଏ । କୌତୂହଳପୂର୍ଣ୍ଣ ଗୀତ ଗାଏ । ଏହା ଡାହୁକ ଗୀତ । ଯୁବକ ଯୁବତୀ ଉଦ୍ଦୀପନା ସହ ରଥ ଟାଣନ୍ତି । ସାଂସଦ ପ୍ରଭାତ ସାମନ୍ତରାୟ ପ୍ରଥମେ ରଥଦାଣ୍ଡ ପକ୍କା କରାଇଥିଲେ । ଏବେ ରଥଦାଣ୍ଡ ସମ୍ପୂର୍ଣ୍ଣ ପକ୍କା ହୋଇଯାଇଥିବାରୁ ରଥଟଣା ଖୁବ୍ ଚମକପ୍ରଦ ହୁଏ ।

ରଥର ରଜ୍ଜୁ ନାମ– ବାସୁକି, ରଥର ଆବରଣ ସପ୍ତରଙ୍ଗ, ରଥର ପତାକା ହେଉଛି ଉନ୍ନନୀ । ରଥର ସାରଥି ମାତଳି । ରଥର ସମ୍ମୁଖ ଭାଗରେ ଗରୁଡ, ହନୁମାନ, ଦ୍ୱାରପାଳ ସୂର୍ଯ୍ୟ– ଚନ୍ଦ୍ର ସହ ରଥର ରକ୍ଷକ ସ୍ୱୟଂ ବାସୁଦେବ ଯାତ୍ରା କରି ମାଉସୀ ମା' ଘରେ ପରଦିନ ପହଞ୍ଚି ୮ଦିନ ସେଠାରେ ଅବସ୍ଥାନ କରନ୍ତି । ଦେବନୀତି ନିୟମିତ ହୁଏ । ମଣିଶୃଙ୍ଗଠାରୁ ମାଉସୀ ମା' ମନ୍ଦିରର ଦୂରତା ଏକ କିଲୋମିଟର । ଏହି ମନ୍ଦିର ପୂର୍ଣ୍ଣାଙ୍ଗ ହୋଇଥିଲା ୧୭୭୦ ମସିହାରେ । ମନ୍ଦିରର ପରିପାଟୀ ଓ ପରିବେଶ ବଡ





ମନୋମୁଗ୍‌ଧକର । ଚତୁର୍ଦ୍ଦିଗରେ ୧୪ ଫୁଟ ଉଚ୍ଚତା ବିଶିଷ୍ଟ ପ୍ରାଚୀର ବିଦ୍ୟମାନ ।

**ବାହୁଡା ଯାତ୍ରା**

ଗୁଣ୍ଡିଚା ମନ୍ଦିରର ଦୁଇ ଗୋଟି ମୁଖ୍ୟ ଦ୍ୱାର ଅଛି । ପ୍ରଥମ ଦ୍ୱାର ବାମପାର୍ଶ୍ୱ ଗୁଣ୍ଡିଚା ଦ୍ୱାର– ଏ ବାଟ ଦେଇ ପ୍ରଭୁ ମାଉସୀ ମା' ଘରକୁ ବିଜେ କରନ୍ତି । ଦକ୍ଷିଣ ପାର୍ଶ୍ୱ ଦ୍ୱାର ପ୍ରସ୍ଥାନ ବା ବାହୁଡା ଦ୍ୱାର, ଏଇ ଦ୍ୱାର ଦେଇ ଶ୍ରୀଜୀଉ ପୁନଶ୍ଚ ବାହୁଡନ୍ତି ।

ବାହୁଡା ଯାତ୍ରାର ଅନ୍ତରାଳରେ ରହିଛି ଓଡିଆ ଜାତିର ସଂପ୍ରୀତିତ ଓ ସାମାଜିକତା । ମାଉସୀ ଘର ଯିବା ଓ ସେଠାରେ ଆଠଦିନ ବିତାଇ ନବମ ଦିନ ସ୍ୱଗୃହକୁ ଗୌରବର ସହ ଫେରିବା ଗୋଟିଏ ଜାତୀୟ ଭାବାବେଗକୁ ବହନ କରିଥାଏ । ଏହି ସାମାଜିକତା ଓ ଧାର୍ମିକ ଉପଚାର ମଧ୍ୟରେ ରହି ଆସିଛି ।

ମାଉସୀମା' ବେଢା ମଧ୍ୟରେ ପ୍ରଥମ ଦ୍ୱାରର ବାମପାର୍ଶ୍ୱରେ ଅସ୍ଥାୟୀ ଅମଣିଆ ଦୋକାନ । ଭୋଗଲାଗି ନିମନ୍ତେ ଭକ୍ତମାନଙ୍କର ଭୋଗକିଣା ସହଜ ଓ ସୁଲଭ ହୁଏ । ଆଗକୁ ଅଗ୍ରସର ହେଲେ ଆନନ୍ଦ ବଜାର ଗୃହ ଓ ଜଳ ଯୋଗାଣ ବ୍ୟବସ୍ଥା । ପୂର୍ବ ପାର୍ଶ୍ୱରେ ମାଉସୀ ମା'ଙ୍କ ମନ୍ଦିର ଏବଂ ବୃହଦାକାର ବାଙ୍ଗି । ବାଙ୍ଗିଟି ଦୁଇ ଶହ ବର୍ଷର ବୋଲି ଜଣାଯାଏ । ଦକ୍ଷିଣ ପାର୍ଶ୍ୱରେ ମହାପ୍ରଭୁଙ୍କର ରୋଷ ଘର ଓ ପରେ ପରେ ତୁଳସୀ ବଗିଚା ।

ନିକଟରେ ବାହୁଡା ଦ୍ୱାର, ବାହୁଡା ଦ୍ୱାର ନିକଟରେ ଶ୍ରୀ ବୈଦ୍ୟନାଥ ଶିବ ମନ୍ଦିର ବିରାଜମାନ । କେନ୍ଦ୍ର ସ୍ଥଳରେ ମୁଖ୍ୟ ମନ୍ଦିର ଓ ସମ୍ମୁଖରେ ବିରାଟ ଉଚ୍ଚ ଦଲାଣ ରହିଛି । ମନ୍ଦିର ପୀଢ ଶୈଳୀରେ ମରହଟ୍ଟା କାଳରେ ନିର୍ମିତ । ମହନ୍ତ ଗୋବିନ୍ଦ ଦାସଙ୍କ ଦ୍ୱାରା ଏହି ମନ୍ଦିର ନିର୍ମିତ ହୋଇଥିଲା । ପ୍ରତ୍ୟେକ ପାର୍ଶ୍ୱରେ ଏକ ଏକ ଅଳସ କନ୍ୟା ଅଛନ୍ତି । ବେଢା ଏକ ସୁଦୃଢ ପ୍ରାଚୀର ଦ୍ୱାରା ସୁରକ୍ଷିତ । ମଧ୍ୟରେ ମନୋରମ ଉଦ୍ୟାନ ପୁଷ୍କରିଣୀ ତୁଳସୀବନ ଓ ବହୁତ ନାରିକେଳ ବୃକ୍ଷର ସମାହାର ।

ବର୍ଷରେ ସାତ ଦିନ ଏଠାରେ ଗହଳି ହୁଏ । ପ୍ରବାସରେ ମଣିବେଦୀ ଉପରେ ମହାପ୍ରଭୁ ବଳଦେବଙ୍କୁ ଦର୍ଶନ କଲେ ଶୀଘ୍ର କୃପା ଲାଭ ହୋଇଥାଏ । ଯଦି ରାତ୍ରଯାପନ କରାଯାଏ, ତେବେ ଭକ୍ତ ଅପାର ଆନନ୍ଦ ଓ ପୁଣ୍ୟ ଲାଭ କରନ୍ତି । ସେଥିପାଇଁ ଅନେକ ବୃଦ୍ଧବୃଦ୍ଧା ରାତ୍ରିଯାପନ ସହ ପ୍ରସାଦ ସେବନ ପସନ୍ଦ କରନ୍ତି ।

**ସନ୍ଧ୍ୟା ଦର୍ଶନ**

ନବମୀ ତିଥିରେ ଆଡପ ମଣ୍ଡପରେ ଶ୍ରୀଜୀଉମାନଙ୍କ ପବିତ୍ର ଦର୍ଶନକୁ ସଂଧ୍ୟା ଦର୍ଶନ କହନ୍ତି । ବହୁ ଭକ୍ତଙ୍କର ଭିଡ ହୁଏ । ଏହି ଦର୍ଶନ ଦ୍ୱାରା ପୁତ୍ର ପୌତ୍ର ଲାଭର ଫଳ ମିଳିଥାଏ ।

ଏହି ପ୍ରବାସ ଅବକାଶରେ ଏକାଦଶୀ ପଡେ ଏବଂ ଏହାକୁ ବଡ ଏକାଦଶୀ ଭାବେ ପାଳନ କରନ୍ତି । ମଙ୍ଗଳବାର ଦିନକୁ ଗୁରୁତ୍ୱ ଦେଇ ବାହୁଡା ମଙ୍ଗଳବାର ଓଷା କରନ୍ତି । ପଞ୍ଚମୀ ତିଥିକୁ ହେରାପଞ୍ଚମୀ କୁହାଯାଏ । ଜଗନ୍ନାଥ ଲକ୍ଷ୍ମୀଙ୍କୁ ଉପେକ୍ଷା କରି ମନ୍ଦିରରେ ଛାଡି ଆସିବାରୁ ଲକ୍ଷ୍ମୀ କୁପିତା ହୋଇ ତାଙ୍କ ଦାସୀଙ୍କ ସହ ଆସି ହେରାପଞ୍ଚମୀ ଦିନ ରଥରୁ ଖଣ୍ଡେ କାଠ ଭାଙ୍ଗି ଯାଆନ୍ତି । ସେବାୟତମାନେ ପରଂପରାକ୍ରମେ ଶ୍ରୀକ୍ଷେତ୍ର ଭଳିଏ କାର୍ଯ୍ୟ କରି ଆସୁଅଛନ୍ତି ।

ବାହୁଡା ଯାତ୍ରାରେ ମଧ୍ୟ ଦିଅଁଙ୍କର ସେନାପଟା ବେଶ ହୋଇ ପହଣ୍ଡି କରାଯାଏ । ଗୁଣ୍ଡିଚା ବିଜେରେ ଯେପରି ରୀତିରେ ପହଣ୍ଡି କରାଯାଇଥାଏ ।– ବାହୁଡା ବିଜେ ପହଣ୍ଡି ପୂର୍ବକ ରଥାରୂଢ ହୋଇ ମଣିଶୃଙ୍ଗ(ନୀଳାଦ୍ରି ବିଜେ) ବିଜେ କରନ୍ତି । ଛେରାପହଁରା ହୁଏ । ବଡଦେଉଳ ବିଜେ ପୂର୍ବରୁ ଶ୍ରୀଜୀଉ ରଘୁନାଥ ବେଶ ତଥା ସୁନାବେଶ ହୁଅନ୍ତି । କଥାରେ ଅଛି, ସାନ ଭାଇ ବଡ ହେଲା, ବଡ ସାନ ହୋଇଗଲା । ''ଅଧରପଣା'' ଲାଗି ହୁଏ । ଗୁଣ୍ଡିଚା ଦିନ ଯେପରି ପ୍ରତ୍ୟୁଷରୁ ଜୟମଙ୍ଗଳ ଆଳତି, ନିତ୍ୟସ୍ନାନ, ବଲ୍ଲଭ ଖେଚୁଡି ଧୂପ, ମଙ୍ଗଳାର୍ପଣ ହେବା ପରି ବାହୁଡା ଦିନ ଯଥା ରୀତିନୀତି ସବୁ ରକ୍ଷା କରାଯାଏ ।





**ରଥ ବିବରଣୀ**

| | | |
|---|---|---|
| ରଥର ନାମ ବ୍ରହ୍ମ ତାଳଧ୍ୱଜ | | |
| ସାରଥି ନାମ | - | ମାତଳି |
| ଉଚ୍ଚତା | - | ୬୫ ଫୁଟ ବା ୪୩ ହାତ ଦଶ ଆଙ୍ଗୁଳି |
| ଭୂମିଠାରୁ ଅନ୍ତର୍ବେଦୀର ଉଚ୍ଚତା | - | ୧୨ଫୁଟ ୬ ଇଞ୍ଚ |
| ଚଉଦଟି ନିଦା ଶାଳକାଠ ଚକ | - | ଛଉଦ ଭୁବନ ପାଇଁ |
| ସାତ ଗୋଟି ଅଖ | - | ସପ୍ତପୃଥ୍ୱୀ ବା ମହାଦେଶ |
| ନ ବରାନ୍ଦ | - | ନବ ଗ୍ରହର ପ୍ରତୀକ |
| ଚାରିଟି କାଷ୍ଠ ଅଶ୍ୱ | - | ତୀବ୍ର, ଘୋର, ଦୀର୍ଘଶ୍ରମ ଓ ସ୍ୱର୍ଣ୍ଣନାଭ- ଚାରିଦିଗ |
| ମୋଟ ୧୦୧୩ ଖଣ୍ଡ କାଠରେ ଗଠିତ | | |
| ରଜ୍ଜୁର ନାମ | - | ବାସୁକି |
| ରଥର ଆବରଣ | - | ସପ୍ତରଙ୍ଗ |
| ୪୦ ଫୁଟ ଲମ୍ବ ବିଶିଷ୍ଟ | - | ୭ଟି ଦଉଡି |

**ପାର୍ଶ୍ୱ ଦେବତା**

ହରିହର, ତ୍ରିପୁରାରି, ଲକ୍ଷ୍ମଣ, ସିଦ୍ଧ ବିନାୟକ, ନୃସିଂହ, ବାସୁଦେବ, ଚାମୁଣ୍ଡା, ଭଦ୍ରକାଳୀ, ମଙ୍ଗଳା, ଭୈରବୀ, ଚକ୍ର ବାସୁଳେଇ, ବାଣୀ ମଙ୍ଗଳା, ନାଟାମ୍ବର, ଦୁର୍ଗା ଓ ଶେଷଦେବ ଷୋଳଦେବତା ବିରାଜମାନ ।

ରଥ ଚାରଣ ଭାବରେ ସିଦ୍ଧ ଦାସ, ଉଲେମୀ ଓ ଗର୍ଭେଶ୍ୱରୀ ବା ଗର୍ଭାଧୀଶ୍ୱରୀ ପୂଜା ସ୍ୱଦ । ସେହିପରି ରଥଶକ୍ତି ହେଉଛନ୍ତି- ତୁଙ୍ଗ ଭଦ୍ରା, ପ୍ରଭା, ସୁପ୍ରଭା, ଧାତ୍ରୀ, ବିଧାତ୍ରୀ, ନନ୍ଦା, ସୁନନ୍ଦା । ରଥ ପାର୍ଶ୍ୱର ଋଷିଦେବ ଗଣ- ଅଙ୍ଗିରା, ପୌଲସ୍ତ୍ୟ, ପୁଲହ, ଅଗସ୍ତି ଓ କାଶ୍ୟପ ଆସି ବୈଦିକ ମହର୍ଷି ସ୍ଥାନିତ । ରଥର ରକ୍ଷାକର୍ତ୍ତା ନନ୍ଦ- ସୁନନ୍ଦ ।

ରଥ କୁମ୍ଭକୁ 'ଭୁବନ' ଭାବେ ବିଚାର କରାଯାଇଅଛି । ରଥର ଅଙ୍ଗପ୍ରତ୍ୟଙ୍ଗ ଓ ରୀତିନୀତିର ମଧ୍ୟ ଅନେକ ଭାଷା ବିଭବ ରହିଅଛି । ସ୍ଥୂଳତଃ ସିଦ୍ଧ ବଳଦେବଙ୍କ ଭୁବନ ବିଜୟୀ ରଥର ସ୍ୱତନ୍ତ୍ରତା ରହିଛି । ଓଡିଶାରେ ବଳଦେବ ଓ ଜଗନ୍ନାଥ ମିଶି ୧୬୨ କ୍ଷେତ୍ରରେ ପୂଜିତ ଓ ରଥଯାତ୍ରା ଅନୁଷ୍ଠିତ ହେଲେ ହେଁ ଏ ଯାତ୍ରା ଦର୍ଶନ କରିବାକୁ ଆଗ୍ରହ ଅଧିକ ପ୍ରକାଶ ପାଇଥାଏ । ପୂର୍ବରୁ ଧାରା ବିବରଣୀ ଦୋଳ ମଣ୍ଡପରେ ମାଇକ୍ରୋଫୋନ ମାଧ୍ୟମରେ ହୋଇଥିଲା । ସଂପ୍ରତି ଦୂରଦର୍ଶନରେ ଧାରା ବିବରଣୀ ପ୍ରଦାନ କରାଗଲାଣି । କ୍ଷେତ୍ର ମଧ୍ୟ ଉନ୍ନତମାନ ହେବାରେ ଲାଗିଛି । ଜିଲ୍ଲା ପ୍ରଶାସନ ଓ ସ୍ଥାନୀୟ ଜନପ୍ରତିନିଧିମାନଙ୍କର ସହଯୋଗ ପ୍ରଗତି ପଥକୁ ପୁଷ୍ପିତ କରିଅଛି । ରଥଯାତ୍ରାରେ ମନ୍ଦିର ପ୍ରଶାସନ ତଥା ଉପଜିଲ୍ଲାପାଳଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରଥଯାତ୍ରା ଓ ଅନ୍ୟାନ୍ୟ ପର୍ବପର୍ବାଣି ଅନୁଷ୍ଠିତ ହୁଏ ।

ଗବେଷକ, ତୁଳସୀକ୍ଷେତ୍ର
ଜୟୀପୁରା(ବଳଦେବ କଲୋନୀ)
ପୋ/ଜି- କେନ୍ଦ୍ରାପଡା, ପିନ୍-୭୫୪୨୧୧



# ଶ୍ରୀଜଗନ୍ନାଥଙ୍କ ନୀଳଚକ୍ର ଓ ପତିତପାବନ ବାନା

**ଶ୍ରୀନିବାସ ଆଚାର୍ଯ୍ୟ**

ଭାରତରେ ଥିବା ଚତୁର୍ଧାମ ମଧ୍ୟରେ ନୀଳଗିରି ପର୍ବତସ୍ଥ ନୀଳାଚଳ ଧାମ ଧାର୍ମିକ ଦୃଷ୍ଟିକୋଣରୁ ସର୍ବାଧିକ ଖ୍ୟାତି ଅର୍ଜନ କରିଛି । ଏହି ଧାମରେ ବିରାଜିତ ଭକ୍ତବତ୍ସଳ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଐତିହ୍ୟ, ସଂସ୍କୃତି, ପରମ୍ପରା ବୈଶିଷ୍ଟ୍ୟ ଆଦି ଯେପରି ଅତୀବ ମହାନ୍ ଓ ଗରିୟସୀ, ତାଙ୍କର ଦୈନ୍ୟନ୍ଦିନ ଲୀଳାକ୍ରୀଡ଼ା, ସେବାନୀତି ନିମନ୍ତେ ଖଞ୍ଜା ହୋଇଥିବା ମନ୍ଦିର, ମଣ୍ଡପ କୁଣ୍ଡ, ବୃକ୍ଷ, ପାହାଚ, ଦ୍ୱାର, ଖମ୍ବ, ଚକ୍ର, ଧ୍ୱଜା, ମଣ୍ଡପ ଆଦି ମଧ୍ୟ ସେପରି ବୈଚିତ୍ର୍ୟମୟ, ଯାହାର ପଟାନ୍ତର ନାହିଁ । ସେହିପରି ଏହି ଧାମରେ ଏକ ବିଶେଷତ୍ୱ ହେଲା ଠାକୁରଙ୍କୁ ବଡ଼ଠାକୁର, ମନ୍ଦିରକୁ ବଡ଼ ମନ୍ଦିର, ବଡ଼ଛତା, ବଡ଼ ପାଚେରୀ, ବଡ଼ଦାଣ୍ଡ, ବଡ଼ପଣ୍ଡା, ବଡ଼ଧ୍ୱଜା ଇତ୍ୟାଦି 'ବଡ଼' ଆଖ୍ୟାରେ ସୁବିଦିତ ହୋଇ ଶ୍ରଦ୍ଧାଳୁ ଭକ୍ତମାନଙ୍କର ବନ୍ଦନୀୟ ହୋଇପାରିଛି, ଯାହାକି ଏପରି ନାମ ବିଶ୍ୱର ଯେକୌଣସି ଆଧ୍ୟାତ୍ମିକ ପୀଠରେ ଦେଖିବା ବିରଳ ମାତ୍ର । ତାଙ୍କ ମାହାତ୍ମ୍ୟ, ମହିମା, ଗୁଣଗରିମାରେ ମଣ୍ଡିତହୋଇ ଶ୍ରୀମନ୍ଦିରର ଶିଖର ଅଂଶରେ ପ୍ରତୀୟମାନ ହୋଇଥିବା ଚକ୍ରରାଜ ନୀଳଚକ୍ର ଓ ପତିତପାବନ ବାନା (ବଡ଼ଧ୍ୱଜା) ବିଶେଷ ଗୁରୁତ୍ୱ ବହନ କରିପାରିଛି । ଶ୍ରୀନୀଳଚକ୍ର ଶ୍ରୀଜଗନ୍ନାଥଙ୍କର ସୁରକ୍ଷା ଓ ଶ୍ରୀପତିତପାବନ ବାନା ବଳିୟାର ଭୁଜଙ୍କ ଶ୍ରୀହସ୍ତ ରୂପେ ପତିତ ଜନଙ୍କ ଭବଯାତନାକୁ ହାତଠାରି ସ୍ୱାଗତ କରୁଅଛି ।

ଭକ୍ତକବିଙ୍କ ଭାଷାରେ-

'ନୀଳଚକ୍ରେ ହୋ ଦେଖ ଉଡୁଛି ବାନା
ପତିତପାବନ ବାନାଟି ଯା'ର ନାଁ' ।

ଶ୍ରୀମନ୍ଦିରର ରତ୍ନସିଂହାସନ ଉପରେ ଆୟୁଧ ସୁଦର୍ଶନ ଚକ୍ର ଖମ୍ବାକାରରେ ବିରାଜିତ ଥିବା ବେଳେ, ଚୂଡ଼ା ଅଂଶରେ ନୀଳଚକ୍ର ରୂପେ ବିଦ୍ୟମାନ । ଶ୍ରୀମନ୍ଦିରର ସୁରକ୍ଷା ପାଇଁ ନୀଳଚକ୍ର ସଦାସର୍ବଦା କାର୍ଯ୍ୟରତ ତାହା ନୁହେଁ ! କିନ୍ତୁ ପ୍ରତ୍ୟେକ ବିଷ୍ଣୁ ମନ୍ଦିରର ଚୂଡ଼ାରେ ଭୈରବ ଓ ପ୍ରତ୍ୟେକ ଦେବୀ ମନ୍ଦିରରେ ଭୈରବୀ ରୂପେ ପୂଜିତ । ନୀଳଚ୍ରକ ଓ ସୁଦର୍ଶନ ଚକ୍ର ପରସ୍ପର ମଧ୍ୟରେ ଶରୀର ଗଠନଶୈଳୀ, ଆକାର, ଆକୃତି ଆଦି ଭିନ୍ନ ହେଲେ ହେଁ, କିନ୍ତୁ ଅଭିନ୍ନ ।

**ନୀଳଚକ୍ର ଗ୍ରନ୍ଥରୁ ଉଦ୍ଧୃତ**

'ବୈକୁଣ୍ଠ ବିହାରୀଠାରୁ ନିଶ୍ଚେ ବଡ଼ ତୁହି,
ଏଣୁ ଶ୍ରୀମନ୍ଦିର ଚୂଳେ ଅଛୁ ସିନା ରହି,
ପ୍ରଭୁଙ୍କ ଦର୍ଶନ ପାଇ ନପାରି ଭକତ,
ତୋ ରୂପ ନିରେଖି ମନ ହୁଏ କୃତ୍ୟ କୃତ୍ୟ' ।

ପୌରାଣିକ ମତ ଅନୁସାରେ (ମତ୍ସ୍ୟପୁରାଣ) ସୂର୍ଯ୍ୟନାରାୟଣଙ୍କ ପ୍ରଚଣ୍ଡ ତେଜ ସହିନପାରି ବିଶ୍ୱକର୍ମାଙ୍କ ଅନୁରୋଧକ୍ରମେ କିଛି ତେଜ ତାଙ୍କୁ ଅର୍ପଣ କରିଥିଲେ । ଶ୍ରୀବିଶ୍ୱକର୍ମା ସେହି ତେଜପୁଞ୍ଜ ମଧ୍ୟରୁ ନୀଳମଣି ତେଜକୁ ଉଦ୍ଧାର କରି ସେଥିରେ ସୁଦର୍ଶନ ଚକ୍ର ନିର୍ମାଣ କରିଥିଲେ । ସେହି ତେଜ ବଳରେ ଶ୍ରୀସୁଦର୍ଶନ ସଦାସର୍ବଦା ଭାରି ଗର୍ବ ଓ ଅହଂକାରରେ ଜର୍ଜରିତ ରହୁଥିଲେ । ତାଙ୍କର ସେହି ଗର୍ବକୁ ଖଣ୍ଡନ କରିବାପାଇଁ ଶ୍ରୀବିଷ୍ଣୁ ତାଙ୍କ ଡାହାଣ ହାତରୁ ଆଣି ବାମ ପାର୍ଶ୍ୱରେ ଏକ ଖମ୍ବ ଆକାରରେ ରଖିଥିଲେ । ଶ୍ରୀସୁଦର୍ଶନ ତାଙ୍କ ଭୁଲକୁ ବୁଝିପାରି ଶ୍ରୀବିଷ୍ଣୁଙ୍କୁ କ୍ଷମା





ଦେବାପାଇଁ ଅନୁରୋଧ କରିଥିଲେ । ଶ୍ରୀଭଗବାନ ତାଙ୍କୁ ଏକ ଚକ୍ର ଆକାରରେ ଶ୍ରୀମନ୍ଦିର ଚୂଡ଼ା ଉପରେ ବସାଇ ସମସ୍ତ ପାପତାପ ହରଣ କରିବାପାଇଁ ଶକ୍ତି ପ୍ରଦାନ କରିଥିଲେ ।

ଏଣୁ କୁହାଯାଇଅଛି -

'ପ୍ରଭୁଙ୍କ ଆଜ୍ଞାରେ ଚକ୍ର ଶୂନ୍ୟକୁ ଗମଇଁ
ଦେଉଳ ଚୂଡ଼ାରେ ବସେ ମୂର୍ତ୍ତିମନ୍ତ ହୋଇ' ।

ଶ୍ରୀମନ୍ଦିର ଚୂଡ଼ାରେ ଶ୍ରୀସୁଦର୍ଶନ ରୂପି ଶ୍ରୀନୀଳଚକ୍ରକୁ ଦର୍ଶନ କଲେ ଭକ୍ତମାନଙ୍କର ଶ୍ରୀବଡ଼ଠାକୁରଙ୍କୁ ଦର୍ଶନର ପୁଣ୍ୟଫଳ ଲାଭ ହୋଇଥାଏ । ଏହା ଅଷ୍ଟଧାତୁ ଯଥା- ସୁନା, ରୂପା, ତମ୍ବା, ଲୁହା, ଦସ୍ତା, ସୀସା, ପାରଦ ଓ ରଙ୍ଗରେ ନିର୍ମିତ ହୋଇ ଭକ୍ତମାନଙ୍କ ମନରେ ଏକ ଆଧ୍ୟାତ୍ମିକ ଭାବସୃଷ୍ଟି କରିଥାଏ । ଏହାର ଉଚ୍ଚତା ପ୍ରାୟ ୧୧ଫୁଟ ୮ଇଞ୍ଚ, ବ୍ୟାସ ୭ଫୁଟ ୬ଇଞ୍ଚ, ପରିଧି ଫଳକ ୨ଇଞ୍ଚ ଓ ପରିଧିର ଓସାର ୯ ଇଞ୍ଚ । ଏହାର କେନ୍ଦ୍ରସ୍ଥଳରେ ସ୍ଥିତ ବୃତ୍ତାକାର କ୍ଷେତ୍ରର ବ୍ୟାସ ୨ଫୁଟ ଅଢ଼େଇ ଇଞ୍ଚ ଓ ୮ଟି ଅର ସଂଯୋଗ ହୋଇଅଛି । ପ୍ରତ୍ୟେକ ଅରର ଦୈର୍ଘ୍ୟ ୧ ଫୁଟ ୧୦ ଇଞ୍ଚ । ଏହି ଅରଗୁଡ଼ିକର ପାଶ୍ଚାତ୍ ଭାଗରେ ୧ ଠାରୁ ୮ ପର୍ଯ୍ୟନ୍ତ କ୍ରମିକ ସଂଖ୍ୟାମାନ ଲେଖାଯାଇଅଛି । ଚକ୍ରଟିର ଓଜନ ପ୍ରାୟ ଦେଢ଼ କୁଇଣ୍ଟାଲଠାରୁ ଅଧିକ ହେବ । ପ୍ରାତଃ କାଳରେ ଏହାର ରଙ୍ଗ ଶ୍ୱେତ ଦେଖାଯାଉଥିବା ସ୍ଥଳେ, ମଧ୍ୟାହ୍ନରେ ଗାଢ଼ ନୀଳବର୍ଣ୍ଣ ଓ ସନ୍ଧ୍ୟା ସମୟରେ ଲୋହିତ ରଙ୍ଗ ଧାରଣ କରି ଅପରୂପା ଶୋଭା ସୃଷ୍ଟି କରୁଅଛି ।

ଗରୁଡ଼ ସେବା କରୁଥିବା ସେବାୟତମାନେ ଏହାର ପୂଜା ଓ ଦାୟିତ୍ୱ ସମ୍ପାଦନା କରିଥାନ୍ତି । ସେମାନେ ବଢ଼େଇ ଜାତୀୟ ଓ ଶୂଦ୍ର ସେବକ ଅଟନ୍ତି ।

ଶ୍ରୀପତିତପାବନ ବାନାର ମାହାତ୍ମ୍ୟ ଶ୍ରଦ୍ଧାଳୁ ଭକ୍ତମାନଙ୍କ ହୃଦୟମନ୍ଦିରକୁ ମହିମାମଣ୍ଡିତ କରୁଥିବା ବେଳେ ଗଠନଶୈଳୀ ବିମୋହିତ କରିଥାଏ । ସେବାୟତମାନଙ୍କର ସେବାନୀତି ଅଭୁତପୂର୍ବ ଆଶ୍ଚର୍ଯ୍ୟ ସୃଷ୍ଟି କରିବା ସହ ଦର୍ଶକମାନଙ୍କୁ ଭୟଭୀତ କରି ପକାଇଥାଏ । ଚକ୍ରରାଜ ନୀଳଚକ୍ର ପରି ବଡ଼ଧ୍ୱଜା ମଧ୍ୟ ଶ୍ରୀମନ୍ଦିରରେ ପୂଜିତ, ବନ୍ଦିତ ଓ ସର୍ବଜନାନୁମୋଦିତ । କେହି କେହି ଏହି ବାନାକୁ ଆରତନାଶନ ବାନା, ଅବଧୂତ ବାନା, ଭକ୍ତବତ୍ସଳବାନା, ପାପୀପାବନ ପାଞ୍ଚକ ନାମରେ କହିଥାନ୍ତି । ଶ୍ରୀମନ୍ଦିରରେ ପ୍ରବେଶ ପୂର୍ବରୁ ଅର୍ଥାତ୍ ଅଳ୍ପ ଦୂରରୁ ଏହି ବାନାକୁ ଦର୍ଶନ କରିବାର ସୁଯୋଗ ପାଇ ଭକ୍ତମାନେ ପ୍ରଣିପାତ କରିଥାନ୍ତି । ଏହାକୁ ଦର୍ଶନକଲେ ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦ ସେବନ ସହିତ ସମାନ ବୋଲି ଭକ୍ତମାନଙ୍କ ମଧ୍ୟରେ ବିଶ୍ୱାସ ରହିଅଛି । କୌଣସି କାରଣରୁ ଏହା ଛିଣ୍ଡିପଡ଼ିଲେ ବା ପେଚା ବସିଲେ, ଏହା ଅପବିତ୍ର ହୋଇଯାଏ । ଏଥିସହିତ ଦେଶରେ କିଛି ଅଘଟଣ ଘଟିବ ବୋଲି ବିଶ୍ୱାସ ଜାଗ୍ରତ ହୋଇଥାଏ । ପୁନରାୟ ନୂତନ ବାନା ନୀଳଚକ୍ରରେ ବନ୍ଧା ଯିବାପରେ ଶ୍ରୀମନ୍ଦିରରେ ବଡ଼ଠାକୁରଙ୍କର ପୂଜାନୀତି ସମ୍ପାଦନା ସହିତ ହୋମଯଜ୍ଞ ହୋଇଥାଏ ।

ଶ୍ରୀପତିତପାବନ ବାନା ପ୍ରତିଦିନ ସନ୍ଧ୍ୟା ଘ୬.୩୦ମି.ଠାରୁ ୭ଘଟିକା ମଧ୍ୟରେ ବନ୍ଧା ହୋଇଥିବା ବାନା କଢ଼ାଯାଇ ନୂତନ ପତାକା ବନ୍ଧା ଯିବାର ବିଧିବିଧାନ ରଖା ଯାଇଅଛି । ଶ୍ରଦ୍ଧାଳୁ ଭକ୍ତମାନଙ୍କର ମାନସିକ ପୂରଣ ହେଲେ ନୂତନ ବାନା ବାନ୍ଧିବାର ବ୍ୟବସ୍ଥା ଅଛି । ଏହାକୁ ବାନ୍ଧିବା ପାଇଁ ମନ୍ଦିର ପ୍ରଶାସନଙ୍କ ଠାରୁ ଅନୁମତି ଆଣିବାକୁ ପଡ଼ିଥାଏ । ଭକ୍ତ କିଛି ଅର୍ଥ (ପାଉଣା) ମନ୍ଦିର କାର୍ଯ୍ୟାଳୟରେ ପୈଠକରି ରସିଦ୍ ଗ୍ରହଣ କରିଥାନ୍ତି । ପ୍ରତ୍ୟହ ନୂତନ ପତାକା ବନ୍ଧା ସମୟରେ ଆଧ୍ୟାତ୍ମିକ ବାଦ୍ୟଯନ୍ତ୍ରର ସ୍ୱରତାଳେ ତାଳେ ହରିବୋଲ, ହୁଳହୁଳି ପଡ଼ି ମନ୍ଦିର ପ୍ରାଙ୍ଗଣଟିକୁ ପ୍ରକମ୍ପିତ କରିଥାଏ ।

ସନ୍ଥକବି ଆରତ ଦାସ ପତିତପାବନ ବାନା ସମ୍ପର୍କରେ ଲେଖିଛନ୍ତି -

'ପତିତପାବନ ବାନା ଆଉ କେତେବେଳକୁ
ଭାସିଗଲି ଭବଜଳେ ନାବ ଦିଅ କୂଳକୁ,
ରୋପିବାର ବୃକ୍ଷ ଗୋଟି କାଟୁଅଛ ମୂଳକୁ
ତିନିପୁରେ ଅପକୀର୍ତ୍ତି ହେବ ଆଦିମୂଳକୁ' ।





ଏହା ଧଳା, ନାଲି ଓ ହଳଦିଆ କପଡ଼ାରେ ତ୍ରିକୋଣାକାର ଆକାରର ସମାନ ଭାବରେ ତିଆରି ହୋଇ ୪୦ ଫୁଟ ଉଚ୍ଚତାର ଏକ ସ୍ୱତନ୍ତ୍ର ବାଉଁଶ ଦ୍ୱାରା ନୀଳଚକ୍ର ଉପରେ ବନ୍ଧା ଯାଇଥାଏ । ଏକ ଧଳା କପାଡ଼ରେ ନେତର ମଝି ଅଂଶରେ ହିନ୍ଦୁ ଧର୍ମ ଓ ଚେତନାର ପ୍ରତୀକ 'ଓଁ'ର ଚନ୍ଦ୍ରବିନ୍ଦୁ ସଙ୍କେତରୂପେ ରହିଥାଏ । ଏହି ଚନ୍ଦ୍ରବିନ୍ଦୁକୁ ତନ୍ତ୍ର ଅନୁସାରେ ବିରଜାଙ୍କ ନାଦ ଓ ଶ୍ରୀଜଗନ୍ନାଥଙ୍କ ବିନ୍ଦୁରୂପେ ଗ୍ରହଣ କରାଯାଇଅଛି । ତତ୍ତ୍ୱଦର୍ଶୀ ଋଷି, ମୁନି ଓ ବୁଦ୍ଧ ଏହାକୁ ମୁକ୍ତିର ପ୍ରତୀକରୂପେ ବିଶ୍ୱାସ କରିଥାନ୍ତି । ଏହି ବାନା ତିନିପୁରକୁ ପ୍ରତୀୟମାନ ହୋଇ ସକଳ ମୁକ୍ତିକାମୀକୁ ଅଭୟମୁଦ୍ରାରେ ହସ୍ତ ପ୍ରସାରୀ ଆହ୍ୱାନ କରୁଛି । ତେଣୁ ଲୋକାଚାରରେ ଅଛି–

'ଚଉବାହାକୁ ଚାହିଁ ଉର୍ଦ୍ଧ୍ୱକୁ, ଉଡୁଛି ପତାକା ତିନି ପୁରକୁ' ।

ପ୍ରାୟ ୨୧୫ଫୁଟ ଉଚ୍ଚରେ ପତାକାଟି ଫର ଫର ହୋଇ ଉଡୁଥିବାର ଦୃଶ୍ୟକୁ ଦର୍ଶନ କରି ଭକ୍ତ ଓ ଦର୍ଶକମାନଙ୍କ ଭକ୍ତି ଭାବବେଗକୁ ଦ୍ୱିଗୁଣିତ କରି ପକାଉଛି । ଅତୀତରେ ଏହାର ଦୈର୍ଘ୍ୟ ପ୍ରାୟ ୬୨ଫୁଟ (୪୨ହାତ) ଥିଲା । କିନ୍ତୁ କାଳକ୍ରମେ ବିଭିନ୍ନ କାରଣରୁ ଏହି ଦୈର୍ଘ୍ୟକୁ ୨୧ଫୁଟରେ ସୀମିତ ରଖାଯାଇଅଛି । ଏହି ବାନାକୁ 'ପାଦୁକା ଖିଆବାନା' ବୋଲି କୁହାଯାଏ । କାରଣ ଅତୀତରେ ଏହା ୨୫୦ଫୁଟ ବିଶିଷ୍ଟ ଲମ୍ବ ଥିଲା । ଏହାର ଅଗ୍ରଭାଗ ପୀଠରେ ଥିବା ପାଦୁକା କୁଣ୍ଡରେ ପଡୁଥିଲା । ଶ୍ରଦ୍ଧାଳୁ ଭକ୍ତମାନେ କୁଣ୍ଡରେ ପଡ଼ିଥିବା ଅଗ୍ରଭାଗକୁ ଚିପୁଡ଼ି, ସେହି ପବିତ୍ର ଜଳକୁ ପାଦୁକା ଜଳ ବୋଲି ବିଶ୍ୱାସ କରି ସେବନ କରୁଥିଲେ । ଏହାକୁ ନୀଳଚକ୍ରରେ ବାନ୍ଧିବା ପୂର୍ବରୁ ଭିତର ପୋଖରିଆର ପାଦୁକା କୁଣ୍ଡର ଜଳରେ ଓଦା କରାଯାଇଥାଏ । ଏହା ନୀଳସିନ୍ଧୁ (ମହୋଦଧି) ପାର୍ଶ୍ୱକୁ ଉଡ଼ିବାର ନିୟମ ଅଛି । କେତେକ ଭକ୍ତ ଏହି ନେତକୁ 'ରକ୍ଷାକବଚ'ଭାବେ ବିଶ୍ୱାସ କରି ବେକରେ ଗୁଡ଼ାଇଥାନ୍ତି । କଥିତ ଅଛି ଏହି ନେତରେ ଗ୍ରନ୍ଥି ସୃଷ୍ଟି ହୁଏ, ତେବେ ଏହି ଗ୍ରନ୍ଥିଶିକ୍ତ ଜଳକୁ ସେବନ କଲେ ଗର୍ଭକଷ୍ଟ ଦୂର ହୋଇଥାଏ ।

ଶ୍ରୀପତିତପାବନ ବାନାର ସେବାନୀତି ୮ଟି ପରିବାରର ସେବକ ସତର୍କତା ସହ ସୁଚାରୁରୂପେ ସମ୍ପାଦନ କରୁଛନ୍ତି । ଶ୍ରୀମନ୍ଦିର ଶିଖର ଅଂଶକୁ ଉଠି ନେତକୁ ବାନ୍ଧିବା ଓ ତଳକୁ ଫେରି ଆସିବା କାର୍ଯ୍ୟ ଅତ୍ୟନ୍ତ ଭୟଶଙ୍କୁଳ ଓ ବିପଦଜନକ । ଏହି କାର୍ଯ୍ୟ ସମ୍ପାଦନ କରିବା ପୂର୍ବରୁ ନୂତନ ସେବାୟତମାନେ ଏକମାସ ପ୍ରଶିକ୍ଷଣ ନେଇଥାନ୍ତି । ପ୍ରଶିକ୍ଷଣ ନେବାପୂର୍ବରୁ ସେବାୟତମାନେ ମା'ବିମଳାଙ୍କୁ ପୂଜାକରି ଆଶୀର୍ବାଦ ଭିକ୍ଷା ମାଗିଥାନ୍ତି । ମା'ଙ୍କର ଆଶୀର୍ବାଦ ବଳରେ ସମସ୍ତ ବିପଦ ଦୂର ହୋଇଯାଏ ବୋଲି ସେମାନଙ୍କର ଦୃଢ଼ବିଶ୍ୱାସ ଜନ୍ମିଥାଏ । ଏହି କାର୍ଯ୍ୟକୁ 'ଚୁନରା' ସେବାୟତମାନେ ସମ୍ପାଦନା କରିଥାନ୍ତି । ସେମାନେ ଶିଡ଼ି ବା ଅନ୍ୟ ସରଞ୍ଜାମ ବ୍ୟବହାର କରିବାର ବିଧି ନାହିଁ । ବାନା ଧରି ଚଢ଼ିଲାବେଳେ ସେମାନେ ସିଲ୍କ ଲୁଗା ପରିଧାନ କରିଥାନ୍ତି, ଯାହାକୁ ଅଣ୍ଟା ତଳକୁ ପିନ୍ଧିବାର ବ୍ୟବସ୍ଥା ଅଛି । ପ୍ରାୟ ୧ମିନିଟରେ ନାଟମଣ୍ଡପରୁ ମନ୍ଦିର ଉପରକୁ ଯାଇଥାନ୍ତି । ପ୍ରାୟ ୧୦୦ଫୁଟ ଉଚ୍ଚ ଦଧିନଉତିର ତଳ ଅଂଶକୁ ଉଠିଥାନ୍ତି । ଉଠିଲାବେଳେ ମନ୍ଦିର ପଟକୁ ପିଠିକରି ଉଠିଥାନ୍ତି । ସେଠାରୁ ଏକ ଲୁହା ଶିଙ୍କୁଳି ସାହାଯ୍ୟରେ ନୀଳଚକ୍ର ନିକଟକୁ ଯାଇ, ପୁରୁଣା ବାନାକୁ ଫିଟାଇ ନୂତନ ବାନା ବାନ୍ଧିଥାନ୍ତି । ଦରଜୀ ସେବାୟତମାନେ ଏହି ବାନାକୁ ତିଆରି କରିଥାନ୍ତି । ଶ୍ରୀନୀଳଚକ୍ର ଓ ଶ୍ରୀପତିତପାବନ ବାନା ଉଭୟଙ୍କର ପ୍ରଧାନ ବୈଶିଷ୍ଟ ହେଲା ଶ୍ରଦ୍ଧାଳୁ ଭକ୍ତମାନେ ଶ୍ରୀମନ୍ଦିରର ଅନତି ଦୂରରେ ରହି ଉଭୟକୁ ଏକ ସମୟରେ ଦର୍ଶନର ସୌଭାଗ୍ୟ ଅର୍ଜନ କରିପାରିଥାନ୍ତି, ଯାହାକି ମନ୍ଦିରରେ ଥିବା କୌଣସି ଦେବଦେବୀଙ୍କୁ ଦର୍ଶନ କରିବା ସମ୍ଭବ ନୁହେଁ । ଆଉମଧ୍ୟ ରଥଯାତ୍ରା ପରି ଉଭୟଙ୍କୁ ଦର୍ଶନ କରି ଭକ୍ତମାନେ ସେମାନଙ୍କର ଜନ୍ମଜନ୍ମାନ୍ତର ପାପନାଶନ କରି ଶତଜନ୍ମର ପୁଣ୍ୟ ଅର୍ଜନ କରିଥାନ୍ତି ବୋଲି ବିଶ୍ୱାସ କରିଥାନ୍ତି । ତେଣୁ ଚକ୍ରରାଜ ଶ୍ରୀନୀଳଚକ୍ର ଓ ବଡ଼ଧ୍ୱଜା ଶ୍ରୀପତିତପାବନ ବାନା ସବୁଠାରୁ ଅଧିକ ବନ୍ଦନୀୟ, ପୂଜନୀୟ ଓ ସମ୍ମାନୀୟ ହୋଇପାରିଛି । ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ପ୍ଲଟ୍‌ନଂ ୭୮୫/୧୨୪୦/୩୧୯୯
ଦୁର୍ଗାମାଧବ ନଗର, ଲେ.ନଂ –୮
ଶ୍ୟାମପୁର, ଭୁବନେଶ୍ୱର ।





# ଅତିବଡ଼ୀ ଓ ପ୍ରଭୁ ଶ୍ରୀଜଗନ୍ନାଥ

**ଅନନ୍ତ ଗୋପାଳ ପଣ୍ଡା**

ବିରାଧିବୀରବର ପ୍ରବଳ ପ୍ରତାପୀ ଶ୍ରୀ ଶ୍ରୀ ପ୍ରତାପ ରୁଦ୍ର ଦେବଙ୍କ ରାଜ ଦରବାର । ଦରବାରରେ ପାତ୍ର, ମନ୍ତ୍ରୀ ଓ ରାଜ ପାରିଷଦଗଣ ନିଜ ନିଜ ଆସନରେ ଆସୀନ । ରାଜାଙ୍କର ସମ୍ମୁଖରେ ଦରବାରର ମଧ୍ୟଭାଗରେ ଏକ ଶାନ୍ତ, କାନ୍ତ, ସୌମ୍ୟ ଗୌରବର୍ଣ୍ଣ ଯୁବକ ଯୋଡହସ୍ତରେ ଦଣ୍ଡାୟମାନ । ସମସ୍ତଙ୍କର ଦୃଷ୍ଟି ନିବଦ୍ଧ ଗଜପତି ମହାରାଜାଙ୍କ ଉପରେ । ଅଭିଯୁକ୍ତ ଯୁବକଙ୍କ ପ୍ରତି କ'ଣ ହେବ ଦଣ୍ଡାଦେଶ, ତାହା ଶୁଣିବା ପାଇଁ ଦରବାର ବାହାରେ ଲୋକାରଣ୍ୟ । ସମସ୍ତେ ଉଦବିଗ୍ନ ଭାବରେ ଅପଲକ ନୟନରେ ଚାହିଁ ରହିଥାନ୍ତି ଗଜପତିଙ୍କ ମୁଖମଣ୍ଡଳକୁ ।



ଏହି ଯୁବକଙ୍କ ବିରୁଦ୍ଧରେ ଅଭିଯୋଗ ଆଣିଥାନ୍ତି ପଣ୍ଡିତଗଣ । ଅଭିଯୁକ୍ତ ଯୁବକ ନିଜ ରଚିତ ଗ୍ରନ୍ଥର ଆଲୋଚନା ପଦଗୁଡିକର ବ୍ୟାଖ୍ୟା ପୁରୁଷମାନଙ୍କ ମଧ୍ୟରେ ନକରି ନାରୀମାନଙ୍କ ମେଳରେ କରିଥାନ୍ତି । ନାରୀମାନେ ଯୁବକଙ୍କ ମୁଖରୁ ତ୍ୱପୂର୍ଣ୍ଣ, ଭକ୍ତି ମିଶ୍ରିତ ଆଲୋଚନା ଶୁଣିବା ପାଇଁ ଘରର ଦାୟିତ୍ୱକୁ ପଛରେ ପକାଇ ଛୁଟି ଆସନ୍ତି ଶ୍ରୀମନ୍ଦିରସ୍ଥିତ କଳ୍ପବଟ ମୂଳକୁ । ଯୁବକ ଜଣକ ପ୍ରତ୍ୟହ କଳ୍ପବଟ ମୂଳରେ ତାଙ୍କ ରଚିତ ମହାପୁରାଣର ଗୋଟିଏ ପରେ ଗୋଟିଏ ଅଧ୍ୟାୟକୁ ତନ୍ନ ତନ୍ନ କରି ସରଳ ସାବଲୀଳ ଭାଷାରେ ଏପରି ବୁଝାଉଥାନ୍ତି ଯେ ନାରୀମାନେ ତନ୍ମୟ ହୋଇ ସେମାନଙ୍କ ସାଂସାରିକ ଜଂଜାଳକୁ ଭୁଲିଯାନ୍ତି । ସମୟ ଅତିକ୍ରାନ୍ତ ହେଲେ ମଧ୍ୟ ସେ ସ୍ଥାନ ଛାଡି ସେମାନେ ଘରକୁ କରନ୍ତି ନାହିଁ ପ୍ରତ୍ୟାବର୍ତ୍ତନ । ଯୁବକ ନାରୀମାନଙ୍କର ସେବା ପୂଜା ମଧ୍ୟ ନିର୍ବିକାର ଭାବରେ ଗ୍ରହଣ କରିଥାନ୍ତି ।

ତେଣୁ ପଣ୍ଡିତମାନଙ୍କର ଅଭିଯୋଗ ଯେ, ଅବିବାହିତ ଯୁବକ ଜଣକ ସମ୍ପୂର୍ଣ୍ଣ ଭାବେ ଲମ୍ପଟ । ଯୁବକଙ୍କର କାର୍ଯ୍ୟକଳାପ ପଣ୍ଡିତମାନଙ୍କର ସନ୍ଦେହର ଆବର୍ତ୍ତ ମଧ୍ୟରେ ନିବଦ୍ଧ । ଯୁବକ ବ୍ୟଭିଚାରର ଚରମ ସୀମାରେ ଉପନୀତ । ତେଣୁ ହେ ରାଜନ ! ଆପଣ ଆମମାନଙ୍କର ଅଭିଯୋଗ ଗ୍ରହଣ କରନ୍ତୁ ନତୁବା ଆପଣ ଗୁପ୍ତଚର ପ୍ରେରଣ କରି ଆମ ଅଭିଯୋଗର ସତ୍ୟାସତ୍ୟ ପରୀକ୍ଷା କରି ଦେଖନ୍ତୁ । ଯଦି ଆମର ଅଭିଯୋଗ ସତ୍ୟ ତେବେ ଏଭଳି ବ୍ୟଭିଚାରୀ ଯୁବକଙ୍କୁ ଯଥୋଚିତ ଶାସ୍ତି ବିଧାନ ପୂର୍ବକ ପୁରୀରୁ ବିତାଡିତ କରି ସମାଜକୁ ବ୍ୟଭିଚାର ମୁକ୍ତ କରନ୍ତୁ । ଯଦି ଆମ୍ଭମାନଙ୍କର ଅଭିଯୋଗ ଅସତ୍ୟ ହୋଇଥାଏ ତେବେ ଆମ୍ଭେମାନେ ଦଣ୍ଡ ଭୋଗିବାକୁ ପ୍ରସ୍ତୁତ ଅଛୁ ।



ଗଜପତି ମହାରାଜ ପଣ୍ଡିତମାନଙ୍କର ଏତାଦୃଶ ଅଭିଯୋଗ ଶ୍ରବଣ କରି ବିରକ୍ତି ପ୍ରକାଶ ପୂର୍ବକ ପଚାରିଲେ ହେ ଯୁବକ ! ତୁମେ କ'ଣ ପାଇଁ, କେଉଁ ଉଦ୍ଦେଶ୍ୟରେ ପୁରୁଷମାନଙ୍କୁ ତୁମର ଶାସ୍ତ୍ରର ବ୍ୟାଖ୍ୟା ଓ ଆଲୋଚନା ନଶୁଣାଇ ନାରୀମାନଙ୍କୁ ଶୁଣାଉଛ ଏବଂ ସେମାନଙ୍କ ଗହଣରେ ତୁମେ ଅଧିକାଂଶ ସମୟ ଅତିବାହିତ କରୁଅଛ? ଉତ୍ତରରେ ଯୁବକ ଜଣକ ନମ୍ର ଭାବରେ କହିଲେ ମହାରାଜ, ଆମ୍ଭେ ଆଜନ୍ମ ବ୍ରହ୍ମଚାରୀ । ଆମ୍ଭ ନିକଟରେ ନାରୀ ପୁରୁଷର ଭେଦ କିଛି ନାହିଁ । ଆମ୍ଭେ ନାରୀ ମେଳରେ ନାରୀ ଏବଂ ପୁରୁଷମାନଙ୍କ ମଧ୍ୟରେ ପୁରୁଷ, ଆବାଳବୃଦ୍ଧବନିତା ଯେକେହି ଆମ୍ଭଙ୍କୁ ଡାକିଲେ କିମ୍ବା ଆମ୍ଭଠାରୁ ଶାସ୍ତ୍ର ଶୁଣିବା ପାଇଁ ଇଚ୍ଛା ପ୍ରକାଶ କଲେ ଆମ୍ଭେ ଅବିଳମ୍ବେ ତାହା ଶୁଣାଇଥାଉ । ଏ ପ୍ରକାର ଉତ୍ତର ଶ୍ରବଣ କରି ଗଜପତି କ୍ରୋଧରେ କହିଲେ, ଯୁବକ, ଯଦି ତୁମେ ନାରୀମାନଙ୍କ ମଧ୍ୟରେ ନାରୀ ଭାବରେ ସମୟ ବିତାଉ ଥାଅ ତେବେ ଏହି ସଭାରେ ତୁମର ନାରୀତ୍ୱ ପ୍ରଦର୍ଶନ କର । ନଚେତ ରାଜଦଣ୍ଡରେ ହେବ ଦଣ୍ଡିତ । କିଛି ସମୟ ଅତିବାହିତ ହେବା ପରେ ମଧ୍ୟ ଯୁବକ ନାରୀତ୍ୱ ପ୍ରଦର୍ଶନ ନ କରିପାରିବାରୁ ଗଜପତି ଯୁବକଙ୍କୁ ବନ୍ଦୀଶାଳାକୁ ପଠାଇଦେଲେ ।

ଅନ୍ଧକାରାଛନ୍ନ ବନ୍ଦୀ ଗୃହରେ ଅବସ୍ଥାନ କାଳରେ ବ୍ରାହ୍ମଣ ଯୁବକଙ୍କ ନୟନ ଯୁଗଳରୁ ଶ୍ରାବଣର ବାରିଧାରା ସଦୃଶ ନିର୍ଗତ ହେଉଥାଏ ଅଶ୍ରୁର ଧାରା । କୋହଭରା କଣ୍ଠରେ ଓ ଅଶ୍ରୁସିକ୍ତ ନୟନରେ ତାଙ୍କର ଆରାଧ୍ୟ ଦେବତା ଜଗତର ନାଥ ଶ୍ରୀଜଗନ୍ନାଥଙ୍କୁ ସ୍ମରଣ ପୂର୍ବକ କହୁଥାନ୍ତି ହେ ମହାବାହୁ, ମୁଁ ନିରପରାଧି । ଲେଶମାତ୍ର ଦୋଷ ଏଥିରେ ମୋର ନାହିଁ । ଆପଣଙ୍କ ସ୍ୱପ୍ନାଦେଶ ଅନୁସାରେ ଓଁକାର ବ୍ରହ୍ମଙ୍କର ସଂପର୍କରେ ବ୍ୟାସଦେବ ଲେଖିଥିବା ଗ୍ରନ୍ଥଟିର କରିଥିଲି ଅନୁବାଦ ନବାକ୍ଷରୀ ଛନ୍ଦରେ । ସେହି ପଦଗୁଡିକର ବ୍ୟାଖ୍ୟା ଏବଂ ଆଲୋଚନା ଶୁଣାଉଥିଲି ଉପସ୍ଥିତ ଥିବା ଶ୍ରୋତୃମଣ୍ଡଳୀଙ୍କୁ । କୁହନ୍ତୁ ପ୍ରଭୁ ଏଥିରେ ମୋର କେଉଁଠି ଦୋଷ ରହିଲା ? ହେ ବଳିଆର ଭୁଜ ! ପଣ୍ଡିତମାନେ ଏଥିରେ ଈର୍ଷାନ୍ୱିତ ହୋଇ ମୋର ଅନୁବାଦକୁ ନିମ୍ନ ମାନର କହିବା ସହିତ ମୋ ବିରୁଦ୍ଧରେ ମିଥ୍ୟା ଅଭିଯୋଗମାନ ଛାମୁରେ ଉପସ୍ଥାପନ କରିବାରୁ ମହାରାଜ ଆଜି ଏ ଦଣ୍ଡରେ ମତେ ଦଣ୍ଡିତ କରିଛନ୍ତି । ମୋର ଏକମାତ୍ର ସାହା ଆପଣ । ମୁଁ ଯଦି କାୟମନୋ ବାକ୍ୟରେ ସତ୍ୟ ଧର୍ମ ରକ୍ଷା କରି ଆପଣଙ୍କର ଯଶଗାନ କରୁଥିବି ତାହେଲେ ମୋର ଏ ରୂପ ପରିବର୍ତ୍ତିତ ହୋଇ ନାରୀ ରୂପ ହୋଇଯାଉ । ସତ୍ୟର ବିଜୟ ହେଉ ହେ ନୀଳାଦ୍ରିନାଥ । ଏହା କହି ଭୋକ ଉପାସରେ ଥିବା ଯୁବକ କାନ୍ଦି କାନ୍ଦି ଚଟାଣରେ ଲୋଟି ପଡିଲେ ।

ପରଦିନ ପ୍ରଭାତରେ ବନ୍ଦୀଶାଳାରେ ନିଯୁକ୍ତ ରାଜକର୍ମଚାରୀମାନେ ଦେଖନ୍ତି ତ ଗତକାଲି ବନ୍ଦୀଗୃହରେ ଅବସ୍ଥାପିତ ଯୁବକ ନାହାନ୍ତି । ତାଙ୍କ ସ୍ଥାନରେ ଅଛନ୍ତି ଏକ ଯୁବତୀ, ଯେ କି ଧ୍ୟାନରତା । ସେମାନଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେମାନେ ପ୍ରଥମେ ଏ ଅଦ୍ଭୁତ ପରିବର୍ତ୍ତନକୁ ବିଶ୍ୱାସ କରିପାରିଲେ ନାହିଁ । ଏହି ପରିବର୍ତ୍ତନ ସତ୍ୟ ନା ମାୟା ବୋଲି ଅନୁଭବ କରି ସେମାନେ ବାରମ୍ବାର ଯୁବତୀଙ୍କୁ ନିରୀକ୍ଷଣ କରୁଥାନ୍ତି । ଶେଷରେ ଯୁବକ ଯେ ଏକ ନାରୀରେ ହୋଇଛନ୍ତି ରୂପାନ୍ତରିତ, ଏହା ସତ୍ୟ ବୋଲି ଭାବି ତତ୍‌କ୍ଷଣାତ୍ ଗଜପତି ମହାରାଜଙ୍କୁ ଏ ଅଦ୍ଭୁତ ପରିବର୍ତ୍ତନର ସମ୍ବାଦ ପ୍ରଦାନ କଲେ ।

ସଙ୍ଗେ ସଙ୍ଗେ ଗଜପତି ମହାରାଜ ସ୍ୱୟଂ ବନ୍ଦୀଗୃହ ନିକଟକୁ ଯାଇ ଦେଖନ୍ତି ତ ରାଜ କର୍ମଚାରୀମାନଙ୍କ ଦ୍ୱାରା ପ୍ରଦତ୍ତ ସମ୍ବାଦ ସଂପୂର୍ଣ୍ଣ ରୂପେ ସତ୍ୟ । ବ୍ରାହ୍ମଣ ଯୁବକଙ୍କ ସ୍ଥାନରେ ଏକ ନାରୀ ଧ୍ୟାନରତା ।

କାଳ ବିଳମ୍ବ ନକରି ଗଜପତି ପୁନର୍ବାର ମନ୍ତ୍ରୀ ଓ ପାରିଷଦମାନଙ୍କୁ ଡକାଇ ରାଜଦରବାରରେ ବନ୍ଦୀକୁ ଉପସ୍ଥିତ ହେବା ପାଇଁ ନିର୍ଦ୍ଦେଶ ଦେଲେ । ଦରବାରରେ ନାରୀ ରୂପୀ ଯୁବକ ଉପସ୍ଥିତ ହୁଅନ୍ତେ ଗଜପତି କହିଲେ ହେ ଯୁବକ, ତୁମେ ଆମ୍ଭ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ତୁମର ନାରୀ ରୂପ ପ୍ରଦର୍ଶିତ କରିଅଛ । ଆମ୍ଭର ଶଙ୍କା ହେଉଛି ତୁମେ କୌଣସି ତନ୍ତ୍ରବିଦ୍ୟା ପ୍ରୟୋଗ କରି ଏହି ରୂପ ପ୍ରାପ୍ତ





ହୋଇଅଛ । ଯଦି ପ୍ରକୃତରେ ତୁମେ ନାରୀ ଏବଂ ନାରୀର ସମସ୍ତ ଗୁଣ ତୁମ ନିକଟରେ ବିଦ୍ୟମାନ ତେବେ ତୁମେ ତୁମ ନାରୀତ୍ୱର ପ୍ରମାଣ ସ୍ୱରୂପ ଏକ ଶିଶୁକୁ ସ୍ତନ୍ୟପାନ କରାଇ ରାଜ ସଭାରେ ତୁମ ମାତୃତ୍ୱର ପରିଚୟ ପ୍ରଦାନ କର, ନଚେତ୍ ତୁମେ ମୋ ରାଜ୍ୟରୁ ହେବ ବିତାଡିତ ।

ପୁନର୍ବାର ଆଉ ଏକ ପରୀକ୍ଷା ରୂପକ ସଂକଟରେ ପଡି ବ୍ରାହ୍ମଣ ଯୁବକ ପ୍ରଭୁ ନୀଳାଦ୍ରି ବିହାରୀଙ୍କ ପାଦପଦ୍ମରେ ଶରଣାପନ୍ନ ହେଲେ ଏବଂ ଏ ମହା ବିପତ୍ତିରୁ ଉଦ୍ଧାର କରିବା ପାଇଁ ପ୍ରଭୁଙ୍କୁ ଆକୁଳ ପ୍ରାର୍ଥନା କଲେ । ଭକ୍ତର ଆକୁଳ ନିବେଦନ କେବେ ବ୍ୟର୍ଥ ଯାଏ ନାହିଁ କାରଣ ସେ ପରା ଭକ୍ତର ଭଗବାନ । ଭକ୍ତଙ୍କୁ ସଂକଟରୁ ଉଦ୍ଧାର କରିବା ପାଇଁ ତାଙ୍କର ଏ ଦାରୁବ୍ରହ୍ମ ଅବତାର ।

ରାଜସଭାରେ ଉପସ୍ଥିତ ସମସ୍ତ ପାରିଷଦବର୍ଗ ମହାରାଜାଙ୍କ ଏତାଦୃଶ ନିର୍ଦ୍ଦେଶ ତଥା ଦଣ୍ଡାଦେଶ ଶୁଣି ଉତ୍କଣ୍ଠିତ ଭାବରେ ଚାହିଁ ରହିଥାନ୍ତି ଯୁବତୀ ରୂପୀ ବ୍ରାହ୍ମଣ ଯୁବକଙ୍କ ଆଡକୁ । ଯୁବକ ମଧ୍ୟ ମନେ ମନେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ସ୍ମରଣ ପୂର୍ବକ ଖୋଜୁଥାନ୍ତି କିଏ ସେ ତାଙ୍କ ସ୍ତନରୁ ଶିଶୁ ରୂପରେ ସ୍ତନ୍ୟପାନ କରିବ । ଏହି ସମୟରେ ତାଙ୍କର ନଜର ପଡିଲା ତାଙ୍କର ଶିଷ୍ୟ ଅନନ୍ତ ଦାସଙ୍କ ଉପରେ । ସଂଗେ ସଂଗେ ଯୁବକ ଅନନ୍ତ ଦାସକୁ ସମ୍ବୋଧନ କରି କହିଲେ, ଅନନ୍ତ, ତୁମେ ଶିଶୁ ରୂପରେ ଆସି ମୋ ସ୍ତନରୁ କ୍ଷୀର ପାନ କର । ପରେ ପରେ ଅନନ୍ତ ଶିଶୁ ରୂପରେ ଆସି ଯୁବତୀରେ ପରିଣତ ହୋଇଥିବା ବ୍ରାହ୍ମଣ ଯୁବକଙ୍କ ସ୍ତନରୁ ଦୁଗ୍ଧପାନ କଲେ ।

ଏ ଅଦ୍ଭୁତ ଦୃଶ୍ୟ ଅବଲୋକନରେ ଗଜପତି ମହାରାଜ ଲଜ୍ଜିତ ହୋଇ ସିଂହାସନ ପରିତ୍ୟାଗ କରି ଯୁବକଙ୍କ ନିକଟକୁ ଚାଲି ଆସି ତାଙ୍କର କର ଧରି କ୍ଷମା ପ୍ରାର୍ଥନା ପୂର୍ବକ କହିଲେ ହେ ସାଧୁ ମହାତ୍ମା, ଆପଣ ମୋତେ କ୍ଷମା କରିଦିଅନ୍ତୁ । ଉତ୍ତରରେ ଯୁବକ କହିଲେ ହେ ମହାରାଜ ମତେ କ୍ଷମା ନମାଗି ମାଗନ୍ତୁ ମୋର ଆରାଧ୍ୟ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ । ଏହା କହି ଯୁବକ ସଂଗେ ସଂଗେ ମହୋଦଧିକୁ ସ୍ନାନ କରିବା ନିମନ୍ତେ ଗମନ କଲେ । ଯୁବକଙ୍କ ପଛେ ପଛେ ଗଜପତି ଓ ସମସ୍ତ ସଭାସଦଗଣ ମଧ୍ୟ ସମୁଦ୍ର ନିକଟକୁ ଯାତ୍ରା କଲେ ।

ଯୁବକ ମହୋଦଧି ଜଳରେ ସ୍ନାନ ନିମନ୍ତେ ପ୍ରବେଶ କରି କରଯୋଡି କହିଲେ ହେ ବରୁଣ ଦେବ, ଆପଣ କୃପା ପରବଶ ହୋଇ ସାତ ଲହଡି ପ୍ରାୟ ସ୍ଥାନ ପଛକୁ ଘୁଞ୍ଚି ଯାଆନ୍ତୁ, ଯଦ୍ୱାରା ସେହି ସ୍ଥାନରେ ମୁଁ ଏକ କୁଟୀର ନିର୍ମାଣ ପୂର୍ବକ କରିବି ଅବସ୍ଥାନ । କାରଣ ଆପଣ ଛାଡିଥିବା ସ୍ଥାନରେ ନଥିବ ଗଜପତିଙ୍କ ଅଧିକାର । ଏତିକି କହି ଯୁବକ ସ୍ନାନ ଉଦ୍ଦେଶ୍ୟରେ ସମୁଦ୍ର ଜଳରେ ବୁଡି ଉଠିଲା ବେଳକୁ ତାଙ୍କର ନାରୀ ରୂପ ପରିବର୍ତ୍ତିତ ହୋଇ ପୂର୍ବ ରୂପ ଫେରି ପାଇଛନ୍ତି । ଏଥି ସହିତ ରତ୍ନାକର (ସମୁଦ୍ର) ମଧ୍ୟ ସାତ ଲହଡି ପଛକୁ ଘୁଞ୍ଚି ଯାଇଛନ୍ତି ।

ସେହି ଯୁବକ ଆଉ କେହି ନୁହଁନ୍ତି, ସେ ହେଉଛନ୍ତି ଜ୍ଞାନ ମିଶ୍ରା ଭକ୍ତିର ଉଦ୍‌ଘୋଷକ, ବ୍ୟାସଦେବଙ୍କ କୃତ ଶ୍ରୀମଦ ଭାଗବତର ଅନୁବାଦକ ଓ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ପରମ ଉପାସକ, ଶ୍ରୀଜଗନ୍ନାଥ ଦାସ, ଯିଏକି ପୁରୀ ନିକଟବର୍ତ୍ତୀ କପିଳେଶ୍ୱରପୁର ଶାସନ ନିବାସୀ ପୁରାଣ ପଣ୍ଡା ଭଗବାନ ଦାଶ ଓ ତାଙ୍କ ପତ୍ନୀ ପଦ୍ମାବତୀଙ୍କର କୋଳମଣ୍ଡନ କରି ଜନ୍ମଲାଭ କରିଥିଲେ । ପରିଣତ ବୟସରେ ପୁତ୍ରଲାଭ ଉଦ୍ଦେଶ୍ୟରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦିବାନିଶି ପ୍ରାର୍ଥନା କରି ପୁତ୍ର ଲାଭ କରିଥିବାରୁ ପିତାମାତା ତା'ର ନାମ ରଖିଥିଲେ ଜଗନ୍ନାଥ । ସେ ଅତି କମ୍ ବୟସରେ ରାମାୟଣ, ମହାଭାରତ, ସଂସ୍କୃତ ଭାଗବତ, ବ୍ୟାକରଣ, ବେଦ ବେଦାନ୍ତ, ଅଷ୍ଟାଦଶ ପୁରାଣ ଇତ୍ୟାଦି ଶାସ୍ତ୍ର ଅଧ୍ୟୟନ କରି ମୁଖସ୍ଥ କରିଦେଇଥିଲେ । ଜଗନ୍ନାଥ ଦାସଙ୍କୁ ଯେତେବେଳେ ୧୬ ବର୍ଷ ବୟସ ସେତେବେଳେ ତାଙ୍କ ପିତାଙ୍କର ହେଲା ମହାପ୍ରୟାଣ ।

ସେସମୟରେ ନିର୍ଦ୍ଦିଷ୍ଟ ସମ୍ପ୍ରଦାୟର ବ୍ରାହ୍ମଣ ଶ୍ରୀମନ୍ଦିରସ୍ଥ କଳ୍ପବଟ ମୂଳରେ ବ୍ୟାସଦେବଙ୍କ ରଚିତ ସଂସ୍କୃତ ଭାଗବତର ଶ୍ଳୋକଗୁଡିକୁ ଓଡିଆ ଭାଷାରେ ଉପସ୍ଥିତ ଥିବା





ଶ୍ରୋତୃମଣ୍ଡଳୀଙ୍କୁ ପ୍ରତ୍ୟହ ଶୁଣାଉଥିଲେ । ସେମାନଙ୍କୁ ପୁରାଣ ପଣ୍ଡା ବୋଲି କୁହାଯାଉଥିଲା । ଶ୍ରୋତାମାନେ ଭାଗବତ ଶୁଣି ସାରି ବକ୍ତାଙ୍କୁ ଦକ୍ଷିଣା ସ୍ୱରୂପ କିଛି ଅର୍ଥ ପ୍ରଦାନ କରୁଥିଲେ । ସେହି ଉପାର୍ଜିତ ଅର୍ଥରେ ପୁରାଣପଣ୍ଡା ତାଙ୍କର ପରିବାର ପ୍ରତିପୋଷଣ କରୁଥିଲେ ।

ଜଗନ୍ନାଥ ଦାସଙ୍କ ପିତା ପରଲୋକ ଗମନ ପରେ ବିଧବା ମାଆ ପଦ୍ମାବତୀ କାର୍ତ୍ତିକ ମାସରେ ପ୍ରତିଦିନ ଶ୍ରୀମନ୍ଦିରକୁ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ଯାଇଥାନ୍ତି ଏବଂ କଳ୍ପବଟ ମୂଳରେ ହେଉଥିବା ଭାଗବତ ଆଲୋଚନା ଶୁଣନ୍ତି । ଭାଗବତ ଶ୍ରବଣ ପରେ ପଣ୍ଡିତଙ୍କୁ କିଛି ଦକ୍ଷିଣା ଦେଇ ଘରକୁ ଫେରି ଆସନ୍ତି । ଥରେ ଭାଗବତ ଶୁଣିସାରି ପଇସା ନଥିବାରୁ ପୁରାଣ ପଣ୍ଡାଙ୍କୁ ପଇସା ନଦେଇ ଫେରିଆସିବା ସମୟରେ ପଣ୍ଡା ଗୋସେଇଁ ପଦ୍ମାବତୀଙ୍କୁ ଗାଳି ଦେଲେ । ଏଥିରେ ବ୍ୟଥିତା ହୋଇ କାନ୍ଦି କାନ୍ଦି ପଦ୍ମାବତୀ ଘରକୁ ଫେରି ପୁତ୍ର ଜଗନ୍ନାଥଙ୍କୁ ଘଟିଥିବା ଘଟଣା ସଂପର୍କରେ ଅବଗତ କରାଇଲେ ଏବଂ ପୁନର୍ବାର ମନ୍ଦିରକୁ ଭାଗବତ ଶୁଣିବାକୁ ଯିବେ ନାହିଁ ବୋଲି ସ୍ଥିର କଲେ ।

ମାଆଙ୍କର ମନ ଭିତରେ ସୃଷ୍ଟି ହୋଇଥିବା ଦୁଃଖକୁ ଦୂରୀଭୂତ କରିବା ନିମନ୍ତେ ପୁତ୍ର ଜଗନ୍ନାଥ ନୀଳାଦ୍ରିନାଥଙ୍କର ଶରଣାପନ୍ନ ହେଲେ । କଥିତ ଅଛି, ଦିନେ ଶ୍ରୀଜଗନ୍ନାଥ ସ୍ୱପ୍ନରେ ତାଙ୍କୁ ଦର୍ଶନ ଦେଇ କହିଲେ, ''ଜଗନ୍ନାଥ ! ତୁମେ ତୁମ ମାଆଙ୍କର ମନସ୍କାମନା ଅଚିରେ ପୂର୍ଣ୍ଣ କରିବ । ତୁମେ ଭଗବତ ଭକ୍ତି ରୂପକ ରସରେ ଅବଗାହନ ପୂର୍ବକ ବ୍ୟାସଦେବଙ୍କ କୃତ ସଂସ୍କୃତ ଭାଗବତର ଅଠର ହଜାର ଶ୍ଳୋକକୁ ଓଡିଆ ଭାଷାରେ ଅନୁବାଦ କର । ସେହି ଭାଗବତ ପଠନ ଏବଂ ଶ୍ରବଣ ହିଁ ହେବ ମାୟା ମୋହ ଗ୍ରସ୍ତ ମାନବର ମୁକ୍ତିର ମାର୍ଗ । ମୁଁ ତୁମକୁ ଓଁକାର ଦୀକ୍ଷା ଦେଉଅଛି । ଏହି ଏକାକ୍ଷର ମନ୍ତ୍ରକୁ ମୁଁ ତ୍ରିଅକ୍ଷର କରି ଅନନ୍ତଙ୍କୁ କହିଥିଲି । ସେହି ଏକାକ୍ଷର ପ୍ରଣବର ରୂପାନ୍ତର ହିଁ ମୂଳ ବ୍ୟାସଦେବଙ୍କ କୃତ ଶ୍ରୀମଦ ଭାଗବତ'' । ଏହା କହି ପ୍ରଭୁ ଅନ୍ତର୍ଦ୍ଧାନ ହୋଇଗଲେ ।

ପ୍ରଭୁ ଜଗନ୍ନାଥଙ୍କ ସ୍ୱପ୍ନାଦେଶ ଅନୁଯାୟୀ ଜଗନ୍ନାଥ ଦାସ ମା'ଙ୍କ ମନରୁ ଦୁଃଖ ଦୂରୀଭୂତ କରିବା ସହିତ ମାୟା ମୋହ ଗ୍ରସ୍ତ ମାନବର ମୁକ୍ତିର ମାର୍ଗକୁ ସୁଗମ କରିବା ପାଇଁ ଆରମ୍ଭ କଲେ ବ୍ୟାସଦେବଙ୍କ କୃତ ସଂସ୍କୃତ ଭାଗବତର ଓଡିଆ ଭାଷାରେ ପଦ୍ୟାନୁବାଦ । ଚଉଦ ଅକ୍ଷରୀ ବୃତ୍ତରେ ରଚିତ ଭାଗବତ ଯେ ସବୁବର୍ଗର ବ୍ୟକ୍ତିବିଶେଷଙ୍କ ଦ୍ୱାରା ସହଜରେ ଓ ଛନ୍ଦରେ ପଠନ କରାଯାଇପାରିବ କି ନାହିଁ ସେ ସମ୍ବନ୍ଧରେ ସନ୍ଦିହାନ ହୋଇ ଦାସେ ପୁନର୍ବାର ମହାପ୍ରଭୁଙ୍କର ଶରଣାପନ୍ନ ହେଲେ ।

ଜନଶ୍ରୁତି ଅନୁଯାୟୀ ପୁନର୍ବାର ପ୍ରଭୁ ଶ୍ରୀ ନୀଳାଦ୍ରି ବିହାରୀଙ୍କର ସ୍ୱପ୍ନାଦେଶ ପ୍ରାପ୍ତ ହୋଇ ଜଗନ୍ନାଥ ଦାସ ତାଙ୍କର ପାଣ୍ଡୁଲିପିକୁ ଧରି ପୁରୀ ନିକଟବର୍ତ୍ତୀ କାଣ୍ଡଗୋଦା ଗ୍ରାମରେ ବାସ କରୁଥିବା ଅନନ୍ୟ ଭକ୍ତ ମନେଇ ସାହୁଙ୍କ ନିକଟକୁ ଗମନ କଲେ । (ଶିରୁଳିଠାରେ ପୂଜା ପାଉଥିବା ପ୍ରସିଦ୍ଧ ଶିରୁଳି ମହାବୀରଙ୍କର ଲାଞ୍ଚ ଅଦ୍ୟାବଧି ଏହି କାଣ୍ଡଗୋଦା ଗ୍ରାମରେ ଭକ୍ତମାନଙ୍କ ଦ୍ୱାରା ପୂଜିତ) । ମହାପ୍ରଭୁଙ୍କର ସ୍ୱପ୍ନାଦେଶ ସମ୍ବାଦ ଜଗନ୍ନାଥ ଦାସ ଭକ୍ତ ମନେଇ ସାହୁଙ୍କୁ ଜଣାଇଲେ । ମନେଇ ସାହୁ ଚଉଦ ଅକ୍ଷରୀ ଛନ୍ଦରେ ଲିଖିତ ଭାଗବତର ପାଣ୍ଡୁଲିପିକୁ ତନ୍ନ ତନ୍ନ ପଢି ତାକୁ ଆବାଳବୃଦ୍ଧବନିତାଙ୍କର ବୋଧଗମ୍ୟ ତଥା ସହଜରେ ପଠନ କରିବା ନିମନ୍ତେ ଚଉଦ ଅକ୍ଷରୀ ପରିବର୍ତ୍ତେ ନବାକ୍ଷରୀ ଛନ୍ଦରେ ଲେଖିବା ପାଇଁ ପରାମର୍ଶ ଦେଲେ । ମୂଳ ଲେଖାର ସନ୍ତକ ସ୍ୱରୂପ ଚତୁର୍ଥ ସ୍କନ୍ଧରେ ବର୍ଣ୍ଣିତ ଭକ୍ତ ଧ୍ରୁବଚରିତକୁ ଚଉଦ ଅକ୍ଷର ବୃତ୍ତରେ ରଖିବାକୁ କହିଲେ ।

ଶ୍ରୀଚୈତନ୍ୟ ମହାପ୍ରଭୁ ୧୫୦୯ ଖ୍ରୀଷ୍ଟାବ୍ଦରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଦର୍ଶନ ଉଦ୍ଦେଶ୍ୟରେ ଉତ୍କଳକୁ ଆଗମନ କରିଥିଲେ । ସେତେବେଳକୁ ଜଗନ୍ନାଥ ଦାସଙ୍କ ବୟସ ମାତ୍ର ୧୮ ବର୍ଷ । ପ୍ରତ୍ୟହ ସେ ତାଙ୍କର ଆରାଧ୍ୟ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ଶ୍ରୀମନ୍ଦିରକୁ ଯାଉଥାନ୍ତି । ଏକଦା ଶ୍ରୀଚୈତନ୍ୟ ଦେବ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଦର୍ଶନ ଉଦ୍ଦେଶ୍ୟରେ ଆସି ଗରୁଡ ସ୍ତମ୍ଭର ପଶ୍ଚାତ୍ ଭାଗରେ ଦଣ୍ଡାୟମାନ ହୋଇ ମାନସ ପଟରେ ପ୍ରଭୁଙ୍କୁ ଷୋଡ଼ଶ

ଉପଚାରରେ ପୂଜା ଅର୍ଚ୍ଚନା କରିବା ସମୟରେ ଏକ ଫୁଲମାଳକୁ ଶ୍ରୀଜଗନ୍ନାଥଙ୍କ ଗଳାରେ ଲମ୍ବାଇବାକୁ ବାରମ୍ବାର ଚେଷ୍ଟା କରି ବିଫଳ ହେଉଥାନ୍ତି । ଠିକ୍ ଏହି ସମୟରେ ପଶ୍ଚାତ୍ ଭାଗରୁ କେହି ଜଣେ ଇଙ୍ଗିତ କରି କହିଲେ ହେ ଦିବ୍ୟାତ୍ମା, ଆପଣ ଫୁଲମାଳଟିକୁ ଛିଣ୍ଡାଇ ଗଳା ପରିବର୍ତ୍ତେ ଦୁଇ ଭୁଜରେ ଲମ୍ବାଇ ଦିଅନ୍ତୁ । ତାହା ପ୍ରଭୁଙ୍କର ଶୋଭା ବର୍ଦ୍ଧନ କରିବ । ଏହା ଶୁଣି ଶ୍ରୀଚୈତନ୍ୟ ଆଶ୍ଚର୍ଯ୍ୟାନ୍ୱିତ ହୋଇ ପଛକୁ ଚାହିଁ ଦେଖନ୍ତି ତ ଜଣେ ଶାନ୍ତ କାନ୍ତ ଗୌରବର୍ଣ୍ଣ ଯୁବକ ଦଣ୍ଡାୟମାନ । ପରିଚୟ ଜିଜ୍ଞାସା କରିବା ସହିତ ତାଙ୍କର ମନର ଭାବକୁ ସେ କିପରି ଜାଣିଲେ ବୋଲି କହି ଶ୍ରୀଚୈତନ୍ୟ ଜଗନ୍ନାଥ ଦାସଙ୍କୁ କୁଣ୍ଢାଇ ପକାଇଲେ । ତାଙ୍କଠାରେ ଅସାଧାରଣ ଦିବ୍ୟ ଗୁଣ ସନ୍ଦର୍ଶନରେ ମୁଗ୍ଧ ହୋଇ ଶ୍ରୀଚୈତନ୍ୟ ନିଜର ଉତ୍ତରୀୟକୁ ଜଗନ୍ନାଥ ଦାସଙ୍କ ମସ୍ତକରେ ବାନ୍ଧି 'ଅତିବଡୀ' ସମ୍ମାନରେ ଭୂଷିତ କଲେ । ସେହି ଦିନୁ ତାଙ୍କର ନାମ ହେଲା ଅତିବଡୀ ଜଗନ୍ନାଥ ଦାସ ।

ଜଗନ୍ନାଥ ଦାସ ଉତ୍କଳୀୟ ବୈଷ୍ଣବମାନଙ୍କ ମଧ୍ୟରେ ଥିଲେ ଅଗ୍ରଗଣ୍ୟ । ତାଙ୍କ ଦୃଷ୍ଟିରେ ଜଗତ ମିଥ୍ୟା ଓ ବ୍ରହ୍ମ ସତ୍ୟ । ତାଙ୍କର ରଚନାବଳୀରେ ଅଦ୍ୱୈତବାଦ ପ୍ରାଧାନ୍ୟ ଲାଭ କରିଅଛି । ଗୌଡୀୟ ବୈଷ୍ଣବମାନେ ରାଗାନୁଗା ଭକ୍ତିର ଉପାସକ ଥିବା ସମୟରେ ଜଗନ୍ନାଥ ଦାସ ଥିଲେ ଜ୍ଞାନମିଶ୍ରା ଭକ୍ତିର ଉଦ୍‌ଘୋଷକ । ଗୌଡୀୟ ବୈଷ୍ଣବମାନେ ଉପାସ୍ୟ ଦେବତା ଭାବେ ଶ୍ରୀକୃଷ୍ଣଙ୍କ ପାଦପଦ୍ମରେ ନିଜକୁ ସମର୍ପିତ କରୁଥିବା ବେଳେ ଓଡିଶୀ ବୈଷ୍ଣବମାନେ ଶ୍ରୀଜଗନ୍ନାଥଙ୍କୁ ଆରାଧ୍ୟ ଦେବତା ଭାବରେ ଗ୍ରହଣ କରିଥାନ୍ତି । ଏହି ଦୃଷ୍ଟିରୁ ଜଗନ୍ନାଥ ଦାସ ଶ୍ରୀମଦ୍ ଭାଗବତ ଓଡିଆ ଭାଷାରେ ରଚନା କରିଥିଲେ ମଧ୍ୟ ଭାଗବତର ପ୍ରତିପାଦ୍ୟ ଦେବତା ଭଗବାନ ଶ୍ରୀକୃଷ୍ଣଙ୍କୁ ଅବତାରୀ ରୂପରେ ଗ୍ରହଣ ନକରି ଶ୍ରୀଜଗନ୍ନାଥଙ୍କୁ ଅବତାରୀ ଭାବେ ପ୍ରତିପାଦନ କରିଛନ୍ତି । ତାଙ୍କ ଦୃଷ୍ଟିରେ ଶ୍ରୀଜଗନ୍ନାଥ ଅବତାରୀ ଏବଂ ଶ୍ରୀକୃଷ୍ଣ ହେଉଛନ୍ତି ଅବତାର । ଏହାର ଜ୍ୱଳନ୍ତ ପ୍ରମାଣ ନିମ୍ନ ପଦମାନଙ୍କରେ ହୋଇଛି ପ୍ରତିଫଳିତ ।

କି ପ୍ରୟୋଜନେ ଜଗନ୍ନାଥ ।
ଦେବକୀ ଉଦରେ ସମ୍ଭୂତ ।।
ଆପଣେ ପ୍ରଭୁ ଜଗନ୍ନାଥ ।
ଦେବକୀ ଗର୍ଭେ ହେବେ ଜାତ ।।
ହୋଇବୁ ଏ ଆମ୍ଭର ସତ୍ୟ ।
ହସି କହିଲେ ଜଗନ୍ନାଥ ।।
ତୋର ଉଦରେ ଜଗନ୍ନାଥ ।
ଜଗତେ ରଖିବେ ତୋ ସୁତ ।।
ତିନ୍ତିବା ଦେଖି ଜଗନ୍ନାଥ ।
ଫଣାରେ ଢାଙ୍କିଲା ଅନନ୍ତ ।।

ପୁନଶ୍ଚ ଜଗନ୍ନାଥ ଦାସ କୃତ ଭାଗବତରେ ତନ୍ମୟ ଭାବର ପରିପ୍ରକାଶ ଦୃଷ୍ଟିଗୋଚର ହୋଇଥାଏ । ଦଶମ ସ୍କନ୍ଧ ଗୋପଲୀଳା ରାସ ପଞ୍ଚାଧ୍ୟାୟୀରେ ଜଗନ୍ନାଥ ଦାସ ନିଜକୁ ଜଣେ ଗୋପୀ ଭାବି ପରମପୁରୁଷ ଶ୍ରୀକୃଷ୍ଣଙ୍କ ଅଂଗସଂଗ ଲାଭ କରିବାର ଅଦମ୍ୟ ପିପାସାକୁ ନିମ୍ନ ପଦରେ ବ୍ୟକ୍ତ କରିଛନ୍ତି ।

ମୋହର ମନ ଗୋଡାଇଲା ।
କୃଷ୍ଣଙ୍କ ଭେଟ ନପାଇଲା ।।
ବାହୁଡି ହୋଇଲା ନିରାଶ ।
ସୁଜନେ ବୃନ୍ଦାବନେ ପଶ ।।
ମୁଁ ଅବା କେତେକ ମାତର ।
କାହୁଁ ପାଇବି ଚକ୍ରଧର ।।
ପାମର ହୀନ ମୋର ବୁଦ୍ଧି ।
କୃଷ୍ଣ ଚରଣେ ମନ ଖେଦି ।।

ଏତଦ୍ ବ୍ୟତୀତ ଜଣେ ବୈଷ୍ଣବ ଭାବରେ ତୃଣାଦପି ସୁନୀଚେନ ନ୍ୟାୟରେ ଜଗନ୍ନାଥ ଦାସଙ୍କଠାରେ ବୈଷ୍ଣବ ଜନୋଚିତ ବିନୟଭାବ ତାଙ୍କ ଲେଖାରେ ସ୍ପଷ୍ଟ ଭାବେ ପ୍ରତୀୟମାନ ।

ଅଳପହୀନ ବୁଦ୍ଧି ମୋର
ଏଣୁ ମୁଁ ଅଜ୍ଞାନ ପାମର ।।





ନଜାଣି ସମୁଦ୍ରର ଗତି
ହସ୍ତେ ମଛଇ ମୂଢ ମତି ।।

ସେବଇ ସୁଜନ ପୟର
ଏ ଦୋଷ ମୋର କ୍ଷମା କର ।।

ଜଗନ୍ନାଥ ଦାସ ଶ୍ରୀମଦ୍ ଭାଗବତ ରଚନା ବ୍ୟତୀତ ସଂସ୍କୃତ ଭାଷାରେ ପନ୍ଦରଟି ଉପାଦେୟ ପୁସ୍ତକ ଓ ଓଡିଆ ଭାଷାରେ ଷାଠିଏ ଗୋଟି ପୁସ୍ତକ ରଚନା କରି ଓଡିଆ ବାଣୀ ଭଣ୍ଡାରକୁ କରିଯାଇଛନ୍ତି ସମୃଦ୍ଧ । ସେ ରାଧା ଅଂଗରେ ପବିତ୍ର ରାଧାଷ୍ଟମୀ ତିଥିରେ ଭୂମିଷ୍ଠ ହୋଇ ୧୫୫୨ ଖ୍ରୀଷ୍ଟାବ୍ଦ ପବିତ୍ର ମାଘ ଶୁକ୍ଳ ସପ୍ତମୀ (ଚନ୍ଦ୍ରଭାଗା ସ୍ନାନ) ତିଥିରେ ଶ୍ରୀଜଗନ୍ନାଥଙ୍କୁ ଧ୍ୟାନ କରିବା ଅବସ୍ଥାରେ ଇହଲୀଳା ସମ୍ବରଣ କରିଥିଲେ ।

ଆଜି ରକ୍ତ ମାଂସ ଶରୀରରେ ଜଗନ୍ନାଥ ଦାସ ନାହାନ୍ତି ସତ କିନ୍ତୁ ଜ୍ଞାନ ମିଶ୍ରା ଭକ୍ତିର ସାଧକ, ଅଚିନ୍ତ୍ୟ ଭେଦାଭେଦ ତ୍ତ୍ୱର ସମର୍ଥକ, ଶ୍ରୀଜଗନ୍ନାଥ ଦାରୁବ୍ରହ୍ମଙ୍କର ପରମ ଉପାସକ ଓ ଉତ୍କଳୀୟମାନଙ୍କର ମୁକ୍ତି ପଥପ୍ରଦର୍ଶକ ଭାବରେ ଜଗନ୍ନାଥ ଦାସ ଓଡିଆ ଜାତିର ପ୍ରାଣ ପବନରେ ଏବଂ ହୃଦୟ ସ୍ପନ୍ଦନରେ ସତତ ଉଦ୍ଭାସିତ । ଯେତେଦିନ ପର୍ଯ୍ୟନ୍ତ ଉତ୍କଳୀୟମାନଙ୍କ କଣ୍ଠରୁ ମୁକ୍ତିର ମାର୍ଗ ସ୍ୱରୂପ ଶ୍ରୀମଦ୍ ଭାଗବତର ପଦମାନ ହେଉଥିବ ନିଃସୃତ ଓ ଭାଗବତ ଟୁଙ୍ଗୀମାନଙ୍କରେ ଭାଗବତର ପଦମାନ ହେଉଥିବ ଉଚ୍ଚାରିତ ସେତେଦିନ ପର୍ଯ୍ୟନ୍ତ ଅତିବଡ଼ୀ ଜଗନ୍ନାଥ ଦାସ ପ୍ରତ୍ୟେକ ଓଡିଆଙ୍କ ମାନସ ପଟରେ ସଜଳସ୍ମୃତି ରୂପେ ଚିର ଭାସ୍ୱର ହୋଇ ରହିଥିବେ ଯୁଗ ଯୁଗ ପାଇଁ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଶ୍ରୀକ୍ଷେତ୍ର ବିହାର, ଆଇଗିଣିଆ
ଭୁବନେଶ୍ୱର – ୭୫୧୦୧୯

# ଭାବର ଭାବଗ୍ରାହୀ

ଡକ୍ଟର ଗୋପାଳ ଚନ୍ଦ୍ର ବାରିକ

ଭାବକୁ ଭାବରେ ମିଶାଇ ଦେଲେ
ଭାବ ମିଳିଯାଏ ଦୁଇଗୁଣ
ସେହି ଭାବ ନେଇ ଭାବନା କରିଲେ
ମିଳିଯାନ୍ତି ପରା ନାରାୟଣ ।
ଭାବ ଥିଲେ ଭାବ ଲାଗି ଯାଇଥାଏ
ଭାବରେ ବନ୍ଧା ସେ ଭାବୁକ
ସେହି ଭାବଟିକ ହୃଦୟେ ସାଇତି
ଖୋଜ ନିତି କଳା ସାଆନ୍ତ ।
ତାଙ୍କ ଭାବ ସାଥେ ତୋ ଭାବ ମିଶିଲେ
ଭାବର ନଥାଏ ଅଭାବ
ଭାବ ନେଇ ଯିଏ ଭାବି ବସିଥିବେ
ଭାବରେ ମିଳନ୍ତି ମାଧବ ।





ସବୁ ତୁଚ୍ଛ କରି ଭାବ ଡୋରି ବାନ୍ଧ
ନରଖି ମନରେ ଭାବନା
ତାଙ୍କ ଭାବରେ ସେ ବାନ୍ଧି ନେଇଯିବେ
ନରଖି ଭବରେ ଯାତନା ।
ସେହି ଭାବମୟ ସେ ଭାବ ସମୁଦ୍ର
ସେହି ଭାବ ଗୁଣଗ୍ରାହୀ
ତାଙ୍କ ପାଦତଳେ ଭାବେ ମଥାନତ
ସାହା ପ୍ରଭୁ ଭାବଗ୍ରାହୀ ।

ଶ୍ରୀରାମ ନଗର, ମଧୁପାଟଣା
କଟକ–୭୫୩୦୧୦





# ଭକ୍ତର ଭଗବାନ

**ଦୁର୍ଗାପ୍ରସନ୍ନ ଚୌଧୁରୀ**

ଶ୍ରୀଜଗନ୍ନାଥ ଆମ ସମସ୍ତଙ୍କର ଆରାଧ୍ୟ ଦେବତା । ସେ ନିରାକାର, କରୁଣାମୟ, ଦୟାମୟ ଓ ଭକ୍ତର ଭଗବାନ । କେବଳ ସେ ହିଁ ଭବିଷ୍ୟତ ଜାଣନ୍ତି । ଆଗକୁ ମଣିଷ ଜୀବନରେ କ'ଣ ଅଛି, କାହାକୁ ଜଣାନାହିଁ । ଆଜିକାଲିର



ସମୟରେ ସମଗ୍ର ମାନବ ସୃଷ୍ଟିକୁ ନିଶ୍ଚିହ୍ନ କରିଦେବାର ଦମ୍ଭ ନେଇ ଯେଉଁ ଘାତକ ଭୂତାଣୁ କରୋନା ତା'ର ପଞ୍ଝା ବିସ୍ତାର କରି ଜୀବନ ନେଇଚାଲିଛି, ସେଥିପାଇଁ ମଣିଷ ମନରେ ଅଜଣା ଆଶଙ୍କା ମଧ୍ୟ ପ୍ରତିଦିନ ବଢ଼ିବଢ଼ି ଚାଲିଛି ।

ଆଧ୍ୟାତ୍ମିକ ମତରେ ପ୍ରାୟ ଛଅ ଶହବର୍ଷ ପୂର୍ବେ ଗୋଟିଏ ମାଳିକା ପଞ୍ଜିକା ମାଧ୍ୟମରେ ଅଚ୍ୟୁତ ମହାପୁରୁଷ ଓ ଆଉ କେତେକ ମହାପୁରୁଷ ଦେଶର ଭବିଷ୍ୟତ ଦେଖିପାରୁଥିଲେ । ସମାଜରେ ମାନବ ସୃଷ୍ଟି ହୁଏ, କିନ୍ତୁ ବିଭିନ୍ନ କର୍ମସଜ୍ଜିତ । ସମାଜର ପରିବର୍ତ୍ତନ ହେବା ଜରୁରୀ କିନ୍ତୁ ସକାରାତ୍ମକ ଭାବରେ । ଯାହାହେଉ ଉକ୍ତ ମହାପୁରୁଷଙ୍କ ଭବିଷ୍ୟବାଣୀ କିଛି ସମ୍ବାଦପତ୍ରରେ ପ୍ରକାଶିତ ହୋଇଛି । ଏହି ମାଳିକାରେ ଲେଖାଅଛି ଯେ–

ବହୁ ମହାମାରୀ ଉଚ୍ଚାଟ ହୋଇଣ
ଗ୍ରାସିବେ ସାରା ଅବନୀ ।
ସବୁ ବୁଦ୍ଧିବଳ ବିଫଳ ହୋଇବ
ପଥି ପଥ୍ୟ ମିଳିବନି ।

ଦୁଇ ବିଂଶ ଯେବେ ବର୍ଷ ବୋଲାଇବ
ବହୁ ବିତିପାତ ହେବ ।
ଅଜଣା ବ୍ୟାଧିରେ ବହୁ ନାଶ ଯିବ
ହାହାକାର ପଡିଯିବ ।

ଉପରୋକ୍ତ ମାଳିକା ବହୁବର୍ଷ ପୂର୍ବେ ଲେଖା ଯିବାର ମତ ପ୍ରକାଶ ପାଇଛି । ପ୍ରକୃତରେ ମଧ୍ୟ କରୋନା–୧୯ ଏହା ପ୍ରମାଣିତ କରିଛି । ଅବଶ୍ୟ ପୂର୍ବେ ସାର୍ସ, ପ୍ଲେଗ୍ ଓ ହଇଜା ଭଳି ମହାବ୍ୟାଧି ମଣିଷ ସମାଜକୁ ବ୍ୟତିବ୍ୟସ୍ତ କରିଦେଇଛି । ଏହାକୁ ମଧ୍ୟ ଆମେ ଅତିକ୍ରମ କରି ଏକବିଂଶ ଶତାବ୍ଦୀରେ ପଦାର୍ପଣ କରିଛୁ । ବିଜ୍ଞାନ ମଧ୍ୟ ଆଗେଇ ଚାଲିଛି । ବିଜ୍ଞାନ ଓ ଆଧ୍ୟାତ୍ମିକତା ମଧ୍ୟରେ ସାମଞ୍ଜସ୍ୟ ରହିଛି । ବିଜ୍ଞାନ ଓ ଆଧ୍ୟାତ୍ମିକତାର ଲକ୍ଷ୍ୟ ମାନବ ସମାଜର ଉନ୍ନତି ।

କିନ୍ତୁ ବିଜ୍ଞାନର ଗତି ଏତେ ମାତ୍ରାରେ ଆଗେଇ ଯାଇଛି ଯେ ଆମେ ନିଜର କର୍ମକୁ ଭୁଲିଯାଉଛୁ । ମାନବ ସମାଜର ଉପକାର ପାଇଁ ଉପଗ୍ରହମାନ ଅବସ୍ଥାପିତ କରାଯାଇଅଛି । ଏହାଦ୍ୱାରା ମାନବର ସରବରାହ ସଂସ୍ଥା,





ଖାଦ୍ୟ ପ୍ରଣାଳୀ ଓ ଶିକ୍ଷାପ୍ରଦାନ ପ୍ରଣାଳୀରେ ଉନ୍ନତି ଘଟିଛି । ଏହାର ଅର୍ଥ ନୁହେଁ ଯେ ବିଜ୍ଞାନକୁ ଅପବ୍ୟବହାର କରି ମାନବଜାତି ବିରୁଦ୍ଧରେ ଆଗେଇନେବା । ଏକ ଦେଶ ବୋମାର ପରୀକ୍ଷା କରିଚାଲିଛି । ଯଦି ଆଉ ଏକ ଦେଶ ଏହାର ପ୍ରତିବାଦ କରିବାକୁ ଚେଷ୍ଟା କରୁଛି, ଉପରୋକ୍ତ ଦେଶ ତା'ର ପ୍ରତିବାଦ କରୁଛି । ସମାଜରେ ମଣିଷର କର୍ମ ମଣିଷକୁ ଅବାଟକୁ ନେଇଯାଉଛି । ଏହାଦ୍ୱାରା ପ୍ରକୃତିକୁ ଆମେ ବିକୃତ କରୁଛୁ ।

ଆଧ୍ୟାତ୍ମିକତାର ଅର୍ଥ ନୁହେଁ ଯେ କେବଳ ଅନ୍ଧବିଶ୍ୱାସକୁ ପ୍ରୋତ୍ସାହନ ଦେବା । ବରଂ ନିଜକୁ ସମାଜର ଅନୁଶାସନ ମଧ୍ୟରେ ଶୃଙ୍ଖଳିତ କରିବା । ଗୋଟିଏ କୋଭିଡ୍-୧୯ ବ୍ୟାଧି ଆସିଛି ମାନବର କିଛି କର୍ମରେ ବିଭ୍ରାଟ ଯୋଗୁଁ । ପ୍ରକୃତି ସହ ଅନ୍ୟାନ୍ୟ ଜୀବଜନ୍ତୁ ମଧ୍ୟ ରହିଛନ୍ତି । ମାନବ ଜାତି ଯଦି ଅନ୍ୟାନ୍ୟ ଜୀବଜନ୍ତୁମାନଙ୍କୁ ସେମାନଙ୍କ ସହ ଦୟାପରବଶତା ଓ ସାମାଜିକ ଦୂରତା ନ ରଖେ ଓ ଶୃଙ୍ଖଳା ଭଙ୍ଗ କରେ ତାହାହେଲେ ଏହିଭଳି ମହାମାରୀର ଶିକାର ହେବ । କୁହାଯାଏ ଯେ, ଚୀନ୍‌ଦେଶରେ ମଣିଷଜାତି ପଶୁର ଶିକାର କରି ନିଜ ଖାଦ୍ୟ ପରିବେଷଣ କଲା, ଯାହାଦ୍ୱାରା ଭୂତାଣୁ ପଶୁଠାରୁ ଆସି ମଣିଷ ମଧ୍ୟରେ ପ୍ରବେଶ କଲା ଓ ମଣିଷଠାରୁ ମଣିଷକୁ ବ୍ୟାପିଲା । ଏହା ମହାମାରୀ ରୂପନେଲା । ଏହି ମହାମାରୀ ସମସ୍ତ ପୃଥିବୀକୁ ଗ୍ରାସ କରିବାକୁ ବସିଛି । ଏହାର ସାଧନ ମାନବ ସମାଜ ପକ୍ଷରେ ସୀମିତ ଓ ଏହାର ପ୍ରଭାବ ପ୍ରତ୍ୟେକ ଦେଶର ଅର୍ଥନୀତି ଉପରେ ମଧ୍ୟ ବହୁ ମାତ୍ରାରେ ପ୍ରତିଫଳିତ ହେଉଛି ।

ମାନବଜାତିର ବୈଜ୍ଞାନିକ ଶୃଙ୍ଖଳା, ନିଜର ସାମାଜିକ ଶୃଙ୍ଖଳା ତଥା ଆଧ୍ୟାତ୍ମିକତା ମହାମାରୀରୁ ରକ୍ଷା କରିପାରିବ । ସମ୍ପ୍ରତି ସାମାଜିକ ଦୂରତା ଏକମାତ୍ର ବାଟ ଯାହାକି ଆଧ୍ୟାତ୍ମିକତାକୁ ବୃଦ୍ଧି କରିବ ଓ ଭକ୍ତର ଭଗବାନ ସହ ମିଳନ କରାଇବ ।

ସାମାଜିକ ଦୂରତାର ଅର୍ଥ ମଣିଷ ଓ ମଣିଷ ମଧ୍ୟରେ କିଛି ସମୟ ପାଇଁ ଦୂରତା ରକ୍ଷା କରିବା । ଭକ୍ତର ଭଗବାନ ସହ ମିଳନରେ ମଧ୍ୟ ଦୂରତା ରଖା ଯାଇଥିଲା । ଆମେ ମନ୍ଦିରକୁ ଯାଇପାରୁନୁ ଏହାର ଅର୍ଥ ନୁହେଁ ଯେ ଆମେ ଭଗବାନଙ୍କୁ ଦର୍ଶନ କରୁନାହୁଁ । ପ୍ରକୃତରେ ଶ୍ରୀଜଗନ୍ନାଥଙ୍କୁ ହୃଦୟରେ ଦର୍ଶନ କରିବା ଓ ତାଙ୍କର ସାନ୍ନିଧ୍ୟ ପାଇବା ଆମର କାମ୍ୟ ।

ଅଧୁନା ପରିସ୍ଥିତିରେ ସାମାଜିକ ଦୂରତା ରକ୍ଷା କରିବା ଓ ମନ୍ଦିର, ଚର୍ଚ୍ଚ ଓ ଗୀର୍ଜାରେ ପ୍ରବେଶ ନିଷେଧ କରାଯିବାର ଅର୍ଥ ନୁହେଁ ଭକ୍ତକୁ ଭଗବାନଙ୍କଠାରୁ ଅଲଗା କରାଯିବା । କଥାରେ ଅଛି, ଈଶ୍ୱର ଯାହା କରନ୍ତି ପ୍ରାଣୀର ମଙ୍ଗଳ ପାଇଁ । ଆପଣମାନେ ମନେ ପକାନ୍ତୁ ପ୍ରତିବର୍ଷ ମହାପ୍ରଭୁ ଅଣସର ଘରେ ୧୫ ଦିନ ରହି ପରେ ଭକ୍ତମାନଙ୍କୁ ରଥଯାତ୍ରାରେ ଦର୍ଶନ ଦିଅନ୍ତି । ସେ ନିଜକୁ ସାଧାରଣ ଦର୍ଶନରୁ ବିରତ ରଖନ୍ତି କାରଣ ତାଙ୍କର ବିଶ୍ରାମ ଦରକାର । ଗଣମାଧ୍ୟମରେ ରାଜ୍ୟ ସରକାର ମଧ୍ୟ ଉକ୍ତ ମତାମତ ପରିପ୍ରକାଶ କରିଛନ୍ତି । ସେଥିପାଇଁ ଆପଣମାନେ ଜାଣନ୍ତି ମହାପ୍ରଭୁ ଜଗନ୍ନାଥ ଉକ୍ତ ସମୟରେ ଶ୍ରୀଅଲାରନାଥ ମନ୍ଦିରରେ ଭକ୍ତମାନଙ୍କୁ ଦର୍ଶନ ଦିଅନ୍ତି । ଉକ୍ତ ସାମାଜିକ ଦୂରତା ମଧ୍ୟ ସେହିପରି । ନିଜର ମନମନ୍ଦିରରେ ମହାପ୍ରଭୁଙ୍କୁ ଦର୍ଶନ କରନ୍ତୁ ଓ ପ୍ରତିଦିନ ସେହିପରି ଉତ୍କଣ୍ଠା ଜାଗ୍ରତ କରନ୍ତୁ, କିପରି କରୋନା ଭଳି ଘାତକ ଭୂତାଣୁ ଅପସରି ଯାଉ ଓ ଆମେ ପୁଣି ମହାପ୍ରଭୁଙ୍କ ପାଖରେ ଦର୍ଶନ ଲାଭ କରିବା । ଆମେ ମନେ ରଖିବା ଯେ ମହାପ୍ରଭୁ ଆମକୁ ପାଖରେ ରଖିଛନ୍ତି ଓ ସେ ଏହି ସାମାଜିକ ଦୂରତା ଏକ ଆଶୀର୍ବାଦ ରୂପେ ପ୍ରଦାନ କରିଛନ୍ତି । କାରଣ ଯେତେଦିନ ପ୍ରତ୍ୟକ୍ଷଭାବେ ଯାଇ ଦର୍ଶନ ନ କରିବ, ସେତେଦିନ ଭକ୍ତ ନିଜର ମନରେ ପ୍ରଭୁଙ୍କ ପ୍ରତି ଦୃଢତା ଆଣିବ ଓ ତାଙ୍କୁ ମନରେ ଦର୍ଶନ କରୁଥିବ । ଭକ୍ତ ଓ ଭଗବାନଙ୍କ ମଧ୍ୟରେ ସମ୍ପର୍କ ଅତୁଟ ଓ ନିବିଡ ଅଟେ ।

ଆଉ ଗୋଟିଏ କଥା ମନରେ ଆସେ, ମହାପ୍ରଭୁ କାହିଁକି ଭକ୍ତମାନଙ୍କୁ ଏପରି ସାମାଜିକ ଦୂରତାରେ ରଖିଲେ । ଏହାର ଅର୍ଥ ସାଉଁଟିଲା ବେଳେ ମନରେ ଆସେ ଏହା କ'ଣ ଭଗବାନଙ୍କ ପରୀକ୍ଷା । ମଣିଷ ଧରାକୁ ସରା



ମନେକରି ଓ ବିଜ୍ଞାନକୁ ଅପଭ୍ରଷ୍ଟ କରି କିମ୍ବା ଆଧାତ୍ମିକତାକୁ ତାମସିକ ଭାବରେ ନେଇଥିବାରୁ ଏପରି ଦଣ୍ଡ ମହାପ୍ରଭୁ ଦେଲେ କି ? ପ୍ରକୃତରେ ଏ ଛାର ଭକ୍ତ ଉକ୍ତ ଗୋଲକଧନ୍ଦା ବୁଝିବା କଷ୍ଟକର । କିନ୍ତୁ ଏହା ନିଶ୍ଚିତ ମହାପ୍ରଭୁଙ୍କୁ ଆମେ ମନ୍ଦିରରେ ଦର୍ଶନ କଲାବେଳେ କେବଳ ଦେଖାକରି ଆସୁ, ମନରେ ଦର୍ଶନ କରି ନଥାଉଁ, ଅବଶ୍ୟ ସମସ୍ତେ ନୁହଁନ୍ତି । ଏଣୁ ଭକ୍ତର ଭଗବାନ, ନିଶ୍ଚିତ ଭାବରେ ଭକ୍ତର ପରୀକ୍ଷା ନେଉଛନ୍ତି ଭଗବାନ ।

କିନ୍ତୁ, ଏକଥା ସତ୍ୟ ଯେ ମହାପ୍ରଭୁ ଶ୍ରୀଜଗନ୍ନାଥ ମନ୍ଦିରରେ ରହି ମଧ୍ୟ ଆମକୁ ଦିନରାତି ସତର୍କ କରାଇଛନ୍ତି ଓ ଆମ ଉପରେ ଛତ୍ରଛାୟା ଭାବେ କରୋନା ମହାବ୍ୟାଧି କବଳରୁ ରକ୍ଷା କରୁଛନ୍ତି । ଧନ୍ୟ ସେ ଠାକୁର ସେଥିପାଇଁ ବିଭିନ୍ନ ଦେବାଦେବୀ ଭକ୍ତମାନଙ୍କୁ ଭଲପାଆନ୍ତି, ମାନବଜାତି ପ୍ରତି ସ୍ନେହ, ଶ୍ରଦ୍ଧା ଓ ଆଶୀର୍ବାଦ ରଖିଛନ୍ତି । ଆମେମାନେ ଏ ସମୟରେ ଜାତି, ଗୋତ୍ର, ଲିଙ୍ଗ, ଧର୍ମ ନିର୍ବିଶେଷରେ ଆତ୍ମାକୁ ପରମାତ୍ମା ସହ ମିଳନ କଲେ ସାମାଜିକ ଦୂରତା ପାଳନ କରିହେବ । ମହାପ୍ରଭୁ ଏହା ସୂଚାଇଦେଲେ ଯେ ମଣିଷଜାତି ଗୋଟିଏ ଓ ଏହା ମଧ୍ୟରେ ପାତରଅନ୍ତର ନାହିଁ । ସମଗ୍ର ମାନବଜାତି ତାଙ୍କର ଭକ୍ତ । ପଶୁପକ୍ଷୀ ଇତ୍ୟାଦି ଏହି ବିଶ୍ୱବ୍ରହ୍ମାଣ୍ଡର ମଧ୍ୟ ଭାଗୀଦାର । ପରସ୍ପର ମଧ୍ୟରେ ତିକ୍ତତା ଭୁଲି ବନ୍ଧୁତା ବଢାଇବା । ବନ୍ଧୁତା ଏକାଠି ଖାଇବାରେ ଓ ଏକାଠି ବସିବାରେ ନଥାଏ । ବନ୍ଧୁତା ଥାଏ ଏକମନ ଓ ପ୍ରାଣରେ ପରସ୍ପରକୁ ନିଃସ୍ୱାର୍ଥପର ଭାବରେ ଭଲପାଇବାରେ । ଲୋକ ଅଛନ୍ତି ଯା' ଆସ ନାହିଁ କିନ୍ତୁ ପରସ୍ପରର ଭାବର ଆଦାନପ୍ରଦାନ ଦୃଢ । ମୂଳକଥା ହେଲା ଭଲ ମଣିଷ ହେବାକୁ କେତେଗୁଡିଏ ଜିନିଷରେ ଧ୍ୟାନ ଦିଆଯାଏ ଯଥା– ପରିଚ୍ଛନ୍ନତା, ଅନ୍ୟ ପ୍ରତି ସ୍ନେହ ଓ ଶ୍ରଦ୍ଧା, ସତ୍ୟବାଦୀ, ଜୀବଜନ୍ତୁ ପ୍ରତି ଦୟା, ଭଗବାନଙ୍କ ପ୍ରତି ପ୍ରତିବଦ୍ଧତା ଓ ବନ୍ଧୁ ପରିଜନ ପ୍ରତି ଅମାୟିକ ଭାବ, ସାହାଯ୍ୟ ମନୋବୃତ୍ତି, ଏତ କେତେକ ମାତ୍ର ଆହୁରି ଅନେକ ଅଛି । ପ୍ରତ୍ୟେକ ମଣିଷ କର୍ମଯୋଗୀ ହେଲା ଓ ଭାଗ୍ୟର ବିଡମ୍ବନାକୁ ସହ୍ୟ କରିନେଲା । ଗୀତାରେ ସେଥିପାଇଁ ଶ୍ରୀକୃଷ୍ଣ କହିଲେ, କର୍ମ କରିଚାଲ ଫଳ ତାଙ୍କ ଉପରେ ନ୍ୟସ୍ତ କର । ଯାହାଫଳରେ ଭଗବାନଙ୍କ ସାନ୍ନିଧ ପାଇବ । ପରିଶେଷରେ ଏତିକି କୁହାଯାଏ ଭଲ ମଣିଷ ହେବାର ଅର୍ଥ ଭଗବାନଙ୍କ ସାନ୍ନିଧ ପାଇବା ।

ମହାପ୍ରଭୁ ଜଗନ୍ନାଥ ସର୍ବଦା ମଣିଷ ଜାତି ପାଇଁ ବ୍ୟାକୁଳ । ତାଙ୍କର ଯାନିଯାତ୍ରା ସବୁ ହେବ ଓ ହେଉଛି, ସେଥିପାଇଁ ଘରେ ରହି ମଧ୍ୟ ଆମେ ତାଙ୍କୁ ପ୍ରାର୍ଥନା କରିବା । କରୋନା ପ୍ରତିବନ୍ଧକ ନଆସୁ । ସେ ସମ୍ପୂର୍ଣ୍ଣ ଭାବରେ ଲୋପ ପାଉ । ଅବଶ୍ୟ ଏହା ମଧ୍ୟ ସେହି ପରମେଶ୍ୱରଙ୍କ ଇଚ୍ଛା । କିନ୍ତୁ ଯଦିବି ଯାଇ ନହୁଏ ତାଙ୍କର କାର୍ଯ୍ୟ ସୁଚାରୁରୂପେ, ମନ୍ଦିର ସେବାୟତ ଓ ମନ୍ଦିର ପରିଚାଳନା କମିଟି କରନ୍ତୁ । କିନ୍ତୁ ଆମର ମହାପ୍ରଭୁ ସବୁବେଳେ ଆତ୍ମାରେ ଥାଆନ୍ତୁ ଓ ଆଶୀର୍ବାଦ ପ୍ରଦାନ କରୁଥାନ୍ତୁ । ଏହି ସାମାନ୍ୟ ଭକ୍ତର ଏତିକି ନିବେଦନ । ସେ ଦୟାକଲେ ଏ ଅକିଞ୍ଚନ ଭକ୍ତ ତାଙ୍କ ସମ୍ମୁଖରେ ଦର୍ଶନ ଲାଭ କରିବ ବୋଲି ବିନତି ।







# ଗୁଣ୍ଡିଚା ଯାତ୍ରାରେ ଦଶାବତାର ଲୀଳା

**କମଳ କୁମାର ରାଉତ**

ହେ ମହାବାହୁ ଆପଣ ଯୁଗେଯୁଗେ ଭକ୍ତ ପାଇଁ ସବୁ ବିଳାସବ୍ୟସନକୁ ତୁଚ୍ଛ କରି ଧାଇଁଯାଇଛନ୍ତି ତା' ନିକଟକୁ । ବୁଝିଛନ୍ତି ତା'ର ମନର କଥା, ଅନ୍ତରର ବ୍ୟଥା । ସେଥିପାଇଁ ଆପଣ ପରା ଭକ୍ତର ଏକାଧାରରେ ପିତା, ମାତା, ବନ୍ଧୁ, ସହୋଦର ତଥା ସ୍ୱାମୀ । କିନ୍ତୁ ଆପଣଙ୍କର ଏ ଅଭିମାନ କାହିଁକି ? ଆପଣ ଆମ୍ଭମାନଙ୍କୁ ଦର୍ଶନରୁ ନିବୃତ୍ତ କରୁଛନ୍ତି କାହିଁକି ? ଅବଶ୍ୟ ଗୋଟିଏ ନିଛକ ସତ୍ୟ ଯିଏ ଯେତେବେଳେ ଆପଣଙ୍କ ପାଖକୁ ଗଲା କିଛି ନା କିଛି ମାଗିଲା । ଆପଣ କିପରି ଅଛନ୍ତି, ଭଲରେ ଅଛନ୍ତି ନା ମନ୍ଦରେ ଅଛନ୍ତି, ଦୁଃଖରେ ଅଛନ୍ତି ନା ସୁଖରେ ଅଛନ୍ତି ସେ କଥା କ୍ଷଣିକ ପାଇଁ ମନରେ ଆଣିଲା ନାହିଁ । ଯଦି ତା'ର ଇଚ୍ଛା ପୂରଣ ନ ହେଲା ଆପଣଙ୍କ ଉପରେ ଅଭିମାନ କରିବାକୁ ମଧ୍ୟ ପଛେଇଲା ନାହିଁ । ଅନ୍ୟ ପକ୍ଷରେ ସର୍ବସମ୍ମୁଖରେ କହିଲା- ''ତା'ର ଯାହା ଇଚ୍ଛା, ତା' ଇଚ୍ଛାରେ ତ ସବୁ ହେଉଛି, ଆମେ କ'ଣ କରୁଛେ'' । ତେଣୁ ଆପଣ ଆମ୍ଭମାନଙ୍କୁ ବୋଧେ ଦର୍ଶନ ଦେବାକୁ ଆଉ ଇଚ୍ଛା କଲେନାହିଁ । କିନ୍ତୁ ହେ ମହାବାହୁ ! ଆପଣଙ୍କ ମନେଥିବ ଗୁଣ୍ଡିଚାରାଣୀ ମା'ଙ୍କ କଥା । ଯେ ଆପଣଙ୍କୁ ଶପଥ କରାଇଥିଲେ, ପ୍ରତ୍ୟେକ ବର୍ଷ ଶୁକ୍ଳ ଆଷାଢ଼ ଦ୍ୱିତୀୟ ତିଥିରେ ଆସି ନିଜର ଜନ୍ମବେଦିକୁ ବୁଲିଯିବାକୁ । ଯେଉଁ ଯାତ୍ରା ଆପଣ ଏବଂ ଭକ୍ତମାନଙ୍କର ଅପୂର୍ବ ମିଳନର ଯାତ୍ରା ନାମରେ ବିଶ୍ୱ ପରିଚିତ । ସେଥିପାଇଁ ଆପଣ ସମସ୍ତ ଭୋଗ ଏବଂ ଐଶ୍ୱର୍ଯ୍ୟକୁ ତ୍ୟାଗକରି ଚାଲିଆସନ୍ତି ଭକ୍ତ ନିକଟକୁ ତା'ର ସୁଖଦୁଃଖ ବୁଝିବା ସହ ମନ ଭିତରେ ଥିବା ଅବ୍ୟକ୍ତ ବେଦନାକୁ ଦୂରୀଭୂତ କରିବା ନିମନ୍ତେ । ସେଥିପାଇଁ ତ ଆପଣ ଜଗତର ନାଥ ଶ୍ରୀଜଗନ୍ନାଥ । ଆପଣଙ୍କୁ ଶବରମାନେ ଦାରୁଦେବତା, ବୈଷ୍ଣବମାନେ ଶ୍ରୀପତି, ଶାକ୍ତମାନେ ଶକ୍ତି, ଶୈବମାନେ ଭୈରବ, ବୌଦ୍ଧମାନେ ବୁଦ୍ଧ ଓ ଜୈନମାନେ ଋଷଭ ଦେବରୂପେ ପରିକଳ୍ପନା କରିଛନ୍ତି ।

ଆପଣଙ୍କର ଏହି ଯାତ୍ରାରେ ଦଶାବତାର ଲୀଳାର ପ୍ରତୀୟମାନ ହୁଏ । ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ, ବାମନ, ପର୍ଶୁରାମ, ରାମ, ବଳରାମ, ବୌଦ୍ଧ ଏବଂ କଳ୍କି । ଶ୍ରୀମନ୍ଦିରରେ ରଥଯାତ୍ରା ନୀତିକାନ୍ତି ସମାପନ ପରେ ମଙ୍ଗଳାର୍ପଣ ହୁଏ । ତିନି ଦିଅଁ ରତ୍ନସିଂହାସନରୁ ପୋଖରୀଆକୁ ମୀନ ଭଳି ଲମ୍ଫ ଦେଇଥାଆନ୍ତି । ତେଣୁ ପୋଖରିଆ, ଜଗମୋହନ, ସାତ ପାହାଚ, କୀର୍ତ୍ତନଚକଡା, ଆନନ୍ଦବଜାର ଏବଂ ବାଇଶି ପାହାଚ ଆଦି ସ୍ଥାନ ଅତିକ୍ରମ କରିବା ପ୍ରକ୍ରିୟା ଆପଣଙ୍କର ମୀନ ଅବତାର ଲୀଳାକୁ ସୂଚାଏ । ଏହାପରେ ଜଗମୋହନଠାରୁ ସାତପାହାଚ ପର୍ଯ୍ୟନ୍ତ ହୁଏ କଚ୍ଛପ ଅବତାର ଲୀଳା । ଏହି ଲୀଳା ହେଉଥିବା ସ୍ଥାନକୁ କୁହାଯାଏ କୂର୍ମ ବେଢା । ବରାହ ଅବତାରରେ ଆପଣ ଧାରଣ କରନ୍ତି ସୁକର ରୂପ, ଯାହାକି କୀର୍ତ୍ତନ କଚଡ଼ାଠାରୁ ଆନନ୍ଦ ବଜାର ମଧ୍ୟରେ ସମ୍ପନ୍ନ ହୋଇଥାଏ । ନୃସିଂହ ଅବତାର ଲୀଳା ବାଇଶି ପାହାଚରେ ହୁଏ । ଆପଣଙ୍କର ବାମନ ଅବତାର ଲୀଳା ସିଂହଦ୍ୱାରରୁ ରଥାରୂଢ ହେବା ପର୍ଯ୍ୟନ୍ତ, ଏଇଥିପାଇଁ ତ କୁହାଯାଏ, ''ରଥେ ତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ବିଦ୍ୟତେ'' । ପର୍ଶୁରାମ ଅବତାର ଲୀଳା ଆପଣଙ୍କର ରଥ ଗଡ଼ିବା

ସମୟରେ ହୋଇଥାଏ । ଏହି ଲୀଳା ସମୟରେ ମହାପ୍ରଭୁ ଶ୍ରୀଜଗନ୍ନାଥ ହିଁ ରାଜାଧିରାଜ ବା ବିଶ୍ୱ ସମ୍ରାଟ୍ । ଗଜପତି ମହାରାଜା ମଧ୍ୟ ରଥରେ ଛେରାପହଁରା କରିବା ଏହାର ନିଦର୍ଶନ ଅଟେ । ଶ୍ରୀଗୁଣ୍ଡିଚା ବାଡ଼ି ଆଡପ ମଣ୍ଡପରେ ହୁଏ ରାମ ଅବତାରର ଲୀଳା ବା ଆପଣ ରଘୁପତି ରୂପରେ ଦର୍ଶନ ଦିଅନ୍ତି । ତା'ପରେ ପ୍ରଭୁ ବଳରାମ ଅବତାର ବା ହଳଧର ରୂପ ଧାରଣ କରନ୍ତି ଶ୍ରୀଗୁଣ୍ଡିଚା ବାଡ଼ି ଜନକ କ୍ଷେତ୍ରରେ । ବିଶ୍ୱାସ ଅଛି ଯେ, ଏଠାରେ ହଳ କରିବା ସମୟରେ ଦେବୀ ଜାନକୀ ମିଳିଥିଲେ । ଶ୍ରୀଗୁଣ୍ଡିଚା ବାଡ଼ି ଆପଣଙ୍କର ଜନ୍ମସ୍ଥାନ । ଏଠାରେ ଆପଣଙ୍କର ବୌଦ୍ଧାବତାର ଲୀଳା ମଧ୍ୟ ସମ୍ପନ୍ନ ହୋଇଥାଏ । ଶ୍ରୀଗୁଣ୍ଡିଚା ବାଡ଼ିରେ ଭକ୍ତମାନେ ଦୁଃଖକୁ ଭୁଲି ଶ୍ରୀଜୀଉଙ୍କୁ ଦର୍ଶନ କରି ଶାନ୍ତି ପାଆନ୍ତି । ଶେଷରେ ବାହୁଡ଼ା ଯାତ୍ରାରେ ମହାପ୍ରଭୁ କଳ୍କି ଅବତାର ଲୀଳାର ପ୍ରତୀକାତ୍ମକ ପ୍ରଦର୍ଶନ କରନ୍ତି । କଳି କଳୁଷ ଆଚ୍ଛାଦିତ ଭକ୍ତମାନଙ୍କୁ ସେ ଉଦ୍ଧାର କରିବା ସହିତ ତାଙ୍କ ଭିତରେ ଥିବା ମ୍ଳେଚ୍ଛତ୍ୱକୁ ମଧ୍ୟ ସଂହାର କରିଥାଆନ୍ତି । ପବିତ୍ର ଗୁଣ୍ଡିଚା ଯାତ୍ରା ହିଁ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଦଶାବତାର ଲୀଳା ଯାତ୍ରା ବୋଲି ପୁରାଣବିତ୍‌ମାନେ ବିଶ୍ୱାସ କରନ୍ତି । ହେ ମହାପ୍ରଭୁ ତୁମକୁ ମୋର କୋଟି କୋଟି ପ୍ରଣାମ । ମୁଁ ତୋ ଚରଣାଶ୍ରିତ, ତୋର ଲୀଳା କ'ଣ ବା ବର୍ଣ୍ଣନା କରିପାରିବି । ତେଣୁ ଭାଗବତରେ ଲେଖା ଅଛି –

'ଯା ଲୀଳା ଦେବେ ଅଗୋଚର
କେ ବର୍ଣ୍ଣି ପାରେ ନର ତା'ର ।'

ଘର ନଂ–୧୨୯୧, ଫେଜ୍–୨
ଡୁମୁଡୁମା ହାଉସିଂ ବୋର୍ଡ କଲୋନୀ, ଭୁବନେଶ୍ୱର

# ହାତଠାରି ମୋତେ ଡାକେ

ହଂସନାଥ ମୁଦୁଲି

ଚନ୍ଦ୍ରଭାଗାର ନୀଳ ଜଳରାଶି
ହାତଠାରି ମୋତେ ଡାକେ
ଅଳ୍ପ ଦୂରେ ଥିବା କୋଣାର୍କ ଛବି ମୁଁ
ମନ ପରଦାରେ ଆଙ୍କେ
ସୁନ୍ଦର ତା'ର ଉପକୂଳ ମୋର
ମନଟିକୁ ଯାଏ ଛୁଇଁ
ସୁନେଲି ବାଲୁକା ବିଛଣା କହେ ଯେ
'ମୋ କୋଳରେ ଯାଅ ଶୋଇ'
ତା' ବକ୍ଷେ ସୁନ୍ଦର ଅରୁଣ ଆଗମ
ଦିଶିଯାଏ ମନ ଫାଙ୍କେ
ଓଡିଶା ମାଟିର ପୁଣ୍ୟତୋୟା ସେହି
ବଙ୍ଗୋପ ସାଗରେ ମିଶି
ଭୁବନେଶ୍ୱର ଓ କୋଣାରକ ପୁରୀ
ସୁବର୍ଣ୍ଣ ତ୍ରିଭୁଜ ରଚି
ହଜାର ଦର୍ଶକ ମନ ମୋହିବାକୁ
ଛୋଟ ନିମନ୍ତ୍ରଣ ରଖେ





ଓଡିଆ ପୁଅର ନିହାଣ ଛୁଆଁରେ
କଳା ପାଗୋଡାର ଦେହେ
ଏତେ ବଇଭବ ଭରି ଯାଇଛି ଯେ
ଦୁନିଆର ମନ ମୋହେ
ସାରା ଗୋଲକର କୋଣୁ ଅନୁକୋଣୁ
କେତେ କିଏ ଆସି ଦେଖେ
ସେ ନୀଳ ଜଳରେ ପବନ ସାଥିରେ
କେତେ ଯେ ବୋଇତ ଭାସି
ଉତ୍ତାଳ ତରଙ୍ଗ ବକ୍ଷ ଚିରି ସୂର୍ଯ୍ୟ
କିରଣେ ଉଠନ୍ତି ହସି
ଦେଖଣାହାରୀ ଏ ସପନେ ହଜନ୍ତି
ରହି ଜୀବନର ପାଖେ ।

ଖଣ୍ଡଗିରି (ଡୁମଡୁମା – କ)
ଭୁବନେଶ୍ୱର–୭୫୧୦୩୦





# ଶ୍ରୀମନ୍ଦିରରେ ଦର୍ପଣ ସେବା

ହେମାଙ୍ଗିନୀ ମହାନ୍ତି

ଜଗତରନାଥ ଶ୍ରୀଜଗନ୍ନାଥ ଓଡ଼ିଆ ଜାତିର ପ୍ରାତଃ ସ୍ମରଣୀୟ ଆରାଧ୍ୟଦେବତା ଓ ପ୍ରାଣର ଠାକୁର । କେଉଁ ପ୍ରାଚୀନ କାଳରୁ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ଓଡ଼ିଶାର ଜନଜୀବନରେ ଏକ ସମନ୍ୱୟାତ୍ମକ ଆଧ୍ୟାତ୍ମିକ ଓ ସାଂସ୍କୃତିକ ସ୍ରୋତପ୍ରବାହିତ । ଲୀଳାମୟ ସେ, ଲୀଳାକ୍ଷେତ୍ର ଶ୍ରୀକ୍ଷେତ୍ରରେ ଅବସ୍ଥାନ କରି କେତେ ମାନବୀୟଲୀଳା ପ୍ରକଟ କରିଥାନ୍ତି । ମହାପ୍ରଭୁଙ୍କର ଦୈନନ୍ଦିନ ରୀତିନୀତି ଅନୁଯାୟୀ ଶ୍ରୀମନ୍ଦିରର ଦ୍ୱାରଫିଟା, ଭିତରଶୋଧ, ଶ୍ରୀଜୀଉମାନଙ୍କ ମଙ୍ଗଳଆଳତି, ମଇଲମ ନୀତି ଉତ୍ତାରେ, ତଡ଼ପ ଉତ୍ତରୀୟ ଲାଗି ହୋଇ ଅବକାଶ ପୂଜା ଅନୁଷ୍ଠିତ ହୋଇଥାଏ ।

ଅବକାଶ ନୀତି ହେଉଛି ମହାପ୍ରଭୁଙ୍କର ପ୍ରତ୍ୟହ ପ୍ରାତଃ କାଳରେ ଶଯ୍ୟାତ୍ୟାଗ, ଶ୍ରୀମୁଖ ପ୍ରକ୍ଷାଳନ, ଦନ୍ତମାର୍ଜନ ଓ ସ୍ନାନ ଇତ୍ୟାଦି । ଏହି ନୀତି ମହାପ୍ରଭୁଙ୍କର ମାହାର୍ଘ ମାନବୀୟଲୀଳା । ଜଣେ ସାଧାରଣ ମାନବର ଦୈନନ୍ଦିନ ଜୀବନଚର୍ଯ୍ୟା ସହିତ ସାମଞ୍ଜସ୍ୟ ରଖେ । ମାତ୍ର ମହାପ୍ରଭୁ ହେଉଛନ୍ତି ଦାରୁବ୍ରହ୍ମ, ଶ୍ରୀଜୀଉମାନଙ୍କର ଶ୍ରୀଅଙ୍ଗ ଦାରୁରେ ଗଠିତ । ତେଣୁ ଶ୍ରୀଅଙ୍ଗର ଦୀର୍ଘକାଳୀନ ସୁରକ୍ଷା ନିମିତ୍ତ ପ୍ରତ୍ୟକ୍ଷ ସ୍ନାନ କରାନଯାଇ ଦୈନନ୍ଦିନ ପରୋକ୍ଷ ସ୍ନାନ ବା ବିମ୍ବସ୍ନାନ କରାଯାଇଥାଏ ।

ଶ୍ରୀମନ୍ଦିରର ଦ୍ୱାରଫିଟା ଯିବା ପରେ ଜୟବିଜୟ ଦ୍ୱାର ଦେଇ ପ୍ରତ୍ୟେକ ଦିନ ଦର୍ପଣୀ ସେବକମାନେ ଜଗମୋହନ ମଧ୍ୟକୁ ପ୍ରବେଶ କରି ଭଣ୍ଡାରଘରୁ ମହାପ୍ରଭୁଙ୍କ ଦୈନନ୍ଦିନ ସେବା ପୂଜାରେ ଆବଶ୍ୟକ ରୁପା ବାସନ, ରୁପାବଟା, ଝରି ୩ଗୋଟି ପରଖ, ୩ଟି ଦହିତାଟିଆ, ପିତ୍ତଳକୁଣ୍ଡ ୩ଗୋଟି, ରୁପାପିଙ୍ଗଣ ସହ ୩ଗୋଟି ଦର୍ପଣକୁ ଏକାଠି କରି ଅଣସର ପିଣ୍ଡିରେ ବସି ଧୁଆମଜା କରିଥାନ୍ତି ।

ମହାପ୍ରଭୁଙ୍କର ରାତ୍ରପହୁଡ଼ ଭାଙ୍ଗିବା ଉତ୍ତାରେ ଭିତରଶୋଧ ଶ୍ରୀଜୀଉମାନଙ୍କର ମଙ୍ଗଳଆଳତୀ, ମଇଲମ ହୋଇ ତଡ଼ପଉତ୍ତୁରୀ ଲାଗି କରାଯାଇଥାଏ । ତଡ଼ପଉତ୍ତୁରୀ ଲାଗି ହେବା ଉତ୍ତାରେ ଅବକାଶ ନୀତି ନିମନ୍ତେ ରତ୍ନସିଂହାସନ ତଳ ପୋଖରିଆ ଭିତରେ ଅବକାଶ ନୀତି ନିମନ୍ତେ ରତ୍ନସିଂହାସନ ତଳ ପୋଖରିଆ ଭିତରେ ଅବକାଶ ପୂଜା ଠା' ଡ଼କାଯାଏ ।

ଠା' ଡ଼କାଯିବାପରେ ପ୍ରଥମେ ପାଣିଆପଟ ୧ଗରା ପାଣି ଆଣି, ସୁଆରବଡୁଙ୍କୁ ଦେଇଥାନ୍ତି । ସୁଆରବଡୁ ଉକ୍ତପାଣି ଭିତର ପୋଖରୀଆରେ ପକାଇ ଧୁଆପହଁରା କରିଥାନ୍ତି । ଏହାକୁ ଅବକାଶ ନୀତିପାଣି ନମିଲା କୁହାଯାଏ । ଏହାପରେ ସୁଆରବଡୁ ୩ଦିଅଁଙ୍କ ସମ୍ମୁଖ ସିଂହାସନ ତଳ ପୋଖରିଆର ମଧ୍ୟଭାଗରେ ୩ଗୋଟି କାଠପିଢ଼ା ରଖିଥାନ୍ତି । ଖଟୁଲି ସେବକ ୩ଗୋଟି ଖଟୁଲି ନେଇ ଉକ୍ତସ୍ଥାନରେ ସ୍ଥାପନା କରିଥାନ୍ତି । ମୁଖପଖାଳ ପଡ଼ିହାରୀ ୩ଗୋଟି ବଟା ଓ ୩ଗୋଟି ଥାଳି ସଜାଡ଼ି ତହିଁରେ ଫୁଲତୁଳସୀ, ଚନ୍ଦନଅଁଳା, ୩ଖଣ୍ଡି ସୁବର୍ଣ୍ଣ ଜିଭଛେଲା, ୩ଖଣ୍ଡ ଦାନ୍ତକାଠି ସହ ଗରାବଡୁ ସେବକ ୩ଗୋଟି ରୁପାଝାରି ପିଢ଼ା ନିକଟରେ ରଖିଥାନ୍ତି । ଦର୍ପଣିଆ ସେବକ ୩ଗୋଟି କାଂସ୍ୟ ଦର୍ପଣ ରଖିଥାନ୍ତି । ପାଣିଆପଟ ୩ଗୋଟି ପିଢ଼ା ନିକଟରେ ୩ଗରା ପାଣି ରଖିଥିବା ବେଳେ ଚତୁର୍ଥଗରା

ପାଣିମଧ୍ୟ ରଖିଥାନ୍ତି । ଏହି ଶେଷୋକ୍ତ ଗରା ପାଣିରେ କର୍ପୂରଗୋଳା ହୋଇଥାଏ । ମହାଭୋଇ ଦେଇଥିବା ଦହି ସ୍ନାନ ପାଣିରେ ଗୋଳା ହୁଏ । ଏହିପରି ଭାବରେ ପୂଜା ଠା କରି ମୁଖପଖାଳ ପଢ଼ିହାରୀ ମଇଲମ କରିଥିବା ୩ଜଣ ପଶୁପାଳକଙ୍କୁ ପୂଜାରେ ବସିବାକୁ ଡ଼ାକିଥାନ୍ତି । ସେମାନେ ଆସି ଦର୍ପଣିଆ ସେବକ ପରଖ ମଧ୍ୟରେ ରଖିଥିବା ୩ଗୋଟି ଦର୍ପଣକୁ ଏପରି ସ୍ଥାପନା କରିଥାନ୍ତି ଯେ ଦର୍ପଣ ମଧ୍ୟରେ ଶ୍ରୀଜିଉମାନଙ୍କର ପ୍ରତିବିମ୍ବ ପ୍ରତିଫଳିତ ହୋଇଥାଏ ପ୍ରତିଫଳିତ ପ୍ରତିବିମ୍ବ ଉପରେ ସିଂହାରୀ ସେବକ ଶ୍ରୀଜିଉଙ୍କୁ ଦାନ୍ତଘଷାଇ, ଜିଭଛେଲି ପରେ କର୍ପୂର, ଦହି, ଅଁଳା ଓ ଚନ୍ଦନ ମିଶ୍ରିତ ସୁବାସିତଜଳ ଦର୍ପଣ ଉପରେ ଢ଼ାଳି ଠାକୁରମାନଙ୍କର ସ୍ନାନ ନୀତି ସଂପୂର୍ଣ୍ଣ କରିଥାନ୍ତି ।

ମହାପ୍ରଭୁଙ୍କର ସ୍ନାନନୀତି ନିମନ୍ତେ ୩ଗୋଟି କାସ୍ୟ ନିର୍ମିତ ଦର୍ପଣ ବ୍ୟବହାର କରାଯାଇଥାଏ । ଏକ ପଦ୍ମପୁଷ୍ପାକୃତି ବଇଠି ଉପରେ ଏକହାତ ଉଚ୍ଚତା ବିଶିଷ୍ଟ କୁନ୍ଦକମକୁଟ ଦଣ୍ଡ ଏବଂ ଦଣ୍ଡର ଉପରି ଭାଗରେ ଉଭୟପାର୍ଶ୍ୱକୁ ବିସ୍ତାରିତ ହାତୀଶୁଣ୍ଢ, ହାତୀଶୁଣ୍ଢ ଉପରେ ଏକ ଗୋଲାକୃତି ଦର୍ପଣ ଶୋଭା ପାଇଥାଏ । ଦର୍ପଣର ଉପରିଭାଗରେ ଏକ ଚୂଳ ରହିଥାଏ । ପୂଜା ସମୟରେ ଚୂଳ ଉପରେ ଫୁଲ ତୁଳସୀ ଲାଗି ହୋଇଥାଏ । ଶ୍ରୀମନ୍ଦିରରେ ବିଭିନ୍ନ ପ୍ରକାର ଦର୍ପଣ ବ୍ୟବହାର ହୋଇଥାଏ । ପୂର୍ବରୁ ଗୋଟେ ଗୋଟେ ଦର୍ପଣର ଓଜନ ୨୦ରୁ ୨୫ କେ.ଜି ଥିବା ବେଳେ ଏବେ ୧୦ରୁ ୧୫ କେ.ଜି ଥିବା ଦର୍ପଣ ବ୍ୟବହୃତ ହେଉଥିବା ଜନୈକ ସେବକ ପ୍ରକାଶ କରିଛନ୍ତି ।

ଶ୍ରୀମନ୍ଦିରରେ ଶ୍ରୀଜୀଉମାନଙ୍କର ଅନୁଷ୍ଠିତ ହେଉଥିବା କେତେଗୁଡ଼ିଏ ନୀତି ଷୋଡ଼ଶ ଉପଚାରରେ ପୂଜା ହେଉଥିବା ବେଳେ ଅନ୍ୟ କେତେଗୁଡ଼ିଏ ନୀତିରେ ପଞ୍ଚଉପଚାରରେ ପୂଜା ହୋଇଥାଏ । ଗୋପାଳବଲ୍ଲଭ ଭୋଗ, ଭୋଗମଣ୍ଡପ ଭୋଗ, ବଡ଼ସିଂହାର ଧୂପ ପଞ୍ଚଉପଚାରରେ ପୂଜା ହେଉଥିବା ବେଳେ, ସକାଳଧୂପ, ମଧ୍ୟାହ୍ନଧୂପ ଏବଂ ସନ୍ଧ୍ୟାଧୂପରେ ଷୋଡଷ ଉପଚାରରେ ପୂଜା ଅନୁଷ୍ଠିତ ହୋଇଥାଏ ।

ଏଠାରେ ଅନୁସୃତ ହେଉଥିବା ଷୋଡଷ ଉପଚାର ହେଉଛି ଆସନ, ସ୍ୱାଗତ, ପାଦ୍ୟ, ଅର୍ଘ୍ୟ, ମଧୁପର୍କ, ଆଚମନୀୟ, ସ୍ନାନ, ବସ୍ତ୍ର, ଆବରଣ, ଗନ୍ଧ, ପୁଷ୍ପ, ଦୀପ, ଧୂପ, ନୈବେଦ୍ୟ ଓ ବନ୍ଧନା । ପଞ୍ଚଉପଚାର ପୂଜାରେ କେବଳ ଗନ୍ଧ, ପୁଷ୍ପ, ଧୂପ, ଦୀପ, ନୈବେଦ୍ୟ ଏହି ପାଞ୍ଚଟି ଉପଚାର ବିଧି ଅନୁସୃତ ହୋଇଥାଏ । ସ୍ନାନ ହେଉଛି ଷୋଡଷ ଉପଚାର ମଧ୍ୟରୁ ଗୋଟିଏ ଉପଚାର । ତେଣୁ ଶ୍ରୀମନ୍ଦିରରେ ଅନୁଷ୍ଠିତ ଷୋଡଷ ଉପଚାର ଧୂପ ସମୟରେ ଦର୍ପଣ ଓ ଦର୍ପଣି ସେବକମାନଙ୍କର ଆବଶ୍ୟକତା ରହିଥାଏ ।

ଷୋଡଷ ଉପଚାର ଧୂପ ସମୟରେ ଦର୍ପଣଗୁଡ଼ିକ ସିଂହାସନ ଉପରେ ସ୍ଥାପନା ହେଉଥିବା ବେଳେ ଓଢ଼ଣ ଷଷ୍ଠୀଠାରୁ ଶ୍ରୀପଞ୍ଚମୀ ପର୍ଯ୍ୟନ୍ତ ସିଂହାସନ ତଳେ ସ୍ଥାପନା ହେବାର ବିଧି ରହିଛି ।

ଏତଦ୍‌ବ୍ୟତୀତ ଶ୍ରୀମନ୍ଦିରରେ ଅନେକ ସମୟରେ ବିଭିନ୍ନ କାରଣରୁ ମହାସ୍ନାନ ଅନୁଷ୍ଠିତ ହୋଇଥାଏ ଏବଂ ପ୍ରତ୍ୟେକ ମହାସ୍ନାନରେ ଷୋଡଷ ଉପଚାରରେ ପୂଜା ହୁଏ । ଏଥିରେ ଦର୍ପଣର ଆବଶ୍ୟକତା ଅପରିହାର୍ଯ୍ୟ ।

ଗ୍ରହଣ ମହାସ୍ନାନ – ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟ ପରାଗ ସମୟରେ ମହାପ୍ରଭୁଙ୍କୁ ଗ୍ରହଣ ମହାସ୍ନାନ କରାଇବାର ବିଧି ରହିଛି । ଏହି ନୀତିରେ ଦର୍ପଣ ଓ ଦର୍ପଣିଆ ସେବକମାନଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ ।

**ଛୁଆଁ ମହାସ୍ନାନ –** କେହି ବ୍ୟକ୍ତି ବା ଛୁଇଁ ନ ପାରିବା ସେବକ ସାଧାରଣ ଦର୍ଶନବେଳେ ବା ଅନ୍ୟ କେତେବେଳେ ପ୍ରଭୁଙ୍କର ଶ୍ରୀଅଙ୍ଗ ସ୍ପର୍ଶକଲେ ଛୁଆଁ ମହାସ୍ନାନ ହୋଇଥାଏ । ଏହି ସମୟରେ ଭିତର ପୋଖରିଆଠାରୁ ବାହାର ଅର୍ଗଳି ପର୍ଯ୍ୟନ୍ତ ଧୋପଖାଳ ହୋଇ ଚୂନପାଣି ପକାଯାଏ ଏଥିରେ ଦର୍ପଣ ଓ ଦର୍ପଣିଆ ସେବକମାନଙ୍କର ଆବଶ୍ୟକ ହୋଇଥାଏ ।

**ବଡ଼ମହାସ୍ନାନ –** ଭୋଗବେଳେ ବା ଅନ୍ୟ ସମୟରେ ପୋଖରିଆରେ ବା ଜଗମୋହନରେ ଛେପ ଖଙ୍କାର ବା ରକ୍ତ ଇତ୍ୟାଦି ଦେଖାଦେଲେ କିମ୍ବା କୌଣସି





ଛୋଟଶିଶୁ ଝାଡ଼ା ବା ପରିସ୍ରା କଲେ ବଡ଼ମହାସ୍ନାନ ହୋଇଥାଏ ଏଥିରେ ଦର୍ପଣ ଓ ଦର୍ପଣିଆ ସେବକମାନଙ୍କର ସେବା ଅପରିହାର୍ଯ୍ୟ ।

**ପାହାଡ଼ା ଉଠା ମହାସ୍ନାନ –** ପୂଜା ଠା' ହୋଇଥିବା ଅବସ୍ଥାରେ କୌଣସି କାରଣରୁ ପୂଜାପଣ୍ଡା ଉଠିଗଲେ ପାହାଡ଼ା ଉଠା ମହାସ୍ନାନ ନୀତି ହୋଇଥାଏ । ଏଥିରେ ଦର୍ପଣ ଓ ଦର୍ପଣିଆ ସେବକମାନଙ୍କର ସେବା ରହିଥାଏ ।

**ପଇତାଲାଗି ମହାସ୍ନାନ –** ପରମ୍ପରା ଅନୁଯାୟୀ ଦଇତାପତି ସେବକ ଶ୍ରୀଜିଉମାନଙ୍କୁ ପଇତା ପିନ୍ଧାଇଥାନ୍ତି । ବାସୁଙ୍ଗାପାଟରେ ଦଇତାପତିମାନେ ପଇତା ତିଆରି କରି ଶ୍ରୀଜୀଉଙ୍କ ଅଧରଠାରୁ ଶ୍ରୀଭୁଜ ପର୍ଯ୍ୟନ୍ତ ଲାଗିକରିଥାନ୍ତି । ବାଡ଼ଗ୍ରାହୀ ଦଇତା ସିଂହାସନରୁ ପଇତା ଲାଗି କରି ଓହ୍ଲାଇବା ପରେ ମହାସ୍ନାନ କରାଯାଇ ଅନ୍ୟାନ୍ୟ ନୀତି ସଂପାଦନ ହୁଏ । ଏଥିରେ ଦର୍ପଣ ଓ ଦର୍ପଣିଆ ସେବକମାନଙ୍କର ଭୂମିକା ରହିଛି ।

**ଚନ୍ଦନଲାଗି –** ପରମ୍ପରା ମୁତାବକ ଦତ୍ତମହାପାତ୍ର ବନକଲାଗି କରିବା ପାଇଁ ସିଂହାସନକୁ ଉଠିଥାନ୍ତି । ବିଭିନ୍ନ ପ୍ରାକୃତିକ ରଙ୍ଗରେ ଶ୍ରୀଜୀଉମାନଙ୍କୁ ବନକଲାଗି କରାଯାଏ । ବନକଲାଗି ଉତ୍ତାରେ ମହାସ୍ନାନ ନୀତି ବଢ଼ିଥାଏ । ଏହି ନୀତିରେ ଦର୍ପଣ ଓ ଦର୍ପଣିଆ ସେବକମାନଙ୍କର ସେବା ରହିଥାଏ ।

**ଚିତାଲାଗି–** ଶ୍ରୀଜୀଉମାନଙ୍କର ଶ୍ରୀମସ୍ତକରେ ହୀରାଲୀଳା ମୋତି ମାଣିକ୍ୟ ଖଚିତ ଚିତାଲାଗି ହୋଇଥାଏ । ସ୍ନାନପୂର୍ଣ୍ଣିମା ପୂର୍ବରୁ ଚିତାଗୁଡ଼ିକ ଉଲାଗି ହୋଇଥାଏ । ରଥଯାତ୍ରା ସମୟରେ ଶ୍ରୀଜୀଉମାନେ ଶୋଲଚିତା ଧାରଣ କରିଥାନ୍ତି । ଭାଦ୍ରବମାସ ଅମାବାସ୍ୟା ଦିନ ଶୋଲଚିତା ଉଲାଗି କରି ଶ୍ରୀଜୀଉମାନଙ୍କୁ ସୁବର୍ଣ୍ଣ ହୀରାଲୀଳା ମୋତିମାଣିକ ଖଚିତ ଚିତା ଲାଗି କରାଯାଏ । ଏହାକୁ ଚିତାଲାଗି ଅମାବାସ୍ୟା କୁହାଯାଏ । ଏହାପରେ ମହାସ୍ନାନ ନୀତି ସଂପାଦିତ ହୁଏ । ଏହି ସମୟରେ ମହାସ୍ନାନ ନୀତି ସଂପାଦିତ ହୁଏ । ଏହି ସମୟରେ ଦର୍ପଣ ଓ ଦର୍ପଣିଆ ସେବାର ଆବଶ୍ୟକତା ରହିଥାଏ ।

ରାହୁରେଖା ଲାଗି – ଗ୍ରହମାନଙ୍କର କୋପଦୃଷ୍ଟିରୁ ରକ୍ଷା କରିବା ନିମିତ୍ତ ଶ୍ରୀଜୀଉମାନଙ୍କୁ ସୁବର୍ଣ୍ଣରେ ନିର୍ମିତ ରାହୁରେଖା ଲାଗି କରାଯାଇଥାଏ । ସ୍ନାନପୂର୍ଣ୍ଣିମୀ ପୂର୍ବରୁ ରାହୁରେଖାଗୁଡ଼ିକ ଉଲାଗି କରାଯାଇ ଭଣ୍ଡାର ଘରେ ରଖାଯାଇଥାଏ । ଭାଦ୍ରବମାସ ଶୁକ୍ଳପକ୍ଷ ପଞ୍ଚମୀ ତିଥିରେ ରାହୁରେଖା ମହାପ୍ରଭୁଙ୍କୁ ଲାଗି କରାଯାଏ । ଦଇତାପତି ସେବକମାନେ ଏହାକୁ  ଲାଗି କରିଥାନ୍ତି । ଏହାପରେ ମହାସ୍ନାନ ନୀତି ବଢ଼ିଥାଏ । ଏଥିରେ ଦର୍ପଣ ଓ ଦର୍ପଣିଆ ସେବକମାନଙ୍କର ସେବା ରହିଥାଏ ।

**ଖସାପଡ଼ା ମହାସ୍ନାନ –** ଚନ୍ଦନଯାତ୍ରାର କିଛିଦିନ ପୂର୍ବରୁ ମହାପ୍ରଭୁଙ୍କ ଖସାପଡ଼ା ନୀତି ଅନୁଷ୍ଠିତ ହୁଏ । ଏହି ନୀତିରେ ଶ୍ରୀଜୀଉମାନଙ୍କ ଅଧରରେ ପାଟକନାର ପଟି ଲାଗିକରାଯାଇ ମହାସ୍ନାନ ନୀତି ହୋଇଥାଏ । ଏଥିରେ ଦର୍ପଣ ସହ ଦର୍ପଣିଆ ସେବକଙ୍କର ସେବା ରହିଥାଏ ।

**ବିଜେ ମହାସ୍ନାନ –** ରଥଯାତ୍ରା ପରେ ଶ୍ରୀସୁଦର୍ଶନ ଦେବ ରତ୍ନସିଂହାସନରୁ ଓହ୍ଲାଇ ୪ଥର ଚାରିଆଶ୍ରମ ବିଜେ କରିଥାନ୍ତି । ଦଇତାପତି ସିଂହାସନ ଉପରୁ ସୁଦର୍ଶନଙ୍କୁ ଓହ୍ଲାଇ, ଆଶ୍ରମ ବିଜେ କରି ବାହୁଡ଼ିବା ପରେ ରୁନ୍ଧା କାର୍ଯ୍ୟ ସଂପନ୍ନ ଉତ୍ତାରେ ଶ୍ରୀଜୀଉମାନଙ୍କୁ ମହାସ୍ନାନ କରାଯିବାର ବିଧି ରହିଛି । ଏଥିରେ ମଧ୍ୟ ଦର୍ପଣ ଏବଂ ଦର୍ପଣି ସେବକମାନଙ୍କର ସେବା ରହିଛି ।

ଶ୍ରୀଜୀଉମାନଙ୍କର ସ୍ନାନଯାତ୍ରା ନିମିତ୍ତ ପହଣ୍ଡିବିଜେ ନିମନ୍ତେ ସିଂହାସନରେ ଚାରମାଳ ଲାଗି ହେବା ପରେ ମହାସ୍ନାନ ହୋଇ ସମସ୍ତନୀତି ବଢ଼ିଥାଏ । ଏହି ସମୟରେ ଦର୍ପଣ ଓ ଦର୍ପଣି ସେବକମାନଙ୍କର ଆବଶ୍ୟକତା ରହିଛି ।

**ନୀଳାଦ୍ରିବିଜେ –** ଆଡ଼ପମଣ୍ଡପ ବିଜେ ସମୟରେ ଚାରମାଳ ବନ୍ଧା ଯାଇଥାଏ । ସେହିପରି ନବଦିନ ଯାତ୍ରା ପରେ ଆଡ଼ପମଣ୍ଡପ, ବାହୁଡ଼ା ବିଜେ ସମୟରେ ଚାରମାଳ ଲାଗି ହେବା ଉତ୍ତାରେ ଅନ୍ୟାନ୍ୟ ନୀତି ସଂପାଦିତ ହୋଇଥାଏ । ଏହି ସମୟରେ ମହାସ୍ନାନ ହେବାର ବିଧି ରହିଛି । ଏଥିରେ ଦର୍ପଣ ଓ ଦର୍ପଣି ସେବକମାନଙ୍କର ଆବଶ୍ୟକତା ରହିଛି ।





**ବାହୁଟକଣ୍ଟ ଲାଗି –** ଶ୍ରୀଜୀଉମାନଙ୍କୁ ପହଣ୍ଡି ସମୟରେ ଶ୍ରୀବିଗ୍ରହମାନଙ୍କର ସୁରକ୍ଷା ନିମନ୍ତେ ବାହୁଟ କଣ୍ଟଲାଗି କରାଯାଏ । ପରେ ଦର୍ପଣ ଦର୍ପଣି ସେବକମାନେ ମହାସ୍ନାନ ନୀତି ସଂପାଦିତ କରିଥାନ୍ତି ।

**ରଥ ଉପରେ ଅବକାଶ ଓ ଧୂପ –** ଶ୍ରୀଜୀଉମାନଙ୍କର ଘୋଷଯାତ୍ରା ଏବଂ ବାହୁଡ଼ା ଯାତ୍ରା ସମୟରେ ବଡ଼ଦାଣ୍ଡରେ ଯେତେବେଳେ ରଥ ଅଟକି ରୁହେ ସେତେବେଳେ ମହାପ୍ରଭୁଙ୍କର ଅବକାଶ ପୂଜା ଏବଂ ଧୂପ ଅନୁଷ୍ଠିତ ହୋଇଥାଏ । ଏଥିରେ ଦର୍ପଣ ଓ ଦର୍ପଣି ସେବକମାନଙ୍କର ଆବଶ୍ୟକତା ରହିଥାଏ ।

**ଅଣହିନ୍ଦୁ ପ୍ରବେଶ –** ଶ୍ରୀମନ୍ଦିର ଓ ଶ୍ରୀଗୁଣ୍ଡିଚା ମନ୍ଦିର ମଧ୍ୟକୁ ଯଦି କେହି ଅଣହିନ୍ଦୁ ପ୍ରବେଶ କରି ଶ୍ରୀଜିଉଙ୍କୁ ଦର୍ଶନ କରନ୍ତି ସେତେବେଳେ ମହାସ୍ନାନ ହେବାର ବିଧି ରହିଛି । ଏହି ସମୟରେ ଦର୍ପଣ ଓ ଦର୍ପଣି ସେବକମାନଙ୍କର ସେବା ଜଡ଼ିତ ରହିଛି ।

ଏତଦ୍‌ବ୍ୟତୀତ ଦର୍ପଣି ସେବକମାନେ ପ୍ରଭୁଙ୍କର ବିଜେ ସମୟରେ ରତ୍ନସିଂହାସନ ପଛପଟରେ ଶିଡ଼ି ପକାଇ ରୁନ୍ଧାବନ୍ଧାରେ ଦଉଡ଼ି ବୁଲାଇ ସାହାଯ୍ୟ କରନ୍ତି । ରଥ ଓ ସ୍ନାନଯାତ୍ରା ବିଜେ ସମୟରେ ଡ଼ୋରି ଛିଡ଼ିଗଲେ ବା ଦରକାର ପଡ଼ିଲେ ସାହାଯ୍ୟ କରିବାକୁ ଡ଼ୋରିଧରି ଉପସ୍ଥିତ ରହିଥାନ୍ତି ।

ପ୍ରାପ୍ୟ – ଦର୍ପଣିଆ ସେବାରେ ମାସିକ ଦରମା ମିଳୁଥିବା ବେଳେ ଖେଇ ବାବଦକୁ ମାଠପୁଳି ମିଳିଥାଏ । ଦର୍ପଣିଆ ସେବକମାନଙ୍କର ଆଉଏକ ବଇରଖିଆ ସେବା ମଧ୍ୟ ରହିଛି । ଏମାନେ ଦର୍ପଣିଆ ଗୋଷ୍ଠୀ ସେବକ ଅଟନ୍ତି ।

**ବଇରଖିଆ ସେବା –** ଏହା ଦୈନନ୍ଦିନ ସେବା ପର୍ଯ୍ୟାୟଭୁକ୍ତ ନୁହେଁ । ଶ୍ରୀମନ୍ଦିରରେ ରକ୍ମିଣୀ ବିବାହ ବିଜେ, ରାଜପ୍ରାସାଦ ବିଜେ ଓ ଖଡ଼ିପ୍ରାସାଦ ବିଜେ ସମୟରେ ଏହି ସେବକମାନେ ପୂର୍ଣ୍ଣକୁମ୍ଭ ସ୍ଥାପନା କରିଥାନ୍ତି । ବିବାହ ବେଦୀରେ ପୂର୍ଣ୍ଣକୁମ୍ଭ ବସାନ୍ତି । ଗୁଣ୍ଡିଚା ଯାତ୍ରା ଓ ସ୍ନାନ ପୂର୍ଣ୍ଣମୀ ବିଜେ ଓ ବାହୁଡ଼ାରେ ନିଜମଥାରେ ପୂର୍ଣ୍ଣକୁମ୍ଭ ବସାଇ ଆଗରେ ଚାଲନ୍ତି ।

ବଇରଖିଆ ସେବାରେ ଦରମା ବା ଖେଇ ନାହିଁ । ୪ ବିଜେ ସମୟରେ, ସ୍ନାନ, ଶ୍ରୀଗୁଣ୍ଡିଚାରେ ୧୨ଟି ନଡ଼ିଆ ଓ କାମ ସରିବା ପରେ ପୂର୍ଣ୍ଣକୁମ୍ଭ ନଡ଼ିଆ ପାଇଥାନ୍ତି ।

ଦର୍ପଣିଆ ସେବକ ଶାଢ଼ୀ ବନ୍ଧାଇ ନଥିଲେ ବାସନ ମଜା କାର୍ଯ୍ୟ କରିପାରିବେ କିନ୍ତୁ ଦର୍ପଣ ଲଗାଇ ପାରିବେ ନାହିଁ ।

ସହାୟତା – ୧) ଶ୍ରୀମନ୍ଦିର ସ୍ୱତ୍ୱଲିପି
୨) ନୀଳାଦ୍ରି ମହୋଦୟ
୩) ସେବକ ଦର୍ପଣ
୪) ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ବେଜ
୫) ଶ୍ରୀଯୁକ୍ତ ନାରାୟଣ ଗୋଛିକାର

ପଥୁରିଆ ସାହି, ପୁରୀ







# ଶବରୀ ନାରାୟଣ ଶ୍ରୀଜଗନ୍ନାଥ

**ପଣ୍ଡିତ ଅକ୍ଷୟ କୁମାର ପତି**

ଶ୍ରୀଜଗନ୍ନାଥ- ସାମ୍ୟ-ମୈତ୍ରୀ-ପ୍ରେମ-ଭକ୍ତିର ପ୍ରତୀକ ଦେବତା ଅଟନ୍ତି । ଶ୍ରୀମହାପ୍ରଭୁଙ୍କ ଦର୍ଶନତତ୍ତ୍ୱ ଓଡ଼ିଆ ସଂସ୍କୃତିର ମହାନତା-ସାର୍ବଜନୀନ ପ୍ରେମ-ଭକ୍ତି ଏବଂ ବଳିଷ୍ଠ କିମ୍ବଦନ୍ତୀ ଭିତ୍ତିଭୂମି ଉପରେ ଆଧାରିତ । ସୁତରାଂ ଜଗନ୍ନାଥ ସମସ୍ତଙ୍କର । ଜଗତ କହେ-ଜଗତର ନାଥ ଜଗନ୍ନାଥ । କିନ୍ତୁ ଓଡ଼ିଶାର ଇତିହାସ, ଓଡ଼ିଆ ଜାତି ସଂସ୍କୃତି-ଚଳଣି-ଦୃଶ୍ୟପଟ୍ଟ କହେ- ଶ୍ରୀଜଗନ୍ନାଥ ମୋର ଗେହ୍ଲାପୁଅ ।



ତେବେ ସେ ଯାହାହେଉ- ଶ୍ରୀଜଗନ୍ନାଥଙ୍କ ଧର୍ମ-ଦର୍ଶନ ତତ୍ତ୍ୱ ସମଗ୍ର ମାନବ ଜାତି ପାଇଁ ଏକ ଚିନ୍ତା- ଚୈତନ୍ୟତାର ଗହନବାର୍ତ୍ତା ଅଟେ । ହିନ୍ଦୁ ଦର୍ଶନର ମହାନବାଣୀ ଗୀତାର ଚତୁର୍ଥ ଅଧ୍ୟାୟ ଏକାଦଶ ଶ୍ଳୋକ କହେ-

ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂ ସ୍ତଥୈବ ଭଜାମ୍ୟହମ୍
ମମ ବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ(୪/୧୧)

ଗୀତାରେ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ଉପଦେଶାତ୍ମକ ବାଣୀ ଶୁଣାଇ ଏକ ମହାନ ଦର୍ଶନ ତତ୍ତ୍ୱ ଉନ୍ମୋଚନ କରିଅଛନ୍ତି । ଭଗବାନ କୃଷ୍ଣଙ୍କ ବାଣୀ ଏହିକି ଯେ- ଯେଉଁମାନେ ଯେପରି ଚିନ୍ତନ ନେଇ ମୋ' ଶରଣରେ ଆସନ୍ତି ସେହିପରି ଭାବରେ ମୁଁ ସେମାନଙ୍କୁ କର୍ମ ପ୍ରେରଣା ଯାଚି ଦେଇଥାଏ । ଏଠାରେ ଭକ୍ତ ଭଗବାନଙ୍କର ସଂପର୍କ ଚିନ୍ତା ଚେତନା ଦର୍ଶନାନୁଯାୟୀ ଫଳପ୍ରାପ୍ତିର ସୂଚନା ଦେଇଅଛନ୍ତି ।

ତତ୍ତ୍ୱ ଦର୍ଶନ ଅର୍ଥାତ ଗହନ ଚିନ୍ତନ ବା ସତ୍ୟାସତ୍ୟ ନିରୂପଣ-ତତ୍ତ୍ୱର ମୀମାଂସା ପର୍ଯ୍ୟାୟଭୁକ୍ତ ଅଟେ । ଅନ୍ୟ ପକ୍ଷରେ କହିଲେ ଯେ ଯେପରି ଚିନ୍ତନ କରିଅଛି । ଭଗବାନ ତାହାଙ୍କୁ ସେହିପରି ଫଳଦାନ କରିଥାଆନ୍ତି । ଭଗବାନ ଭକ୍ତ ପାଇଁ ନିର୍ବିକଳ୍ପ ବ୍ରହ୍ମ ଅଟନ୍ତି । ଭକ୍ତ ଯେତେବେଳେ ତାହାର ସମସ୍ତ ଚେଷ୍ଟାରୁ ବିରତ ହୁଏ, ସେତେବେଳେ ସେ' ତ୍ରାହିମାଂ ମଧୁସୂଦନ କହି ହାତଟେକି ଦିଏ । ସେହି ମର୍ମରେ ଦ୍ରୌପଦୀ-ପ୍ରହ୍ଲାଦ, ଭକ୍ତ ବନ୍ଧୁ ମହାନ୍ତି, ଭକ୍ତ ଦାସିଆ ବାଉରି, ଗୀତଗୋବିନ୍ଦ ପ୍ରଣେତା ଶ୍ରୀଜୟଦେବ ଇତ୍ୟାଦି ଉପାଖ୍ୟାନକୁ ଉଜ୍ଜୀବିତ କରାଯାଇପାରେ ।

ଶବର ଭାଷା କହେ- ''ଜଗନ୍ତ'' ଶବ୍ଦରୁ ଜଗନ୍ନାଥ ଶବ୍ଦ ଉଦ୍‌ଭବ ହୋଇଅଛି । ଆଉ କେତେକ ଶାସ୍ତ୍ର ମତରୁ ଶବରୀ ନାରାୟଣ ରୂପେ ଜଗନ୍ନାଥ ପ୍ରତିଷ୍ଠିତ । ସେହିପରି ନୀଳମାଧବରୁ ଜଗନ୍ନାଥଙ୍କର ରୂପାନ୍ତର ଭକ୍ତିକୁ ଏଡ଼ାଇ ଦିଆଯାଇ ନପାରେ ।





କନ୍ଧମାଳ ଇତିହାସ କହେ– ଭାରତବର୍ଷରେ ଖ୍ରୀପୂ:୪୫୦ ବେଳକୁ ଶବରୀ ସଂସ୍କୃତିର ଅଭ୍ୟୁଦୟ ଘଟିଥିଲା । ଏହି ସମୟରେ ମଧ ଋକ୍ ବେଦର ରଚନା ହୋଇଥିବାର ପ୍ରମାଣ ବହୁ ଜ୍ଞାନୀ – ଗୁଣି – ପଣ୍ଡିତମାନଙ୍କ ଗବେଷଣା ପୁସ୍ତକରୁ ମିଳିଥାଏ । ଗବେଷକ ସୁରେନ୍ଦ୍ର ନାଥ ଶତପଥୀ ମଧ ଏହି ତତ୍ତ୍ୱ ସଂଧାନକୁ ସ୍ୱୀକୃତି ପ୍ରଦାନ କରିଅଛନ୍ତି ।

କନ୍ଧମାଳ ଇତିହାସର ବିଶେଷ କଥନ ଏହି ଯେ – ଶବରମାନେ ଶକ୍ତି ପୂଜା–ବୃକ୍ଷଦେବତା ପୂଜା–ମୂର୍ତ୍ତିପୂଜା ସମୟରେ କାଠ, ପଥରକୁ ଦେବତା ସଜାଇ ପୂଜା ଅର୍ଚ୍ଚନା କରିବାକୁ ଆଦିମ କାଳରୁ ଭଲ ପାଆନ୍ତି । ପ୍ରକୃତି ଉପାସନା ତାଙ୍କ ଜନ୍ମଗତ ସ୍ୱଭାବ ଅଟେ । ସେମାନଙ୍କ ଭାଷାରେ ଦେବତାଙ୍କୁ ପେନୁ ବୋଲି କୁହାଯାଏ । ‘‘ସେହି କାରଣରୁ ବୃକ୍ଷ ବା ଜଙ୍ଗଲ ଦେବତାଙ୍କୁ ୧) ଗସା ପେନୁ, ୨) ପର୍ବତ ଦେବତାଙ୍କୁ ସାରୁ ପେନୀ, ୩) ଝରଣା ଦେବତାଙ୍କୁ ସୁଗା ପେନୁ, ୪) ପୋଖରୀ ଦେବତାଙ୍କୁ ମୁଣ୍ଡା ପେନୁ, ୫) ବର୍ଷା ଦେବତାଙ୍କୁ ପଜୁ ପେନୁ, ୬) ଗ୍ରାମ ଦେବତାଙ୍କୁ ନଜୁ ପେନୁ, ୭) ସୂର୍ଯ୍ୟଦେବତାଙ୍କୁ ବେଲା ପେନୁ, ୮) ଚନ୍ଦ୍ରଦେବତାଙ୍କୁ ଜଞ୍ଜୁ ପେନୁ, ୯) ସଂପଦଦେବତାଙ୍କୁ ପିତେରି ପେନୁ, ଦୁର୍ଭିକ୍ଷ ଅନାଟନ ଏବଂ ପ୍ରାକୃତିକ ବିପର୍ଯ୍ୟୟକୁ ରୁଜବ ଜଗୁପେନୁ କହି ପୂଜା ଉପାସନା କରିଥାନ୍ତି ।’’

ଏତଦ୍ ଭିନ୍ନ ‘‘ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ ’’ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ପୁସ୍ତକରେ ଶ୍ରୀଜଗନ୍ନାଥଙ୍କୁ ମୁରବି ପେନୁ, ବଳଭଦ୍ରଙ୍କୁ ଜାକେରୀ ପେନୁ ଏବଂ ସୁଭଦ୍ରାଙ୍କୁ ତାନା ପେନୁ ବୋଲି କୁହାଯାଉଥିବାର ପ୍ରମାଣ ମିଳେ । କିନ୍ତୁ ସୁଦର୍ଶନଙ୍କୁ କେଉଁ ନାମରେ ଅବିହିତ କରାଯାଇଥିଲା ତାହାର ପ୍ରମାଣ ନାହିଁ ।

ଏହିସବୁ କାରଣରୁ ଆଦିବାସୀ ବା ଆଦିମାନବମାନଙ୍କ ମଧରେ ଧର୍ମଚେତନା ପ୍ରକୃତି ଉପାସନାର ସୂଚନା ମିଳେ । ସେମାନଙ୍କ ଧର୍ମ ଚେତନାରୁ ଜଗନ୍ନାଥଙ୍କ ଦଶ ଅବତାର ଚତୁର୍ଦ୍ଧାମୂର୍ତ୍ତିର ପରିକଳ୍ପନା ବ୍ରହ୍ମ ସଂସ୍ଥାପନ, ଦାରୁ ଦେବତା ପୂଜନ ଇତ୍ୟାଦିର ସଂଧାନ ମିଳିଥାଏ । ଆଦିବାସୀମାନଙ୍କର ଶର ସଂଧାନ ବା ବ୍ୟବହାରରୁ ଶବର ଜାତି ଉଦ୍‌ଭବ ହୋଇଥିବାର ପ୍ରମାଣ ମିଳେ । ଶବରମାନଙ୍କର ପୁରୁଷ ବିଶ୍ୱାବସୁଙ୍କ ଶରରେ ଭଗବାନ ଶ୍ରୀକୃଷ୍ଣ ଦେହତ୍ୟାଗ କରିଥିବାର ପ୍ରମାଣ ଦ୍ୱାପର ଯୁଗର ଉପାଖ୍ୟାନରୁ ସୂଚନା ମିଳେ । ଯଦୁବଂଶ ଧ୍ୱଂସ ପରେ ଶ୍ରୀକୃଷ୍ଣ ଭାରାକ୍ରାନ୍ତ ହୋଇ ବଣ ମଧରେ ଥିବା ଏକ ଶିଆଳି ଲତା ଉପରେ ବିଶ୍ରାମ ନେବା ସମୟରେ ଜାରା ଶବରଙ୍କ ଦ୍ୱାରା ଶରବିଦ୍ଧ ହୋଇ ଦେହାନ୍ତ ଯନ୍ତ୍ରଣା ଅନୁଭବ କରୁଥିବା ସମୟରେ ଜାରା ନିଜର ଭୁଲ୍ ବୁଝିପାରି ଅନୁତପ୍ତ ହୋଇ ପ୍ରଭୁଙ୍କ ନିକଟରେ କ୍ଷମାପ୍ରାର୍ଥନା ଭିକ୍ଷା କରିଥିଲେ । ହେଲେ ପ୍ରଭୁ ତାଙ୍କୁ ପୂର୍ବଜନ୍ମର କୃତ କର୍ମର ପ୍ରାୟଶ୍ଚିତ କଥା କହି ସାନ୍ତ୍ୱନା ଦେଇ କହିଥିଲେ– ‘‘ଜାରା ତୁମର କୌଣସି ଦୋଷ ନାହିଁ । ତ୍ରେତୟା ଯୁଗରେ ତୁମେ ଥିଲ ବାଳୀପୁତ୍ର ଅଙ୍ଗଦ ଏବଂ ମୁଁ ଥିଲି ଅବତାରୀ ରାମଚନ୍ଦ୍ର । ସୁଗ୍ରୀବଙ୍କୁ ସନ୍ତୁଷ୍ଟ କରିବା ପାଇଁ ବାଳୀକୁ ବଧ କରିବା ପରେ ତୁମ ମନରେ ପିତୃ ହନ୍ତାର ପ୍ରତିଶୋଧ ଜାଗରିତ ହୋଇଥିଲା । ମୁଁ ସ୍ୱଇଚ୍ଛାରେ ତୋତେ ବର ଯାଚି ଦେଇଥିଲି ଯେ– କୃଷ୍ଣ ଅବତାର ସମୟରେ ତୋ’ ଶରରେ ମୋର ଦେହାବସନ ଘଟିବ । ଆଜି କିନ୍ତୁ ତାହାର ସଫଳ ରୂପାୟନ ଘଟିଛି । ଏଥିପାଇଁ ପ୍ରାୟଶ୍ଚିତର ଆବଶ୍ୟକତା ନାହିଁ, ବରଂ ଅର୍ଜୁନଙ୍କୁ ଡ଼କାଇ ମୋର ଶବ ସତ୍କାର କର । ଜାରା ଆଉ ଡ଼େରି ନକରି ଅର୍ଜୁନଙ୍କୁ ଡ଼କାଇ ଶବ ସତ୍କାର କରିଥିଲେ । ହେଲେ ମହାପ୍ରଭୁଙ୍କ ସର୍ବାଙ୍ଗ ଦଗ୍‌ଧହେଲେ ମଧ କଟି ଅଂଶ ଅର୍ଦ୍ଧଦଗ୍‌ଧ ରହିଥିଲା । ସେହି ଦରପୋଡ଼ା ଶରୀରକୁ ସମୁଦ୍ର ପାଣିରେ ପକାଇ ଦେଇ ଚାଲିଗଲେ । ଏମିତି କିଛିଦିନ ଗଲାପରେ ଜାରା ଶବରର ମୃତ୍ୟୁ ଘଟିଲା । ମୃତ୍ୟୁ ପରେ ଜାରା ବିଶ୍ୱାବସୁ ଶବର ଭାବରେ ଜନ୍ମ ନେଲେ । ସମୁଦ୍ର କୂଳରେ ବିଶ୍ୱାବସୁ ଶିକାର କରିବା ପାଇଁ ବୁଲୁଥିବା ବେଳେ ଏକ ନୀଳବର୍ଣ୍ଣ ପ୍ରସ୍ତର ପ୍ରାପ୍ତ ହେଲେ । ପ୍ରସ୍ତର ପ୍ରାପ୍ତ ମାତ୍ରେ ଦୈବବାଣୀକ୍ରମେ, ବିଶ୍ୱାବସୁ ଉକ୍ତ ନାଭି ବ୍ରହ୍ମ ପ୍ରସ୍ତର ଉପରେ ପ୍ରେମ ଜାଗରିତ ହେଲା । ଏହିଠାରୁ ଉକ୍ତ

ଭଗବାନଙ୍କ ଭାବ ବିନିମୟ ସଂଚାର ହେଲା । କୃଷ୍ଣଙ୍କର ସେହି ଅଧା ଜଳା ଶରୀରଟି ଧୀରେ ଧୀରେ ନୀଳବର୍ଣ୍ଣ ପଥର ମୂର୍ତ୍ତି ପାଲଟି ଯାଇଥିଲା । ସେ ସେହି ମୂର୍ତ୍ତିକୁ ଆଣି ନୀଳ କନ୍ଦରରେ ରଖି ପୂଜା କରୁଥିଲେ । ତାହା ହିଁ ନୀଳମାଧବଙ୍କର କମନୀୟ ରୂପକାନ୍ତି ଅଟେ । କିଛିଦିନ ପରେ ନୀଳମାଧବ ବିଦ୍ୟାପତିଙ୍କ ସଂଧାନରେ ରାଜା ଇନ୍ଦ୍ରଦ୍ୟୁମ୍ନ ସଂଧାନି ହେଲେ । କିନ୍ତୁ ପ୍ରଭୁଙ୍କ କୃପାରୁ ସେ ମୂର୍ତ୍ତି ଅନ୍ତର୍ଦ୍ଧାନ ହେବା ପରେ ଜଗନ୍ନାଥଙ୍କର ଚକାଡ଼ୋଳା ବେଶର ପରିପ୍ରକାଶ ହୋଇ ନବକଳେବର ଘଟିଥିଲା । ଏହା ହିଁ ଜଗନ୍ନାଥଙ୍କର କିମ୍ବଦନ୍ତୀ କଥାବସ୍ତୁ ଅଟେ ।

ଆଦିବାସୀମାନେ ଯେଉଁଠି ବସତି ସ୍ଥାପନ କରି ରହୁଥିଲେ ସେଠାରେ ସେମାନେ ଗ୍ରାମସୀମାର ପ୍ରାରମ୍ଭରେ ଗଛ ମୂଳରେ ତିନୋଟି ପଥରକୁ ଧାଡ଼ିକରି ସ୍ଥାପନ କରୁଥିଲେ । ଠାକୁରମାନଙ୍କ ସୁରକ୍ଷା ବା ଧାଡ଼ି ପଥରଗୁଡ଼ିକ ଉପରେ ଆଉ ଗୋଟିଏ ପଥରକୁ ଘୋଡ଼ାଇ ରଖୁଥିଲେ । ମଝି ପଥରକୁ ସୁଭଦ୍ରା ବା ତାନା ପେନୁ ବୋଲି କହୁଥିଲେ । ସେମାନଙ୍କ ଚିନ୍ତନରେ ସୁଭଦ୍ରା ବା ମଝି ପଥର ଆଦ୍ୟାଶକ୍ତି ବା ମାତୃଶକ୍ତି ବୋଲି ପରିକଳ୍ପନା କରୁଥିଲେ । ତାନା ପେନୁ ବା ସୁଭଦ୍ରାଙ୍କ ବାମକୁ ଜଗନ୍ନାଥ ବା ମୁରବି ପେନୁ ଏବଂ ଡ଼ାହାଣକୁ ଜାକେରୀ ପେନୁ ବା ବଳଭଦ୍ର ପରିକଳ୍ପନା କରି ପୂଜା ଦେଉଥିଲେ । ଉପର ଛାତ ସଦୃଶ ଥିବା ପଥରକୁ ସୁଦର୍ଶନ ରୂପେ ପରିକଳ୍ପନା କରାଯାଉଥିଲା । ଏହି କାରଣରୁ ଜଗନ୍ନାଥ ବଳଭଦ୍ର, ସୁଭଦ୍ରା–ସୁଦର୍ଶନ ଚତୁର୍ଦ୍ଧାମୂର୍ତ୍ତିଙ୍କର ଆବିର୍ଭାବ ଧ୍ୟାନ ଧାରଣା ଆଦିବାସୀଙ୍କ ଚିନ୍ତନରୁ ଉଦ୍‌ଭବ ଅଟେ ।

ସେହିପରି ଯେଉଁ ଗଛ ମୂଳରେ ଚାରି ଦିଅଁ ସ୍ଥାପନ ହେଉଥିଲେ ସେଠାରେ ଗଛମୂଳରେ ସୁନା, ରୂପା, ତମ୍ବା ଇତ୍ୟାଦି ମୂଲ୍ୟବାନ ଧାତୁକୁ ପୋତି ରଖିବା ପରେ ଦିଅଁସ୍ଥାପନ କରାଉଥିଲେ । ଏହି ପଦ୍ଧତିରୁ ଖମ୍ଭେଶ୍ୱରୀ ପୂଜା ଆରମ୍ଭ ହୋଇଥିଲା । ମଞ୍ଜୁଷାର ଖମ୍ଭେଶ୍ୱରୀ ପୂଜା, ତାଳଚେରରେ ଗୋପାଳ ପ୍ରସାଦ ହିଙ୍ଗୁଳା ଭବାନୀପାଟଣାର ମାଣିକେଶ୍ୱରୀ ବର୍ତ୍ତମାନ ଯୁଗର ଖମ୍ଭେଶ୍ୱରୀ ପୂଜାର ମନ୍ଦିର ଅଟେ । ଗଂଜାମ ଜିଲ୍ଲାର ଆସିକାସ୍ଥିତ ସ୍ତମ୍ଭେଶ୍ୱରୀ ମନ୍ଦିର ସର୍ବ ପ୍ରାଚୀନ ଆଦିବାସୀ ସଂପ୍ରଦାୟ ପୂଜିତ ଦେବତା ଅଟନ୍ତି । ଉକ୍ତ ଦେବୀ ଅଦ୍ୟାବଧି 'ଦେହୁରୀ'ମାନଙ୍କ ଦ୍ୱାରା ପୂଜିତ ହେଉଅଛନ୍ତି । ଉକ୍ତ ଦିଅଁଙ୍କୁ ଦେଖିଲେ କାଷ୍ଠ ପ୍ରସ୍ତର ନିର୍ମିତ ସ୍ତମ୍ଭାକାର ଦେବୀ ଯେ ଶବର ପୂଜିତ ଦେବତା ନିଃସନ୍ଦେହରେ କୁହାଯାଇପାରେ ।

ଅନ୍ୟତ୍ର ପଣ୍ଡିତ ସଦାଶିବ ରଥଶର୍ମାଙ୍କ ବିବୃତ୍ତି ପାଠକଲେ ବିସ୍ମିତ ହେବାକୁ ପଡ଼େ । ସେ ଥରେ ପୁରୀ ଜିଲ୍ଲା ବାଣପୁର ଥାନା ସନ୍ନିକଟ ନୀଳାଦ୍ରି ପ୍ରାସାଦରେ ଅବସ୍ଥିତ ବିରିଜାଇ ମନ୍ଦିରକୁ ଭ୍ରମଣ ଉଦ୍ଦେଶ୍ୟରେ ଯାଇଥିଲେ । ସେଠାରେ ସେ ଅଦୁନିଜାନି ନାମକ ଜଣେ ଶବରଙ୍କୁ ଭେଟିଥିଲେ ଏବଂ ତାଙ୍କ ଜାତି ସଂପର୍କରେ ଜଗନ୍ନାଥଙ୍କ କି ପ୍ରକାର ମୌଳିକ ସଂପର୍କ ଅଛି ପଚାରିବାରୁ ସେ କହିଲେ– '' ତାଙ୍କ ଇତିବୃତ୍ତି ଅନୁସାରେ ଏ' ସଂସାର ପ୍ରଳୟ ଜଳରେ ବୁଡ଼ିଗଲା ବେଳେ ମହାପ୍ରଭୁ ଶ୍ରୀଜଗନ୍ନାଥ ଓ ବିରିଜାଇ ଠାକୁରାଣୀ କେବଳ ଥିଲେ । ଶବର ପୂଜକ ଜାନି ଉକ୍ତ ସମୟରେ ପୂଜା ଅର୍ଚ୍ଚନା କରୁଥିଲେ । ତାଙ୍କ ପୂଜାରେ ସନ୍ତୁଷ୍ଟ ହୋଇ ବିରିଜାଇ ପାଞ୍ଚଟି ପୁତ୍ର ପ୍ରସବ କଲେ । ସେମାନେ ବାରବର୍ଷ ପର୍ଯ୍ୟନ୍ତ ତପସ୍ୟା କରି ମହାପ୍ରଭୁଙ୍କୁ ମନାଇବାରୁ ମହାପ୍ରଭୁ ନିମ୍ବବନର ଗୋଟିଏ ବୃକ୍ଷରେ ଆବିର୍ଭୂତ ହେଲେ । ଜାନିମାନେ ତାଙ୍କର ସେବା ଅର୍ଚ୍ଚନା କଲେ । ଜାନିମାନଙ୍କର ମୃତ୍ୟୁ ହେଲେ ମହାପ୍ରଭୁ ମଧ୍ୟ ଦେହତ୍ୟାଗ କରନ୍ତି । ସେତେବେଳେ ତାଙ୍କୁ ବଳିଭୁଜା ଦେଲେ ପୁଣି ନିମ୍ବ ବନରେ ଦେଖାଦେଇଥାନ୍ତି । ଏକଥା ସେହି ବୁଢୀ ବିରିଜାଇଙ୍କ କୃପାରୁ ସମ୍ଭବ ହୁଏ । ଜାନିମାନେ ଦେବତାଙ୍କ ଅଙ୍ଗରୁ ଜାତହୋଇ ତାଙ୍କ ଆରାଧନା କରିବାରୁ ସେମାନେ ବ୍ରାହ୍ମଣଙ୍କ ପରି ସେବା ଅର୍ଚ୍ଚନା କରିବା ଅଧିକାର ପାଇଥିଲେ । ହରିଚନ୍ଦନ ରାଜା ଦୁଇଟି ଗୁଳା ପକାଇ ଜାନିଙ୍କୁ ଏବଂ ବ୍ରାହ୍ମଣମାନଙ୍କୁ ଦୁଇଭାଗ କରି ଦେବ ସେବାରେ ନିଯୁକ୍ତି କଲେ । ହରିଚନ୍ଦନ ରାଜା ଗଂଜାମ ଜିଲ୍ଲାସ୍ଥ ଆଠଗଡ଼ ରାଜାଙ୍କ ଉପାଧି(ହରିଚନ୍ଦନ) ଅଟେ । ଶବରମାନଙ୍କ ପରଂପରା ଅନୁସାରେ କୁଟୁରା ଜାନିଠାରୁ ଆରମ୍ଭ କରି ସେମାନେ ୫୮ ପୁରୁଷ ପର୍ଯ୍ୟନ୍ତ ହେଲେଣି ।''

**ସାରକଥା –** ସମୟଚକ୍ର ବଳବାନ । ତାହାର ପରିକ୍ରମା କ୍ରମେ ଯୁଗ ବିବର୍ତ୍ତନବାଦ ଘଟୁଅଛି । ପ୍ରସ୍ତର ଯୁଗ ଆଜି ବିଜ୍ଞାନ ଯୁଗରେ ପରିଣତ ହୋଇଛି । ହେଲେ ସର୍ବଶକ୍ତିମାନ ମହାପ୍ରଭୁ ତାହାର ଭକ୍ତକୁ କେବେ ଭୁଲିଯାଇ ନାହାନ୍ତି । ପରମାତ୍ମା ଆତ୍ମାର ଅବଲୀଳା କ୍ରମେ ପରସ୍ପରକୁ ଚୁମ୍ବକର ଆକର୍ଷଣ କ୍ରମେ ଜାବୁଡ଼ି ଧରେ । ଏହାହିଁ ହିନ୍ଦୁ ଧର୍ମର ନିର୍ଯାସ ବାର୍ତ୍ତା ଅଟେ । ଏହା ନହାଇଥିଲେ ଜନ୍ମାନ୍ତର ବାଦ, ଭକ୍ତ ଭଗବାନଙ୍କର ଅବଲୀଳା ସଙ୍ଗଠିତ ହୁଅନ୍ତା ନାହିଁ । ଭଗବାନ ଅଦୃଶ୍ୟ ବ୍ରହ୍ମ ଅଟନ୍ତି । ତାଙ୍କଠାରେ ନାହିଁ ଜାତି ଧର୍ମ ବର୍ଣ୍ଣ ଭେଦର ଅବକାଶ । ସେ ସର୍ବବ୍ୟାପକ ଶକ୍ତି ଅଟନ୍ତି । ତ୍ରେତୟା ଦ୍ୱାପର କଳି ଯୁଗେ ଯୁଗେ ମହାପ୍ରଭୁ ଶବରୀ ଦେବତା ଅଟନ୍ତି । ଏଥିପାଇଁ ଅଷ୍ଟଗୁଂଜରୀରେ ଭକ୍ତ ଅଚ୍ୟୁତ ଲେଖିଗଲେ– ''ଭକ୍ତ ବିନୋଦିଆ ଠାକୁର ଭକ୍ତ ବତ୍ସଳ ହରି, ଭକ୍ତଙ୍କ ପାଇଁ କଳେବର ଦଶ ମୂରତି ଧରି ।''

**ସମ୍ବଳିତ ପୁସ୍ତକ –** ଓଡ଼ିଶାର ଇତିହାସ, ପ୍ରଥମ ଖଣ୍ଡ – ଡକ୍ଟର ସତ୍ୟନାରାୟଣ ରାଜଗୁରୁ । ୨. କନ୍ଧମାଳ ଇତିହାସ ୩. ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ ୪. ଶ୍ରୀମଦ୍ ଭାଗବତ ୫. ସ୍କନ୍ଦ ପୁରାଣ ଓ ୬. ଅଷ୍ଟଗୁଂଜରୀ ।

ଜୀବନଦର୍ଶନ ପରିଷଦ
ସରପୁର, ଆନନ୍ଦ ବଜାର
ଭଦ୍ରକ–୭୫୬୧୧୬

# ମାନ ଅଭିମାନ

**ନିବେଦିତା ଭଞ୍ଜ**

ଆଷାଢ଼ ଗୁଣ୍ଡିଚା ବରଷା କାଳ
ରଥେ ବିଜେ ହରି ଶ୍ରୀ କାମପାଳ
ବାଜୁଛି କାହାଳି ବାଜୁଛି ଖୋଳ
ହରିବୋଲ ହୁଳହୁଳି ଗହଳ
ସଙ୍ଗେ ଭଉଣୀ ସୁଭଦ୍ରା ଦେଇ...
ସୁଦର୍ଶନ ସାଥେ ଦର୍ପ ଦଳନରେ
ରଙ୍ଗେ ବସିଛି ସଜେଇ ହୋଇ... ।
ଦାସୀ ମୁଖୁ ଶୁଣି ସିନ୍ଧୁ ନନ୍ଦିନୀ
ରଣ ଭଣ ହୋଇ କହନ୍ତି ବାଣୀ
ବଡ଼ କପଟିଆ ସେ ନୀଳମଣି
ମଉନ ମୁହଁଟି ସାନ ଭଉଣୀ
କିଛି ନଯାଣନ୍ତି ବଡ଼ ଭାଇ...
କାଦମ୍ବରୀ ପାନେ ସଦା ମତିଭୋଳ
ତାଳଧ୍ୱଜେ ବିରାଜନ୍ତି ସେହି...।
ଭଣ୍ଡାର ଦୁଆରେ ପଡ଼ିଲା ତାଲା
ସୁଭଦ୍ରା ଅଣ୍ଟାରେ ଚାବି ରହିଲା



ନଅ ଦିନ ପାଇଁ ଯାତରା ହେଲା
କେଡ଼େ ଦଗାଦିଆ ବଇଁଶୀ ବାଲା
ମୋତେ ପଦେତ କହିଲେ ନାହିଁ...
ଭାବିଛନ୍ତି ପରା ଗୋପ ଗଉଡୁଣୀ
ତାଙ୍କ ହୃଦର ବୁଝିବି ନାହିଁ... ।
ଏମିତି ଅନେକ ସଂସାର ଲୀଳା
ମାନ ଅଭିମାନ କଲେ କମଳା
କ୍ଷମା ଆଚରିଲେ ସାରଙ୍ଗ ପାଣି
କିଣି ନେଲେ ପ୍ରିୟା ମନକୁ ପୁଣି
ପ୍ରଭୁ ବିଜେ ଶ୍ରୀମନ୍ଦିରେ ଯାଇ...
ହରଷେ ଚୁମ୍ବିଲେ ପଦ୍ମାଳୟା ମୁଖ
ଗଲା ସବୁ ପ୍ରୀତି ମଧୁ ହୋଇ... ।

୮୬ / ସତ୍ୟନଗର, ଭୁବନେଶ୍ୱର

# ଅନନ୍ୟ ପରମ୍ପରାର ପ୍ରତୀକ: ବାରିପଦାର ରଥଯାତ୍ରା

**ଡକ୍ଟର ଶରତ ଚନ୍ଦ୍ର ପରିଡ଼ା**

ନଦନଦୀ ଓ ବଣଜଙ୍ଗଲର ସୁନ୍ଦର ପ୍ରାକୃତିକ ପରିବେଶରେ ଭରା ମୟୂରଭଞ୍ଜ । ସରଳ ଆଦିବାସୀ ଅଧ୍ୟୁଷିତ ଏହା ଏକ ଗଡ଼ଜାତ ରାଜ୍ୟ । ଷୋଡ଼ଶ ଖ୍ରୀଷ୍ଟାବ୍ଦର କଥା । ଓଡ଼ିଶା ଇତିହାସର ଘଡ଼ିସନ୍ଧିର ବେଳ । ଭଞ୍ଜବଂଶୀ ମହାରାଜା ବୈଦ୍ୟନାଥଙ୍କ ଗଭୀର ପ୍ରୀତି ଓ ଅପୂର୍ବ ଭକ୍ତି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଏହି ଦୂରନ୍ତ ଇଲାକାକୁ ଟାଣି ଆଣିଛି । ଏହି ଆକର୍ଷଣରେ ଭରି ରହିଛି ମୟୂରଭଞ୍ଜ ମହାରାଜାଙ୍କ ପ୍ରଜାବାତ୍ସଲ୍ୟ ଓ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଭକ୍ତବାତ୍ସଲ୍ୟର ଐତିହାସିକ ଗାଥା । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଅନ୍ୟତମ ଭକ୍ତ ପରମ ଧାର୍ମିକ ପ୍ରଜାବତ୍ସଳ ରାଜା ଥିଲେ ବୈଦ୍ୟନାଥ ଭଞ୍ଜ ।

**ମୟୂରଭଞ୍ଜର ନାମକରଣ :** ଖିଚିଙ୍ଗାକୋଟ୍ଟାରେ ଭଞ୍ଜଭୂଇଁର ଶାସନ । ରାଉରକେଲା ନିକଟସ୍ଥ ଆଧୁନିକ ବଣାଇଗଡ଼ଠାରେ ମୟୂରବଂଶର ରାଜା ଧରଣୀ ବରହୀ ରାଜୁତି କରୁଥିଲେ । ତାଙ୍କର ତିନି ରାଣୀ ଥିଲେ । କିନ୍ତୁ ତାଙ୍କର କୌଣସି ସନ୍ତାନ ନଥିଲେ । ତେଣୁ ସେ ଭଞ୍ଜ ରାଜ୍ୟର ତତ୍କାଳୀନ ରାଜା ରାୟଭଞ୍ଜଙ୍କୁ ମୟୂର ରାଜ୍ୟ ଦାନ କରିଦେଲେ । ଦାନ ସମୟରେ ଚୁକ୍ତି ଥିଲା ଭଞ୍ଜ ରାଜ୍ୟ ସହିତ ମୟୂର ଚିହ୍ନ ରଖିବା ପାଇଁ । ସେହିଦିନଠାରୁ ଭଞ୍ଜ ରାଜ୍ୟର ନାମ ମୟୂରଭଞ୍ଜ ଘୋଷିତ ହେଲା । ସେସମୟର ଶିଳାଲେଖଟି କିଚକେଶ୍ୱରୀ ମନ୍ଦିର ଓ ସଂଗ୍ରହାଳୟ ମଧ୍ୟରେ ଘୋଡ଼ା ହୋଇ ରହିଅଛି । କେନ୍ଦ୍ର ସରକାରଙ୍କର ପ୍ରନ୍‌ତତ୍ତ୍ୱ ବିଭାଗର ଅଫିସର ପରମାନନ୍ଦ ଆଚାର୍ଯ୍ୟ ଓ ତାଙ୍କ ସହିତ ଆଚାର୍ଯ୍ୟ ବଂଶୀଧର ଦାସ ଏହି ଶିଳାଲେଖକୁ ଅନୁଧ୍ୟାନ କରିଛନ୍ତି । ଏହା ବିରାଟ ଶିଳାଖଣ୍ଡ ହୋଇଥିବାରୁ ସଂଗ୍ରହାଳୟ ଭିତରେ ରହି ପାରିନାହିଁ ।

**ମନ୍ଦିର ପ୍ରତିଷ୍ଠାତା ବୈଦ୍ୟନାଥ ଭଞ୍ଜଙ୍କ ବଂଶ ଲତିକା ଓ ବଳିଷ୍ଠ ବ୍ୟକ୍ତିତ୍ୱ :** ଷୋଡ଼ଶ ଖ୍ରୀଷ୍ଟାବ୍ଦରେ ମୟୂରଭଞ୍ଜର ରାଜା ଥିଲେ ବାସୁଳୀ ଭଞ୍ଜ । ତାଙ୍କ ଔରସରୁ ଏବଂ ଗଙ୍ଗବଂଶର ରାଜଜେମାଙ୍କ ଗର୍ଭରୁ ଜଗନ୍ନାଥ ଭଞ୍ଜ ଜନ୍ମ ଗ୍ରହଣ କରିଥିଲେ । ଜଗନ୍ନାଥ ଭଞ୍ଜ ମହାପ୍ରଭୁ ଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ଶ୍ରୀକ୍ଷେତ୍ରକୁ ଆସିଥିବା ଅବସରରେ ଗଜପତି ପ୍ରତାପରୁଦ୍ର ଦେବ ତାଙ୍କ ରୂପଗୁଣରେ ମୁଗ୍ଧ ହୋଇଥିଲେ । ତାଙ୍କ ସହିତ ନିଜ ଦ୍ୱିତୀୟା କନ୍ୟା ରାଜକୁମାରୀ ମନାତଙ୍କୁ ବିବାହ କରାଇ ଦେଇଥିଲେ । ୧୫୪୦ ଖ୍ରୀଷ୍ଟାବ୍ଦରେ ପ୍ରତାପରୁଦ୍ର ଦେବ ଶେଷ ନିଃଶ୍ୱାସ ତ୍ୟାଗ କରି ସାରିଥିଲେ । ସେହିବର୍ଷ ମଧ୍ୟ ଜଗନ୍ନାଥ ଭଞ୍ଜ ଇହଲୀଳା ସମ୍ବରଣ କଲେ । ତାଙ୍କର ପୁତ୍ର ନୀଳକଣ୍ଠ ଭଞ୍ଜ ଶାସନଭାର ଗ୍ରହଣ କଲେ । ୧୫୬୫ ଖ୍ରୀଷ୍ଟାବ୍ଦରେ ନୀଳକଣ୍ଠ ଭଞ୍ଜଙ୍କ ଦେହାନ୍ତ ହୁଏ । ତାଙ୍କ ପୁତ୍ର ବୈଦ୍ୟନାଥ ଭଞ୍ଜଙ୍କୁ ମୟୂରଭଞ୍ଜର ଶାସନଭାର ଅର୍ପଣ କରାଯାଏ । ସେ ଥିଲେ ପରମ ବିଷ୍ଣୁଭକ୍ତ । ତାଙ୍କ କୁଳଗୁରୁ ରସିକାନନ୍ଦ ଦେବଗୋସ୍ୱାମୀଙ୍କ ପରାମର୍ଶକ୍ରମେ ନିଜର ତିନି ପୁତ୍ରଙ୍କୁ ବୈଷ୍ଣବ ଧର୍ମରେ ଦୀକ୍ଷିତ କରାଇଥିଲେ । ମହାରାଜା ବୈଦ୍ୟନାଥ ଭଞ୍ଜଙ୍କର ଜେଜେମା' ମନାତଙ୍କଠାରୁ ପୁରୀ ବଡ଼ ଠାକୁରଙ୍କ ମହିମା ଶୁଣି ଅନୁପ୍ରାଣିତ ହୋଇଥିଲେ ।





ଶାସନ କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ପରମ ବୈଷ୍ଣବ ବୈଦ୍ୟନାଥ ଭଞ୍ଜ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ମନ ବଳାଇଲେ । ପାତ୍ରମନ୍ତ୍ରୀଙ୍କ ସହିତ ଘୋଡ଼ାରେ ଚଢି ଶ୍ରୀକ୍ଷେତ୍ର ଅଭିମୁଖେ ଯାତ୍ରା ଆରମ୍ଭ କଲେ ।

ସେହି ସମୟରେ ଶତ୍ରୁମାନଙ୍କ ଦ୍ୱାରା ଶ୍ରୀମନ୍ଦିର ଓ ଶରଧାବାଲି ଦୋକାନ ବଜାର ବାରମ୍ବାର ଭଙ୍ଗାରୁଜା ଓ ଲୁଣ୍ଠିତ ହେଉଥିଲା । ପୁରୀ ସହରକୁ ଯିବା ପାଇଁ ସବୁ ରାସ୍ତାରେ କଡ଼ା ପହରା ଦିଆଯାଉଥିଲା । ଅଠର ନଳା ନିକଟରେ ରାଜା ବୈଦ୍ୟନାଥ ଭଞ୍ଜ ପହଞ୍ଚି ଗଲେ । ଗଜପତି ମହାରାଜା ମୁକୁନ୍ଦଦେବଙ୍କ ସୀମାନ୍ତରକ୍ଷୀବୃନ୍ଦ ତାଙ୍କୁ ଅଟକାଇଲେ । ଶ୍ରୀକ୍ଷେତ୍ରରେ ପ୍ରବେଶ ପାଇଁ ବାରଣ କଲେ । ଗଜପତିଙ୍କ ନିକଟକୁ ଖବର ଗଲା । କେବଳ ମହାରାଜାଙ୍କୁ ବିନା ଅସ୍ତ୍ରଶସ୍ତ୍ରରେ ପହରା ମଧ୍ୟରେ ନେଇ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରାଇ ଦେବାକୁ ରାଜା ପରାମର୍ଶ ଦେଲେ । ବୈଦ୍ୟନାଥ ଭଞ୍ଜଙ୍କର ଭାବାନ୍ତର ସୃଷ୍ଟି ହେଲା– 'ସହଯାତ୍ରୀମାନେ ଏତେ ଦୂର ଆସି ମହାପ୍ରଭୁଙ୍କୁ ଦର୍ଶନ କରି ପାରିବେ ନାହିଁ । ମୁଁ ଏତେ ସ୍ୱାର୍ଥପର ହୋଇ ଏକା କିପରି ପ୍ରଭୁଙ୍କୁ ଦର୍ଶନ କରିବି !'ତେଣୁ ମହାରାଜା ରାତିରେ ସେହି ଅଠର ନଳା ନିକଟ ନଦୀବାଲିରେ ମନଦୁଃଖରେ ଶୋଇଲେ । ରାତ୍ରିରେ ପ୍ରଭୁ ଭକ୍ତର ନିଷ୍ଠା ଭାବନାରେ ସନ୍ତୁଷ୍ଟ ହୋଇ ଦର୍ଶନ ଦେଇ କହିଲେ–'ଫେରିଯାଅ, ନିଜ ରାଜ୍ୟରେ ଶ୍ରୀକ୍ଷେତ୍ର ନ୍ୟାୟରେ ଏକ ଭବ୍ୟ ମନ୍ଦିର ନିର୍ମାଣ କର । ମୋର ବିଗ୍ରହ ପ୍ରତିଷ୍ଠା କର । ମୁଁ ପ୍ରତିଦିନ ପୁରୀ ଶ୍ରୀମନ୍ଦିରରୁ ଆସି ବାରିପଦା ମନ୍ଦିରରେ ବିଜେ କରି ପୂଜା ଗ୍ରହଣ କରି ପୁଣି ଶ୍ରୀମନ୍ଦିର ଫେରିଯିବି । ଗରିବ ପ୍ରଜାମାନେ ଏତେ ଦୂର ଆସି ପାରୁ ନଥିବାରୁ ସେଠାରେ ଦୈନିକ ଦର୍ଶନ ଦେବି ।' ମହାରାଜାଙ୍କ ନିଦ୍ରାଭଙ୍ଗ ହେଲା । ସେ ମହାଆନନ୍ଦରେ କାଳ ବିଳମ୍ବ ନକରି ସେହି ସ୍ଥାନରୁ ପ୍ରତ୍ୟାବର୍ତ୍ତନ କଲେ ।

ଯୋଦ୍ଧା ନଥିଲେ । ଏହି କାରୁଣ୍ୟଭରା ପରିସ୍ଥିତିରେ ବୈଦ୍ୟନାଥ ଭଞ୍ଜଦେବଙ୍କର ଜେଜେମା' ଚିନ୍ତିତ ହୋଇ ପଡୁଥିଲେ । ସବୁବେଳେ କାନ୍ଦୁଥିଲେ । ଭାବୁଥିଲେ, ପୁରୀର ଜଗନ୍ନାଥ ଧାମ ସବୁଦିନ ପାଇଁ ଲିଭିଗଲା । ଦିନେ ସେ ତାଙ୍କର ନାତି ବୈଦ୍ୟନାଥ ଭଞ୍ଜଙ୍କୁ ଜଗନ୍ନାଥ ସଂସ୍କୃତିର ରକ୍ଷା ପାଇଁ ବାରିପଦାରେ ଏକ ଜଗନ୍ନାଥ ମନ୍ଦିର ଗଢାଇ ରଥଯାତ୍ରା କରିବା ପାଇଁ ମନର କଥା ଖୋଲି କହିଥିଲେ ।

**ମନ୍ଦିର ନିର୍ମାଣ ଇତିହାସ:** ବୈଦ୍ୟନାଥ ଭଞ୍ଜଦେବ ବ୍ରାହ୍ମଣମାନଙ୍କୁ ପୁରୀରୁ ଆଣି ବାରିପଦା, ପ୍ରତାପପୁର, ବଳଭଦ୍ରପୁର ଓ ହରିପୁର ଆଦି ସ୍ଥାନରେ ଆଶ୍ରୟ ଦେଇ ଥଇଥାନ କଲେ । ସେମାନଙ୍କୁ ଅନ୍ନ, ବସ୍ତ୍ର, ଭୂମି, ସୁବର୍ଣ୍ଣ ଓ ଗୋଦାନ କରିଥିଲେ । ସେ ଜେଜେମା'ଙ୍କ ଶେଷ ଇଚ୍ଛା ପୂରଣ କରିବାକୁ ଯାଇ ସେହିବର୍ଷ ୧୫୬୮ ମସିହାରେ ବାରିପଦାରେ ଏକ ଜଗନ୍ନାଥ ମନ୍ଦିର ନିର୍ମାଣର ଶୁଭାରମ୍ଭ କରିଥିଲେ । ଶ୍ରୀଜଗନ୍ନାଥଙ୍କର ନାମ, ଧାମ, ଲୀଳା, ରୂପ ସବୁଥିରେ ତାତ୍ପର୍ଯ୍ୟ ରହିଛି । ତେଣୁ ଜଗନ୍ନାଥଙ୍କ ଅବସ୍ଥାନ ଓ ଭକ୍ତମାନଙ୍କ ପଦରଜରେ ବାରିପଦାକୁ ପବିତ୍ର କରି ନୀଳଚକ୍ରକୁ ଦର୍ଶନ କରିବାର ଅଭିଳାଷ ରଖି ବୈଦ୍ୟନାଥ ଭଞ୍ଜ ବାରିପଦାର ବଳଙ୍ଗ ତଟରେ ଥିବା ଏକ ବାଉଁଶ ବଣକୁ ସଫା କରାଇଲେ । କୁହାଯାଏ ରାଜା ବୈଦ୍ୟନାଥ ଭଞ୍ଜ ଶ୍ରୀମନ୍ଦିର ନକ୍ସା ପ୍ରାପ୍ତି ନିମନ୍ତେ ଦୂତ ହାତରେ ପତ୍ର ଦେଇ ଗଜପତି ମହାରାଜାଙ୍କ ନିକଟକୁ ପଠାଇଥିଲେ । ଇତି ଅବସରରେ ଗଜପତି ମହାରାଜାଙ୍କୁ ମହାପ୍ରଭୁଙ୍କ ସ୍ୱପ୍ନାଦେଶ ହୋଇଥିବାରୁ ସେ ମହାରାଜାଙ୍କ ଦୂତଙ୍କ ସମ୍ମାନର ସହିତ ନକ୍ସା ପ୍ରଦାନ କରିବା ସହିତ ମିସ୍ତ୍ରୀ, କାରିଗର ତଥା ବ୍ରାହ୍ମଣ ମଧ୍ୟ ପଠାଇଥିଲେ ।

୧୫୬୮ ମସିହା କୌଣସି ଏକ ଶୁଭଲଗ୍ନରେ ଯଜ୍ଞ, ପୂଜାପାଠ, ହୋମ ଆଦି ସମ୍ପନ୍ନ କରି ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ କଲେ । ୧୫୭୫ ମସିହାରେ ଅର୍ଥାତ ମାତ୍ର ସାତ ବର୍ଷ ମଧ୍ୟରେ ଏକ ଭବ୍ୟ ମନ୍ଦିରଟିର ନିର୍ମାଣ ସମ୍ପୂର୍ଣ୍ଣ ହୋଇଗଲା । ସେ ପୁରୀ ଓ କନୌଜରୁ ବ୍ରାହ୍ମଣମାନଙ୍କୁ ଆଣି ଜଗନ୍ନାଥଙ୍କ ପୂଜାର୍ଚ୍ଚନାରେ ନିଯୁକ୍ତି ଦେଇଥିଲେ । ପୁରୀଠାରେ ମହାପ୍ରଭୁଙ୍କ ବିଭିନ୍ନ ନୀତି ଯେପରି ହୁଏ, ସେଠାରେ ସେପରି ହେଉଥିଲେ ମଧ୍ୟ କେତେକ ସ୍ୱାତନ୍ତ୍ର୍ୟ ରହିଛି ।





**ରଥ ନିର୍ମାଣରେ ଭିନ୍ନତ୍ୱ:** ଶ୍ରୀକ୍ଷେତ୍ର ରଥଠାରୁ ଦ୍ୱିତୀୟ ଶ୍ରୀକ୍ଷେତ୍ରର ରଥ ନିର୍ମାଣରେ ନିଆରାପଣ ବାରି ହୋଇ ପଡ଼େ । ପୁରୀ ରଥର ଉଚ୍ଚତାଠାରୁ ବାରିପଦାର ରଥର ଉଚ୍ଚତା ସାମାନ୍ୟ କମ । ବାରିପଦାରେ ନିର୍ମାଣ ହେଉଥିବା ଶ୍ରୀହରି (ଜଗନ୍ନାଥ)ଙ୍କ ନନ୍ଦିଘୋଷ ରଥର ଉଚ୍ଚତା ୨୩ ହାତ ୧୬ ଆଙ୍ଗୁଳି ଓ ଚକ ସଂଖ୍ୟା ୧୬ । ବଳରାମଙ୍କ ତାଳଧ୍ୱଜ ରଥର ଉଚ୍ଚତା ୨୩ ହାତ ୧୪ ଆଙ୍ଗୁଳି ଓ ଚକ ସଂଖ୍ୟା ୧୪, ମା' ସୁଭଦ୍ରାଙ୍କ ରଥ ଉଚ୍ଚତା ୨୨ହାତ୧୪ ଆଙ୍ଗୁଳି ଓ ଚକ ସଂଖ୍ୟା ୧୨ ହୋଇ ଥାଏ ।

**ମନ୍ଦିର ପ୍ରତିଷ୍ଠା ଓ ପ୍ରଥମ ରଥଯାତ୍ରା :** ଉକ୍ତ ମସିହା ଆଷାଢ ଶୁକ୍ଳ ଦ୍ୱିତୀୟାରେ ମନ୍ଦିର ପ୍ରତିଷ୍ଠା କରାଗଲା । ବୈଷ୍ଣବୀୟ ପରମ୍ପରାକ୍ରମେ ବାରିପଦାରେ ଶ୍ରୀଜଗନ୍ନାଥଙ୍କ ମନ୍ଦିରର ନାମକରଣ କରାଗଲା 'ଶ୍ରୀହରିବଳଦେବ ଜୀଉ ବିଜେ' । ପୂଜା ଗ୍ରହଣ କରି ଶ୍ରୀଜଗନ୍ନାଥ ପୁରୀ ଫେରି ଯାଉଥିବାରୁ ଶ୍ରୀବଳଦେବ ଜୀଉଙ୍କ ସହିତ ବିଜେ ଶବ୍ଦ ଯୋଗ କରାଗଲା । ଏହି ମନ୍ଦିର ବଡ଼ ମନ୍ଦିର ଭାବେ ଶ୍ରୀହରିବଳଦେବ ଜୀଉ ଓ ମାତା ସୁଭଦ୍ରା ତଥା ସୁଦର୍ଶନଙ୍କୁ ନେଇ ସର୍ବତ୍ର ପରିଚିତ ହେଲା । ତିନୋଟି ରଥ ଗଢି ସେହିଦିନ ରାଜା ରଥଯାତ୍ରା ଆରମ୍ଭ କରିଥିଲେ । ତାଙ୍କ ଜେଜେମା' ବାରିପଦା ରଥଯାତ୍ରା ଦେଖି ସାରି ପରମ ତୃପ୍ତି ଲାଭ କରି ଚିରନିଦ୍ରା ଯାଇଥିଲେ ।

ଆଫଗାନ ମୁସଲମାନ ବଙ୍ଗର ନବାବ ସୁଲେମାନ କୋରାନୀଙ୍କ ଭଗିନୀପତି କଲାଚାନ୍ଦ ରାୟ ୧୫୬୮ରେ ଓଡ଼ିଶା ଆକ୍ରମଣ କରି କୋଣାର୍କ ସମେତ ବିଭିନ୍ନ ଦେବଦେବୀ ପୀଠ, ବିଶେଷ କରି ଶ୍ରୀକ୍ଷେତ୍ରର ଶ୍ରୀଜଗନ୍ନାଥ ମନ୍ଦିରର ବହୁବିଧ କ୍ଷତି କରିଥିବା ହେତୁ ଏଠାରେ ପୂଜାପାଠ, ରଥଯାତ୍ରା ଆଦି ୧୫୬୮ରୁ ୧୫୮୦ ପର୍ଯ୍ୟନ୍ତ ଦୀର୍ଘ ବାର ବର୍ଷ କାଳ ଧରି ହୋଇ ପାରି ନଥିଲା । ଏହି ସମୟ ମଧ୍ୟରେ ୧୫୭୫ରୁ ବାରିପଦାରେ ରଥଯାତ୍ରାର ଶୁଭାରମ୍ଭ କରାଯାଇଥିଲା । ସେତେବେଳେ ପୃଥିବୀର ଅନ୍ୟ କୌଣସି ସ୍ଥାନରେ ରଥଯାତ୍ରା ହେଉ ନଥିଲା । ଉତ୍କଳ ଆରବଦେଶର ମୁସଲମାନଙ୍କ ଅଧୀନରେ ଥିବାରୁ ରଥଯାତ୍ରା ସହିତ ହିନ୍ଦୁ ପର୍ବପର୍ବାଣି ମାନିବାକୁ କେହି ସାହସ କରୁ ନଥିଲେ । ପୁରୀ ବଡ଼ଦେଉଳ ଭଗ୍ନ ଅବସ୍ଥାରେ ପଡ଼ି ରହିଥିଲା । ରତ୍ନ ସିଂହାସନରେ ଠାକୁର ନଥିଲେ କି ପୂଜାପଣ୍ଡା, ସେବକ ସୁଆର ନଥିଲେ । ସେତେବେଳେ କେବଳ ବାରିପଦାରେ ତିନି ଠାକୁର ପୂଜା ପାଉଥିଲେ । ୧୫୭୫–୧୫୮୦ ପର୍ଯ୍ୟନ୍ତ ୫ ବର୍ଷ ଧରି ନୀଳାଚଳ ନିବାସୀ ଶ୍ରୀଜଗନ୍ନାଥ ବାରିପଦାରେ ପୂର୍ଣ୍ଣ ସମୟ ପୂଜା ପାଉଥିଲେ ବୋଲି କୁହାଯାଏ । ତେଣୁ ଅଗଣିତ ଭକ୍ତବୃନ୍ଦ ବାରିପଦାର ମହାପ୍ରଭୁ ଶ୍ରୀହରିବଳଦେବ ଜୀଉ ଓ ତାଙ୍କ ରଥଯାତ୍ରା ପ୍ରତି ଆକୃଷ୍ଟ ହୋଇଥିଲେ । ପୁରୀ ସଦୃଶ ହୋଇ ଥିବାରୁ ଓ ଶ୍ରୀକ୍ଷେତ୍ର ରଥଯାତ୍ରା ଆଧାରରେ ଏଠାରେ ମଧ୍ୟ ସବୁ ରୀତିନୀତି ପାଳିତ ହେଉଥିବା ଦୃଷ୍ଟିରୁ ବାରିପଦା ଦ୍ୱିତୀୟ ଶ୍ରୀକ୍ଷେତ୍ରର ମାନ୍ୟତା ଲାଭ କରିଥିଲା । ମହାରାଜା ବୈଦ୍ୟନାଥ ଭଞ୍ଜ ବାରିପଦାରେ ଜଗନ୍ନାଥ ମନ୍ଦିର ନିର୍ମାଣ କରି ରଥଯାତ୍ରା ଆରମ୍ଭ କରିଥିବାରୁ ତାଙ୍କୁ ମୟୂରଭଞ୍ଜର ଇନ୍ଦ୍ରଦ୍ୟୁମ୍ନ ବୋଲି କୁହାଯାଏ । ସେ ଜଣେ ଗୁଣଗ୍ରାହୀ ରାଜା ଥିବାରୁ ତାଙ୍କ ରାଜସଭା ପଣ୍ଡିତ ଓ ବିଦ୍ୱାନମାନଙ୍କ ଦ୍ୱାରା ମଣ୍ଡିତ ହେଉଥିଲା । ୧୫୮୦ ମସିହାରେ ରାମଚନ୍ଦ୍ର ଦେବ ଗଜପତି ଆସନ ଅଳଙ୍କୃତ କରି ଶ୍ରୀଜଗନ୍ନାଥଙ୍କର ନବକଳେବର ଆୟୋଜନ କରିବା ସହିତ ରଥଯାତ୍ରା ଆରମ୍ଭ କଲେ ।

**ଆଫଗାନ ମୁସଲମାନଙ୍କ ଭୟରେ ପ୍ରଥମ ରଥଯାତ୍ରା ସମ୍ପନ୍ନ:** ବାରିପଦାରେ ଯେତେବେଳେ ପ୍ରଥମ ରଥଯାତ୍ରା ଆରମ୍ଭ ହେଲା ସେତେବେଳେ ସମଗ୍ର ଉତ୍କଳ ଆଫଗାନ ମୁସଲମାନଙ୍କ ପରାକ୍ରମରେ ଥରହର । ଭୟରେ କେହି ରଥଯାତ୍ରା ଦେଖି ଆସିବାକୁ ସାହସ କରୁ ନଥିଲେ । ହିନ୍ଦୁମାନଙ୍କୁ ପୂଜାପାର୍ବଣ କରିବାକୁ ସୁଲତାନଙ୍କ ପକ୍ଷରୁ ନିଷିଦ୍ଧାଦେଶ ଜାରି କରାଯାଇଥିଲା । ସେତେବେଳେ ବର୍ତ୍ତମାନର ଝାଡ଼ଖଣ୍ଡ ଓ ପଶ୍ଚିମ ବଙ୍ଗର କିଛି ଅଂଶ ମୟୂରଭଞ୍ଜ ଅଧୀନରେ ଥିଲା । ମହାରାଜା ମୟୂରଭଞ୍ଜର ସମସ୍ତ ସାମନ୍ତ ରାଜାମାନଙ୍କୁ ପ୍ରଜାମାନଙ୍କ ସହିତ ପ୍ରତ୍ୟକ୍ଷ ଭାବରେ ରଥଯାତ୍ରାରେ ଉପସ୍ଥିତ ରହିବା ପାଇଁ ଚିଟାଉ ଦେଇଥିଲେ । ସେତେବେଳେ ମୟୂରଭଞ୍ଜର ଷଢେଇକଳା,

ଚାଇଁବସା, ଝାଡ଼ଗ୍ରାମ, ଧଳଭୂମଗଡ଼, ମେଦିନୀପୁର ଆଦି ଅଞ୍ଚଳରୁ ଚାଲି ଚାଲି ଆସି ବାରିପଦା ରଥଯାତ୍ରାରେ ଯୋଗ ଦେଇଥିଲେ । ମୟୂରଭଞ୍ଜର ମହାରାଜା ଗ୍ରାମାଞ୍ଚଳର ଲୋକମାନଙ୍କୁ ବେଠି ଶ୍ରମିକ ଭାବରେ ଲଗାଇ ରଥଟଣା କରାଇ ଥିଲେ । ଲୋକମାନଙ୍କୁ ଆକୃଷ୍ଟ କରିବା ପାଇଁ ରଥ ଉପରୁ ଗୁଡ଼ମୁଢ଼ିର ଲଡୁ ଫିଙ୍ଗା ଯାଉଥିଲା । ସେହି ଲଡୁଫିଙ୍ଗା ପରମ୍ପରା ଆଜି ମଧ୍ୟ ରହିଛି । ମହରାଜା ନିଜେ ଛେରାପହଁରା କରନ୍ତି ନାହିଁ । ତାଙ୍କ ପ୍ରତିନିଧିଙ୍କ ଦ୍ୱାରା ଛେରାପହଁରା କରାଯାଏ ।

**ଅଙ୍କାବଙ୍କା ରଥଦାଣ୍ଡ:** ପ୍ରାଚୀନ ରଥଦାଣ୍ଡ ଖାଲଢିପ ଓ ଲଟାବୁଦାରେ ପରିପୂର୍ଣ୍ଣ ଥିଲା । ରଥ ଆଗରେ ଓ ପଛରେ ଚାରୋଟି ହାତୀ ଚାଲୁଥିଲେ । ଆବଶ୍ୟକ ସ୍ଥଳେ ରଥ ଅଟକିଲେ ଦୁଇଟି ହାତୀ ରଥକୁ ଟାଣୁଥିଲେ ଓ ଦୁଇଟି ହାତୀ ଠେଲୁଥିଲେ । ବାରିପଦା ବଡ଼ଦାଣ୍ଡଟି ସିଧା ନଥିବାରୁ ରଥକୁ ବୁଲାଇବା ସହଜ ନଥିଲା । ବିଶେଷ କରି ଜଗନ୍ନାଥଙ୍କ ରଥଟି ୧୬ ଚକ ବିଶିଷ୍ଟ ଓ ସବୁଠାରୁ ଓସାରିଆ ହୋଇଥିବାରୁ କାହାର ଘର, କାହାର ଚାଳ ତ କାହାର ବାଡ଼ିରେ ଲାଗିଯାଉଥିଲା । ରଥ ଘର ବାଡ଼ିରେ ଲାଗିଗଲେ ଘର ଭଙ୍ଗା ହୋଇ ରଥଟଣା ହେଉଥିଲା । ବଙ୍କା ରାସ୍ତାରେ ରଥକୁ ବୁଲାଇବାକୁ ପଡୁଥିଲା । ରଥକୁ ବାମ ପଟକୁ ବୁଲାଇବାକୁ ହେଲେ ରଥର ଡ଼ାହାଣ ପଟ ଚକତଳେ କାଠଗଣ୍ଡି ଠେସ ଦେଇ ରଥକୁ ବଳପୂର୍ବକ ଟାଣିବାକୁ ପଡୁଥିଲା । ସେହିପରି ରଥକୁ ଡ଼ାହାଣ ପଟକୁ ବୁଲାଇବାର ଥିଲେ ରଥର ବାମପଟ ଚକତଳେ କାଠଗଣ୍ଡି ଠେସ ଦେଇ ରଥକୁ ବଳପୂର୍ବକ ଟାଣିବାକୁ ପଡୁଥିଲା । ରଥକୁ ବୁଲାଇବାର ଏହି ପଦ୍ଧତି ଆଜି ପର୍ଯ୍ୟନ୍ତ ରହିଛି । ସେତେବେଳେ ରଥ ଚକଗୁଡ଼ିକରେ ଲୁହାପାତ ଲାଗୁ ନଥିଲା । ଯାହା ଫଳରେ ଚକଗୁଡ଼ିକ ସବୁବେଳେ ଭାଙ୍ଗି ଯାଉଥିଲା । ଏଣୁ ପୂର୍ବରୁ ଅଧିକ ରଥଚକ ନିର୍ମାଣ କରି ମହଜୁଦ ରଖାଯାଉଥିଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ ଗୁଣ୍ଡିଚା ମନ୍ଦିର ନାହିଁ,ରାଧାମୋହନ ମନ୍ଦିରକୁ ଠାକୁରଙ୍କୁ ଗୁଣ୍ଡିଚାରେ ନିଆଯାଇ ଥାଏ ।

**ଶାଳକାଠରେ ରଥ:** ପୁରୀର ରଥଗୁଡ଼ିକ ବିଭିନ୍ନ କାଠରେ ହେଉଥିବା ବେଳେ ବାରିପଦାର ରଥଗୁଡ଼ିକ କେବଳ ଶାଳକାଠରେ ନିର୍ମାଣ ହେଉଥିଲା । ଏହି ପରମ୍ପରା ଆଜି ପର୍ଯ୍ୟନ୍ତ ରହିଛି । କାରଣ ମୟୂରଭଞ୍ଜର ଶିମିଳିପାଳ ଜଙ୍ଗଲରେ ଶାଳକଠାର ଅଭାବ ନଥିଲା ।

**ଶିଆଳି ଲତାରେ ରଥ ଦଉଡ଼ି:** ସେହିଭଳି ପୁରୀରେ ନଡ଼ିଆ ଗଛ ପ୍ରଚୁର ଥିବାରୁ ସେତେବେଳେ ପୁରୀର ରଥ ଦଉଡ଼ି ନଡ଼ିଆକତାରେ ପ୍ରସ୍ତୁତ ହେଉଥିବା ବେଳେ ବାରିପଦାର ରଥ ଦଉଡ଼ି ଶିଆଳି ଲତାରେ ତିଆରି ହେଉଥିଲା । ମାଙ୍କିଡ଼ିଆ ଆଦିବାସୀମାନେ ଏହାକୁ ଶିମିଳିପାଳ ଜଙ୍ଗଲରୁ ସଂଗ୍ରହ କରି ପ୍ରସ୍ତୁତ କରୁଥିଲେ । ପରେ ମୁର୍ଗା ଦଉଡ଼ି ବ୍ୟବହାର ହେଲା । ଏବେ ଉଭୟ ପୁରୀ ଓ ବାରିପଦାରେ ବିଦେଶରୁ ଆସୁଥିବା ମାନିଲା ଦଉଡ଼ିରେ ରଥ ଟଣା ହେଉଛି ।

**ରଥଯାତ୍ରାରେ ନଅ ଦିନର ମେଳା ମହୋତ୍ସବ:** ଅନ୍ୟ କୌଣସି ସ୍ଥାନରେ ରଥଯାତ୍ରା ପାଳିତ ହେଉ ନଥିବାରୁ ଉତ୍କଳର ବହୁ ଭକ୍ତ ରଥରେ ମହାପ୍ରଭୁଙ୍କର ବାମନ ରୂପ ଦର୍ଶନ କରିବା ପାଇଁ ଛୁଟି ଆସୁଥିଲେ ବାରିପଦାକୁ । ଘଘା, ଭେରୀ, ତୁରୀ କାହାଳୀ ଧ୍ୱନିରେ ଗଗନପବନ ପ୍ରକମ୍ପିତ ହେଉଥିଲା । ଢୋଲ, ଧୂମସା, ମାଦଳ, ମୃଦଙ୍ଗ ଓ କରତାଳରେ ବଡ଼ଦାଣ୍ଡ ମୁଖରିତ ହେଉଥିଲା । ଆଦିବାସୀ ସମ୍ପ୍ରଦାୟର ସ୍ତ୍ରୀଲୋକମାନେ ବେଶଭୂଷା ପିନ୍ଧି ଝୁଣୁଝୁଣୁ ତାଳରେ ଛନ୍ଦାଛନ୍ଦି ହୋଇ ଆନନ୍ଦରେ ନାଚିଗାଇ ମହାପ୍ରଭୁଙ୍କ ରଥକୁ ସ୍ୱାଗତ କରିବା ସହିତ ରଥଯାତ୍ରାକୁ ଋଦ୍ଧିମନ୍ତ କରୁଥିଲେ । ବାରିପଦାରେ ରଥଯାତ୍ରା ଉପଲକ୍ଷେ ନଅ ଦିନ ଧରି ମେଳାମହୋତ୍ସବ ଲାଗି ରହୁଥିଲା । ତାହା ବାରିପଦାର ଦିନରାତିକୁ ଚଳଚଞ୍ଚଳ କରି ଦେଉଥିଲା । ବନ୍ଧୁବାନ୍ଧବଙ୍କ ସମାରୋହରେ ଘରେ ଘରେ ଜଗନ୍ନାଥ ସଂସ୍କୃତିର ପ୍ରଭାବ ପ୍ରତିଫଳିତ ହୋଇ ଭକ୍ତିର ସ୍ରୋତ ପ୍ରବାହିତ ହେଉଥିଲା ।

**ହାତୀ ଓ ଘୋଡ଼ାରେ ରାଜରାଜୁଡ଼ାଙ୍କ ରଥଯାତ୍ରାରେ ଯୋଗଦାନ:** ରଥଯାତ୍ରା ସମୟରେ





ମୟୂରଭଞ୍ଜର ମହାରାଜା ଭକ୍ତପ୍ରବର ବୈଦ୍ୟନାଥ ଭଞ୍ଜ ସୁସଜ୍ଜିତ ହାତୀ ପିଠିରେ ବିଜେ କରି ରଥ ଆଗେ ଆଗେ ଯାଉଥିଲେ । ସୁସଜ୍ଜିତ ଅଶ୍ୱରେ ରାଜନ୍ୟ ପାରିଷଦବର୍ଗ ଆରୋହଣ କରି ଯାଉଥିଲେ । ରାଜା ଓ ପାରିଷଦମାନଙ୍କ ଶ୍ରୀହରିବଳଦେବ, ମା' ସୁଭଦ୍ରା ଓ ଚକ୍ରସୁଦର୍ଶନଙ୍କ ଜୟଧ୍ୱନିରେ ଏକ ଭକ୍ତିଭାବମୟ ପରିବେଶ ସୃଷ୍ଟି ହେଉଥିଲା । ଶ୍ରୀହରିବଳଦେବ ଜୀଉଙ୍କ ଘୋଷଯାତ୍ରାର ଜନପ୍ରିୟତା କେବଳ ଗଡ଼ଜାତ ମୟୂରଭଞ୍ଜ ରାଜ୍ୟର ସାଧାରଣ ଜନତାଙ୍କ ସୀମାସରହଦ ଭିତରେ ନରହି ପାର୍ଶ୍ୱବର୍ତ୍ତୀ ରାଜ୍ୟମାନଙ୍କରେ ପରିବ୍ୟାପ୍ତ ହୋଇଥିଲା ।

ବାରିପଦାକୁ ଲାଗି ଝାଡ଼ଖଣ୍ଡ ଓ ପଶ୍ଚିମବଙ୍ଗ ଥିବାରୁ ସେହି ମନ୍ଦିରକୁ ଏବଂ ରଥଯାତ୍ରାକୁ ଲକ୍ଷ ଲକ୍ଷ ଭକ୍ତ ଆସିଥା'ନ୍ତି । ଫଳରେ ସେଠାରୁ ରାଜାଙ୍କ ସମେତ ପ୍ରଜାମାନେ ମଧ୍ୟ ବହୁ ସଂଖ୍ୟାରେ ଯୋଗ ଦେଉଥିଲେ । ସାମନ୍ତ ରାଜାମାନେ ଉପଯୁକ୍ତ ସମ୍ମାନ ଲାଭ କରୁଥିଲେ । ବୈଦ୍ୟନାଥ ଭଞ୍ଜଙ୍କ ହାତୀ ପଛେ ପଛେପଛେ ନୀଳଗିରି ରାଜା, ଷଢ଼େଇକଳା ରାଜା, ଧଳଭୂମଗଡ଼ ରାଜା, ହଳଦୀପୋଖରୀ ରାଜା, ପଶ୍ଚିମବଙ୍ଗ, ଜଳେଶ୍ୱର, ଓଲମରା ଆଦି ସମାନ୍ତ ରାଜାମାନେ ସୁସଜ୍ଜିତ ଘୋଡ଼ାମାନଙ୍କରେ ସବାର ହୋଇ ଚାଲୁଥିଲେ । ତାଙ୍କ ପଛକୁ ଭୂୟାଁ ଆଦିବାସୀମାନେ ଖୋଳକୀର୍ତ୍ତନ ବଜାଇ ନାଚି ନାଚି ଯାଉଥିଲେ । ଆଜି ମଧ୍ୟ ଏହି ଖୋଳକୀର୍ତ୍ତନ ଦଳ ରଥ ଆଗରେ ନାଚ କରୁଥିବାର ଦେଖିବାକୁ ମିଳେ । ତାଙ୍କ ପଛକୁ ବାଥୁଡ଼ି ସମ୍ପ୍ରଦାୟର ଲୋକମାନେ ଚାଙ୍ଗୁ ବଜାଇ ନୃତ୍ୟଗୀତ କରି ଚାଲୁଥିଲେ । ସେହିଭଳି ପଛକୁ ପଛ ସାନ୍ତାଳମାନେ ଧୁମସା ନାଗରା, ମୁଣ୍ଡା ଓ ଭୂମିଜ ଆଦିବାସୀମାନେ ମାଦଳ ବଜାଇ ନାଚି ନାଚି ବଡ଼ଦାଣ୍ଡରେ ରଥ ଆଗେ ଆଗେ ଯାଉଥିଲେ । ଭକ୍ତମାନଙ୍କ ସମାବେଶରେ ବାରିପଦାର ବଡ଼ଦାଣ୍ଡ ଜନସମୁଦ୍ରରେ ଉଚ୍ଛୁଳି ପଡୁଥିଲା ।

**ଆଦିବାସୀ ଓ ଜଗନ୍ନାଥ ସଂସ୍କୃତିର ଅପୂର୍ବ ମିଳନ:** ବାରିପଦାରେ ଜଗନ୍ନାଥ ସଂସ୍କୃତି ପ୍ରଚାର ପ୍ରସାର ପୂର୍ବରୁ ଆଦିବାସୀମାନେ ଦାରୁ ଓ ପ୍ରସ୍ତର ପୂଜାକୁ ସ୍ୱୀକୃତି ଦେଇ ଆସିଥିଲେ । ଜଗନ୍ନାଥ ଦାରୁଦେବତା ହୋଇଥିବାରୁ ସେମାନେ ସହଜରେ ଜଗନ୍ନାଥ ସଂସ୍କୃତି ସହିତ ମିଶିଯାଇ ଏକ ଅପୂର୍ବ ସାଂସ୍କୃତିକ ସମନ୍ୱୟର ସୂତ୍ରପାତ କରିଥିଲେ । ବିଭିନ୍ନ ଜନଜାତିର ଭାଷା, ସାହିତ୍ୟ, କଳା, ସଂସ୍କୃତି ଜଗନ୍ନାଥ ସଂସ୍କୃତି ଅଭିମୁଖୀ ହୋଇଯାଇଥିଲା । ପାରମ୍ପରିକ ଲୋକକଥା, ଲୋକଗୀତି, କୃଷିଜୀବୀର ଜୀବନଗାଥା ଜଗନ୍ନାଥ ସଂସ୍କୃତି ସହିତ ସାମିଲ ହୋଇଯାଇଥିଲା ।

**ରଥଟଣାରେ ବୈଶିଷ୍ଟ୍ୟ:** ଭକ୍ତମାନଙ୍କ ଅଭାବରୁ ସେତେବେଳେ ତିନୋଟି ରଥ ଏକା ସହିତ ଏକା ଦିନରେ ଟାଣିବା ସମ୍ଭବ ନଥିଲା । ଏଣୁ ତିନି ଠାକୁରଙ୍କୁ ଗୋଟିଏ ଦିନରେ ପହଣ୍ଡି ବିଜେ କରି ପର ଦୁଇ ଦିନରେ ତିନୋଟି ରଥକୁ ଟାଣି ମାଉସୀମା' ମନ୍ଦିର ନିକଟରେ ପହଞ୍ଚାଇବା ପାଇଁ ମହାରାଜା ବୈଦ୍ୟନାଥ ଭଞ୍ଜ ବ୍ୟବସ୍ଥା କରିଥିଲେ । ପ୍ରଥମ ଦିନରେ ବଳଭଦ୍ରଙ୍କ ତାଳଧ୍ୱଜ ରଥ ଦେବୀ ଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ ଟଣା ହୋଇଯାଏ । ମା' ସୁଭଦ୍ରାଙ୍କ ଦର୍ପଦଳନ ରଥ ଟଣା ହୋଇ ଅଧା ରାସ୍ତାରେ ଅର୍ଥାତ ବାରିପଦା ଟାଉନ ଥାନା ସମ୍ମୁଖରେ ରଖାଯାଇଥାଏ । ଦ୍ୱିତୀୟ ଦିନରେ ପ୍ରଥମେ ସୁଭଦ୍ରାଙ୍କ ରଥକୁ ଅବଶିଷ୍ଟ ପଥ ଟଣାଯାଇ ଗୁଣ୍ଡିଚା ମନ୍ଦିର ନିକଟରେ ପହଞ୍ଚାଇ ଦିଆଯାଏ । ଏହିଦିନ ଜଗନ୍ନାଥଙ୍କ ରଥକୁ ସମ୍ପୂର୍ଣ୍ଣ ଭାବରେ ମନ୍ଦିରଠାରୁ ଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ ଟଣାଯାଇଥାଏ । ଏହି ବ୍ୟବସ୍ଥା ଆଜି ପର୍ଯ୍ୟନ୍ତ ଗଡ଼ି ଆସିଛି । ପୁରୀରେ ଆଷାଢ ଦ୍ୱିତୀୟା ତିଥିରେ ଗୋଟିଏ ଦିନରେ ପହଣ୍ଡି ଓ ରଥ ଟଣା ହେଉଥିବା ବେଳେ ବାରିପଦାରେ ଆଷାଢ ଦ୍ୱିତୀୟା ତିଥିରେ ପହଣ୍ଡି, ତୃତୀୟା ଓ ଚିତୁର୍ଥୀରେ ଦୁଇ ଦିନ ରଥ ଟଣା ହୋଇଥାଏ । ଏଣୁ ଜଣେ ପୁରୀ ରଥଟଣା ଦେଖି ସାରିବା ପରେ ବାରିପଦାରେ ଦୁଇ ଦିନ ରଥଟଣା ଦେଖିବାର ସୁଯୋଗ ପାଇ ପାରିବ ।

**କେବଳ ମହିଳାମାନେ ଦେବୀ ସୁଭଦ୍ରାଙ୍କ ରଥ ଟାଣିବାର ନୂଆ ପରମ୍ପରାର ଆରମ୍ଭ:** ଏପରି ବ୍ୟବସ୍ଥା ସମ୍ପର୍କରେ ଉଲ୍ଲେଖଯୋଗ୍ୟ ଯେ ମିଳିତ ଜାତିସଂଘ

ଆନ୍ତର୍ଜାତିକ ମହିଳା ଦିବସ ପାଳନ କରିବ ବୋଲି ୧୯୭୫ ମସିହାରେ ଘୋଷଣା କଲା । ଏହି ଘୋଷଣାର ଠିକ୍ ପରବର୍ଷ ଅର୍ଥାତ ୧୯୭୬ ମସିହାରେ ତତ୍କାଳୀନ ମୟୂରଭଞ୍ଜର ଜିଲ୍ଲାପାଳ ଶ୍ରୀଯୁକ୍ତ ବିବେକାନନ୍ଦ ପଟ୍ଟନାୟକଙ୍କ ନେତୃତ୍ୱରେ କେବଳ ମହିଳାମାନେ ଦେବୀ ସୁଭଦ୍ରାଙ୍କ ରଥ ଟାଣିବାର ପରମ୍ପରା ସୃଷ୍ଟି କରିଥିଲେ । ପରମ୍ପରା ରହିଥିବାରୁ ମହିଳାମାନେ ରଥ ଟାଣିବାର ସୌଭାଗ୍ୟ ଲାଭ କରିଥା'ନ୍ତି । ଆଜି ପର୍ଯ୍ୟନ୍ତ ଏହା ବଳବତ୍ତର ରହିଛି ଓ ଅନ୍ୟମାନଙ୍କ ପାଇଁ ଉଦାହରଣ ସୃଷ୍ଟି କରିଛି । ୧୯୭୭ଠାରୁ ଆନ୍ତର୍ଜାତିକ ମହିଳା ଦିବସ ମାର୍ଚ୍ଚ ୮ ତାରିଖଠାରୁ ପାଳିତ ହୋଇ ଆସୁଛି । ସେହି ଅନୁକରଣରେ ଆଜି ଅନ୍ୟତ୍ର ମହିଳାମାନେ ଦେବୀ ସୁଭଦ୍ରାଙ୍କ ରଥ ଟାଣୁଛନ୍ତି । ଏହା ବ୍ୟତୀତ ଅନ୍ୟ ସବୁ ନୀତି ନିୟମ ଶ୍ରୀକ୍ଷେତ୍ରର ନୀତିନିୟମ ଓ ନିର୍ଘଣ୍ଟ ପରି ସମାପନ କରାଯାଇ ଥାଏ ।

**ଶାଳପତ୍ରରେ ମହାପ୍ରସାଦ:** ଜଗନ୍ନାଥ ଶବର ଦେବତା । ଶବରମାନେ ବଣଜଙ୍ଗଲରେ ପତରରେ ହିଁ ଖାଇଥା'ନ୍ତି ଏବଂ ତାଙ୍କ ଦିଅଁମାନଙ୍କୁ ହିଁ ଅର୍ପଣ କରିଥା'ନ୍ତି । ସୁତରାଂ ବାରିପଦାର ମନ୍ଦିରରେ ହେଉଥିବା ପ୍ରସାଦ ମାଟି କୁଡୁଆରେ ଲାଗେ ନାହିଁ । ମୟୂରଭଞ୍ଜରେ ଶାଳଗଛ ପ୍ରଚୁର ପରିମାଣରେ ମିଳେ । ମହାରଜା ଖଡ଼ିଆ ଆଦିବାସୀମାନଙ୍କୁ ମନ୍ଦିରରେ ଶାଳପତ୍ର ଯୋଗାଇବା ପାଇଁ ସେସମୟରେ ବ୍ୟବସ୍ଥା କରିଥିଲେ । ଏବେ ସେହି ପରମ୍ପରା ଅନୁସାରେ ତିନି ଦିଅଁଙ୍କ ନିକଟରେ ଶାଳପତ୍ର ଖଲିରେ ଭୋଗ କରାଯାଏ । ସେହି ଶାଳପତ୍ର ଖଲିରେ ପ୍ରସାଦର ସୁଗନ୍ଧ ଓ ସ୍ୱାଦ ନିଆରା । ଠାକୁରଙ୍କ ପ୍ରିୟ ଭୋଗ ଦଳାଖେଚୁଡ଼ି, ରାମଲୋଚକ ଏବଂ ଆରିସା ପିଠା ବିଶ୍ୱପ୍ରସିଦ୍ଧ ଅଟେ । ବାରିପଦା ମନ୍ଦିର ଆକାର ଛୋଟ, ତେଣୁ ଆନନ୍ଦ ବଜାରର ଅଭାବ ରହିଛି ।

**ନବକଳେବର ହୁଏ ନାହିଁ:** ଭଞ୍ଜ ରାଜାମାନେ ମହାପ୍ରଭୁଙ୍କୁ ସ୍ୱୟଂ ବ୍ରହ୍ମ ଭାବେ ମାନୁଥିବାରୁ ସେଠାରେ ନବକଳେବର ହୁଏ ନାହିଁ । କାରଣ ବ୍ରହ୍ମ ଜନ୍ମ ମୃତ୍ୟୁ ନଥାଏ । କେବଳ ପଟ୍ଟି ଦିଅଁଙ୍କ ପରିବର୍ତ୍ତନ କରାଯାଇଥାଏ । ପୁରୀ ଭଳି ବାରିପଦାରେ ଦେବଦାସୀ ପ୍ରଥା ପ୍ରଚଳିତ ଅଛି । ସେଠାରେ ଦୈନିକ ଗୀତଗୋବିନ୍ଦ ପାଠ କରାଯାଏ । ଶ୍ରୀହରିବଳଦେବ ଜୀଉଙ୍କର ମୋଟ ୯୦ ଜଣ କର୍ମଚାରୀ ଦୈନିକ କର୍ମରତ । ବର୍ତ୍ତମାନ କେବଳ ୨୧.୦୫ ଏକର ଜମି ଠାକୁରଙ୍କ ନାମରେ ରହିଛି । ଏହା ବ୍ୟତୀତ ଦରବାର ସମୟରୁ ପ୍ରଭୁଙ୍କୁ ପ୍ରଦତ୍ତ ମଣି ବୈଦୁର୍ଯ୍ୟମଣ୍ଡିତ ବିଭିନ୍ନ ସ୍ୱର୍ଣ୍ଣ ଓ ରୌପ୍ୟ ଅଳଙ୍କାରମାନ ନିର୍ବାହୀ ଯନ୍ତ୍ରୀ ଅଧିକାରୀଙ୍କ ତତ୍ତ୍ୱାବଧାନରେ ଜିଲ୍ଲା ଟ୍ରେଜେରୀରେ ସୁରକ୍ଷିତ ଅଛି । ସୁବର୍ଣ୍ଣ ଥାଳି, ଗ୍ଲାସ, ନୋଟା ଓ ବହୁ ମୂଲ୍ୟବାନ ବାସନକୁସନ ଓ ବ୍ୟବହୃତ ବସ୍ତୁ ମହାରାଜା ଶ୍ରୀଶ୍ରୀବଳଦେବ ଜୀଉଙ୍କୁ ଅର୍ପଣ କରିଥିବାର ପ୍ରମାଣ ମିଳେ ।

ସମଗ୍ର ଓଡ଼ିଶାରେ ବହୁ ରଥଯାତ୍ରା ଅନୁଷ୍ଠିତ ହେଉଥିଲେ ମଧ୍ୟ ଦ୍ୱିତୀୟ ଶ୍ରୀକ୍ଷେତ୍ରର ନିଆରା ନୀତିକାନ୍ତି ଓ ସ୍ୱାତନ୍ତ୍ର୍ୟ ବିଶ୍ୱବାସୀଙ୍କୁ ଆକୃଷ୍ଟ କରିଥାଏ । ବର୍ତ୍ତମାନ ଏହି ଜିଲ୍ଲାରେ ଜଗନ୍ନାଥ ସଂସ୍କୃତିର ପ୍ରଚାର ପ୍ରସାର ଦ୍ରୁତ ଗତିରେ ବିକାଶ ଲାଭ କରୁଛି । ଏହି ସାଂସ୍କୃତିକ ବାତାବରଣ ପ୍ରଭାବରେ ଏହାର ଚାରିପଟେ ଅର୍ଥାତ ରାଇରଙ୍ଗପୁର, ସାରସକଣା, ଶୀର୍ଷା, ଚିତ୍ରଡ଼ା, କରଞ୍ଜିଆ, ଉଦଳା, ଯଶୀପୁର, କୋଷ୍ଟା, ପ୍ରତାପପୁର, ମାଣଡ୍ରୀ, ବାସୀପିଠା, ରାସଗୋବିନ୍ଦପୁର, ବାଙ୍ଗରିପୋଷି ଇତ୍ୟାଦି ସ୍ଥାନମାନଙ୍କରେ ମଧ୍ୟ ଜଗନ୍ନାଥ ମନ୍ଦିର ଗଢି ଉଠିଛି ଓ ରଥଯାତ୍ରା ବଡ଼ ଧୁମ୍‌ଧାମ୍‌ରେ ପାଳିତ ହେଉଛି ।

ପ୍ଲଟ୍.ନଂ– ୫୫୬/୩୭୫୧
କାନନ ବିହାର–୨
ପଟିଆ, ଭୁବନେଶ୍ୱର–୭୫୧୦୩୧







# ଶଙ୍ଖକ୍ଷେତ୍ର ପରିକ୍ରମା ବାଟରେ ବାଟମଙ୍ଗଳା

**ପ୍ରାଧାପକ ଡକ୍ଟର ଅଶୋକ କୁମାର ମହାନ୍ତି**

ଜୀବ ସଂସାରରେ ବାଟବଣା । ପାଇବାକୁ ବ୍ୟାକୁଳ ପରମବ୍ରହ୍ମଙ୍କୁ । ସେଥିପାଇଁ 'ଥକ୍‌କା ମନ' ଇଚ୍ଛାକରେ 'ଚକାନୟନ' ଦେଖିବାକୁ । 'ଶଙ୍ଖନାଭିମଣ୍ଡଳ'ରେ ବେନି ନେତ୍ର ପଖାଳିବାକୁ । 'ବାଟରେ ବାଟମଙ୍ଗଳା' ବାଟ ଦେଖାନ୍ତି ବାଟୋଇ ଜୀବକୁ । 'ଜୀବ ପରମ' ମଧ୍ୟରେ ମହାମାୟା, ମା' ମଙ୍ଗଳା, ଜୀବର, ସଂସାରର ମଙ୍ଗଳ ବିଧାନ କରିଥାନ୍ତି । ବାଟ ଅନେକ । ଲକ୍ଷ୍ୟ ଏକ । ଲକ୍ଷ୍ୟସ୍ଥଳରେ ପହଞ୍ଚିବାକୁ ବାଟ ଦେଖାନ୍ତି 'ମା ବାଟମଙ୍ଗଳା' । ଜୀବ ବାଧାବିଘ୍ନକୁ ଠେଲିଦେଇ ମାଡ଼ିଯାଏ, ଧକ୍କା ବାଜିଲେ ସହେ । ବାଇଶ ପାବଚ୍ଛରୁ କୈବଲ୍ୟ ଚାଖେ । ଧର୍ମ, ଅର୍ଥ, କାମ, ମୋକ୍ଷ ଚତୁର୍ବର୍ଗ ଫଳପ୍ରାପ୍ତ ହୁଏ । ଶେଷରେ ଗରୁଡ଼ପଛରେ ରହି 'କଳାଶ୍ରୀମୁଖ' ଦର୍ଶନର ସୌଭାଗ୍ୟ ପ୍ରାପ୍ତ ହୁଏ । 'ଜୀବ' 'ବ୍ରହ୍ମ'ରେ ଲୀନ ହୁଏ । ଥକ୍କା ମନ ମନରଙ୍କା ଛଡ଼ାଇ ପରମାନନ୍ଦ ହୋଇଯାଏ । ପରମାନନ୍ଦ ପ୍ରାପ୍ତିପୂର୍ବକ ମଙ୍ଗଳ ବିଧାନ କରନ୍ତି ବାଟରେ 'ମାଆ ବାଟମଙ୍ଗଳା' ।

ବ୍ରହ୍ମା ଯେତେବେଳେ ସୃଷ୍ଟିର ସର୍ଜନା ପାଇଁ ଚୈତ୍ର ମଙ୍ଗଳବାର ଦିନ ମହାପଦ୍ମରୁ ପ୍ରକଟିତ ହେଲେ, ସେତେବେଳେ ସେ ମହାଶୂନ୍ୟକୁ ଦେଖି କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଲେ । ସେତେବେଳେ ମଙ୍ଗଳାତ୍ମିକା ବ୍ରହ୍ମଶକ୍ତି ମା' ମଙ୍ଗଳା ଆବିର୍ଭୂତା ହୋଇ ବ୍ରହ୍ମାଙ୍କୁ ସୂକ୍ଷ୍ମାତିସୂକ୍ଷ୍ମ ଏକ ମାର୍ଗ ଦର୍ଶାଇଥିଲେ । ଯାହାଫଳରେ କି ବ୍ରହ୍ମା ପଦ୍ମନାଭ ବିଷ୍ଣୁଙ୍କର ନାଭିମୂଳ ଦେଖିବାକୁ ସମର୍ଥହୋଇ ସୃଷ୍ଟି ସର୍ଜନା କରିପାରିଥିଲେ । ମା' ମଙ୍ଗଳା ବ୍ରହ୍ମାଙ୍କୁ ବାଟ ଦେଖାଇଥିବାରୁ ତାଙ୍କର ନାମ ହେଲା 'ବାଟମଙ୍ଗଳା' ।

''ବ୍ରହ୍ମାଙ୍କୁ ବାଟୋଇ ମାତା ସେ ବାଟମଙ୍ଗଳା
କମଳ ଗର୍ଣ୍ଣିରେ ମାଗୋ ତୋର ଲୀଳାଖେଳା''

ଉତ୍କଳୀୟ ଶକ୍ତିତତ୍ତ୍ୱ ଅନୁଯାୟୀ ଚୈତ୍ର ମଙ୍ଗଳବାର ବାଟରେ ଦୋଛକିରେ 'ପଛେଇପୂଜା' ବା 'ମଙ୍ଗଳାଚଣ୍ଡୀ' ପୂଜା ବିଧି ଅନୁଷ୍ଠିତ ହୁଏ ।

''ବାଟେ ଯାଉଯାଉ ପାଇଲି ଗୋବରଲଣ୍ଡି
ଲିପି ପୋଛି ଦେଇ ଯାଆ ମା ପୂଜି ମଙ୍ଗଳଚଣ୍ଡି ।''

ଏହି ମଙ୍ଗଳଚଣ୍ଡୀ ମଙ୍ଗଳା ବା ସର୍ବମଙ୍ଗଳାଙ୍କୁ ରାଘବେନ୍ଦ୍ର ରାମଚନ୍ଦ୍ର ତ୍ରେତୟାରେ ନବପଲ୍ଲବରେ ବାସନ୍ତିକ 'ନବପତ୍ରିକା' ପୂଜାକରି ଦଶାନନ ରାବଣକୁ ନିଧନ କରିଥିଲେ ।

ଏହି ମାଆ ମଙ୍ଗଳା ମା' ଦୁର୍ଗାଙ୍କର ଆତ୍ମଶକ୍ତି ଭାବରେ ମହିଷାସୁରକୁ ମାରିବାକୁ ବିବସନା ହେବାକୁ ମା' ଦୁର୍ଗାଙ୍କୁ ପରାମର୍ଶ ଦେଇଥିଲେ ।

ଏହି ମାଆ ମଙ୍ଗଳା କଂସ କଚାଡ଼ି ଦେଲାବେଳେ ଦ୍ୱାପରରେ କଂସ ହାତରୁ ଖସିଯାଇ କଂସକୁ ଦୈବୀବାଣୀ ଶୁଣାଇଥିଲେ ଯେ ''ତୋତେ ଯିଏ ମାରିବ ସିଏ ଗୋପରେ ବଢୁଛି ।'' ଏଠାରେ ମଧ କଂସ ମୁକ୍ତିର ବାଟ ଦେଖାଇଥିଲେ 'ମା ମଙ୍ଗଳା । ସେହି ବିଜୁଳିକନ୍ୟା 'ମାଆ ବାଟମଙ୍ଗଳା' ବ୍ରହ୍ମ ଦର୍ଶନ ପୂର୍ବକ ମୋକ୍ଷର ବାଟ ବତାନ୍ତି ।

ମାର୍କଣ୍ଡେୟ ପୁରାଣ ଅନ୍ତର୍ଗତ 'ଶ୍ରୀଶ୍ରୀ ସପ୍ତଶତୀଚଣ୍ଡୀ'ରେ ରାଜା ସୁରଥ ମେଧସ୍‌ଋଷିଙ୍କୁ





ମହାମାୟାଙ୍କ ଉତ୍ପତ୍ତି ସଂପର୍କିତ ବିଷୟରେ ପଚାରିବାରୁ ମହର୍ଷି କହୁଛନ୍ତି–ମହାଦେବୀଙ୍କର ଜନ୍ମ ନାହିଁ । ମାତ୍ର ଯେତେବେଳେ ଦେବତାମାନଙ୍କର କାର୍ଯ୍ୟସିଦ୍ଧି ନିମନ୍ତେ ମହାମାୟା ଆବିର୍ଭୂତା ହୁଅନ୍ତି, ସେତେବେଳେ ସେ ଉତ୍ପନ୍ନ ହୋଇଥାନ୍ତି ।

''ଦେବାନାଂ କାର୍ଯ୍ୟସିଦ୍ଧ୍ୟର୍ଥଂ ଆବିର୍ଭବତି ସା ଯଦା
ଉତ୍ପନ୍ନେତି ତଦା ଲୋକେ ସାନିତ୍ୟାପି ବିଧୀୟତେ ।''

(ଚଣ୍ଡୀ–୧/୬୫)

ମହାମାୟା ହେଉଛନ୍ତି– ପରଂବ୍ରହ୍ମଙ୍କର ମହାଶକ୍ତି । ସେହି ଶକ୍ତିର ଦୁଇଗୋଟି ପ୍ରକାଶ । ଯଥା– ପ୍ରଥମଟି ଅନ୍ତରଂଗା ଚିତ୍‌ଶକ୍ତି, ଗୁଣାତୀତା । ଦ୍ୱିତୀୟଟି ବହିରଙ୍ଗା, ଗୁଣମୟୀ, ତମଃ ଶକ୍ତି । ତମଃଶକ୍ତିରେ ମା' କ୍ରୋଧାନ୍ୱିତା ଓ ଏ ଶକ୍ତିର ବିବିଧରୂପ ରହିଛି । ଚିତ୍‌ଶକ୍ତିରେ ମାଆ ଲକ୍ଷ୍ମୀ, ସରସ୍ୱତୀ, ତ୍ରିପୁରସୁନ୍ଦରୀ, ହ୍ଲାଦିନୀ ରାଧା ଓ ମଙ୍ଗଳମୟୀ ମା ମଙ୍ଗଳା । ମାଆ ବାଟମଙ୍ଗଳା । ପରମବୈଷ୍ଣବୀ ।

ଅମରସିଂହଙ୍କ କୃତ 'ଅମରକୋଷ'ରେ 'ସର୍ବାଣି ସର୍ବମଙ୍ଗଳା' ଶବ୍ଦ ଉଲ୍ଲେଖ ଅଛି । ଉମା, କାତ୍ୟାୟନୀ, ଗୌରୀ, କାଳୀ, ହୈମବତୀ, ଈଶ୍ୱରୀ, ଶିବା, ଭବାନୀ, ରୁଦ୍ରାଣି, ସର୍ବାଣି, ସର୍ବମଙ୍ଗଳା, ଅପର୍ଣ୍ଣା, ପାର୍ବତୀ, ଦୁର୍ଗା, ମୃଡ଼ାନୀ, ଚଣ୍ଡିକା, ଅମ୍ବିକା ଆଦି ନାମ ଆଦିଶକ୍ତି ସନାତନୀ ଶକ୍ତିଙ୍କର । ବିଭିନ୍ନ ସ୍ଥଳରେ ଧ୍ୟାନମନ୍ତ୍ରରେ ଆହୁରି ଆହୁରି ନାମର ପରିକଳ୍ପନା କରାଯାଇଛି ।

କେତେକ ଗବେଷକ ମଙ୍ଗଳାଙ୍କୁ ବୌଦ୍ଧତନ୍ତ୍ରର ଦେବୀ ମନେ କରନ୍ତି । କିନ୍ତୁ ବୌଦ୍ଧତନ୍ତ୍ର ଚତୁଃଷଷ୍ଠୀ ମଧ୍ୟରେ ମଙ୍ଗଳାଙ୍କ ନାମୋଲ୍ଲେଖ ନାହିଁ ।

ଗବେଷିକା ସ୍ମିତା ମହାନ୍ତି (ଖୁଦୁରୁକୁଣୀ ଓଷା : ମା'ମଙ୍ଗଳା–ଝଙ୍କାର–ଅକ୍ଟୋବର–୨୦୧୪) କହନ୍ତି– ''ପ୍ରାଚୀନ କୋଶଳ ଓ ଓଡ୍ରର ଗ୍ରାମଦେବତୀଙ୍କ ସର୍ବଶକ୍ତିଯୁକ୍ତ ଗୁଣାବଳୀର ଏକୀକରଣର ରୂପ 'ସର୍ବମଙ୍ଗଳା' ।''

କେତେକ ଗବେଷକଙ୍କ ମତ – ନବମ ଶତାବ୍ଦୀରେ ଈକ୍ଷାକୁବଂଶୀୟ ରାଜା 'ମଙ୍ଗଳ' ମଙ୍ଗଳପୁର ଗ୍ରାମରେ ପ୍ରତିଷ୍ଠା କରିଥିଲେ 'ମା ମଙ୍ଗଳା'ଙ୍କୁ । 'ମା ମଙ୍ଗଳା'ଙ୍କ ପାଖରେ ଓଡ଼ିଆପୁଅ ବାଣିଜ୍ୟ ପାଇଁ ବୋଇତରେ ଗଲାବେଳେ ପ୍ରଣତି ଢାଳେ । ମଙ୍ଗଳାଙ୍କ ପୂଜା କଉଡ଼ିକୁ ବୋଇତ ଆଗରେ ଧରି ସିଏ ଦରିଆରେ ମେଲିଦିଏ ବୋଇତ । ବୋଇତର ମଙ୍ଗକୋଣରେ ପୂଜା ପାଉଥିବା ମା' ମଙ୍ଗଳା ବିପଦଆପଦରେ ବୋଇତର ମଙ୍ଗ ସମ୍ଭାଳନ୍ତି ବୋଲି ବିଶ୍ୱାସ । ତଅପୋଇ ଓ ଖୁଲଣା ସୁନ୍ଦରୀ ଆଦି ପ୍ରାଚୀନ ଗଳ୍ପରୁ ମା' ମଙ୍ଗଳାଙ୍କ ପ୍ରଶସ୍ତି ଓ ଲୋକପ୍ରିୟତା ଜଣାପଡ଼େ । କେହି କେହି ଶ୍ରୀଲଙ୍କାରୁ ମଙ୍ଗଳାପୂଜନର ଉଦ୍ଭବ ବୋଲି ମତ ପ୍ରଦାନ କଲେ ମଧ୍ୟ, ସେତେବେଳେ ଦୁର୍ଗମ ପଥରେ ମଧ୍ୟ ଓଡ଼ିଶାର କୋଣ ଅନୁକୋଣରେ ଖୁଦରକୁଣୀ ମା' ମଙ୍ଗଳା ପୂଜନ ଲୋକପ୍ରିୟତା ଏତେ ଥିଲା ଯେ, ଉତ୍କଳ ବାଟଦେଇ ସୁଦୂର ପଶ୍ଚିମବଙ୍ଗର ମାଛ ଧରା ଟ୍ରଲର ସବୁରେ ଏବେ ବି ଇଷ୍ଟ ପାଲଟିଛନ୍ତି ମା' ମଙ୍ଗଳା । ଓଡ଼ିଆ ଜନ ଜୀବନରେ ମା' ମଙ୍ଗଳା ପୂଜନ ମୁଖ୍ୟ ଓ ପ୍ରିୟ ।

ଏକଥା ଜଣାଶୁଣା ଯେ ଶ୍ରୀଜୀଉଙ୍କ ନବକଳେବର ସମୟରେ 'ବନଯାଗ' ପରେ ଅନ୍ୱେଷଣକାରୀ ଦଇତାଙ୍କ ସମେତ ଅଭିଯାତ୍ରୀଦଳ କାକଟପୁର ମଙ୍ଗଳାଙ୍କ ପାଖକୁ ଆସି ସେଠାରେ ମା'ଙ୍କର ଯଥାବିଧି ପୂଜା ଆରାଧନା ପରେ କେଉଁ ଦିଗରେ ଦାରୁର ସନ୍ଧାନ ମିଳିବ, ସେହି ସ୍ୱପ୍ନାଦେଶ ପାଇଁ ସେଠାରେ ଅଧିଆ ପଡ଼ନ୍ତି । ତିନିଦିନ ମଧ୍ୟରେ ସ୍ୱପ୍ନାଦେଶ ନହେଲେ ମଙ୍ଗଳାଙ୍କୁ ଯଥାବିଧି ପୁଷ୍ପ ବିଭୂଷଣ କରି ଅର୍ଚ୍ଚନା କରାଯାଏ ଏବଂ ମାଆଙ୍କ ମସ୍ତକରୁ ଖସିବା ପୁଷ୍ପରୁ ଦାରୁର ଦିଗ ନିର୍ଣ୍ଣୟ କରିବାକୁ ସୂଚନା ମିଳେ ବୋଲି କୁହାଯାଇଥାଏ ।

ବ୍ରହ୍ମପୁରାଣ ଅନୁଯାୟୀ ବ୍ରହ୍ମାଙ୍କୁ ବାଟ ଦେଖାଇଥିବା ମାଆ 'ବାଟମଙ୍ଗଳା' ଶ୍ରୀମନ୍ଦିରର କଳ୍ପବଟ ମୂଳରେ 'ବଟମଙ୍ଗଳା'ଭାବରେ ପୂଜିତା । ପଞ୍ଚେଇପୂଜା, ଝାମୁଯାତ୍ରା

ବା ଚଡ଼କଯାତ୍ରା, ଚୈତ୍ର ମଙ୍ଗଳବାର ବା ଚୈତ୍ର ସଂକ୍ରାନ୍ତିରେ ପାଳିତ ହୋଇ ଏହା ଆଦିବାସୀ, ଅନାର୍ଯ୍ୟ ଓ କୃଷିଭିତ୍ତିକ ସଂସ୍କୃତି ବୋଲି କେହି କେହି କହୁଥିବାବେଳେ ଓଡ଼ିଶାରେ ଏହା ଲୋକପ୍ରିୟତା ହାସଲ କରିଛି ।

ଦ୍ୱାଦଶ ଶତାବ୍ଦୀର ଶେଷଭାଗ ଓ ତ୍ରୟୋଦଶ ଶତାବ୍ଦୀର ପ୍ରଥମ ଭାଗରେ ରାଜା ଅନଙ୍ଗଭୀମଦେବ ଶ୍ରୀକ୍ଷେତ୍ରକୁ ବିଶ୍ୱର ନାଭିସ୍ଥଳ ରୂପେ କଳ୍ପନା କରି ଶ୍ରୀକ୍ଷେତ୍ରର ରକ୍ଷା ନିମନ୍ତେ ଅଷ୍ଟଶମ୍ଭୁ ଓ ଅଷ୍ଟଚଣ୍ଡୀଙ୍କୁ ସ୍ଥାପିତ କରିଥିବାର ବର୍ଣ୍ଣନା ମାଦଳାପାଞ୍ଜିରୁ ଜଣାଯାଏ । ସେହି ଅଷ୍ଟଚଣ୍ଡୀ, ଅଷ୍ଟଦୁର୍ଗାଙ୍କୁ ଅଷ୍ଟକାଳୀରୂପେ ଶ୍ରୀଜଗନ୍ନାଥ ସଂସ୍କୃତିରେ ଗ୍ରହଣ କରାଯାଇଥିଲେ ମଧ୍ୟ ଅଷ୍ଟନାମରେ କାଳକ୍ରମେ କିଛି ତାରତମ୍ୟ ଲକ୍ଷ୍ୟ କରାଯାଏ ।

ହରଚଣ୍ଡୀ, ଭଣ୍ଡାରିକା, ଚର୍ଚ୍ଚିକା, ମଙ୍ଗଳା, ତାରାତାରିଣୀ, ଭଗବତୀ, ଉଗ୍ରତାରା ଓ ରାମଚଣ୍ଡୀ ଶ୍ରୀକ୍ଷେତ୍ରକୁ ରକ୍ଷା କରୁଥିବାବେଳେ ବିମଳା, ଦକ୍ଷିଣକାଳୀ, ବାଟମଙ୍ଗଳା, ହରଚଣ୍ଡୀ, ଚାମୁଣ୍ଡା, ଆଲମ୍ବାଚଣ୍ଡୀ, ଅର୍ଦ୍ଧଶୋଷଣୀ, ମର୍ଚ୍ଚିକା ଆଦି ଦେବୀମାନଙ୍କୁ ଭୈରବୀରୂପେ କଳ୍ପନା କରି ଏମାନେ ରତ୍ନସିଂହାସନର ରକ୍ଷିକାରୂପେ ପରିକଳ୍ପନାରେ ଅଷ୍ଟଭୈରବୀ ଉପାସନା ଗଢ଼ିଉଠିଲା । ଏତଦ୍‌ବ୍ୟତୀତ ରତ୍ନସିଂହାସନରେ ପୂଜିତା ସୁଭଦ୍ରା ବିଷ୍ଣୁମାୟା, ଶ୍ରୀଦେବୀ ଯୋଗମାୟା ଓ ଭୂଦେବୀ ମହାମାୟାରୂପେ ତନ୍ତ୍ରଶାସ୍ତ୍ର ଅନୁଯାୟୀ ପରିକଳ୍ପିତା । ବେଢ଼ାକାଳୀ ଜାଗ୍ରତ ପ୍ରହରୀ ।

ତନ୍ତ୍ର ମର୍ଯ୍ୟାଦାରେ ଶଙ୍ଖକ୍ଷେତ୍ରର ପ୍ରବେଶପଥରେ 'ବାଟମଙ୍ଗଳା ବିରାଜିତା' । ଶଙ୍ଖକ୍ଷେତ୍ରର ଆରମ୍ଭ ବେଲେଶ୍ୱରଙ୍କଠାରୁ ଓ ଶେଷ ମହୋଦଧି । ଶଙ୍ଖକ୍ଷେତ୍ରର ପ୍ରତିହାରୀ କପାଳେଶ୍ୱର, କ୍ଷେତ୍ରପାଳ ନୀଳକଣ୍ଠେଶ୍ୱର, ହିସାବରକ୍ଷକ ଯମେଶ୍ୱର, ଶ୍ରୀଲୋକନାଥ ଭଣ୍ଡାର ରକ୍ଷକ, ଶଙ୍ଖକ୍ଷେତ୍ରର ଅଗ୍ରଭାଗ ରକ୍ଷକ, ଏକ ଦ୍ୱାରପାଳ ମଧ୍ୟ । ଜଗନ୍ନାଥ ମନ୍ଦିରର ସ୍ଥିତି ସମୟରୁ ଏହି ପଞ୍ଚମହାଦେବ ରହିଥିଲେ ସୁଦ୍ଧା ଶ୍ରୀଜଗନ୍ନାଥଙ୍କ ଦର୍ଶନ ପାଇଁ ଯେଉଁ ବାଟଦେଇ ଅଧିକାଂଶ ଯାତ୍ରୀ ଯାତାୟାତ କରିଥାନ୍ତି, ସେହି ବାଟରେ ଅର୍ଥାତ୍ ଶ୍ରୀକ୍ଷେତ୍ରଠାରୁ ପ୍ରାୟ ପାଞ୍ଚ କିଲୋମିଟର ଦୂରତ୍ୱରେ ବାଟଗାଁ ମୌଜାରେ ଆଠ ଡିସିମିଲି ପରିମିତ ବିଜେସ୍ଥଳୀରେ 'ମାଆ ବାଟମଙ୍ଗଳା' ବିରାଜିତା । ବାଟମଙ୍ଗଳାଙ୍କ ପରେ ମୁକ୍ତେଶ୍ୱର ମହାଦେବ । ଭକ୍ତ ମୁକ୍ତେଶ୍ୱରଙ୍କଠାରୁ ମୁକ୍ତିର ସନ୍ଧାନ ନେଇ ଆଗେଇଯାଏ ନୀଳାଦ୍ରି ବିହାରୀଙ୍କ ଦର୍ଶନ ନିମିତ୍ତ ।

୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କରିବାପରେ ୧୮୧୧ରୁ ୧୮୨୬ ମଧ୍ୟରେ ହିନ୍ଦୁଯାତ୍ରୀମାନଙ୍କ ପାଇଁ 'ଜଗନ୍ନାଥ ସଡ଼କ'ର ନିର୍ମାଣ କାର୍ଯ୍ୟ କରାଗଲା । ତତ୍‌କାଳୀନ ବଡ଼ଲାଟ୍ ଲର୍ଡ଼ ଆର୍ମହଷ୍ଟଙ୍କ (୧୮୨୩–୨୮) ଆଦେଶ ଅନୁଯାୟୀ ୧୮୨୬ରେ କଲିକତାର ମହାରାଜା 'ସୁଖମୟ ରାୟ' ଏହି ରାସ୍ତା ପାଇଁ ଦେଢ଼ଲକ୍ଷ ଟଙ୍କା ଦାନ କରିଥିଲେ । କିନ୍ତୁ ପୁରୀର ଉପକଣ୍ଠରେ ଥିବା ମୂଷାନଈ ଉପରେ କେଶରୀ ବଂଶ ନୃପତି ମତ୍ସ୍ୟକେଶରୀ ଯେ କି ଖ୍ରୀ: ଅ: ୯୭୫ରୁ ଖ୍ରୀ: ଅ: ୯୯୫ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ, ସେ 'ଅଠରନଳା' ସେତୁ ନିର୍ମାଣ କରିଥିଲେ । ଆଉ କେତେକଙ୍କ ମତ ଗଙ୍ଗବଂଶର ପ୍ରଥମ ଭାନୁଦେବ ଯେ କି ୧୨୬୪ ଖ୍ରୀ: ଅରୁ ୧୨୭୯ ଖ୍ରୀ: ଅ. ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ଓ ବାଙ୍କିମୁହାଣ ପୋତାଇ ଛଅଗୋଟି ରଥ ପରିବର୍ତ୍ତେ ତିନିଗୋଟି ରଥରେ ରଥଯାତ୍ରା ପ୍ରଚଳନ କରିଥିଲେ । ସେ ମଧ୍ୟ ଅଠରନଳା ପୋଲ ନିର୍ମାଣ କରାଇଥିଲେ । ଅଠରନଳା ଜଗନ୍ନାଥ ଦର୍ଶନ ମାର୍ଗର ଦ୍ୱାରଦେଶ । ଅଷ୍ଟାଦଶ ପୁରାଣସଙ୍ଗେ ଅଠରନଳାକୁ ତୁଳନାକରି, ପୁରାଣପାଠ ପରେ ମନ ଯେପରି ଭକ୍ତିରସରେ ଆପ୍ଳୁତ ହୁଏ, ଭକ୍ତ ବାଟମଙ୍ଗଳାଙ୍କଠାରୁ ସତ୍‌ମାର୍ଗ ପାଇ ଅଠରନଳା ଅତିକ୍ରମ କରି ଭକ୍ତିଜଗତରେ ପ୍ରବେଶ କରେ ।

ବଡ଼ଦାଣ୍ଡ ଚାରିଖଳାରେ ବିଭକ୍ତ । ସିଂହଦ୍ୱାରଠାରୁ ଶ୍ରୀନଅର ପର୍ଯ୍ୟନ୍ତ 'ରଥଖଳା' । ଶ୍ରୀନଅର ସାମନା ଚର୍ଚ୍ଚିକାଙ୍କଠାରୁ ମରିଚିକୋଟ ମର୍ଚ୍ଚିକା ଠାକୁରାଣୀଙ୍କ ପର୍ଯ୍ୟନ୍ତ 'ମହାଖଳା' । ମର୍ଚ୍ଚିକା ଠାକୁରାଣୀଙ୍କଠାରୁ ମ୍ୟୁନିସିପାଲିଟି ମାର୍କେଟ୍ ବା ଜଗନ୍ନାଥବଲ୍ଲଭ ପର୍ଯ୍ୟନ୍ତ 'ସେବାଖଳା' ଓ

ଅବଶିଷ୍ଟ ଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ 'ଲୀଳାଖଳା' । ଏହି 'ଲୀଳାଖଳା' ମଧ୍ୟରେ ବଳଗଣ୍ଡି, ବଡ଼ଶଙ୍ଖ, ଶରଧାବାଲି ଅନ୍ତର୍ଭୁକ୍ତ । ବଡ଼ଦାଣ୍ଡ ଦେବଭୂମି, ସାଧୁସନ୍ଥଙ୍କ କର୍ମ ଓ ଲୀଳାଭୂମି । ଲୀଳାଖଳାରୁ ଭକ୍ତ ରେଣୁଟିଏ ତୁଣ୍ଡରେ ଦିଏ ।

ବାଟମଙ୍ଗଳାଙ୍କ ମନ୍ଦିରର ଉଚ୍ଚତା ପ୍ରାୟ ପନ୍ଦରଫୁଟ । ଏକମାତ୍ର ଦ୍ୱାରର ଉଚ୍ଚତା ପ୍ରାୟ ଚାରିଫୁଟ । ମନ୍ଦିର ସାମନାରେ ଗୋଟିଏ ସୁନ୍ଦର ଜଗମୋହନରେ ଦୁଇଟି ନୂଆ ସିଂହବାହାନ ରହିଛନ୍ତି । ମାଆ ଚତୁର୍ଭୁଜା । ପଦ୍ମାସନରେ ଆସୀନା । ନିମ୍ନଭାଗର ଦୁଇହାତ ମୁକ୍ତ ଥାଇ ଅଭୟ ପ୍ରଦାୟିନୀର ସଂକେତ । ଊର୍ଦ୍ଧ୍ୱ ଦୁଇହସ୍ତରୁ ଦକ୍ଷିଣ ହସ୍ତରେ ଶଙ୍ଖ ଓ ବାମହସ୍ତରେ ତ୍ରିଶୂଳ । ଦୁଇଫୁଟରୁ ଊର୍ଦ୍ଧ୍ୱ କଳାମୁଗୁନି ପଥରର କମନୀୟ ଲାବଣ୍ୟମୟୀ ମୂର୍ତ୍ତି । ମା' ପରମବୈଷ୍ଣବୀ । ଆମିଷ ଭୋଜନ କରନ୍ତିନାହିଁ । ଦୈନିକ ସକାଳ ଧୂପରେ ସାଧା ଅନ୍ନ ସଙ୍ଖୁଡ଼ିଭୋଗ ଓ ରାତିରେ ବାଲଧୂପ ହୁଏ । ଚୈତ୍ର ମଙ୍ଗଳବାର ଓ ଷୋଳପୂଜାରେ ନିରାମିଷ ସଙ୍ଖୁଡ଼ିଭୋଗ ମହାଆଡ଼ମ୍ବରରେ ହୋଇଥାଏ । ଯାନବାହନ ଓ ଗମନାଗମନର ଅଭିବୃଦ୍ଧି ଘଟିବା ଯୋଗୁଁ ଯାତ୍ରା ନିର୍ବିଘ୍ନରେ ସମାପ୍ତ ହେବା ଆଶାରେ ଭକ୍ତ ବାଟମଙ୍ଗଳାଙ୍କ ପାଖେ ଅଟକିଯାଇ, ଦୀପ ଦେଇ, ମାଳ ଓ ସିନ୍ଦୂର ଗାଡ଼ିରେ ଲଗାନ୍ତି । ଅନ୍ୟ ଯାତ୍ରୀମାନେ ମା'ଙ୍କ ଦର୍ଶନ କରି ଯାହା ଭେଟି ଦିଅନ୍ତି ଓ ଗାଡ଼ିପୂଜାଦି କରି ଦକ୍ଷିଣା ଦିଅନ୍ତି ମା'ଙ୍କ ସେବାପୂଜା ବା ଯାନିଯାତ୍ରା ପାଇଁ ତାହା ଏକମାତ୍ର ଆୟ ।

ଶ୍ରୀକ୍ଷେତ୍ରର ବିଭିନ୍ନ ସ୍ଥାନରେ ଯଥା ବଟବୃକ୍ଷମୂଳେ, ବାଟରେ, ପନ୍ତାକୂଳେ ଓ ଘାଟମାନଙ୍କରେ ମା'ମଙ୍ଗଳା ଶ୍ରୀକ୍ଷେତ୍ରକୁ ରକ୍ଷା କରିଅଛନ୍ତି । ମଙ୍ଗଳାଘାଟ ପଥରେ 'ଘାଟମଙ୍ଗଳା' ବିରାଜିତା ।

ଡେଲାଙ୍ଗ ମହାବିଦ୍ୟାଳୟ
ଡେଲାଙ୍ଗ, ପୁରୀ-୭୫୨୦୧୫

# କଳା ବଡ଼ ଠାକୁର

ବାଳକାନନ୍ଦ ଦାସ



ଧଳା ଘୋଡ଼ା ଚଢ଼ା କଳା ବଡ଼ ଠାକୁର
ଦୀନହୀନ ନିବେଦନ ଘେନ ଏଥର ।
ମାଗୁନାହିଁ ଅଷ୍ଟ ଅଇଶ୍ୱର୍ଯ୍ୟ ତ ମୁହିଁ
ଡରି ଯାଉଛ କି ଆଜି ହେ ଲକ୍ଷ୍ମୀସାଇଁ
ମାଗେ ଦରଶନ ତବ ହେ ରମାବର ।
ଅନ୍ତର କରନା ମୋତେ ମୋହେ ପକାଇ
ହେ ଅନ୍ତରଯାମୀ ନାଥ ଅନାଥ ମୁହିଁ
ଏତିକି ମିନତି ପଥେ ମନ୍ଦରଧର ।

କୋଟି କୋଟି ଜନ୍ମଗଲା ସାଧନ କରି
ଝରିଲାନି ଥରେ ତୋହ କରୁଣା ବାରି
କାହିଁକି କହିବେ ଲୋକେ କରୁଣା କର ।
ପିଣ୍ଡୁପ୍ରାଣ ଗଲାବେଳେ ମୋହନ ସତେ
ଦେଖାଦେବ ମୋ ଆଖିରେ ନାହିଁ ପରତେ
ଲାଖିଯିବି ଧୂଳି ହୋଇ ଶ୍ରୀଚରଣରେ ।



ଏକାମ୍ର ସତ୍ୟ ସେବାଶ୍ରମ
ୟୁନିଟ୍-୯, ଭୁବନେଶ୍ୱର-୨୨



# ଚକ୍ରରାଜ ଶ୍ରୀସୁଦର୍ଶନ

ଗୋଲାପ ନନ୍ଦ

ଲୀଳାମୟ ପୁରୁଷୋତ୍ତମ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ସ୍ୱରୂପ ରହସ୍ୟମୟ । ସେ ଅନେକରେ ଏକ, ଏକରେ ଅନେକ । ମହିମାମୟଙ୍କର ମହିମାର ପଟାନ୍ତର ନାହିଁ । ଐତିହାସିକ, ଗବେଷକ ତଥା ପଣ୍ଡିତବର୍ଗ ଏବେ ମଧ୍ୟ ଶ୍ରୀଜଗନ୍ନାଥଙ୍କ ପ୍ରାଚୀନତା, ଶ୍ରୀଜଗନ୍ନାଥ ଧର୍ମର ମୂଳତତ୍ତ୍ୱ ଓ ସଂସ୍କୃତିର ଉତ୍ସ ନିର୍ଦ୍ଧାରଣରେ ଗବେଷଣାରତ । ସେହିଭଳି ପ୍ରଭୁ ଶ୍ରୀସୁଦର୍ଶନଙ୍କର ମହିମା ଜାଣିବା ମଧ୍ୟ କଷ୍ଟକର ।



ହେ ମହାବାହୁ ସୁଦର୍ଶନ ! କୋଟି କୋଟି ସୂର୍ଯ୍ୟ ସମାନ ଆପଣଙ୍କ ତେଜ । ଶ୍ରୀସୁଦର୍ଶନଙ୍କ ବିଷୟରେ ବିଭିନ୍ନ ପୁରାଣରେ ବର୍ଣ୍ଣନାମାନ ରହିଛି । ଚକ୍ରରାଜ ଶ୍ରୀସୁଦର୍ଶନ ହେଉଛନ୍ତି ଭଗବାନଙ୍କର ଅନ୍ତରଙ୍ଗ ପାର୍ଷଦ । ସେ ହେଉଛନ୍ତି ଶ୍ରୀଜଗନ୍ନାଥଙ୍କର ଆଦିମୂର୍ତ୍ତି ନିର୍ମାଣର ପ୍ରତୀକ ଅର୍ଥାତ ବିଗ୍ରହ ନିର୍ମାଣର ଆଦି ସ୍ୱରୂପ । ପ୍ରଥମେ ତାଙ୍କ ବିଗ୍ରହ ନିର୍ମାଣ ହୁଏ ପରେ ପରେ ସୁଭଦ୍ରା, ବଳଭଦ୍ର ଓ ଶେଷରେ ଶ୍ରୀଜଗନ୍ନାଙ୍କର ବିଗ୍ରହ ନିର୍ମାଣ ହୁଏ । ଶ୍ରୀସୁଦର୍ଶନ ହେଉଛନ୍ତି ସାକ୍ଷାତ୍ ନୃସିଂହ । କାରଣ ନୃସିଂହଙ୍କ ପୂଜାମନ୍ତ୍ର ସହ ଶ୍ରୀସୁଦର୍ଶନଙ୍କର ପୂଜାମନ୍ତ୍ରର ସାମଞ୍ଜସ୍ୟ ରହିଛି । ଶ୍ରୀବିଷ୍ଣୁଙ୍କର କ୍ରୋଧ ସମୟରେ ଶ୍ରୀସୁଦର୍ଶନ ହିଁ ସଂହାରଚକ୍ର ରୂପେ ବ୍ୟବହୃତ ହୁଅନ୍ତି ।

ଶ୍ରୀକୁରନାରାୟଣ ମୁନିଙ୍କ ପ୍ରଣୀତ 'ସୁଦର୍ଶନ ଶତକ'ରୁ କିଛି ଉଦ୍ଧାର କରାଯାଇପାରେ । ଚକ୍ରସୁଦର୍ଶନଙ୍କର ରୂପାନ୍ତର ଶ୍ରୀମନ୍ଦିର ଚୂଡାସ୍ଥ ନୀଳଚକ୍ର । ସେ ସୂର୍ଯ୍ୟଙ୍କର ତେଜର ସଂସ୍ପର୍ଶରେ ଆସି ପ୍ରାତଃ, ମଧ୍ୟାହ୍ନ ଏବଂ ଅପରାହ୍ନରେ ବିଭିନ୍ନ ବର୍ଣ୍ଣ ଧାରଣ କରନ୍ତି । ସୁଦର୍ଶନଙ୍କ ତେଜ ସମ୍ମୁଖରେ ସୂର୍ଯ୍ୟଙ୍କର ତେଜ ଉପହାସିତ ହୁଏ, ଚନ୍ଦ୍ରଙ୍କର ତେଜ ବିଲୀନ ହୁଏ ଏବଂ ତାରାଗଣ ଅଦୃଶ୍ୟ ହୁଅନ୍ତି, ଅଗ୍ନିଦେବ ଅଧୀର ହୁଅନ୍ତି ଓ ବିଦ୍ୟୁତ୍‌ର ସ୍ୱାତନ୍ତ୍ର୍ୟ ଲୁପ୍ତ ହୁଏ । ଶ୍ରୀସୁଦର୍ଶନଙ୍କର ତେଜ ଦୈତ୍ୟମାନଙ୍କର ସେନା ତଥା ନଗରୀକୁ ଭସ୍ମୀଭୂତ କରି ଅମରାବତୀକୁ ଉତ୍ତମ ଐଶ୍ୱର୍ଯ୍ୟ ଦ୍ୱାରା ସମୃଦ୍ଧ କରିବା ନିମିତ୍ତ ସର୍ବଦା ପ୍ରକାଶିତ ହୁଏ । ଶ୍ରୀସୁଦର୍ଶନଙ୍କର ଯାତ୍ରାଦ୍ୱାରା ଲୋକରକ୍ଷଣ ହୁଏ । ସୁଦର୍ଶନଙ୍କ ଅସହ୍ୟ ଉତ୍ତାପଦ୍ୱାରା ଜଡ ଓ ଚେତନ ବ୍ୟାକୁଳିତ ହୁଅନ୍ତି । ପକ୍ଷଥିବା ପର୍ବତମାନେ ଉଡିଯିବା ପାଇଁ ବାଧ୍ୟ ହୁଅନ୍ତି । ଯେତେବେଳେ ସୁଦର୍ଶନ ଶତ୍ରୁ ଦୈତ୍ୟମାନଙ୍କୁ ଦମନ କରିବା ନିମିତ୍ତ ବଳିଙ୍କ ଲୋକରେ ପ୍ରବେଶ କରନ୍ତି, ସେତେବେଳେ ସମୁଦ୍ରର ଜଳ ଶୁଷ୍କ ହୁଏ, କିନ୍ତୁ ଦାନବମାନଙ୍କ ନିଧନ ପରେ ତାଙ୍କ ପତ୍ନୀଙ୍କର ଶୋକାଶ୍ରୁଦ୍ୱାରା ସେହି ସମୁଦ୍ର ପୁନଃ ଅଗାଧ ଜଳରେ ପରିପୂର୍ଣ୍ଣ ହୁଏ । ଚକ୍ରରାଜ ଶ୍ରୀସୁଦର୍ଶନ ବିଶ୍ୱର ସଂରକ୍ଷଣ କରନ୍ତି । ଉପାସକମାନଙ୍କର ଅଭୀଷ୍ଟ ସିଦ୍ଧି କରନ୍ତି । ଦାରିଦ୍ର୍ୟ ଦୁଃଖ





ହରଣ କରି ଧନଧାନ୍ୟ ପ୍ରଦାନ କରିବା ପାଇଁ ସମର୍ଥ ହୋଇଥାନ୍ତି । ସେ କୁମ୍ଭୀରଦ୍ୱାରା ଆକ୍ରାନ୍ତ ଗଜେନ୍ଦ୍ରର ପରିତ୍ରାଣକାରୀ ଅଟନ୍ତି । ଶରଣାଗତର ଜନ୍ମଜନ୍ମାର୍ଜିତ ପାପରାଶିକୁ ଭସ୍ମ କରି ସଂସାରରେ ଚିରକାଳ ଘୂରି ବୁଲୁଥିବା ଭକ୍ତ ଓ ପଥିକଙ୍କୁ ଆନନ୍ଦରୂପୀ ବୈକୁଣ୍ଠଧାମରେ ପହଞ୍ଚାଇ ଶାଶ୍ୱତ ଶାନ୍ତି ପ୍ରଦାନ କରନ୍ତି । ଶ୍ରୀସୁଦର୍ଶନଙ୍କର ପ୍ରତାପ ସର୍ବଦା ଦେଦୀପ୍ୟମାନ । ସେ ଜ୍ଞାନଶକ୍ତି ଆସି ଷଡ଼୍‌ଗୁଣର ଅଧିଷ୍ଠାନ ଅଟନ୍ତି ।

ଭଗବାନଙ୍କର ଅତି ପ୍ରିୟ ହଜାରେ ଦନ୍ତଯୁକ୍ତ ଚକ୍ର ହେଉଛନ୍ତି ଏହି ଚକ୍ରରାଜ ସୁଦର୍ଶନ । ସମସ୍ତ ଅସ୍ତ୍ରଶସ୍ତ୍ରକୁ ନଷ୍ଟ କରିଦେବାର ଅଧିକାର ରହିଛି ତାଙ୍କର ଏବଂ ସେ ପୃଥିବୀର ରକ୍ଷକ । ସୁଦର୍ଶନ ଚକ୍ର ହେଉଛନ୍ତି ଭକ୍ତରକ୍ଷକ, ଦୁଷ୍ଟଦଳନକାରୀ, ସର୍ବପାଳନକାରୀ ସୂର୍ଯ୍ୟ ସଦୃଶ ଅଟନ୍ତି । ସକଳ ଶକ୍ତିର ଆଧାର । ଅଜ୍ଞାନାନ୍ଧକାରର ଧ୍ୱଂସକ ।

ରତ୍ନସିଂହାସନରେ ଅଧିଷ୍ଠିତ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ବାମପାର୍ଶ୍ୱରେ ଦ୍ୱାଦଶ ଆଦିତ୍ୟଙ୍କର ପ୍ରତୀକ ରୂପେ ଚକ୍ରରାଜ ଶ୍ରୀସୁଦର୍ଶନ ଦଣ୍ଡାକାରରେ ବିଦ୍ୟମାନ । ପ୍ରଭୁ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ମା' ସୁଭଦ୍ରାଙ୍କ ସମାନ ପୂଜାର ଯୋଗ୍ୟତା ପ୍ରଦାନ କରି ତାଙ୍କୁ ଚତୁର୍ଦ୍ଧାମୂର୍ତ୍ତି ଭାବେ ପରିଚିତ କରାଯାଏ । ତାତ୍ତ୍ୱିକ ଦୃଷ୍ଟିକୋଣରୁ ଶ୍ରୀବଳଭଦ୍ର ଜାଗ୍ରତ ଅବସ୍ଥାରେ ପ୍ରତୀକ (ବିଶ୍ୱ), ମା' ସୁଭଦ୍ରା ସ୍ୱପ୍ନାବସ୍ଥାର ନିଦର୍ଶନ (ତେଜସ୍), ଶ୍ରୀଜଗନ୍ନାଥ ସୁଷୁପ୍ତି ଅବସ୍ଥାର ସ୍ୱରୂପ (ସର୍ବଜ୍ଞ ସର୍ବେଶ୍ୱର) ଏବଂ ଚକ୍ର ସୁଦର୍ଶନ ତୁରୀୟାବସ୍ଥାର (ନିରୂପାଧିକ ଅବସ୍ଥା) ପ୍ରତୀକ ଅଟନ୍ତି । ଅତଏବ ସେ କେବଳ ଦଣ୍ଡକାରରେ ବିଦ୍ୟମାନ । ବର୍ତ୍ତୁଳାକାରର ଅସ୍ତ୍ର ମାୟାମୁକ୍ତ ହୋଇ ଦଣ୍ଡାକାର । କୋଟିସୂର୍ଯ୍ୟ ସମ ପ୍ରଭା ଶ୍ରୀସୁଦର୍ଶନ ବିଷ୍ଣୁଭକ୍ତି ପ୍ରଦାନ କରନ୍ତି ବୋଲି ପୁରୁଷୋତ୍ତମ ମାହାତ୍ମ୍ୟରେ ବର୍ଣ୍ଣନା କରାଯାଇଛି। ମହାପ୍ରଭୁଙ୍କର ଘୋଷଯାତ୍ରା ସମାପ୍ତି ପରେ ପୃଥକ୍ ଭାବେ ନିଜେ ଏକାକୀ ଶ୍ରୀକ୍ଷେତ୍ର ପରିକ୍ରମା କରନ୍ତି ଏହି ଚକ୍ରରାଜ ଶ୍ରୀସୁଦର୍ଶନ । ପ୍ରଭୁଙ୍କର ଆଜ୍ଞାମାଳ ବହନ କରି ପ୍ରଭୁଙ୍କର ପ୍ରତିନିଧି ରୂପେ ଶ୍ରୀସୁଦର୍ଶନ ବର୍ଷକୁ ତିନିଥର କ୍ଷେତ୍ର ପରିକ୍ରମା କରନ୍ତି । ତିନିଥରଯାକ ଶ୍ରୀସୁଦର୍ଶନ ଦ୍ୱାଦଶ ଚକ୍ର ବିଶିଷ୍ଟ ବିମାନରେ ବିଜେ କରି ଶ୍ରୀକ୍ଷେତ୍ରର ଭଲମନ୍ଦ ଖବର ତଦାରଖ କରନ୍ତି ।

ଆପଣମାନେ ଜାଣିଥିବେ ରାଜା ଅମ୍ବରୀଶଙ୍କ କଥା । ରାଜା ଅମ୍ବରୀଶ ଜଣେ ଶ୍ରେଷ୍ଠ ବିଷ୍ଣୁଭକ୍ତ ଥିଲେ । ଅମ୍ବରୀଶଙ୍କୁ ପରୀକ୍ଷା କରିବା ପାଇଁ ଆସି କ୍ରୋଧ କରି ଋଷି ଦୁର୍ବାସା ଏକ ଭୟଙ୍କର ରାକ୍ଷସକୁ ପ୍ରକଟ କରାଇ ଅମ୍ବରୀଶଙ୍କ ବିନାଶ ପାଇଁ ପଠାଇଲେ । ବିଷ୍ଣୁଭକ୍ତଙ୍କୁ ରକ୍ଷା କରିବା ପାଇଁ ଭଗବାନ ଶ୍ରୀସୁଦର୍ଶନଙ୍କୁ ପ୍ରେରଣ କଲେ । ଶ୍ରୀସୁଦର୍ଶନ ରାକ୍ଷସଙ୍କୁ ହତ୍ୟା କରିବାକୁ ଅନୁଧାବନ କଲେ । ଭୟରେ ଦୁର୍ବାସା ବ୍ରହ୍ମାଙ୍କର ଶରଣ ଗଲେ । ବ୍ରହ୍ମା ନିଜର ଅସମର୍ଥତା ପ୍ରକାଶ କରିବାରୁ ଦୁର୍ବାସା ଶଙ୍କର ଭଗବାନଙ୍କ ନିକଟକୁ ଗଲେ । ଶଙ୍କର ମଧ୍ୟ ବିଷ୍ଣୁଭକ୍ତଙ୍କ ବିରୋଧରେ ଯିବା ପାଇଁ ଅନିଚ୍ଛା ପ୍ରକାଶ କଲେ । ସମସ୍ତେ ଶ୍ରୀସୁଦର୍ଶନଙ୍କର ମହିମା ଜାଣନ୍ତି । ତେଣୁ କେହିହେଲେ ଦୁର୍ବାସାଙ୍କୁ ଶରଣ ଦେଲେ ନାହିଁ ଏବଂ ଶେଷରେ ଦୁର୍ବାସା ବାଧହୋଇ ଭଗବାନ ବିଷ୍ଣୁଙ୍କ ନିକଟକୁ ଗଲେ । ବିଷ୍ଣୁ ମଧ୍ୟ ତାଙ୍କୁ ଶରଣ ଦେଲେ ନାହିଁ ।

ଭଗବାନ୍ ବିଷ୍ଣୁ କହିଲେ - ହେ ଦୁର୍ବାସା ! ମୁଁ ସ୍ୱତନ୍ତ୍ର ହୋଇ ମଧ୍ୟ ଭକ୍ତମାନଙ୍କର ପ୍ରିୟ ଓ ଭକ୍ତ ବତ୍ସଳ ହୋଇଥିବା କାରଣରୁ ଭକ୍ତର ଅଧୀନ । ଏଣୁ ତୁମେ ପୁଣି ସେହି ଅମ୍ବରୀଶଙ୍କ ନିକଟକୁ ଯାଅ, ସେ ହିଁ ତୁମକୁ ରକ୍ଷା କରିବେ । ଏହାପରେ ଦୁର୍ବାସା ବାଧ ହୋଇ ଅମ୍ବରୀଶଙ୍କ ନିକଟକୁ ଯାଇ କ୍ଷମାଭିକ୍ଷା କଲେ । ରାଜା ଅମ୍ବରୀଶ ଦୟାଳୁ ଓ ଧର୍ମଜ୍ଞ ଥିଲେ । ସେ ସୁଦର୍ଶନଙ୍କୁ ସ୍ତୁତି କଲେ- ହେ ଚକ୍ରରାଜ ! ଆପଣ ଅଗ୍ନି, ସୋମ, ସୂର୍ଯ୍ୟ ଆଦି ସମସ୍ତ ତେଜୋମୟ ଦେବତାଙ୍କର ମଧ୍ୟ ତେଜ ସ୍ୱରୂପ ଅଟନ୍ତି । ଅମିତ ପ୍ରଭାବ ଆପଣଙ୍କର ଅଛି। ଆପଣ ଶାନ୍ତ ହୁଅନ୍ତୁ ଏବଂ ଋଷି ଦୁର୍ବାସାଙ୍କୁ କ୍ଷମା କରନ୍ତୁ । ଏହାପରେ ଶ୍ରୀସୁଦର୍ଶନ ଶାନ୍ତ ହେଲେ । ସେ ପର୍ଯ୍ୟନ୍ତ ଶ୍ରୀସୁଦର୍ଶନ ଦୁର୍ବାସାଙ୍କର ଅନୁଧାବନ କରୁଥିଲେ । ଶ୍ରୀସୁଦର୍ଶନ ଚାହିଁଥିଲେ ସଙ୍ଗେ ସଙ୍ଗେ ସେଇଠି ପ୍ରଥମରୁ ଦୁର୍ବାସାଙ୍କୁ ହତ୍ୟା କରିଥାନ୍ତେ, କିନ୍ତୁ ଦୁର୍ବାସା ବିଷ୍ଣୁ ଭକ୍ତର ମହିମା ଜାଣନ୍ତି । ସେଇଆ ହିଁ





ହେଲା । ଏହାପରେ ଶ୍ରୀସୁଦର୍ଶନ ଅନ୍ତର୍ଦ୍ଧାନ ହେଲେ । ସେହି ଚକ୍ରରାଜ ଶ୍ରୀସୁଦର୍ଶନ ଭଗବାନଙ୍କ ନିର୍ଦ୍ଦେଶରେ ଦକ୍ଷିଣ ଭାରତର ମହର୍ଷି ଅରୁଣ ଓ ସ୍ତ୍ରୀ ଜୟନ୍ତୀଙ୍କ କୋଳରେ ପୁତ୍ରରୂପେ ପ୍ରକଟ ହୋଇଥିଲେ । ତାଙ୍କର ନାମ ଥିଲା ନିୟମାନନ୍ଦ ।

ବିଭିନ୍ନ ପ୍ରକାର ଚକ୍ର ରହିଛି ଯଥା– ଶ୍ରୀଚକ୍ର, କାଳଚକ୍ର, ଅଶୋକଚକ୍ର, ଧର୍ମଚକ୍ର, ନୀଳଚକ୍ର ଓ ବିଷ୍ଣୁଚକ୍ର । ଏହି ବିଷ୍ଣୁଚକ୍ର ହିଁ ଶ୍ରୀସୁଦର୍ଶନ । ଶ୍ରୀସୁଦର୍ଶନ ଶବ୍ଦର ଅର୍ଥ ଯାହା ଦେଖିବାକୁ ସୁନ୍ଦର । ଉତ୍ତମ ଦିଗକୁ ଯିଏ ଦୃଷ୍ଟି ଦେବା ପାଇଁ ପ୍ରବର୍ତ୍ତାନ୍ତି ଓ ଉତ୍ତମ ହିଁ ଦେଖାନ୍ତି, ସିଏ ହିଁ ଶ୍ରୀସୁଦର୍ଶନ । ପୁରାଣମାନଙ୍କରେ ଶ୍ରୀସୁଦର୍ଶନ ବିଷୟରେ ବିଭିନ୍ନ କଥା ବର୍ଣ୍ଣିତ ହୋଇଛି। ଦେବଗୁରୁ ବୃହସ୍ପତିଙ୍କ ଦ୍ୱାରା ଅସୁର ନିଧନ ପାଇଁ ନାରାୟଣଙ୍କୁ ଶ୍ରୀସୁଦର୍ଶନଙ୍କୁ ଦିଆଯାଇଥିଲା । ଆହୁରି ମଧ୍ୟ କୁହାଯାଏ ଖାଣ୍ଡବବନ ଦହନ କରିବା ପାଇଁ ଅର୍ଜୁନଙ୍କୁ ଗାଣ୍ଡିବ ଧନୁ, ଶ୍ରୀକୃଷ୍ଣଙ୍କୁ ସୁଦର୍ଶନଚକ୍ର ଅଗ୍ନି ପ୍ରଦାନ କରିଥିଲେ । ସ୍କନ୍ଦପୁରାଣ ବର୍ଣ୍ଣନା ଅନୁଯାୟୀ ଶ୍ରୀସୁଦର୍ଶନ ଚକ୍ର ଈଶ୍ୱରଙ୍କ ଦ୍ୱାରା ଦେବତାମାନଙ୍କର ତେଜରେ ନିର୍ମିତ ଏବଂ ଏହା ସାହାଯ୍ୟରେ ଶଙ୍କର ଜଳନ୍ଧରକୁ ବଧ କରିଥିଲେ । ବ୍ରହ୍ମପୁରାଣରେ ବର୍ଣ୍ଣିତ ସୂର୍ଯ୍ୟଙ୍କର ତେଜରୁ ତାଙ୍କର ପତ୍ନୀ ସଂଜ୍ଞାଙ୍କର ସ୍ୱାର୍ଥସିଦ୍ଧି ପାଇଁ ଶ୍ରୀସୁଦର୍ଶନଙ୍କର ସୃଷ୍ଟି । ବିଶ୍ୱକର୍ମା ସୂର୍ଯ୍ୟଙ୍କର ଶରୀରରୁ କାଟିଥିବା କିରଣମାନଙ୍କୁ ନଷ୍ଟ ନ କରି ସେଥିରେ ଶ୍ରୀସୁଦର୍ଶନ ଚକ୍ର ନିର୍ମାଣ କରିଥିଲେ । ରାମାୟଣରେ ବର୍ଣ୍ଣିତ ଶ୍ରୀସୁଦର୍ଶନ ହେଉଛନ୍ତି ରାମଭ୍ରାତା ଭରତ ।

ଏଇ ହେଉଛନ୍ତି ସେହି ଶ୍ରୀସୁଦର୍ଶନ, ଯାହାଙ୍କ ପ୍ରଭାବରୁ ଭଗବାନ ଅଧିକ କ୍ଷମତାଶାଳୀ ହୋଇ ପାରିଛନ୍ତି । ଶିଶୁପାଳ ବଧ ଶ୍ରୀସୁଦର୍ଶନଙ୍କ ଦ୍ୱାରା, ଗଜ–କୁମ୍ଭୀର ଯୁଦ୍ଧ ଶ୍ରୀସୁଦର୍ଶନଙ୍କ ଦ୍ୱାରା । ମହାଭାରତ ଯୁଦ୍ଧରେ ଶ୍ରୀସୁଦର୍ଶନଙ୍କ ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ ଥିଲା । ଶ୍ରୀସୁଦର୍ଶନ ହେଉଛନ୍ତି ବିଷ୍ଣୁଙ୍କର ପ୍ରିୟତମ ଆୟୁଧ ଓ ସେବକ ମଧ୍ୟ । ଶ୍ରୀସୁଦର୍ଶନଙ୍କ ଗତି ଅତି ତୀବ୍ର । କ୍ଷଣକ ମଧ୍ୟରେ ସେ ଲକ୍ଷ୍ୟ ସ୍ଥଳରେ ପହଞ୍ଚି ପାରନ୍ତି । କୌଣସି ସ୍ଥାନ ତାଙ୍କ ପାଇଁ ଅଭେଦ୍ୟ ଓ ଅଗମ୍ୟ ନୁହେଁ । ବିଷ୍ଣୁଙ୍କର ଦକ୍ଷିଣ ହସ୍ତର ତର୍ଜନୀ ଅଙ୍ଗୁଷ୍ଠିରେ ସେ ସର୍ବଦା ଘୂର୍ଣ୍ଣାୟମାନ ଅବସ୍ଥାରେ ଥାଆନ୍ତି । ସେ ହେଉଛନ୍ତି ଅବ୍ୟର୍ଥ ଓ ସର୍ବାୟୁଧ ବିନାଶକ ।

ବୌଦ୍ଧମାନେ ଏହି ସୁଦର୍ଶନଙ୍କୁ ଧର୍ମ ଚକ୍ର ବୋଲି ବିଚାର କରିଥାନ୍ତି । ବୈଷ୍ଣବଙ୍କର ଚତୁର୍ବ୍ୟୂହ ଉପାସନାରେ ଶ୍ରୀଜଗନ୍ନାଥ ବାସୁଦେବ, ବଳଭଦ୍ର ସଙ୍କର୍ଷଣ, ସୁଭଦ୍ରା ପ୍ରଦ୍ୟୁମ୍ନ ଓ ସୁଦର୍ଶନ ଅନିରୁଦ୍ଧ ରୂପେ କଳ୍ପିତ ହୋଇଥାନ୍ତି ।

ଦ୍ୱାପର ଯୁଗର ଶେଷରେ ଶ୍ରୀକୃଷ୍ଣ ନିଜର ପ୍ରିୟ ପୁତ୍ର ପ୍ରଦ୍ୟୁମ୍ନଙ୍କର ଶିରଚ୍ଛେଦନ ପାଇଁ ଶ୍ରୀସୁଦର୍ଶନଙ୍କୁ ଆଦେଶ ଦେଲେ । ପ୍ରଭୁଙ୍କର ଆଦେଶରେ ଶ୍ରୀସୁଦର୍ଶନ ବାଧ୍ୟ ହୋଇ ସେୟା ହିଁ କଲେ । ପ୍ରଦ୍ୟୁମ୍ନର ଶିର କାଟିସାରି ସମୁଦ୍ରରେ ସ୍ନାନ କରି ପ୍ରଭୁଙ୍କୁ କହିଲେ, ପ୍ରଭୋ ! ଆପଣଙ୍କ ଆଦେଶରେ ଅନେକ ନିଷ୍ଠୁର କାର୍ଯ୍ୟ କରିଛି । ଦ୍ୱାପରରେ ଏହି ଶେଷ ସମୟରେ ମୁଁ ଆଉ ନିଷ୍ଠୁର ହେବା ପାଇଁ ଇଚ୍ଛାକରୁ ନାହିଁ । ମୁଁ ଏବେ ମା' ଜଗଦମ୍ବାଙ୍କ ନିକଟକୁ ଚାଲି ଯାଉଛି । କାରଣ ଶ୍ରୀସୁଦର୍ଶନ ଜାଣିଥିଲେ ଦ୍ୱାପର ଶେଷରେ ପ୍ରଭୁ ଦେହତ୍ୟାଗ କରିବେ । ପ୍ରଭୁ ସିନା ରହିଲେ ସେ ପ୍ରଭୁଙ୍କ ସହ ରହିବେ । ତେଣୁ ସେ ମା' ଜଗଦମ୍ବାଙ୍କ ନିକଟକୁ ଚାଲିଗଲେ । ପୁଣି କଳିଯୁଗରେ ଆସି ପ୍ରଭୁ ଶ୍ରୀଜଗନ୍ନାଥଙ୍କର ହସ୍ତରେ ମଣ୍ଡିତ ହେଲେ ।

ଦେଉଳବେଡା କଲୋନୀ
ତାଳଚେର, ଘର ନଂ – ୧ ବି – ୨୦
ପିନ୍ – ୭୫୯୧୦୨



# ରଥ ଓ ରଥଯାତ୍ରା

ପବିତ୍ର ମୋହନ ବାରିକ

ରଥ ଶବ୍ଦର ଅର୍ଥରୁ ଜଣାଯାଏ ଦେବତାମାନେ ଜଗତର କଲ୍ୟାଣ ସାଧନରେ, ଶତ୍ରୁ ସଂହାର ପାଇଁ ତଥା ଲୀଳା ବିନୋଦ ନିମିତ୍ତ ରଥ ବ୍ୟବହାର କରୁଥିଲେ । ରଥର ବହୁବିଧ ଅର୍ଥ ଯଥା– (୧) ଗାଡ଼ି ବା ବାହକ, (୨) ଯୁଦ୍ଧରଥ, (୩) ନାୟକ, (୪) ପାଦ, (୫) ଅବୟବ, (୬) ଶରୀର, (୭) ଭାଗ, (୮) ନରକୁଳ ଇତ୍ୟାଦି । ରଥ ଶବ୍ଦର ଅର୍ଥ ବ୍ୟାପକ ଅଟେ । ପ୍ରାଚୀନ ସମୟରେ ଦ୍ରୁତ ଗମନ ଓ ପରିବହନ ବ୍ୟବସ୍ଥାର ଏକ ମାଧ୍ୟମ ଥିଲା ରଥ । ଦେବ, ଦାନବ, ରାଜା–ମହାରାଜାମାନେ ରଥାରୂଢ଼ ହୋଇ ଯୁଦ୍ଧ କ୍ଷେତ୍ରକୁ ଗମନ କରୁଥିଲେ ।  ରଥ ଶବ୍ଦରୁ ରଥୀ ଓ ମହାରଥୀ ଶବ୍ଦ ଆନୀତ । ମହାଭାରତ ଯୁଦ୍ଧରେ ରଥୀ, ମହାରଥୀମାନେ ନିଜ– ନିଜର ରଥାରୋହଣ କରି କୁରୁକ୍ଷେତ୍ର ଯୁଦ୍ଧରେ ଅବତୀର୍ଣ୍ଣ ହୋଇଥିଲେ । ମହାଭାରତ ଯୁଦ୍ଧରେ ମଧ୍ୟମ ପାଣ୍ଡବ ଅର୍ଜୁନଙ୍କ ରଥରେ ସାରଥୀ ହୋଇଥିଲେ ଭଗବାନ କୃଷ୍ଣ । ତାଙ୍କୁ ତତ୍ତ୍ୱ ଜ୍ଞାନ ଓ ଜୀବ ଦର୍ଶନର ବାଣୀ ପ୍ରଦାନ କରିଥିଲେ । ଦେବତାମାନେ ରଥାରୂଢ଼ ହୋଇ ରଣକ୍ଷେତ୍ରରେ ଉପସ୍ଥିତ ହେଉଥିବାର ପ୍ରମାଣ ପୁରାଣମାନଙ୍କରେ ଦେଖିବାକୁ ମିଳେ । ରାବଣ, ମହିଷାସୁର ଇତ୍ୟାଦି ରାକ୍ଷସ ରଥର ସାହାଯ୍ୟ ନେଇ ଯୁଦ୍ଧଭୂମିକୁ ଆସୁଥିଲେ । ଦଶାନନ ରାବଣର ରଥର ନାମ ଥିଲା ପୁଷ୍ପକ ।

ଦ୍ୱାପର ଯୁଗରେ କୃଷ୍ଣ ଓ ବଳରାମଙ୍କୁ ଅକ୍ରୂର ରଥରେ ବସାଇ ଗୋପକଟକରୁ ମଥୁରା ନଗରୀକୁ ଧନୁଯାତ୍ରା ଦେଖିବା ନିମନ୍ତେ ନେଇଥିଲେ । ପୁରାଣ, ଇତିହାସ ଓ ଲୋକକଥାରେ ରଥର ଅତି ସୁନ୍ଦର ଓ ଚମତ୍କାର ବର୍ଣ୍ଣନା ଦେଖିବାକୁ ମିଳେ । ବେଦ, ବେଦାନ୍ତ ଓ ଉପନିଷଦ ପ୍ରଭୃତିରେ ରଥର ତତ୍ତ୍ୱ , ଶୈଳୀ ଓ ପରମ୍ପରା ଇତ୍ୟାଦି ବିସ୍ତୃତ ଭାବରେ ଉଲ୍ଲେଖ ଅଛି । ସେହି ସମୟରୁ ଚଳିଆସୁଥିବା ରଥର ବିଧାନ ଅନ୍ୟ ରଥଠାରୁ ପୃଥକ୍ ଥିବାର ମନେ ହେଉଥାଏ । ରାମ–ରାବଣ ଯୁଦ୍ଧରେ ରଥର ବ୍ୟବହାର କରାଯାଇଥିଲା, ମହାଭାରତର କୁରୁକ୍ଷେତ୍ର ଯୁଦ୍ଧରେ ରଥର ବହୁଳ ବ୍ୟବହାର ହୋଇଥିବାର ଏବଂ ପୁରାଣରେ ସୂର୍ଯ୍ୟଙ୍କର ସପ୍ତାଶ୍ୱ ଶୋଭିତ ରଥ କଥା ବର୍ଣ୍ଣନା ରହିଛି । ଦେବରାଜ ଇନ୍ଦ୍ର ବୃତ୍ତାସୁରକୁ ନିଧନ କରିବା ନିମନ୍ତେ ଦଧିଚି ଋଷିଙ୍କ ଅସ୍ଥିରେ ବଜ୍ର ନିର୍ମାଣ କରିଥଲେ । ବଜ୍ରରେ ବୃତ୍ତାସୁର ନିଧନ ହେବା ସହିତ ବଜ୍ର ଚାରିଭାଗରେ ବିଭକ୍ତ ହୋଇଥିଲା । ବଜ୍ରର ତୃତୀୟ ଭାଗ ମର୍ତ୍ତ୍ୟଲୋକରେ ରଥ ରୂପରେ ବ୍ୟବହାର ହୋଇଥିଲା । ହିନ୍ଦୁ ଦର୍ଶନଶାସ୍ତ୍ର ବା ଭାରତୀୟ ପରମ୍ପରାରେ ରଥକୁ ସାତ ଭାଗରେ ବିଭକ୍ତ କରାଯାଇଥାଏ । ଯଥା– ସୂର୍ଯ୍ୟରଥ, ବିଷ୍ଣୁରଥ, ଶକ୍ତିରଥ, କନ୍ଦର୍ପରଥ, ଆତ୍ମାରଥ, ଯୋଗରଥ ଓ ନୃପରଥ । କ୍ଷତ୍ରୀୟ ରାଜାମାନେ ଯୁଦ୍ଧ କ୍ଷେତ୍ରରେ ବ୍ୟବହାର କରୁଥିବା ରଥକୁ 'ଅଷ୍ଟରଥ' କୁହାଯାଏ ।

ଶରୀର ଏକରଥ, ଏଥିରେ ଆତ୍ମାକୁ ରଥୀ, ବୁଦ୍ଧିକୁ ସାରଥୀ ଓ ମନକୁ ଅଶ୍ୱରୂପେ ବିବେଚନା କରାଯାଇଅଛି । ରଥ ଓ ରଥଯାତ୍ରା ଭାରତୀୟ ସଂସ୍କୃତିରେ ଏକ ପ୍ରମୁଖ ଭୂମିକା ନେଇଛି । ରଥଯାତ୍ରା ପାଇଁ ଆବଶ୍ୟକ ଜିନିଷ ମଧ୍ୟରେ ଚକ, ପତାକା, ବର୍ତ୍ତୁଳ, କଳସ, ପାରାଭାଡ଼ି, ବିଭିନ୍ନ ଦେବା–ଦେବୀଙ୍କ ସାରଥୀ, ଡ଼ାହୁକ, ଅଶ୍ୱ, ରଥ ଦଉଡ଼ି ଓ





କପଡ଼ା ଇତ୍ୟାଦି ଅନ୍ୟତମ ଅଟେ । ରଥ ଓ ରଥଯାତ୍ରା ହିନ୍ଦୁମାନଙ୍କର ଧର୍ମ, ଦର୍ଶନ, ସାହିତ୍ୟ ସମାଜ ଓ ରାଜନୀତି ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ ଏବଂ ବର୍ତ୍ତମାନ ସମୟରେ ମଧ୍ୟ ଏହାର ସଂପୃକ୍ତି ଯଥେଷ୍ଟ ରହିଛି । ରଥ ଓ ରଥଯାତ୍ରା ସାଂପ୍ରତିକ ସମୟରେ ବ୍ୟାପକ ଓ ବିସ୍ତୃତ ରୂପରେଖରେ ଆତ୍ମପ୍ରକାଶ କରିଛି ଏବଂ ସର୍ବଧର୍ମ ସମନ୍ୱୟର ଏକ ପ୍ରତୀକ ଭାବେ ଏହା ଦଣ୍ଡାୟମାନ । ରଥଯାତ୍ରାର ବ୍ୟାପକ ଓ ବିସ୍ତୃତ ବର୍ଣ୍ଣନା ବିଭିନ୍ନ ପୁରାଣ ଯଥା- ବ୍ରହ୍ମପୁରାଣ, ନାରଦ ପୁରାଣ, ନୀଳାଦ୍ରି ମହୋଦୟଃ, କପିଳ ସଂହିତା, ଭବିଷ୍ୟ ପୁରାଣ, ପଦ୍ମ ପୁରାଣ, ବାମ ଦେବ ସଂହିତା, ଦେବୀ ପୁରାଣ ଓ ଶକ୍ତି ପଲ୍ଲବ ଆଦି ପୁରାଣ ତନ୍ତ୍ରଶାସ୍ତ୍ରରେ ବର୍ଣ୍ଣନା କରାଯାଇଅଛି । ବିଭିନ୍ନ ପୁରାଣରେ ଦେବାଦେବୀଙ୍କର ଭିନ୍ନ-ଭିନ୍ନ ସମୟରେ ରଥଯାତ୍ରା ହେଉଥିବାର କଥା ଉଲ୍ଲେଖ କରାଯାଇଅଛି । ଭାଦ୍ରବ ମାସରେ ସୂର୍ଯ୍ୟ ଦେବଙ୍କର ରଥଯାତ୍ରା ସଂପର୍କରେ ବର୍ଣ୍ଣନା ରହିଛି । କୂର୍ମ ଓ ଭବିଷ୍ୟପୁରାଣରେ, ପଦ୍ମ ଓ ବରାହ ପୁରାଣରେ ଭଗବାନ କୃଷ୍ଣଙ୍କର ରଥଯାତ୍ରା କାର୍ତ୍ତିକ ମାସରେ ଆୟୋଜିତ ହେବା କଥା କୁହାଯାଇଅଛି । ଶିବ ଠାକୁରଙ୍କ ରଥଯାତ୍ରା ଚୈତ୍ର ମାସରେ ପାଳନ କରାଯାଉଥିବାର କଥା ମତ୍ସ୍ୟ ଓ ବରାହ ପୁରାଣରେ କୁହାଯାଇଅଛି । କାର୍ତ୍ତିକ ମାସରେ ଦେବୀଙ୍କର ରଥଯାତ୍ରା ପ୍ରସଙ୍ଗ ଲିଖିତ ଅଛି । ଦେବୀ ପୁରାଣ ଓ ଶକ୍ତି ପଲ୍ଲବ ତନ୍ତ୍ର ଶାସ୍ତ୍ରରେ ଓ ସ୍କନ୍ଦ ପୁରାଣରେ କାର୍ତ୍ତିକ ଶୁକ୍ଳ ଦଶମୀରେ ବିଷ୍ଣୁଙ୍କ ରଥଯାତ୍ରା କଥା ଉଲ୍ଲେଖ ଅଛି । ପୁରୁଷୋତ୍ତମ ମାହାତ୍ମ୍ୟରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ନବଦିନାତ୍ମକ ଘୋଷଯାତ୍ରା ପ୍ରସଙ୍ଗ ଉଲ୍ଲେଖ ଅଛି । ପଞ୍ଚସଖା ଯୁଗର ଅନ୍ୟତମ ସିଦ୍ଧି ସାଧକ ବଳରାମ ଦାସ କୃତ ଦାଣ୍ଡି ରାମାୟଣରେ ଶ୍ରୀଜଗନ୍ନାଥଙ୍କର ରଥର ନାମ ଗରୁଡ଼ଧ୍ୱଜ ଭାବରେ ବର୍ଣ୍ଣନା କରାଯାଇଥିବା ବେଳେ ବାଲ୍ମୀକି ରାମାୟଣରେ ରାମଚନ୍ଦ୍ରଙ୍କ ରଥର ନାମ ନନ୍ଦିଘୋଷ ନାମିତ କରାଯାଇଛି । ବ୍ୟାସଦେବଙ୍କ ମହାଭାରତରେ ଜୟଦ୍ରଥ ରଥର ନାମ ଉଲ୍ଲେଖ ରହିଛି । 'ବୈଦେହୀଶ ବିଳାସ'ରେ ନନ୍ଦିଘୋଷର କଥା କୁହାଯାଇଅଛି । ସଂସ୍କୃତ ଭାଗବତରେ କୃଷ୍ଣଙ୍କ ରଥକୁ ଗରୁଡ଼ଧ୍ୱଜ ବୋଲି ନାମିତ କରାଯାଇଅଛି । ସାରଳା ଦାସ ବିରଚିତ ଓଡ଼ିଆ ମହାଭାରତର ଭୀଷ୍ମ ପର୍ବରେ ଅର୍ଜ୍ଜୁନଙ୍କ ରଥର ନାମ ନନ୍ଦିଘୋଷ ବୋଲି ଉଲ୍ଲେଖ ଅଛି । ସଂସ୍କୃତ ଓ ଓଡ଼ିଆ ପୁରାଣମାନଙ୍କରେ ବିଭିନ୍ନ ଦେବତାଙ୍କର ରଥର ନାମ ଭିନ୍ନ-ଭିନ୍ନ ରଖାଯାଇଅଛି ।

ରଥଯାତ୍ରା ପରିକଳ୍ପନା ଆମ ଐତିହ୍ୟ ଓ ସଂସ୍କୃତିର ଏକ ଅବଚ୍ଛେଦ୍ୟ ଅଙ୍ଗ । ଏହାର ପ୍ରାଚୀନତା ସଂପର୍କରେ ଗବେଷକମାନେ ଭିନ୍ନ-ଭିନ୍ନ ମତ ରଖିଥାନ୍ତି । ବିଦ୍ୱାନ୍‌ମାନଙ୍କ ମଧ୍ୟରେ ପୂର୍ବେ ରଥଯାତ୍ରା, ପର୍ବଯାତ୍ରା ବା ଦେବଯାତ୍ରା ନାମରେ ଖ୍ୟାତିଲାଭ କରିଥିଲା । ବାହମନୀ ନୃପତି ରଥଯାତ୍ରା ଅବସରରେ ଚାରିଗୋଟି ଗ୍ରାମ ଦାନ କରିଥିବାର ଅଭିଲେଖ ଗାରିୟ ପ୍ରମାଣ ରହିଛି । ରାଜସ୍ଥାନର ଜୟସିଂହଙ୍କ ରଥଯାତ୍ରା ପ୍ରସଙ୍ଗ ଅପିନେରୀ ତାମ୍ରଫଳକରେ ଉଲ୍ଲେଖ ଅଛି । ଜୈନ ତୀର୍ଥଙ୍କର ଶାନ୍ତି ନାଥଙ୍କ ଗୁଜରୀ ଯାତ୍ରା ବିଷୟର ମଧ୍ୟ ଐତିହାସିକ ପ୍ରମାଣ ରହିଛି । ଖ୍ରୀଷ୍ଟପୂର୍ବ ୨୬୧ର ଐତିହାସିକ କଳିଙ୍ଗ ଯୁଦ୍ଧର ପରବର୍ତ୍ତୀ ସମୟରେ ସମ୍ରାଟ୍ ଅଶୋକ ଧର୍ମଚକ୍ର ପ୍ରବର୍ତ୍ତନ ନିମନ୍ତେ ବୌଦ୍ଧ ରଥଯାତ୍ରାର ଆୟୋଜନ କରିଥିଲେ । ଭଗବାନ ବୁଦ୍ଧଙ୍କର ଯେତେବେଳେ ସଂସାର ପ୍ରତି ବିରାଗ ମନୋଭାବ ସୃଷ୍ଟି ହେଲା ପିତା ଶୁଦ୍ଧୋଦନ ତାଙ୍କର ମନରେ ପରିବର୍ତ୍ତନ ଆଣିବା ପାଇଁ ରଥରେ ବସାଇ ନଗର ପରିକ୍ରମା କରାଇଥିଲେ । ଦିବ୍ୟ ଜ୍ଞାନ ଲାଭ ନିମନ୍ତେ ଶାକ୍ୟମୁନି, ଏସିଆର ଆଲୋକ, ତଥାଗତ ଭଗବାନ ବୁଦ୍ଧ ରଥାରୂଢ଼ ହୋଇ ରାଜବାଟୀ ପରିତ୍ୟାଗ କରିଥିଲେ । ହିନ୍ଦୁଧର୍ମ ଧାରାରେ ସୂର୍ଯ୍ୟଙ୍କୁ ରଥାରୂଢ଼ ଦେବତା ରୂପେ ଗ୍ରହଣ କରିଥାନ୍ତି, ଯାହା ଭବିଷ୍ୟ ପୁରାଣରେ ବର୍ଣ୍ଣିତ ଅଛି । ଏହି ପୁରାଣରେ ରଥ ସପ୍ତମୀ ବ୍ରତ କଥା ତଥା ସୂର୍ଯ୍ୟଙ୍କ ରଥଯାତ୍ରା କଥା ଉଲ୍ଲେଖ ଅଛି । ବ୍ରାହ୍ମଣ୍ୟ ଧର୍ମ ବ୍ୟତୀତ ଜୈନ ଓ ବୌଦ୍ଧ ଧର୍ମାବଲମ୍ବୀମାନେ ରଥଯାତ୍ରାରେ ଅଂଶ ଗ୍ରହଣ କରୁଥିଲେ । ବୁଦ୍ଧ ଦେବଙ୍କ ଦେହାବଶେଷକୁ ରଥରେ ସ୍ଥାପନ ପୂର୍ବକ ବୌଦ୍ଧମାନେ ଏକ ନିର୍ଦ୍ଦିଷ୍ଟ ସମୟରେ ନେବା କଥା ଚୀନ ପରିବ୍ରାଜକ ଫାହିୟାନ ତାଙ୍କ ଭ୍ରମଣ ବୃତ୍ତାନ୍ତରେ ବର୍ଣ୍ଣନା କରିଛନ୍ତି ।

ବୁଦ୍ଧଦେବଙ୍କ ପବିତ୍ର ଜନ୍ମୋତ୍ସବର ସ୍ମୃତି ସ୍ୱରୂପ ବୌଦ୍ଧମାନେ ଏହି ରଥଯାତ୍ରାର ଆୟୋଜନ କରୁଥିବାର ଗବେଷକମାନେ ମତବ୍ୟକ୍ତ କରିଥାନ୍ତି । ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱ ସମୟରେ ଭାରତ ଭ୍ରମଣରେ ଆସିଥିବା ଚୀନ୍ ଧର୍ମଯାଜକ ଫାହିୟାନ ରାଜଧାନୀ ପାଟଳୀପୁତ୍ର ନଗରୀରେ ମହାଯାନ ବୌଦ୍ଧମାନେ ରଥଯାତ୍ରା ମହାସମାରୋହରେ ପାଳନ କରିଥିବାର ବର୍ଣ୍ଣନା କରିଛନ୍ତି । ତିରିଶି ଫୁଟରୁ ଅଧିକ ଉଚ୍ଚତା ବିଶିଷ୍ଟ ସୁନାରୂପାରେ ସୁସଜ୍ଜିତ ବିରାଟ ରଥମାନ ରଥଯାତ୍ରା ପାଇଁ ପ୍ରସ୍ତୁତ ହେଉଥିବାର କଥା ଫାହିୟାନ ଉଲ୍ଲେଖ କରିଛନ୍ତି । ସିଂହଳରେ ବୈଶାଖ ଶୁକ୍ଳ ତ୍ରୟୋଦଶୀ ଦିନ ଭଗବାନ ବୁଦ୍ଧଙ୍କ ଦନ୍ତକୁ ହାତୀ ଉପରେ ରଖି ମହାସମାରୋହରେ ନଗର ପରିକ୍ରମା କରାଉଥିଲେ ଓ ଶେଷରେ ଏକ ମଣ୍ଡପରେ ରଖାଯାଇ ପୂଜାପାଠ କରାଯାଏ । ଛଅ ଦିନ ପରେ ବୁଦ୍ଧଦେବଙ୍କ ପବିତ୍ର ଦନ୍ତ ପୂର୍ବସ୍ଥାନକୁ ଫେରି ଆସୁଥିଲା । ଏହି ବୁଦ୍ଧ ପରମ୍ପରା ପରବର୍ତ୍ତୀ ସମୟରେ ହିନ୍ଦୁ ଦେବା-ଦେବୀଙ୍କ ରଥଯାତ୍ରାର ପୂର୍ବ ରୂପ ବୋଲି କିଛି ଗବେଷକମାନେ ମତବ୍ୟକ୍ତ କରନ୍ତି । ଆଦିବାସୀ ସଂସ୍କୃତିରେ ରଥଯାତ୍ରା ପରମ୍ପରା ଆଦି ଚିତ୍ର ବାରି ହୋଇପଡେ । ପ୍ରକୃତରେ ଉପାସକ ତଥା ପ୍ରକୃତିକୋଳରେ ମଣିଷ ଆଦିବାସୀମାନେ କୃଷି କ୍ଷେତ୍ରରେ ଉର୍ବରତା ଓ ଅଧିକ ଅମଳ ନିମନ୍ତେ ରଙ୍ଗ- ବେରଙ୍ଗର ପତାକାରେ ଆଚ୍ଛାଦିତ ରଥକୁ ଗ୍ରାମ ପରିକ୍ରମା କରିଥାନ୍ତି । ଚାରିଚକ ବିଶିଷ୍ଟ ରଥରେ କୌଣସି ଦେବତା ପୂଜା ପାଉନଥିଲେ । ରଥ ପରିକ୍ରମା ପରେ ରନ୍ଧା ଯାଇଥିବା ଅନ୍ନଯୁକ୍ତ ମାଟିପାତ୍ରକୁ ଶସ୍ୟ କ୍ଷେତ୍ରରେ ପକାଇଥାନ୍ତି । ପୂଜା ପରେ ରଥ ଗ୍ରାମକୁ ଫେରି ଆସୁଥିଲା । ଓଡିଶାର କୋରାପୁଟ ଜିଲ୍ଲାର କୋୟା ଓ ଗଣ୍ଡ ପ୍ରଭୃତି ଜନଜାତିର ରଥ ପରିଭ୍ରମଣର ଆଭାସ ମିଳେ । ମାଲକାନଗିରିରେ ପ୍ରତି ଦୁଇ ବର୍ଷରେ କୋରାରାଜୁ, ଜଗାରାଜୁ ଓ ସୁଭଦ୍ରା ମା'ଙ୍କର ରଥଯାତ୍ରା ଅନୁଷ୍ଠିତ ହୁଏ । ଆଦିବାସୀ ସଂସ୍କୃତିର ରଥଯାତ୍ରା ସହିତ ଶ୍ରୀଜଗନ୍ନାଥ ସଂସ୍କୃତିର ରଥଯାତ୍ରାର ନିବିଡ ସଂପର୍କ ଥିବାର ଗବେଷକମାନେ ମତବ୍ୟକ୍ତ କରନ୍ତି । ଶ୍ରୀଲଙ୍କାରେ ଭଗବାନ ବୁଦ୍ଧଙ୍କର ଦନ୍ତ ରଥଯାତ୍ରା ପରି ନେପାଳରେ ବୈଶାଖ ମାସରେ ଭୈରବ ଓ ଭୈରବୀ ତଥା କୁମାରୀ ରଥ ପରିକ୍ରମା କରିବାର ବିଧି ରହିଛି । ଜାମ୍ମୁ ଓ ହିମାଚଳ ପ୍ରଦେଶରେ ମନସା ଦେବୀଙ୍କର ରଥଯାତ୍ରା ଅନୁଷ୍ଠିତ ହେଉଥିଲା । ୟୁରୋପର ସିସିଲ ଦ୍ୱୀପରେ, ଭାରତର ଉଜ୍ଜୟିନୀ ଜୈନ ତୀର୍ଥଙ୍କରମାନଙ୍କର ବିଗ୍ରହକୁ ରଥରେ ସ୍ଥାପନ କରି ନଗର ପରିକ୍ରମା କରାଯାଉଥିଲା । ମହାମେଘବାହାନ ଐର ଖାରବେଳଙ୍କ ସମୟରେ ଜୈନମାନଙ୍କର ଚୈତ୍ୟଯାତ୍ରାର ସଂପର୍କରେ ଗବେଷକମାନେ ତଥ୍ୟ ସହ ପ୍ରମାଣ ଉପସ୍ଥାପନ କରନ୍ତି ।

ଐତିହ୍ୟ ବିମଣ୍ଡିତ ବିଭିନ୍ନ ସ୍ଥାପତ୍ୟ, ଭାସ୍କର୍ଯ୍ୟ ଓ ଚିତ୍ରକଳାକୁ ଅନୁଧ୍ୟାନ କଲେ ଜଣାଯାଏ, ଭାରତବର୍ଷରେ ରଥଯାତ୍ରା ଖ୍ରୀଷ୍ଟପୂର୍ବ ସମୟରୁ ପ୍ରଚଳିତ ଥିଲା । ମୌର୍ଯ୍ୟ ଯୁଗର ବିଶିଷ୍ଟ ବିଦ୍ୱାନ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ଦେବତାମାନଙ୍କର ରଥଯାତ୍ରାର ବର୍ଣ୍ଣନା ଥିବାରୁ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରୁ ରଥଯାତ୍ରାର ପ୍ରଚଳନ ଥିବାର ବିଶ୍ୱାସ କରାଯାଏ । ଓଡିଶାରେ ରଥଯାତ୍ରା ବୌଦ୍ଧ ଯୁଗର ପୂର୍ବବର୍ତ୍ତୀ ବୋଲି ପୁରୀ ଗେଜେଟିୟର୍ସରେ ଉଲ୍ଲେଖ ଅଛି । ରଥଯାତ୍ରା ସଂପର୍କରେ ଫାହିୟାନ ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀ ଓ ଅନ୍ୟତମ ସୁପ୍ରସିଦ୍ଧ ଚୀନ୍ ପରିବ୍ରାଜକ ହୁଏନ୍‌ସାଂ ସେମାନଙ୍କର ବିବରଣୀରେ ଉଲ୍ଲେଖ କରିଛନ୍ତି । ବୁଦ୍ଧଙ୍କ ମୂର୍ତ୍ତିକୁ ରଥରେ ସ୍ଥାପନ କରି ରଥଯାତ୍ରା ଉତ୍ସବ ପାଳନ ହେଉଥିବା ବିଷୟ ଦୁଇ ପ୍ରସିଦ୍ଧ ପରିବ୍ରାଜକ ନିଜ-ନିଜର ପୁସ୍ତକରେ ବର୍ଣ୍ଣନା କରିଛନ୍ତି ।

ଯଯାତି କେଶରୀଙ୍କ ରାଜତ୍ୱ ସମୟରେ ରଥଯାତ୍ରାର ପ୍ରଚଳନ ହୋଇଥିବାର କଥା ଲେଖକ ଭିକାରୀ ପଟ୍ଟନାୟକ ସ୍ୱରଚିତ ପୁସ୍ତକ 'ରଥ ଚକଡ଼ା'ରେ ଉଲ୍ଲେଖ କରିଛନ୍ତି । ପ୍ରଖ୍ୟାତ ଐତିହାସିକ କେଦାର ନାଥ ମହାପାତ୍ରଙ୍କ ଦୃଷ୍ଟିକୋଣରେ ଓଡିଶାରେ ରଥ ପରମ୍ପରା ଦ୍ୱାଦଶ ଶତାବ୍ଦୀରୁ ଆରମ୍ଭ ହୋଇଛି । ଗଙ୍ଗ ବଂଶର ରାଜତ୍ୱ ସମୟରେ ଶ୍ରୀଜୀଉମାନଙ୍କର ଦାରୁ ବିଗ୍ରହ ନିର୍ମିତ ହେବାପରେ ତଥା





ଦଇତାମାନେ ସେବା ନିଯୁକ୍ତି ପାଇବାପରେ ରଥଯାତ୍ରା ପ୍ରଚଳନ କରାଯାଇଅଛି ବୋଲି ସୁନାମଧନ୍ୟ ଐତିହାସିକ ତଥା ପ୍ରତ୍ନତତ୍ତ୍ୱବିଦ୍ ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ ମତସାବ୍ୟସ୍ତ କରିଛନ୍ତି । ଓଡିଶାରେ ରଥ ଓ ରଥଯାତ୍ରା ପରମ୍ପରାର ଅନେକ ପ୍ରାମାଣିକ ତଥ୍ୟ ଇତିହାସ, ଲୋକକଥା, ସାହିତ୍ୟ ପ୍ରତ୍ନତାତ୍ତ୍ୱିକ ଅବଶେଷମାନଙ୍କରୁ ଦେଖିବାକୁ ମିଳେ । ଓଡ଼ିଶାରେ ତଥା ଶ୍ରୀକ୍ଷେତ୍ର ପୁରୀରେ ରଥଯାତ୍ରା ସଂପର୍କରେ ଏକ ସୁନ୍ଦର ପୌରାଣିକ କଥା ଲୋକଲୋଚନକୁ ଆସେ । ବିଷ୍ଣୁ ଭକ୍ତ ପ୍ରହଲ୍ଲାଦ ପ୍ରଭୁଙ୍କ ଆଶୀର୍ବାଦରୁ ସ୍ୱର୍ଗରେ ଇନ୍ଦ୍ରପଦ ଲାଭ କଲେ । ସମୟକ୍ରମେ ସ୍ୱର୍ଗ ସୁଖର ମୋହରେ ପ୍ରହଲ୍ଲାଦ ଭଗବାନ ଶ୍ରୀବିଷ୍ଣୁଙ୍କୁ ଭୁଲିଗଲେ । ପ୍ରଭୁ ତାଙ୍କୁ ଦେଖା କରିବା ପାଇଁ ଇନ୍ଦ୍ରଭବନରେ ଉପସ୍ଥିତ ହେଲେ । ସେ ସଚୀଙ୍କ ସହିତ ପଶା ଖେଳୁଥିଲେ, ବିଷ୍ଣୁଙ୍କ ଉପସ୍ଥିତିକୁ ଜାଣି ପାରିଲେ ନାହିଁ । ପ୍ରହଲ୍ଲାଦଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ବିଷ୍ଣୁ ସେଠାରେ ନୃତ୍ୟ କଲେ, ତାଙ୍କର ପାଦ ବ୍ୟଥା ହେଲା ତଥାପି ସେ ଜାଣି ପାରିଲେ ନାହିଁ । ବିଷ୍ଣୁ ସେଠାରୁ ଫେରି ଆସିଲେ । ନାରଦ ଏ ସମସ୍ତ ଘଟଣା ଲକ୍ଷ୍ୟ କରିଥିଲେ, ସେ ପ୍ରହଲ୍ଲାଦଙ୍କୁ ଅବଗତ କରାଇଲେ । ପ୍ରହଲ୍ଲାଦ ନିଜର ଭୁଲ ବୁଝିପାରିଲେ ଏବଂ ପାଗଳପ୍ରାୟ ଭଗବାନ ବିଷ୍ଣୁଙ୍କୁ ଖୋଜି ବୁଲିଲେ, କିନ୍ତୁ କୌଣସି ସ୍ଥାନରେ ସନ୍ଧାନ ପାଇଲେ ନାହିଁ । ବର୍ଷ-ବର୍ଷ ବିତିଗଲା, ଶେଷରେ ସେ ମର୍ତ୍ତ୍ୟକୁ ଆସିଲେ, ନୀଳମାଧବଙ୍କୁ ଦର୍ଶନ କଲେ, ପ୍ରଭୁଙ୍କର ସନ୍ଧାନ ପାଇଲେ । ପ୍ରଭୁଙ୍କ ପାଦରେ କଷ୍ଟ ଓ ଯନ୍ତ୍ରଣା ଦେଇଥିବାରୁ ପ୍ରହଲ୍ଲାଦ ନିଜେ ପ୍ରଭୁଙ୍କୁ ରଥରେ ବସାଇ ଟାଣି-ଟାଣି ଶ୍ରୀକ୍ଷେତ୍ରକୁ ଆଣିଥିଲେ ଓ ଏଥିପାଇଁ ନଅ ଦିନ ସମୟ ଲାଗିଥିଲା । ଏଥିରେ ପ୍ରଭୁ ସନ୍ତୁଷ୍ଟ ହୋଇ ତାଙ୍କୁ ବର ମାଗି ନେବାକୁ ନିର୍ଦ୍ଦେଶ ଦେଲେ । ପ୍ରହଲ୍ଲାଦ ପ୍ରଭୁଙ୍କୁ ଏହି ବର ଭିକ୍ଷା କଲେ ଯେ- ପ୍ରତିବର୍ଷ ଭକ୍ତମାନେ ଏହି ଆଷାଢ଼ ମାସ ଶୁକ୍ଳ ପକ୍ଷ ଦ୍ୱିତୀୟା ଦିନ ରଥରେ ବସାଇ ଆପଣଙ୍କୁ ଯାତ୍ରା କରିବେ । ପ୍ରଭୁ ତଥାସ୍ତୁ କଲେ, ସେହିଦିନଠାରୁ ଶ୍ରୀକ୍ଷେତ୍ରରେ ରଥଯାତ୍ରା ଆରମ୍ଭ ବୋଲି ପୁରାଣ କଥାରୁ ଶୁଣିବାକୁ ମିଳେ ।

ଓଡ଼ିଶା ପରିପ୍ରେକ୍ଷୀରେ ବିବେଚ୍ନା କଲେ ଏଠାରେ ବର୍ଷକୁ ଚାରୋଟି ରଥଯାତ୍ରାର ଆୟୋଜନ ହେଉଥିବାର ଜଣାଯାଏ । ଆଷାଢ଼ ମାସ ଶୁକ୍ଳ ପକ୍ଷ ଦ୍ୱିତୀୟା ତିଥିରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ନବଦିନାତ୍ମକ ଶ୍ରୀଗୁଣ୍ଡିଚା ରଥଯାତ୍ରା ଆୟୋଜନ କରାଯାଏ । ଅର୍କକ୍ଷେତ୍ର କୋଣାର୍କରେ ମାଘ ସପ୍ତମୀ ତିଥିରେ ସୌର ରଥଯାତ୍ରା ପାଳିତ ହେଉଥିଲା, ଯାହା ବର୍ତ୍ତମାନ ଅବଲୁପ୍ତ କିନ୍ତୁ ପ୍ରତୀକାତ୍ମକ ଭାବରେ ପାଳିତ ହେଉଅଛି । ବିରଜାକ୍ଷେତ୍ରରେ ଆଶ୍ୱିନ ମାସ ଶୁକ୍ଳପକ୍ଷ ପ୍ରତିପଦାଠାରୁ ମହାନବମୀ ପର୍ଯ୍ୟନ୍ତ ବିରଜା ଦେବୀଙ୍କର ନବଦିନାତ୍ମକ ସିଂହଧ୍ୱଜ ବା ମାୟାରଥ ବା ବିଜୟାରଥ ଯାତ୍ରା ଆୟୋଜିତ ହୁଏ । ଏକାମ୍ର କ୍ଷେତ୍ର ଭୁବନେଶ୍ୱରରେ ଚୈତ୍ର ମାସ ଶୁକ୍ଳ ପକ୍ଷ ଅଷ୍ଟମୀ ତିଥିରେ ପ୍ରଭୁ ଲିଙ୍ଗରାଜଙ୍କର ରୁକୁଣା ରଥଯାତ୍ରା ଆୟୋଜିତ ହୁଏ ।

ଅଧ୍ୟାପକ
ଇତିହାସ ବିଭାଗ, ସନାତନ ହରିଚ଼ନ୍ଦନ
ମହାବିଦ୍ୟାଳୟ, ମଦନପୁର, ଖୋର୍ଦ୍ଧା – ୭୫୨୦୫୪







# ଶ୍ରୀଭୁଜେ ଦୟଣା କେରିକେରି

ଡକ୍ଟର ତ୍ରିନାଥ ପଟ୍ଟନାୟକ

ପବିତ୍ର ତୁଳସୀ ଭଳି ଦୟଣା ଏକ ସୁବାସିତ ପତ୍ର । ଶ୍ରୀଜଗନ୍ନାଥଙ୍କ ଅତ୍ୟନ୍ତ ପ୍ରିୟ ଏହି ତୃଣ । ସୁବାସିତ ପୁଷ୍ପମାଳା ସହିତ ଏହି ଦୁଇଟି ଗୁଳ୍ମର ପତ୍ର ଗୁନ୍ଥାଯାଇ ଶ୍ରୀଜୀଉଙ୍କଠାରେ ଲାଗି ହେଉଥିବା ଯୋଗୁଁ ଭକ୍ତକବି ସାଲବେଗ ତାଙ୍କ ଭଜନରେ ଉଲ୍ଲେଖ କରିଛନ୍ତି - ‘‘ଆହେ ନୀଳଗିରି ତୁମ୍ଭ ଶ୍ରୀଭୁଜେ ଦୟଣା କେରିକେରି ।’’ ଦୟଣାକୁ ସମସ୍ତ ଦେବତା ଗ୍ରହଣ କରନ୍ତି । ତୁଳସୀ ସାତ ପ୍ରକାର । ସେଥି ମଧ୍ୟରୁ ଦୟଣା ଅନ୍ୟତମ । ସେଗୁଡିକ ହେଲା : କୃଷ୍ଣ ତୁଳସୀ, ଶୁକ୍ଳ ତୁଳସୀ, ବର୍ବରୀ ତୁଳସୀ(ଯାହାକୁ ନାଣ୍ଡି ବଗୁଲି ବୋଲି କୁହନ୍ତି) ଆଉ ଅନ୍ୟଟି ଫଣିଝକ (ମରୁଆ) ଓ ଦମନକ । ଯେମିତି ତୁଳସୀ ସହିତ ପୌରାଣିକ ଉପାଖ୍ୟାନର ସଂପର୍କ ଅଛି, ସେମିତି ଦୟଣା ସହିତ ପୁରାଣର ସଂପର୍କ ଅଛି । ସତ୍ୟଯୁଗରେ ଜଣେ ଦୈତ୍ୟ ଥିଲା ତା’ର ନାମ ଦମନକ । ସେ ଜଳ ମଧ୍ୟରେ ରହି ବହୁ ଦୌରାତ୍ମ୍ୟ ସୃଷ୍ଟି କରୁଥିଲା । ମତ୍ସ୍ୟ ଅବତାରରେ ଭଗବାନ ବିଷ୍ଣୁ ସମୁଦ୍ରରୁ ଭୂପୃଷ୍ଠକୁ ପେଷଣ କଲେ । ଭୂପୃଷ୍ଠରେ ଭଗବାନ ବଧ କରିଥିଲେ, ସେଦିନ ଥିଲା ଚୈତ୍ରମାସ ଶୁକ୍ଳ ଚତୁର୍ଦ୍ଦଶୀ ତିଥି । ଭଗବାନ ବିଷ୍ଣୁଙ୍କ ହସ୍ତରେ ବଧ ହୋଇଥିବା ଯୋଗୁଁ ପ୍ରଭୁ କୃପାଲାଭ କରି ଏକ ସୁଗନ୍ଧିତ ତୃଣର ରୂପଗ୍ରହଣ କଲା । ଭଗବାନ ବନମାଳା ରୂପେ ତାହାକୁ ଧାରଣ କଲେ, ଯାହାର ନାମ ଦୟଣା ।

ଅନ୍ୟ ଏକ ପୌରାଣିକ ସ୍ମୃତି ହେଉଛି ଏକଦା ଭଗବାନ ବିଷ୍ଣୁ ଭକ୍ତ ପ୍ରହ୍ଲାଦର ମାନରକ୍ଷା କରିବାକୁ ଯାଇ ନୃସିଂହ ଅବତାର ହୋଇଥିଲେ । ପ୍ରହ୍ଲାଦର ପିତା ବିଷ୍ଣୁ ଦ୍ରୋହୀ ଦୈତ୍ୟ ହିରଣ୍ୟକଶିପୁକୁ ସଂହାର କରିବା ସହିତ ତା’ର ବକ୍ଷଦେଶକୁ ବିଦାରଣ କରି ଅନ୍ତନାଡିକୁ ମାଳାରୂପେ ଧାରଣ କରିଥିଲେ । ଭଗବାନ ସର୍ବଦା ବ୍ୟକ୍ତିର ପାପକୁ ସଂହାର କରିଥାନ୍ତି ମାତ୍ର ପାପୀକୁ ନୁହେଁ । ପାପୀ ପ୍ରତି ଦୟା କରିଥାନ୍ତି । ତେଣୁ ଶ୍ରୀଜଗନ୍ନାଥ ସେହି ସ୍ମୃତିକୁ ଜାଗରଣ କରିବା ନିମନ୍ତେ ବର୍ଷକୁ ଥରେ ଦୟଣା ଧାରଣ କରନ୍ତି । ଦୟଣା ହିରଣ୍ୟ କଶିପୁର ଅନ୍ତର ସ୍ୱରକୀ ।

ଶ୍ରୀଜଗନ୍ନାଥଙ୍କୁ ପ୍ରତିବର୍ଷ ଚୈତ୍ରମାସ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ଦୟଣା ଫୁଲ ସହିତ ଦୟଣା ତୃଣକୁ ପ୍ରଦାନ କରାଯାଇଥାଏ ।

ଆସାମର ପରମବୈଷ୍ଣବ ଶଙ୍କର ଦେବ ଥିଲେ ଶ୍ରୀଜଗନ୍ନାଥଙ୍କ ଅନନ୍ୟ ଭକ୍ତ । ସେ ଦୁଇଥର ପୁରୀ ଆସିଛନ୍ତି । ଜଗନ୍ନାଥ ଦାସଙ୍କ ଭାଗବତ ଘର ଓଡିଶାର ପୁରପଲ୍ଲୀରେ ପ୍ରସାରିତ ହେବା ଦେଖି ସେ ଆସାମ ଯାଇ ଭାଗବତ ଘର ଭଳି ‘ନାମ’ ଘର ବା ସଂକୀର୍ତ୍ତନ ଘର ପ୍ରତିଷ୍ଠା କଲେ । ସେ ତାଙ୍କର ‘କଥା ଗୁରୁ ଚରିତ’ରେ ଉଲ୍ଲେଖ କରିଛନ୍ତି ଶ୍ରୀଜଗନ୍ନାଥଙ୍କ ସ୍ୱପ୍ନାଦେଶ ପାଇ ସେ ରଚନା କରିଛନ୍ତି ଭାଗବତ ଓ କୀର୍ତ୍ତନ ।

ଦୟଣା ପତ୍ର ବିଷୟରେ ସେ ଉଲ୍ଲେଖ କରିଛନ୍ତି । ନିଜ ଅନୁଭୂତିରୁ ଗୋଟିଏ କଥା - ଅନ୍ୟ ଏକ ଦିନ ମୁଁ ଘୋଷ କୀର୍ତ୍ତନ ଗାଉଛି, ହଠାତ୍ କେଉଁଆଡୁ ଦୟଣା ପତ୍ର ଓ ଫୁଲର ବାସ୍ନା ମହକି ଉଠିଲା । ଗୁରୁଜନମାନେ କହିଲେ ନାମକୀର୍ତ୍ତନ ଶୁଣିବା ନିମନ୍ତେ ଶ୍ରୀଜଗନ୍ନାଥ ଏଠାରେ ବିଜେ





ହୋଇଛନ୍ତି ଏଣୁ ଦୟଣାର ବାସ ଚହଟି ଉଠୁଛି । ସେ ଦିନ ରାମଦାସ ନଥିଲେ । ତା'ପର ଦିନ ଆସିଲେ । ଗୁରୁ କହିଲେ ତୁମେ ଆସି ନଥିଲ କାଲି । ଥିଲେ ଦିବ୍ୟ ଅନୁଭୂତି ପ୍ରାପ୍ତ ହୋଇଥାନ୍ତ । ଶ୍ରୀଜଗନ୍ନାଥ ଏଠାରେ ସ୍ୱୟଂ ଉପସ୍ଥିତ ଥିଲେ । ଦୟଣା ଫୁଲର ମହକରେ ଘର ପୂରି ଉଠିଲା । ସେ କହିଲେ– ମୁଁ ମହାପାପୀ ! ଭାଗ୍ୟହୀନ, ଦୁର୍ଭାଗା ତାଙ୍କୁ ପାଇ ପାରିଲି ନାହିଁ । ତା'ପରେ ବ୍ରହ୍ମ ପୁରାଣରେ ବର୍ଣ୍ଣିତ ଶ୍ରୀଜଗନ୍ନାଥଙ୍କ କଥା ଚର୍ଚ୍ଚା ହେଲା । ପୂର୍ବପରି ପୁଣି ଘରେ ଦୟଣା ଫୁଲର ବାସ୍ନା ମହକି ଉଠିଲା । ଗୁରୁ କହିଲେ– ଯାହା ହେଉ ଆମେମାନେ ରାମଦାସଙ୍କ ପ୍ରସାଦରୁ ସମସ୍ତେ ପ୍ରଭୁଙ୍କ ସାନ୍ନିଧ ପାଇ ପାରିଲୁ ।

ଶଙ୍କର ଦେବଙ୍କ ମତରେ ଦୟଣା ଫୁଲର ଉତ୍ପତ୍ତି ବିଷୟରେ ଏକ ପୌରାଣିକ ତଥ୍ୟ ତାଙ୍କର ରଚନାରୁ ଦେଖିବାକୁ ମିଳେ । ପ୍ରାଚୀନ କାଳରେ ଇନ୍ଦ୍ରଦ୍ୟୁମ୍ନ ରାଜା ରାଜସୂୟ ଯଜ୍ଞ କଲେ । ପୁଣ୍ୟକ୍ଷେତ୍ର ଓଡିଶାରେ ଶ୍ରୀଜଗନ୍ନାଥ ପ୍ରତିଷ୍ଠା କରି ପୂଜା ସେବା ସହିତ ନିଜ ବୁଲିବାକୁ ମଧ ସେବା ପାଇଁ ଦାନ କରିଥିଲେ । ଜଗନ୍ନାଥ ଭକ୍ତ ଇନ୍ଦ୍ରଦ୍ୟୁମ୍ନ ପ୍ରତିଦିନ ଶ୍ରୀଜଗନ୍ନାଥଙ୍କ ସେବା ପୂଜା କରିସାରିଲା ପରେ ଭୋଗ ନିର୍ମାଲ୍ୟ ପାଆନ୍ତି । ଦିନେ ସେ ଶ୍ରୀଜଗନ୍ନାଥଙ୍କ ଭକ୍ତିରେ ବିଭୋର ହୋଇ ଅତି ମାନସ ସ୍ତରକୁ ଚାଲିଗଲେ ।

ଆନନ୍ଦରେ ନାଚି ନାଚି ଦେଖିଲେ ତାଙ୍କ ସମ୍ମୁଖରେ ସ୍ୱୟଂ ଜଗନ୍ନାଥ ରୂପେ ଶ୍ରୀକୃଷ୍ଣ ଠିଆ ହୋଇଛନ୍ତି । ସେ ପାଖଗଛରୁ ଫୁଲ ଆଣି ଅର୍ପଣ କରିବା ନିମନ୍ତେ ଚାହିଁଲେ କିନ୍ତୁ ପାରିଲେ ନାହିଁ । ନିଜ କରପଲ୍ଲବକୁ ଖଣ୍ଡାରେ ହାଣି ପ୍ରଭୁଙ୍କୁ ଅର୍ପଣ କରିଦେଲେ । ଶ୍ରୀଜଗନ୍ନାଥ ସନ୍ତୁଷ୍ଟ ହୋଇ ରାଜାଙ୍କୁ ବର ଦେଲେ ଯେ ତୁମର ହସ୍ତ ଯୋଡି ହୋଉଯାଉ । ତୁମର କଟା ହାତର ସ୍ମୃତିରେ ଗୋଟିଏ ତୃଣ ଓ ପୁଷ୍ପ ଏ ସଂସାରରେ ସୃଷ୍ଟି ହେଉ ତା' ନାମ ଦୟଣା ରହୁ । ତା'ର ପତ୍ର ହାତ ପାପୁଲି ଓ ଆଙ୍ଗୁଳି ଭଳି ଦେଖାଯାଉ ।

ଦୟଣାକୁ ସଂସ୍କୃତ ଭାଷାରେ ଦମନ, ଗନ୍ଧୋତ୍କଟ ବ୍ରହ୍ମଜଟା ଓ ହିନ୍ଦୀ ଭାଷାରେ ଦୋନା, ଦଲ୍ଲଣା ବୋଲି କୁହାଯାଏ । ଇଂରାଜୀରେ ୱାରମ୍ ଉଡ୍ କୁହାଯାଏ । ଏହାର ଗୁଣ କଷା, କଟୁ । କିନ୍ତୁ ସ୍ୱାସ୍ଥ୍ୟପ୍ରତି ଉପକାରୀ, ହୃଦରୋଗ ନିବାରକ, ବୀର୍ଯ୍ୟ ବର୍ଦ୍ଧକ ସୁଗନ୍ଧଯୁକ୍ତ, କ୍ଲେଦ, କଣ୍ଡୁ ଓ ତ୍ରିଦୋଷକୁ ନାଶ କରିଥାଏ । ବସନ୍ତ ଋତୁରେ ଏହି ତୃଣକୁ ଧାରଣ କରାଯାଇ ଥିବା ଯୋଗୁଁ ହାଡଫୁଟି ଓ ବସନ୍ତ ରୋଗକୁ ମଧ ଉପଶମ କରିଥାଏ । ଦୟଣାପତ୍ର ସେବତୀ ପତ୍ର ଭଳି ଛିନ୍ନ ଛିନ୍ନ ବା କଟକଟା । ନିମ୍ନ ପୃଷ୍ଠ ଲୋମଶ ଓ ପାଉଁଶିଆ । ଅନ୍ୟ ଏକ ଦୟଣା ଅଛି ଏହାକୁ ଚୋରି ଦୟଣା ବୋଲି କୁହାଯାଏ । ଆଉ କେହି କେହି ମାଟି ଦୟଣା ବୋଲି ମଧ କହିଥାନ୍ତି । ଦୟଣାର ଫୁଲ ଦେଶୀ ସେବତୀ ଫୁଲ ଭଳି ଛୋଟ ଛୋଟ । ଦୟଣାର ମଞ୍ଜି ଅଛି । ମଞ୍ଜିରୁ ଗଛ ହୋଇଥାଏ । ଏହାର ପତ୍ର କଟା କଟା ହୋଇଥିବା ଯୋଗୁଁ ଦୟଣା ପତ୍ରକୁ କେରି କେରି ବୋଲି କବି କହିଛନ୍ତି । ଏହାର ସୁବାସ ଖୁବ୍ ମୃଦୁ ଓ ଅତ୍ୟନ୍ତ ମଧୁର ।

ଶ୍ରୀମନ୍ଦିର ଦ୍ୱାଦଶ ଯାତ୍ରା ମଧରୁ ଦମନକ ଚତୁର୍ଦ୍ଦଶୀ ଏକ ମୁଖ୍ୟ ଯାତ୍ରା ବା ପର୍ବ । ଏହିଦିନ ଶ୍ରୀଜଗନ୍ନାଥଙ୍କର ଦମନଭଞ୍ଜିକା ଯାତ୍ରା ପାଳନ କରାଯାଏ । ଏହି ଯାତ୍ରାର ଅନ୍ୟନାମ ଦୟଣା ଚୋରି । ଚୋରରୁ ଚୋରି । ଶ୍ରୀଜଗନ୍ନାଥ ଚୌରାଗ୍ରଣ୍ୟ, ଚୋର ଦାର ଶିରୋମଣି । ବ୍ରଜରେ ଥିବା ବେଳେ ଲବଣି ଚୋରି କରିଛନ୍ତି । ବ୍ରଜାଙ୍ଗନାଙ୍କ ବସନ ଚୋରି କରିଛନ୍ତି । ଦେବୀ ରୁକ୍ମଣୀଙ୍କୁ ମଧ ଚୋରାଇ ଆଣିଥିଲେ । କେବଳ ସେତିକି ନୁହେଁ ଭକ୍ତର ଅନେକ ଜନ୍ମ ଅର୍ଜିତ ପାପକୁ ମଧ ଚୋରି କରିପାରନ୍ତି । ଏଣୁ ସେ ଚୋରାଗ୍ରଣ୍ୟ ପୁରୁଷ । ଏକଦା ପ୍ରଭୁ ଦୟଣା ଗଛକୁ ଚୋରି କରି ଆଣିଥିଲେ ଓ ଆଭୂଷଣ ରୂପେ ଗ୍ରହଣ କରିଥିଲେ । ଦୟଣା ଶ୍ରୀଜଗନ୍ନାଥଙ୍କ ଅତ୍ୟନ୍ତ ପ୍ରିୟ ଆଭୂଷଣ । ଦରଗଡ଼ା ଅବସ୍ଥାରେ ଯେତେବେଳେ ରାଜା ଇନ୍ଦ୍ରଦ୍ୟୁମ୍ନ ପ୍ରଭୁଙ୍କୁ ଦେଖନ୍ତି ଆଶ୍ଚର୍ଯ୍ୟ ହୋଇଯାଆନ୍ତି । ହସ୍ତପଦ ହୀନ ଦେବତା । ଏହାକୁ କିପରି ପୂଜା କରାଯିବ । ଏହାଙ୍କର ପରିଚୟ କ'ଣ? ଶୂନ୍ୟ ବାଣୀ ହେଲା, ରାଜା କଳିଯୁଗରେ ମୁଁ ଏମିତି ବୌଦ୍ଧ ରୂପରେ ଶ୍ରୀମନ୍ଦିରରେ ବସିବି । ମୋତେ ଜଗନ୍ନାଥ ବୋଲି

ସମସ୍ତେ ଜାଣିବେ । ''ତୋହ କାର୍ଯ୍ୟଥିଲେ ରାଜା ଯୋଗାଇବୁ ଏତେ । ଦୟଣାରେ ହାତଗୋଡ ଭିଆଇଣ ମୋତେ ।'' (ଦେଉଳ ତୋଳା)

'ନୀଳ ସୁନ୍ଦର ଗୀତା'ରେ ଶେଖର ଦାସ କହିଛନ୍ତି ପ୍ରଭୁଙ୍କ ନିକଟରେ ''ପଞ୍ଚଆଙ୍ଗୁଳି ଦୟଣା ମାଳଦଣ୍ଡା ପ୍ରସିଦ୍ଧ ହେବ ଜଗତେ ।''

ଚୈତ୍ରମାସ ବସନ୍ତ ଋତୁରେ ଦୟଣା ଚୋରି ଯାତ୍ରା ଅନୁଷ୍ଠିତ ହୁଏ । ବସନ୍ତ ଋତୁର ଦୂତ ହେଉଛନ୍ତି କନ୍ଦର୍ପ । କନ୍ଦର୍ପଙ୍କ ପୂଜା ଅନ୍ୟତ୍ର ନଥିଲେ ସୁଦ୍ଧା ଶ୍ରୀଜଗନ୍ନାଥ ସଂସ୍କୃତିରେ ତଥା ଶ୍ରୀମନ୍ଦିର ପରମ୍ପରାରେ ଗୁରୁତ୍ୱ ପ୍ରଦାନ କରାଯାଇଛି । ପ୍ରଥମେ ସ୍ୱର୍ଗର ନନ୍ଦନକାନନରେ ଏହି ଦୟଣା ବୃକ୍ଷ ଥିଲା । ପାରିଜାତ ଭଳି ଏହା ଦେବଦୁର୍ଲ୍ଲଭ ତୃଣ । ଇନ୍ଦ୍ର ଏହାର ମୃଦୁମନ୍ଦ ବାସ୍ନାରେ ମୋହିତ ହୋଇଯାଉଥିଲେ । କାଳେ କେଉଁ ଦୈତ୍ୟ କି ମନୁଷ୍ୟ ଏହାକୁ ଅପହରଣ କରିନେଇଯିବ । ସେଥି ନିମନ୍ତେ କନ୍ଦର୍ପଙ୍କୁ ଦୟଣା ବୃକ୍ଷର ରକ୍ଷଣ ଦାୟିତ୍ୱ ପ୍ରଦାନ କରିଥିଲେ । କନ୍ଦର୍ପ ଦେବତା ମଧ୍ୟ ଦୟଣା ସୁବାସରେ ମୁଗ୍ଧ ହୋଇ ତା'ର ସୁରକ୍ଷା କରୁଥିଲେ ।

''କେ କହିବ ସେ ଦମନକ ରୀତି ।
ଯହିଁକି ସାକ୍ଷାତ ରତି ପତି ।
ଅନୁକ୍ଷଣେ କରିଥାଇ ରକ୍ଷଣ ।
କଳିତ କରି କୋଦଣ୍ଡ ବାଣ ।''
(ନୀଳାଦ୍ରି ମହୋତ୍ସବ)

ବିଶେଷ ଭାବେ ଦେବତାମାନଙ୍କ ମଧ୍ୟରେ କନ୍ଦର୍ପଙ୍କର ପ୍ରାଧାନ୍ୟ ନଥାଏ । ଏକଦା ଶ୍ରୀମନ୍ଦିରରେ ଦେବତାମାନଙ୍କ ଗହଣରେ କନ୍ଦର୍ପଙ୍କୁ ଦେଖି ସୂର୍ଯ୍ୟ ଦେବତା କହିଥିଲେ- ହର କୋପାନଳେ ଥରେ ତୁ ଜଳିଥିଲୁ ମଦନ, ପୁଣି ଜଳିବାକୁ ଏ ଦେହେ ପରା ବଳିଛି ମନ । ସଂସାରେ ଯାବତ କଳଙ୍କ ତା'ର ଅଟୁ କାରଣ ନାରୀ, ନାରୀ ରଙ୍କ ନରଙ୍କ ତୁହି ଅଟୁ ଦେବତା । (ଚନ୍ଦ୍ରଭାଗା କାବ୍ୟ) । ମାତ୍ର ଶ୍ରୀମନ୍ଦିରରେ ବହୁ ପୂର୍ବରୁ ସମନ୍ୱୟ ଦେବତା ଶ୍ରୀଜଗନ୍ନାଥ କନ୍ଦର୍ପଙ୍କୁ ଦେବତାରୂପେ ଗ୍ରହଣ କରିଛନ୍ତି । ସେଥିପାଇଁ ଚୈତ୍ରମାସ ଶୁକ୍ଳ ତ୍ରୟୋଦଶୀ ତିଥିକୁ ଅନଙ୍ଗ ତ୍ରୟୋଦଶୀ ରୂପେ ନାମିତ କରାଯାଇଛି । ଏହି ଦିନ ଶ୍ରୀମନ୍ଦିରେ କନ୍ଦର୍ପର ଉପାସନା ହୁଏ । ଶ୍ରୀମନ୍ଦିରରେ ଚୈତ୍ର ଶୁକ୍ଳ ଦ୍ୱାଦଶୀ ଦିନ କନ୍ଦର୍ପପଟି ବା କନ୍ଦର୍ପଙ୍କର ଏକ ଚିତ୍ରପଟ ଅଧିବାସ ହୋଇଥାଏ । ଏହି ବିଗ୍ରହର ବର୍ଣ୍ଣ ରକ୍ତ ବର୍ଣ୍ଣ । କନ୍ଦର୍ପ ବାମ ହସ୍ତରେ ପୁଷ୍ପଧନୁ ଦକ୍ଷିଣ ହସ୍ତରେ ଫୁଲଶର ଓ ସ୍କନ୍ଧ ଦେଶରେ ତୂଣୀର ଧାରଣ କରିଥାନ୍ତି । ଅନଙ୍ଗ ତ୍ରୟୋଦଶୀ ଦିନ ରାମ କୃଷ୍ଣ ଓ କନ୍ଦର୍ପଙ୍କର ପ୍ରତିମା ପୁରୀସ୍ଥିତ ଜଗନ୍ନାଥ ବଲ୍ଲଭ ମଠକୁ ବିଜେ ହୁଅନ୍ତି । ସେଠାରେ ବିଧିବଦ୍ଧ ଭାବେ ପୂଜା ହୋମାଦି ଅନୁଷ୍ଠିତ ହୁଏ ।

ଏଠାରେ ଅନୁଷ୍ଠିତ ହେଉଥିବା ହୋମରେ 'କାମ ଗାୟତ୍ରୀ' ପଢ଼ି ଅଶୋକ ଫୁଲରେ ଆହୁତି ଦିଆଯାଏ । ଏଠାରେ ଦୟଣା ବଗିଚାକୁ ଯାଇ ଦୟଣା ଚୋରି ନିମନ୍ତେ ବୃକ୍ଷଠାରେ ପ୍ରାର୍ଥନା କରିବାକୁ ହୁଏ ।

ହେ ଦୟଣା! ଜଗନ୍ନାଥଙ୍କ ପୂଜା ନିମନ୍ତେ ତୁମ୍ଭ ନିକଟକୁ ଆସିଅଛି । ମୁଁ ତୁମକୁ ନେଉଅଛି । ତୁମେ ବର୍ତ୍ତମାନ ଆମ ପ୍ରତି ପ୍ରସନ୍ନ ହୁଅନ୍ତୁ । 'ଓଁ ନମଃ କାମାୟ' ଏହି ମନ୍ତ୍ରପଢ଼ି ଦୟଣା ଆଣିବେ । ମୂଳ ଲଗା ଦୟଣା ଗଛ ଭିତରଛୁ ଆଣି ଗୋଟି ଗୋଟି କରି ରାମ ଓ କୃଷ୍ଣଙ୍କ ପ୍ରତିମାର କରକମଳରେ ଲଗାଇ ଦେବେ । ପଞ୍ଚଚିତ୍ର ପ୍ରତିମାଙ୍କୁ ବିସର୍ଜନ କରାଇ ପାତ୍ରହୋତା ମୁହଁ ବସ୍ତ୍ର ଘୋଡାଇ ୭ଟି କରି ତିନିବାଡରେ ୨୧ଟି ଦିବ୍ୟ ଦୟଣା ବୃକ୍ଷକୁ ବସ୍ତ୍ରରେ ଆବୃତ କରି ମହୋତ୍ସବ ଗହଣରେ ଆଗେ ଆଗେ ଏକ ରାମକୃଷ୍ଣଙ୍କୁ ତାହା ପଛେ ପଛେ ଶ୍ରୀମନ୍ଦିରକୁ ନେବେ । ଦୟଣା ବୃକ୍ଷ ଓ ରାମକୃଷ୍ଣଙ୍କୁ ସ୍ୱସ୍ଥାନରେ ବିରାଜ ମାନ କରାଇବ । (ନୀଳାଦ୍ରି ମହୋଦୟ ଓ ବାମଦେବ ସଂହିତା)

ଦୟଣାଚୋରି ଯାତ୍ରା ବିଷୟରେ ଶ୍ରୀମନ୍ଦିରରେ ପାଳିତ ହେଉଥିବା ନୀତିସବୁ ଶ୍ରୀମନ୍ଦିର ସ୍ୱତ୍ୱଲିପିରେ ଉଲ୍ଲେଖ ଅଛି । ଚୈତ୍ର ଶୁକ୍ଳ ତ୍ରୟୋଦଶୀ ତିଥିରେ ଦମନକ ଚୋରି ବା ଦୟଣା ଚୋରି ପର୍ବ ପାଳନ କରାଯାଏ । ବିଧି ଅନୁସାରେ

ଠାକୁରମାନଙ୍କ ମଧ୍ୟାହ୍ନ ଧୂପ ସରିଲା ପରେ ଦକ୍ଷିଣ ଘରୁ ବିଜେ ପ୍ରତିମା ରାମ କୃଷ୍ଣ ଦୁଇ ଦେବ ପ୍ରତିମାଙ୍କୁ ଭିତର ସିଂହାସନରେ ବିଜେ କରାଇବା ପରେ ପଣ୍ଡା ଠାକୁରଙ୍କୁ ଆଜ୍ଞାମାଳ କରାଇବେ । କଳ୍ପବଟମୂଳେ ଆଗରୁ ପ୍ରସ୍ତୁତ ହୋଇ ପାଲିଙ୍କି ରଖାଯାଇଥିବ । ସମସ୍ତ ଚଳନ୍ତି ପ୍ରତିମା ଉକ୍ତ ପାଲିଙ୍କିରେ ବିଜେ ହେବେ । ବିମାନ ବଡୁମାନେ ଘଣ୍ଟ, ଛତା, କାହାଳୀ ସହ କନ୍ଦର୍ପ ପଟି ସମ୍ମୁଖରେ ରଖି ପାଲିଙ୍କିକୁ ଜଗନ୍ନାଥ ବଲ୍ଲଭକୁ ବିଜେ କରାଇବେ । ରାମକୃଷ୍ଣଙ୍କୁ ନେଇ ଖଟ ଉପରେ ବିଜେ କରାଯିବ । କନ୍ଦର୍ପପଟିଙ୍କ ସମ୍ମୁଖରେ ରଖାଯିବ । ଏଠାରେ ପର୍ବଯାତ୍ରା ଯୋଗାଣିଆ ଦେଇଥିବା ହୋମ ସାମଗ୍ରୀମାନ ପଣ୍ଡା, ପତି ମୁଦିରସ୍ତେ ଉପସ୍ଥିତ ରହି ବାକ୍ୟାନୁଯାୟୀ ହୋମ କର୍ମ ଅନୁଷ୍ଠିତ ହେବ ।

ମୁଦିରସ୍ତେ ବାହାର ରୋଷରେ ମହାସୁଆର ପ୍ରସ୍ତୁତ କରିଥିବା ଭୋଗକୁ ପ୍ରସାଦ ଲାଗି କରିବେ । ଏହି ଭୋଗକୁ ପଣ୍ଡା ପଞ୍ଚୋପଚାରରେ ମଣୋହି କରାଇବେ । ତା'ପରେ ଜଗନ୍ନାଥ ବଲ୍ଲଭ ମଠ ନାଜର ଚିତାଉ କରଣ ଓ ଦେଉଳ କରଣ ପ୍ରଭୃତି ମଶାଲ ଧରି ୧୪ ଗଛ ଲାଗିଥିବା ଦୟଣା ବାଡିକୁ ଯାଇ ସେଠାରେ ଗଛମାନଙ୍କୁ ତନଖି କରିବେ । ଏହାପରେ ଦୟଣାମାଳି ଗଛମାନଙ୍କୁ ଉପାଡି ଜଗନ୍ନାଥ ବଲ୍ଲଭ ମହାବୀରଙ୍କ ପାଖରେ ଦୟଣା ବଗିଚାରେ ୬ଗଛ କରି ଲଗାଇବେ । ଭୋଗ ସରିବା ପରେ ମହାଜନେ ଠାକୁରଙ୍କୁ ନିଶବ୍ଦରେ ହାତରେ ବିଜେ କରାଇନେବେ । ଏଠାରେ ଭିତରଛ ମହାପାତ୍ରେ ରାମକୃଷ୍ଣଙ୍କ ଶ୍ରୀହସ୍ତରେ ଦୁଇଗଛ ଦୟଣା ଲାଗି କରିବେ । ବାକି ଚାରି ଗଛ ଦୟଣା ପତ୍ରୀ (ସଂପୃକ୍ତ ଦମକୋସ୍ୱବ ସେବକ) ନୂଆ ତାଡରେ ଖଣ୍ଡୁଆ ଘୋଡାଇ ରାମକୃଷ୍ଣଙ୍କୁ ପୂର୍ବରୁ ପ୍ରସ୍ତୁତ ପାଲିଙ୍କି ପାଖକୁ ଆଣିବେ । ପୂର୍ବଭଳି ବିମାନ ବଡୁମାନେ ଘଣ୍ଟ, କାହାଳୀ ବଜାଇ ପାଲିଙ୍କିକୁ ସିଂହଦ୍ୱାର ବାଟେ ବଟମୂଳେ ଆଣି ରଖିବେ ।

ବାହୁଡା ବିଜେ ପୂର୍ବରୁ ଶ୍ରୀମନ୍ଦିରର ଭୋଗମଣ୍ଡପ ଘର ଧୋ–ପଖାଳ (ଧୁଆଧୋଇ) ହେଉଥିବା ଚାନ୍ଦୁଆ ଟଣା ହୋଇ ରହିଥିବ । ଚାନ୍ଦୁଆ ତଳେ ବାଲିବନ୍ଧ ଉପରେ ଦୟଣା ମରୁଆ ସୁବାସ ଗଛମାନ ଲାଗିଥିବା ପାଲିଙ୍କିରୁ ମହାଜନେ ହାତରେ ବିଜେ କରାଇ ଆଣି ଗରୁଡ ଦ୍ୱାର ପରେ ଦୟଣା, ପତ୍ରୀ ମାର୍ଫତ୍ ଉକ୍ତ ଶ୍ରୀହସ୍ତ ଗଛ ଶ୍ରୀଅଙ୍ଗରୁ ମଇଲମ (ଉଲାଗି) କରିଦେବେ । ନେଇ କରି ତାଡ (ମାଟିପାତ୍ର)ରେ ରଖିବେ । ଭିତରେ ପାଣି ପଡି ବଡସିଂହାର ଭୋଗ ଲାଗିବା ପରେ, ମଦନମୋହନ ଦେବ ଭିତରକୁ ବିଜେ କଲାପରେ ପଣ୍ଡା ଆସି ଲକ୍ଷ୍ମୀ ସରସ୍ୱତୀ ମଦନମୋହନଙ୍କୁ ଆଜ୍ଞାମାଳ ଦେବେ । ତା'ପରେ ମହାଜନେ (ସେବକ, ପୁଷ୍ପପାଳକ) ହାତରେ ବିଜେ କରାଇ ଆଣି ଅଧିବାସ ଭୋଗ ମଣ୍ଡପ ଘରେ ଖଟ ଓ ଶେଜ ପକାଇଥିବା ଆସନରେ ବିଜେ କରାଇବେ । ଦୟଣା ଗଛଗୁଡିକୁ ତଡାଇପଟ ଗୁଡାଇ ରଖିଥିବେ । ଦିଅଁ ବିଜେ କଲାପରେ ମହାଜନେ ଲକ୍ଷ୍ମୀ ସରସ୍ୱତୀ ମଦନ ମୋହନଙ୍କ ହାତରେ ତିନିଗଛ ବାନ୍ଧିବେ । ପର୍ବଯାତ୍ରା ଯୋଗାଣିଆ ଦେଇଥିବା ତିନିଗୋଟି ଚାଙ୍ଗୁଡିରେ ତିନିଗୋଟି ଗଛ ରଖିବେ । ପଣ୍ଡା ଆସି ଚେମେଡି ପତନି(ପତଳା ସୂତାର ଜାଲିକନା) ଫୁଲ ଚନ୍ଦନ ଦେଇ ମଣ୍ଡଳ ଉପରେ ତିନୋଟି ଚାଙ୍ଗୁଡିକୁ ରଖିବେ । ଏହାପରେ ଆସ୍ଥାନ ପଢିଆରୀ ଆସି ପାଣି ପକାଇ ଏଠାରେ ଶୀତଳ ଭୋଗ ବାଢ଼ିଲେ ପଞ୍ଚୋପଚାରରେ ମଣୋହି ଦେବ । ଭୋଗମଣ୍ଡପ ଘର ଦ୍ୱାରମାନଙ୍କୁ ବନ୍ଦକରି ତଡାଉ ମୁଦିଦେବେ । ଶ୍ରୀମନ୍ଦିରରେ ନିଯୁକ୍ତ ଲେଙ୍କା ପାଇକମାନେ ଦ୍ୱାରସବୁକୁ ଜଗି ରହିବେ । ଏହାପରେ ଭିତରେ ପାଣିପଡି ବଲ୍ଲଭ ବଡସିଂହାର ଭୋଗ, ଘଣ୍ଟା, ଛତା, କାହାଳୀ ସହ ତଳିଛ ପଟୁଆର ହୋଇ ଛାମୁକୁ ଆସିବେ । ପଣ୍ଡା ଆସି ଏହି ଭୋଗକୁ ପଞ୍ଚଉପଚାର ପୂଜାରେ ମଣୋହି କରାଇବେ । ତା'ପରେ ପହୁଡ ଆଳତି ହେବ ।

ଚୈତ୍ରଶୁକ୍ଳ ଚତୁର୍ଦ୍ଦଶୀ ଦିନ ଠାକୁରମାନଙ୍କଠାରେ ଦୟଣା ଲାଗି ହୁଏ । ସକାଳ ଧୂପ ସରିବା ପରେ ଗତଦିନ ଅଧିବାସ ଦୟଣା ଲାଗି ହୁଏ । ଗତଦିନ ଅଧିବାସ ହୋଇଥିବା ଭୋଗମଣ୍ଡପ ଘରଠାରୁ ମହାଜନମାନେ ଲକ୍ଷ୍ମୀ

ସରସ୍ୱତୀ ଓ ମଦନ ମୋହନଙ୍କୁ ହାତରେ ବିଜେ କରାଇ ପଟୁଆର ସହ ବଡ ଦେଉଳକୁ ତିନେଘେରା ବୁଲି ଭିତର ସିଂହାସନରେ ବିଜେ କରାଇବେ । ଏହାପରେ ଚାଙ୍ଗୁଡିରେ ଦୟଣାଗଛମାନ ଶ୍ରୀଅଙ୍ଗରେ ଲାଗି ହୋଇ ଥିବା ଦୟଣା ଗଛମାନ ମଇଲମ କରାଇ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାକୁ ଉକ୍ତ ଛଅ ଗଛ ଲାଗି କରାଇବେ । ନୀଳାଦ୍ରି ମହୋଦୟ ଗ୍ରନ୍ଥରେ ଉଲ୍ଲେଖ ଅଛି ଯେଉଁମାନେ ପ୍ରଭୁଙ୍କ ମସ୍ତକରୁ ପ୍ରାପ୍ତ ଦୟଣାକୁ ଭକ୍ଷଣ କରନ୍ତି ସେମାନେ ସକଳ ପାପରୁ ମୁକ୍ତ ହୁଅନ୍ତି । କୌଣସି ରୋଗ ବୈରାଗ ତାଙ୍କର ଆଉ ରହେନାହିଁ । ଯେଉଁମାନେ ଏହି ଶ୍ରୀଅଙ୍ଗ ଲାଗି ଦୟଣାକୁ ହସ୍ତରେ କିମ୍ବା ମସ୍ତକରେ ଧାରଣ କରନ୍ତି ସେମାନଙ୍କର ଭୂତପ୍ରେତ ବେତାଳ ପ୍ରଭୃତି କୌଣସି କ୍ଷତି କରିପାରନ୍ତି ନାହିଁ । ହିଂସ୍ର ଜୀବଜନ୍ତୁ ଆକ୍ରମଣ କରିପାରନ୍ତି ନାହିଁ । ଯେଉଁମାନେ ଭକ୍ତିଭାବ ସହକାରେ ହସ୍ତରେ ଧାରଣ କରିଥାନ୍ତି ସେମାନଙ୍କର ଜୟ ହୋଇଥାଏ । କେବଳ ଜଗନ୍ନାଥ କାହିଁକି ଚୈତ୍ର ଶୁକ୍ଳ ପ୍ରତିପଦା ଦିନ ଉମା, ଶିବ, ଦ୍ୱିତୀୟାରେ ବ୍ରହ୍ମା, ଚତୁର୍ଥୀରେ ଗଣେଶ, ପଂଚମୀରେ ନାଗ, ଷଷ୍ଠୀରେ ସ୍କନ୍ଦ, ସପ୍ତମୀରେ ଭାସ୍କର, ଚତୁର୍ଦ୍ଦଶୀ ଦିନ ଅଶୋକ ବୃକ୍ଷତଳେ ଶିବ ଓ ପୂର୍ଣ୍ଣିମାଦିନ ଇନ୍ଦ୍ରଙ୍କୁ ମଧ ଦୟଣା ଅର୍ପିତ ହେବାର ବିଧି ରହିଛି । (ପୁରୀ ବୋଲି)

'କପିଳ ସଂହିତା'ରେ ଉଲ୍ଲେଖ ଅଛି –

ଅଥନ୍ୟାଂ ଚ ପ୍ରବକ୍ଷ୍ୟାମି ଯାତ୍ରା ଦମନଭଞ୍ଜିକାମ୍
ସର୍ବପାପ ବିନିର୍ମୁକ୍ତଃ ଶିବଲୋକଂ ବ୍ରଜେଦ୍ଧ୍ରୁବମ୍ ।

ସର୍ବପାପ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ଦିନ ଦମନ ପତ୍ର ପୁଷ୍ପ ଦ୍ୱାରା ଶିବଙ୍କୁ ଅର୍ଚ୍ଚନା କଲେ ବହୁତ ଫଳ ମିଳେ । ସର୍ବପାପରୁ ମୁକ୍ତି ମିଳେ ଓ ରୋଗଶୋକ ପରିବାରକୁ ଆସି ନଥାଏ ।

କନ୍ଦର୍ପ ପୂଜା ଓ ଦୟଣା ଚୋରି ନୀତି ଶ୍ରୀମନ୍ଦିରରେ କେଉଁ ଆବହମାନ କାଳରୁ ଚଳି ଆସୁଛି । ଏହା ସୂଚାଇ ଦେଉଛି ଯେ ମନକୁ କାମନା ବାସନାରୁ ମୁକ୍ତ କର ଓ ଦୟଣା ଭଳି ପବିତ୍ର ସୁବାସରେ ମହକାଇ ପରମାତ୍ମାଙ୍କ ସହିତ ସଂଯୁକ୍ତ ହୋଇଯାଅ ।

ସମ୍ପାଦକ, 'ପୁରାଣ ପତ୍ରିକା'
ସା/ପୋ – ନିଆଳୀ
ଜିଲ୍ଲା – କଟକ, ପିନ୍– ୭୫୪୦୦୪

# ତୁମ ଇଚ୍ଛା ପୂର୍ଣ୍ଣ ହେଉ

**ରାଧାରାଣୀ ବାରିକ**

ତୁମେ ଇଚ୍ଛା କଲେ ସବୁତ ମିଳୁଛି
ମୁଁ ଅବା ମାଗିବି କିସ
ନକହିବା ଆଗୁ ମନକଥା ବୁଝି
ଦେଇଥାଅ କରି ତୋଷ ।
ତୁମରି ଦାନରେ ପ୍ରଭାତରୁ ଉଠି
ସନ୍ଧ୍ୟାରେ ଦେଖୁଛି ନିତି
ତୁମରି ସେ ରୂପ ତୁମରି ସେ ଆଖି
ମନରେ ଉଠୁଛି ଭାସି ।

ଯାହା ମୁଁ ଖୋଜୁଛି ପାଉଛି ତ ନିତି
ସେ ସବୁ ତୁମରି ଦାନ
ଆଉ କାହିଁ ପାଇଁ ମନ ବଳାଇବି
ଅଧିକା ପାଇଁକି ମନ ।
ତୁମେ ଇଚ୍ଛାମୟ ଇଚ୍ଛା ପୂର୍ଣ୍ଣ ହେଉ
ଏତିକି ମୋହରି ଆଶା
ମରିବା ପର୍ଯ୍ୟନ୍ତ ଦୃଷ୍ଟି ଦେଇଥାଅ
ଏତିକି ମୋର ଭରସା ।

ଗୋପାଳ ନଗର, ନୋଦା, କଟକ





# ଶ୍ରୀମନ୍ଦିରରେ ସପ୍ତବଟ ଉପାସନା

**କାଞ୍ଚନାରାୟଣ ମହାନ୍ତି**

ସ୍କନ୍ଦପୁରାଣରେ କଳ୍ପବଟକୁ ଅକ୍ଷୟବଟ ଭାବରେ ବର୍ଣ୍ଣନା କରିଥିଲେ ମଧ୍ୟ 'ଅକ୍ଷୟବଟ' ଏବଂ 'କଳ୍ପବଟ' ଶ୍ରୀମନ୍ଦିର ମଧ୍ୟରେ ଭିନ୍ନ ଭିନ୍ନ ସ୍ଥାନରେ ଅବସ୍ଥିତ ଅଛନ୍ତି ।

ଶ୍ରୀମନ୍ଦିରର ସିଂହଦ୍ୱାର ଦେଇ କୂର୍ମବେଢ଼ାରେ ପ୍ରବେଶ କଲେ, ବାମ ପାର୍ଶ୍ୱରେ ଶ୍ରୀମନ୍ଦିରର ଦକ୍ଷିଣଦ୍ୱାରକୁ ଯିବା ପଥରେ କଳ୍ପବୃକ୍ଷ ଅବସ୍ଥିତ ଅଛନ୍ତି । ତାହା ସହିତ ଏହା ମନୁଷ୍ୟର କଳ୍ପନା ପୂରଣ କରୁଥିବାରୁ 'କଳ୍ପବଟ' ଭାବେ ନାମିତ ଓ ପୂଜିତ ହୋଇଛନ୍ତି । ବାଞ୍ଛାବଟ ଏବଂ କଳ୍ପବଟ ଦକ୍ଷିଣ ଦ୍ୱାର ପାର୍ଶ୍ୱସ୍ଥ ହୁଇ 'ଦେବବଟ' । ସେହି ବୃକ୍ଷମୂଳରେ ଯେ ଯାହା ମାନସିକ କରିଥାନ୍ତି, ତାହା ପୂରଣ ହୋଇଥାଏ ।

ଶ୍ରୀମନ୍ଦିରର ଚାରିଦିଗରେ ଅନେକ ବଟବୃକ୍ଷମାନଙ୍କ ମଧ୍ୟରୁ ପୂର୍ବପାର୍ଶ୍ୱର ଲକ୍ଷ୍ମୀ ଠାକୁରାଣୀଙ୍କର ପ୍ରସ୍ତୁତ ମହାପ୍ରସାଦ କ୍ଷେତ୍ର 'ଆନନ୍ଦବଜାର'ରେ ଚାରିପାଞ୍ଚଟି ବଟବୃକ୍ଷ ଦେଖିବାକୁ ମିଳନ୍ତି ସେମାନଙ୍କୁ 'କୈବଲ୍ୟବଟ' ବୋଲି କୁହାଯାଏ ।

ରୋଷଘର ନିକଟରେ ଏକ ପୁରାତନ ବଟବୃକ୍ଷ ରହିଅଛନ୍ତି ।

ଉତ୍ତରଦ୍ୱାରରେ ଚାରିଗୋଟି ବିଶାଳ ବଟବୃକ୍ଷ ରହିଛନ୍ତି । ଗୋଟିଏ କୋଇଲି ବୈକୁଣ୍ଠର ବାହାରେ ଅନ୍ୟ ତିନୋଟି କୋଇଲି ବୈକୁଣ୍ଠ ଭିତରେ ରହିଛନ୍ତି । ବାହାର ବଟମୂଳରେ ଉତ୍ତରାୟଣୀ ଦେବୀ ପୂଜା ପାଉଛନ୍ତି । କୋଇଲି ବୈକୁଣ୍ଠରେ ସିଆଳିଲତା ଏକ ଅଶ୍ୱତ୍ଥ ବୃକ୍ଷ ସହିତ ସଂଯୁକ୍ତ ହୋଇ ରହିଛନ୍ତି । ଅନ୍ୟ ବଟ ଦ୍ୱୟ କୂର୍ମ ପାଚେରୀ ପାଖରେ ଭିନ୍ନ ଭିନ୍ନ ଭାବରେ ରହିଛନ୍ତି । ଏହି ବଟଦେବତାମାନଙ୍କୁ 'ବୈକୁଣ୍ଠ ବଟ' ବୋଲି କୁହାଯାଏ ।

ସାକ୍ଷାତ୍ ବ୍ରହ୍ମ ସ୍ୱରୂପ ଏହି କଳ୍ପ ବୃକ୍ଷର ମୂଳରେ ବା ତଳେ ଅବସ୍ଥିତ ଏବଂ ଏଠାରେ ଅଳ୍ପ କର୍ମ ବହୁ ଫଳ ଦାୟକ ହୋଇଥାଏ । ସ୍ୱୟଂ ବ୍ରହ୍ମ ସ୍ୱରୂପ, ଶତ୍ରୁକୁ ପ୍ରତିହତ କରିବାର ସର୍ବ ଶକ୍ତିମାନ ଈଶ୍ୱର ଆଦ୍ୟରୁ ଯେଉଁ ପୁରରେ ବାସ କରି ଆସୁଛନ୍ତି ସେ ସ୍ଥାନ ପବିତ୍ର ଓ ସେ ବୃକ୍ଷ ମଧ୍ୟ ଶ୍ରେଷ୍ଠ ତରୁ ଭାବେ ବନ୍ଦନୀୟ । ବରଗଛକୁ ଅମରବଟ ବା ''ଟ୍ରି ଅଫ୍ ଇମୋଟାଲିଟି'' କୁହାଯାଏ ।

ଦୀର୍ଘବର୍ଷ ଏହା ବଞ୍ଚି ରହିଥାଏ । ଏହାକୁ 'ଅମରବୃକ୍ଷ' ବା 'ଆଦ୍ୟବୃକ୍ଷ' ବୋଲି ମାନ୍ୟତା ଦିଆଯିବାର କାରଣ । ବରଗଛରୁ ଅନେକ ଓହଳ ସୃଷ୍ଟି ହୁଏ । ସେହି ଓହଳଗୁଡ଼ିକ ଦିନେ ଚେର ଭଳି ଗଛକୁ ଶକ୍ତି ଦିଏ ଏବଂ ଏହାର ଆୟତନକୁ ବ୍ୟାପୀବାକୁ ସୁଯୋଗ ଦିଏ । ଗୋଟିଏ ଗଛରୁ ଅନେକ ଗଛ ସୃଷ୍ଟି ହୋଇଥାଏ । ଏହାର ଏକାଧିକ ମୂଳ ଥିବାରୁ ବଟବୃକ୍ଷକୁ 'ବହୁପଦ ବୃକ୍ଷ' ବୋଲି କୁହାଯାଇଥାଏ ।

ହରିବଂଶରେ ବଟବୃକ୍ଷକୁ ଦେବନାଶନ ବୃକ୍ଷର ଅଂଶ ବୋଲି ବର୍ଣ୍ଣନା କରାଯାଇଛି । ନିରଞ୍ଜନପୁର ହେଲା ନାରାୟଣଙ୍କର ବାସସ୍ଥାନ । ଏହାକୁ ବୈକୁଣ୍ଠପୁରୀ କୁହାଯାଏ । ବୈକୁଣ୍ଠପୁରୀରେ ପ୍ରବେଶ ଦ୍ୱାରରେ 'ଦେବନାଶନ' ବୃକ୍ଷ ରହିଛି ।





ସେହି ନିଦାବିଷ୍ଣୁଙ୍କର ପୁର ସିଂହଦ୍ୱାରେ ।
ଦେବନାଶନ ବୃକ୍ଷେକ ଅଛି କିଛି ଦୂରେ ।।

ସେହି ଦେବନାଶନ ବୃକ୍ଷର ତିନି ଯୋଜନ ଦୂରରେ ଅନ୍ୟ ଏକ ବଟବୃକ୍ଷ ରହିଛି, ଯାହାକୁ 'ବାଞ୍ଛାବଟ' କୁହାଯାଏ ।

ଏହି ବୃକ୍ଷତଳେ କେବଳ ଯିଏ ପହଞ୍ଚିଥାଏ ତାହାର ସହସ୍ରଯୁଗ ପର୍ଯ୍ୟନ୍ତ ମୃତ୍ୟୁ ହୁଏ ନାହିଁ ।

ପୁରାଣ ଅନୁସାରେ ଏହି ଦେବନାଶନ ବୃକ୍ଷ ବ୍ରହ୍ମାଙ୍କର ଅଭିଶାପ ଯୋଗୁଁ ମର୍ତ୍ତ୍ୟରେ ଶମୀବୃକ୍ଷ ରୂପେ ମହାଭାରତ ଯୁଦ୍ଧରେ ଶୁଭସ୍ତମ୍ଭ ଭାବରେ ଅବସ୍ଥାପିତ ହୋଇଥିଲା । ଶ୍ରୀକୃଷ୍ଣଙ୍କର କୃପାରୁ ମୁକ୍ତି ଲାଭ କରି ପୁନଶ୍ଚ ଯଥା ସ୍ଥାନକୁ ପ୍ରତ୍ୟାବର୍ତ୍ତନ କରିଥିଲେ ।

ସେହିପରି ବାଞ୍ଛାବଟ ବ୍ରହ୍ମାପୁତ୍ରମାନଙ୍କ ଦ୍ୱାରା ଜଗତକଲ୍ୟାଣ ନିମିତ୍ତ ଧରାଧାମକୁ ଆସିଥିଲେ ।

''ଦଶମୁଖ ବ୍ରହ୍ମା ଅଷ୍ଟ ପୁତ୍ର ଆଣିଥିଲେ ।
ତହିଁରେ ସେ ଆଠ ବଟ ନିର୍ମାଣ କରିଲେ ।।

ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତ୍ରିଭୁବନ ଭିତରେ ।
ସାତଗୋଟି କଳ୍ପବଟ ଅଛି ତରୁ ସାରେ ।''

ସାତଗୋଟି କଳ୍ପବଟ ବିଷୟରେ କୁହାଯାଇଛି । ଏମାନେ ହେଲେ ଶ୍ରେଷ୍ଠତରୁ । ସେହି ଦେବତରୁମାନେ ହେଲେ–

(୧) ପାତାଳପୁରର 'ଅମୃତବଟ'

(୨) ଯଶୋବନ୍ତପୁରର 'ସଙ୍କେତବଟ'

(୩) ମେରୁପ୍ରଭାର 'ନିର୍ମଳବଟ'

(୪) ଚିତ୍ରକୁଟ ଆଶ୍ରମର 'ବାଞ୍ଛାବଟ'

(୫) ନୀଳଶୈଳର 'କଳ୍ପନାବଟ'

(୬) ଶ୍ରୀଲଙ୍କାର 'ନିକୁମ୍ଭିଲାବଟ'

(୭) ଶ୍ରୀକ୍ଷେତ୍ରର 'କଳ୍ପବଟ'

ପୁରୁଷୋତ୍ତମ କ୍ଷେତ୍ରକୁ ଯେଉଁମାନେ ତୀର୍ଥଯାତ୍ରୀ ଭାବେ ବହୁ ଦୂରଦୂରାନ୍ତରୁ ଚାଲିଚାଲି ଆସୁଥିଲେ ସେମାନେ ଜଗନ୍ନାଥ ସଡ଼କର ପଥେପଥେ ହଜାର ହଜାର ବର, ଅଶ୍ୱତ୍ଥ, ଆମ୍ବ, ନିମ୍ବ ପ୍ରଭୃତି ଗଛ ମୂଳେ ରାତିରେ ବିଶ୍ରାମ ନେଉଥିଲେ । ପ୍ରଚଣ୍ଡ ଖରାରୁ ରକ୍ଷାପାଇବା ପାଇଁ ଗଛର ଛାଇରେ ସଂଘବଦ୍ଧ ଭାବରେ ଦିନବେଳା ଯାତ୍ରା କରୁଥିଲେ । ପୁରୀ ସହର ଥିଲା ସମୁଦ୍ରକୂଳର ଏକ ବିସ୍ତୃତ ବାଲିପନ୍ତା ।

ଧୀରେ ଧୀରେ ମଠ, ମନ୍ଦିର, ଆଶ୍ରମ ଗଢ଼ିଉଠିଲା । ସବୁଠି ଥିଲା ଗଛ ଆଉ ଗଛ । ବଟ ଓ ଅଶ୍ୱତ୍ଥ ଗଛ ବୈଜ୍ଞାନିକ ଦୃଷ୍ଟିକୋଣରୁ ପ୍ରଚୁର ଅମ୍ଳଜାନ ପ୍ରଦାନ କରୁଥିବାରୁ ଋଷିମୁନିମାନଙ୍କ ନିର୍ଦ୍ଦେଶିତ ବିଧିବିଧାନ ଅନୁସାରେ କେଉଁ ପୁରାକାଳରୁ ଆମେ ବୃକ୍ଷପୂଜା କରି ଆସୁଛୁ ।

ଶ୍ରୀମନ୍ଦିର ବା ଶ୍ରୀକ୍ଷେତ୍ରର ବଟ ଦେବତାଙ୍କର ମହାନ୍ ସଂସ୍କୃତି ସାରା ଭାରତବର୍ଷରେ ବିଭିନ୍ନ ତୀର୍ଥ କ୍ଷେତ୍ରରେ ଦେଖିବାକୁ ମିଳିଥାଏ । ବୃକ୍ଷ ପୂଜା ଆମ ସଂସ୍କୃତିର ବୈଶିଷ୍ଟ୍ୟ । ଏହି ପରଂପରା ଦ୍ୱାରା ଆମେ ପ୍ରକୃତି ପ୍ରତି ବଶମ୍ୱଦ ହେବା ସହିତ ଆମେ ନିଜକୁ ରକ୍ଷାକରି ପାରୁଛୁ ।

ଶ୍ରୀକ୍ଷେତ୍ରର ସଂସ୍କୃତି ସାରା ଭାରତବର୍ଷର ଧର୍ମ ସଂସ୍କୃତିର ମୂଳଉତ୍ସ । ଶ୍ରୀକ୍ଷେତ୍ରର ଅନେକ ବଟବୃକ୍ଷମାନଙ୍କ ମଧ୍ୟରୁ ସପ୍ତବଟର ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି । ଶ୍ରୀକ୍ଷେତ୍ରର ମହିମା ସହ ଏହି ପ୍ରାଚୀନ ବଟଗୁଡ଼ିକ ସଂପର୍କିତ ହୋଇଛି । ବୃକ୍ଷପୂଜା ଦ୍ୱାରା ଦୁଃଖ ବିନାଶ ଓ କାମନା ସିଦ୍ଧି ହୋଇଥାଏ ।

**କଳ୍ପବଟ**

କଳ୍ପବଟ ସଂପର୍କରେ (୨ୟ ଭାଗ, ଶ୍ରୀପୁରୁଷୋତ୍ତମ ଚାଲଯିବା) ସ୍ୱତନ୍ତ୍ର ଭାବେ ଆଲୋଚନା କରାଯାଇଛି । ତଥାପି ସପ୍ତବଟ ମଧ୍ୟରେ ଶ୍ରୀମନ୍ଦିର ମଧ୍ୟରେ ଥିବା କଳ୍ପବଟ ସଂପର୍କରେ ଅଳ୍ପରେ ସୂଚନା ଦିଆଯାଇଛି । ଏହାଙ୍କର ଉପାସନା କଲେ ମନର କଳ୍ପନା ବା ମନୋବାଞ୍ଛା ପୂରଣ ହୋଇଥାଏ । ମାୟାବଦ୍ଧ ଜୀବ ବିଭିନ୍ନ ପ୍ରକାର ଆଶାରେ ଛଟପଟ ହୋଇଥାଏ । ତା'ର ଅସୁମାରି ଆଶା ସେ ଆଶା କେବେ ବି ସରେ ନାହିଁ । ଯେତେ ବୟସ ବଢ଼େ, ଲୋଭ





ସେତେ ବଢ଼େ । ଶ୍ରୀକ୍ଷେତ୍ରକୁ ଆସି କଳ୍ପବଟରେ ଗୋଡ଼ିବାନ୍ଧି ମନକୁ ବୁଝାଉଥାଏ । ବହୁ ଐତିହ୍ୟ, ସଂସ୍କୃତି, ଘଟଣା, ପୂଜାର୍ଚ୍ଚନା, ସାରା ଭକ୍ତଜନଙ୍କର ଆଶାଭରସା ସାଜି କଳ୍ପବଟ ସେମିତି ରହିଛନ୍ତି । ତାଙ୍କର କ୍ଷୟ ନାହିଁ କି ବୃଦ୍ଧି ନାହିଁ । କଳ୍ପବଟକୁ ଘେରି ରହିଛନ୍ତି ମହାଦେବ, ଦେବଦେବୀ । ଉତ୍ତର ଦିଗକୁ ରହିଛନ୍ତି ବାଟମଙ୍ଗଳା, ପଶ୍ଚିମରେ ରହିଛନ୍ତି ପଞ୍ଚମହାଦେବ, ମୁକ୍ତିମଣ୍ଡପ ଏବଂ ଆଉ ଅନେକ ମନ୍ଦିର । ଦକ୍ଷିଣ ଦିଗରେ ବଟଗଣେଶ ।

କଳ୍ପବଟ ଉପାସନା ଓ ପରିକ୍ରମାର ମଧ୍ୟ ବିଧି ରହିଛି ।

ସତ୍ୟଯୁଗରେ କଳ୍ପବଟ ଥିଲା ସ୍ୱର୍ଗରେ । ତ୍ରେତୟାରେ ଅଯୋଧ୍ୟାରେ ଏହାର ଆଶିଷ ନେଇ ଶ୍ରୀରାମଚନ୍ଦ୍ର ଅଯୋଧ୍ୟାରେ ରାଜଶାସନ ଆରମ୍ଭ କରିଥିଲେ । ଦ୍ୱାପର ଯୁଗରେ ସତ୍ୟଭାମାପୁରର ଏହାର ଅବସ୍ଥିତି ଥିଲା କଳିଯୁଗରେ ଦୁଃଖଦୂରିତ ନାଶନ ଓ ମନୋବାଞ୍ଛା ପୂରଣ ପାଇଁ ଶହଶହ ବର୍ଷ ଧରି ଶ୍ରୀମନ୍ଦିର ଅବସ୍ଥିତ ଅଛନ୍ତି ।

**ଅଘୋରବଟ**

ପୁରୁଷୋତ୍ତମ କ୍ଷେତ୍ରରେ ଦ୍ୱିତୀୟ ପ୍ରାଚୀନବଟ ହେଲେ 'ଅଘୋରବଟ' । ଶିବ ଉପାସକ, ଅଘୋରୀ ଉପାସକମାନଙ୍କ ପାଇଁ ଆରାଧ୍ୟ ବୃକ୍ଷ । ଏହା କଟକୀପେଣ୍ଠ ଶ୍ମଶାନ ନିକଟରେ ଅବସ୍ଥିତ ।

ମାର୍କଣ୍ଡେଶ୍ୱର ମହର୍ଷିଙ୍କ ଆଶ୍ରମରେ ରହିଛି ଅଘୋରବଟ । ଏହା ନିକଟରେ ରହିଛି ମାର୍କଣ୍ଡେଶ୍ୱର ନାବଭୂମି ମାର୍କଣ୍ଡେୟ କ୍ଷେତ୍ର ।

ଅନେକ ପୌରାଣିକ ତଥ୍ୟ ଏହା ଉପରେ ରହିଛି ।

ଏହି ବଟ ମୂଳରେ ଋଷି ମାର୍କଣ୍ଡେୟ ତପସ୍ୟା କରି ସିଦ୍ଧିଲାଭ କରିଥିଲେ, ତେଣୁ ଏହି ପୀଠଟି ଶ୍ରୀଜଗନ୍ନାଥଙ୍କ ପାଇଁ ପବିତ୍ର କ୍ଷେତ୍ର ଅଟେ । ବ୍ରହ୍ମପୁରାଣ ଅନୁସାରେ ପ୍ରଳୟ କାଳରେ ଜଗତ ଜଳାର୍ଣ୍ଣବ ହୋଇ ଯାଇଥିଲା । ଗୋଟିଏ ପତ୍ରରେ ଶିଶୁ ରୂପରେ ଭଗବାନ ସ୍ୱୟଂ ଶୟନ କରିଥିଲେ । ଏହି ରୂପଟି ମାର୍କଣ୍ଡେୟ ଦେଖିଲେ । ସେ ଆଶ୍ଚର୍ଯ୍ୟ ହେଲେ, ଚରାଚରଶୂନ୍ୟ ଘୋର ଜଳରାଶିରେ କିପରି ଏ ଘଟଣା ଘଟିଲା ? କେହି ଜାଣିପାରିଲେ ନାହିଁ ।

ସେ ନିଜକୁ ଧିକ୍କାର କଲେ । ତପସ୍ୟାରେ ବସିଲେ । ତପ ଶକ୍ତି ବଳରେ ଜାଣିଲେ ଯେ ସ୍ୱୟଂ ନାରାୟଣ ହିଁ ଆବିର୍ଭୂତ ହୋଇଛନ୍ତି । ଜ୍ଞାନ, ଶକ୍ତି, ତପସ୍ୟା କରି କିଛି ଲାଭ ନାହିଁ ଯଦି ସେ ପ୍ରଭୁଙ୍କୁ ଜାଣିପାରିଲି ନାହିଁ ।

ଏହି ସମୟରେ ପ୍ରଭୁ ଋଷିଙ୍କର ମନକଥା ଜାଣି କହିଲେ– ''ତୁମେ ଏବେ ମୋ ଶରୀରରେ ପ୍ରବେଶ କର । ଆଉ ବିବ୍ରତ ବା ଭ୍ରମରେ ପଡ଼ନାହିଁ । ତୁମ ପାଇଁ ମୋ ଇଚ୍ଛାରେ ଏ ଧରା ଧାମରେ ଅନେକ ଦାୟିତ୍ୱ ରହିଛି । ଆରମ୍ଭ କର । ଶିଶୁ କଅଁଳପାଟିକୁ ଆଁ କରିଦେଲା । ତାଙ୍କର ବର୍ଦ୍ଧିତ ମୁହଁ ବାଟେ ଋଷି ମାର୍କଣ୍ଡେୟ ପ୍ରବେଶ କଲେ ।

ସେ ଶିଶୁଟିର ପେଟରେ ଅନେକ କଥା ଦେଖିଲେ ତା'ପରେ ସେ ଶ୍ରୀମନ୍ଦିରର ଅଭ୍ୟନ୍ତରରେ ଅପେକ୍ଷା କଲେ । ଶିଶୁଟି ହସୁଥିଲା ।

ମହର୍ଷିଙ୍କର ଉଦ୍‌ବିଗ୍ନ ଚେତନାକୁ ଶାନ୍ତ କରିବା ପାଇଁ ମନୋହର ଶ୍ରୀପୁରୁଷୋତ୍ତମ ରୂପ ଧାରଣ କଲେ । ମହର୍ଷି ପ୍ରଭୁଙ୍କର ରୂପ ମାଧୁରୀ ଦର୍ଶନ କରି ମୁଗ୍‌ଧ ହେଲେ । ତାଙ୍କ କଣ୍ଠରୁ ସ୍ତୁତି ବାହାରିଲା । ସେ ସେହି ସ୍ତୁତିକୁ ବ୍ରହ୍ମପୁରାଣରେ ସ୍ଥାନ ଦେଇଛନ୍ତି । ମହର୍ଷି ଶ୍ରୀକ୍ଷେତ୍ରର ଉତ୍ତର ପଶ୍ଚିମ କୋଣରେ ଅବସ୍ଥାନ କଲେ । ସମୟକ୍ରମେ ପବିତ୍ର ବଟବୃକ୍ଷ ହେଲେ ଅଘୋରବଟ । ସେହି ମହର୍ଷି ବଟବୃକ୍ଷ ପରି କାଳଜୟୀ ହୋଇପାରିଲେ ।

**ଗୋଛନ୍ଦବଟ**

ଶ୍ରୀକ୍ଷେତ୍ରରେ ଗୋଛନ୍ଦବଟ ବଡ଼ ରହସ୍ୟମୟ । ଗୁରୁ ସ୍ୱାମୀ ଅଚ୍ୟୁତ ମହାପୁରୁଷ ଭଗବତ୍ ରହସ୍ୟର ଶୂନ୍ୟସ୍ୱରୂପ । ସେ ସଦା ଜାଗ୍ରତ ମୃତ୍ୟୁଞ୍ଜୟ ଅଟନ୍ତି । ଏହି ସ୍ଥାନରେ ଅଚ୍ୟୁତାନନ୍ଦଙ୍କ ଆଶ୍ରମ ଥିଲା । ଏଠାରେ ମଧ୍ୟ ରହିଛି ଶୂନ୍ୟ ପୋଥି । ଶୂନ୍ୟ ପୋଥି ପରମ୍ପରା ଭାରତର ଅନ୍ୟ କେଉଁଠି ନାହିଁ । ଏହି ପୋଥିରେ ଉପଯୋଗୀ ଅନେକ

ଆଧ୍ୟାତ୍ମିକ ତତ୍ତ୍ୱ ରହିଛି । ଏହାକୁ ସିଦ୍ଧିପୋଥି ବୋଲି କୁହାଯାଏ ।

ମାଳିକାରେ ଲେଖାଯାଇଛି, ଜଗତ ମଙ୍ଗଳ ପାଇଁ ସଂଖ୍ୟାଧିକ ଶୂନ୍ୟପୋଥି ଏହି ବଟମୂଳରୁ ମିଳିବ । ଏହି ବଟ ତଳେ ଶରଣାଗତ ଭାବରେ ପ୍ରାର୍ଥନା କଲେ ସତ୍‌କାର୍ଯ୍ୟ ହୋଇଥିଲେ ତାହା ପୂରଣ ହୋଇଥାଏ । ଏହା ହିନ୍ଦୁଧର୍ମର ମୂଳ କଥା ଓ ବିଶ୍ୱାସ ଉପରେ ପ୍ରତିଷ୍ଠିତ ।

**କାମ୍ୟବଟ**

ଶ୍ରୀ ଅଙ୍ଗିରା ମହର୍ଷିଙ୍କ ଆଶ୍ରମରେ ରହିଛି ଏହି ପବିତ୍ର ବଟ କାମ୍ୟବଟ । ଆଶ୍ରମଟି ଦୋଳମଣ୍ଡପ ସାହିର ଜହ୍ନିମୁଣ୍ଡଆଠାରେ ଅବସ୍ଥିତ । କାମ୍ୟବଟକୁ ପୂଜା ଦ୍ୱାରା ସନ୍ତୁଷ୍ଟ କଲେ ସବୁ କାମନା ପୂରଣ ହୋଇଥାଏ ଏହି ବିଶ୍ୱାସ ରହିଛି । ଶ୍ରୀମନ୍ଦିରର କଳ୍ପବଟଠାରୁ କାମ୍ୟବଟ ଭୂମିର ମହିମା ବହୁ ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି । ଏହି ବଟର ଉତ୍ତରପାର୍ଶ୍ୱରେ ଶ୍ରୀଜଗନ୍ନାଥଙ୍କ ଦୋଳବେଦୀ ଥିଲା । କାମ୍ୟବଟର ବିଶାଳ ଶାଖା ପ୍ରଶାଖାର ଛାଇରେ ଦୋଳଉତ୍ସବ ପାଳନ ହେଉଥିଲା । ସେତେବେଳଠାରୁ ପ୍ରଭୁ ସ୍ୱୟଂ ରତ୍ନସିଂହାସନରୁ ଆସି ଦୋଳବେଦିରେ ବିଜେ କରୁଥିଲେ ।

ଏବେ ଏହି ଦୋଳବେଦି ଅଲୋଡ଼ା ହୋଇପଡ଼ିଛି । ଠାକୁରଙ୍କ ପ୍ରତିନିଧି ଶ୍ରୀମନ୍ଦିରର ଉତ୍ତର ପଶ୍ଚିମରେ ନିର୍ମିତ କଳାମୁଗୁନି ପଥରରେ ନିର୍ମିତ ଦୋଳବେଦିରେ ଝୁଲଣ ପାଇଁ ବିଜେ କରୁଛନ୍ତି ।

**କାଉଁରୀବଟ**

ମା' ବାଟମଙ୍ଗଳାଙ୍କ ପୂର୍ବରୁ ବାଟ ଗାଁ ଘାଟ । ସେଇଠି ଥିଲା କାଉଁରୀବଟ । ଜଗନ୍ନାଥ ସଡ଼କ କଡ଼ରେ ଥିଲା ଏହି ବଟ । କାମାକ୍ଷାପୀଠରୁ ଜଣେ ତନ୍ତ୍ର ସାଧିକା ସେହି ବଟରେ ବସି ପୁରୀ ଆସୁଥିଲେ ।

ନିତେଇଧୋବଣୀର ଦୃଷ୍ଟି ପଡ଼ିଥିଲା । ମନ୍ତ୍ରବଳରେ ସେ ସେହି ବଟକୁ ତଳକୁ ଓହ୍ଲେଇ ଦେଇଥିଲା । ସେ ମହାନତନ୍ତ୍ର ସାଧିକା ଥିଲା । ବଟବୃକ୍ଷରେ ଆସିଥିବା କାମାକ୍ଷାର ତନ୍ତ୍ର ସାଧିକା ପଚାରିଥିଲା ନିତେଇକୁ– ''କାହିଁକି ମତେ ଓ ମୋ ଗଛକୁ ତୁ ଏହି ଅଧବାଟରେ ଓହ୍ଲେଇ ଦେଲୁ ?''

ନିତେଇଧୋବଣୀ କହିଥିଲା– ତୁ ବଡ଼ ସାଧିକା ହୋଇପାରୁ, ଜୀବନ୍ତ ଗଛ ଉପରେ ବସି କ'ଣ ପାଉଛୁ ? ନିର୍ଜୀବ ଉପରେ ବସିକି ଯାଆ । କାମାକ୍ଷାର ସାଧିକା କହିଥିଲେ– ''ମୋର ସେ ସାଧନା ନାହିଁ ।''

ଏଥର ଖଣ୍ଡେ କାଠ ତିଆରି ଶୁଖିଲା ଚଉକାଠ ଉପରେ ବସି ନିତେଇଧୋବଣୀ ଶୂନ୍ୟରେ ବୁଲି ତଳକୁ ଓହ୍ଲେଇ ଆସିଥିଲା । ସେଇଦିନୁ ସେ ବରଗଛ ସେଇଠି ରହିଯାଇଥିଲା । 'କାଉରୀବଟ' ଭାବରେ ତାହା ପୂଜା ପାଉଥିଲା ।

ମହାବାତ୍ୟାରେ ୧୯୯୯ ମସିହାରେ ଏହି ବଟବୃକ୍ଷ ଧ୍ୱଂସ ପାଇଯାଇଛି । ଅଛି ଅନେକ ମହାଦେବ ମନ୍ଦିର । ପୂର୍ବେ ଦୂରଦୂରାନ୍ତର ଯାତ୍ରୀମାନେ ଏହି ସ୍ଥାନରେ ନିର୍ଭୟରେ ବିଶ୍ରାମ ଓ ଆଶ୍ରୟ ନେଇ ତୀର୍ଥରେ ଯାଉଥିଲେ ।

**ସୋଲାଖିଆବଟ**

ସୋଲାଖିଆବଟର ମହିମା ହେଲା ଯେତେବେଳେ 'ଉଆଁସ ଦାଣ୍ଡ' ଅର୍ଥାତ୍ ଶ୍ରୀମନ୍ଦିରଠାରୁ ସ୍ୱର୍ଗଦ୍ୱାର ଯିବା ରାସ୍ତାରେ ଶବ ନେଇ ଶ୍ମଶାନକୁ ଗଲାବେଳେ ଗାଁ ପଟେ ଯେଉଁ ବଟ ପଡ଼େ ତାହାକୁ ସୋଲାଖିଆ ବର କହନ୍ତି । ଏହିଠାରୁ ଶବର ଓଜନ ବଢ଼ିଯାଏ । ଏହା ଥିଲା ଶେଷ ଗଛ ଏବଂ ବରଗଛ, ଯା' ପରେ ବାଲିପନ୍ତା ଆରମ୍ଭ ହୋଇଯାଇଥିଲା । ଏହିଠାରୁ ନୀଳାଚଳ କ୍ଷେତ୍ରର 'ପ୍ରେତ ଭୂମି'ର ଆରମ୍ଭ । ପ୍ରେତବାସ କରୁଥିବା କ୍ଷେତ୍ରରେ ତନ୍ତ୍ର ସାଧନା କରାଯାଇଥାଏ । ବହୁ ସ୍ଥାନରୁ ଅଘୋରୀମାନେ ଆସି ତୀର୍ଥବାସ କରୁଥିଲେ । ଏହିଠାରେ ଯୋଜନଯୋଜନ ଦୂରର ଯୋଗୀ କର୍ଣ୍ଣମଗିରି ବରଗଛରେ ବସି ଉଆସ ଦାଣ୍ଡରେ ଓହ୍ଲାଇଥିଲେ ଏବଂ ସୂକ୍ଷ୍ମ ଶରୀର ଧାରଣ କରି ଅଣସର ଘରେ ଶ୍ରୀଜଗନ୍ନାଥଙ୍କର ଲୀଳା ଦର୍ଶନର ଅଭିଳାଷ ପୂରଣ କରିବାକୁ ଚେଷ୍ଟା କରି ହାର ମାନିଥିଲେ । ସେହି ସାଧୁ ସୋଲାଖାଇ ବଞ୍ଚୁ ଥିଲେ । ମାଙ୍କଡ଼ମାନଙ୍କୁ ସୋଲା

ଖାଇବାକୁ ଦେଇଥିଲେ । ସାଧୁ ଯେଉଁଠି ରହୁଥିଲେ ସେଠି ରହିଛି ପୁରୁଣା ବଟ ସାଧୁଙ୍କ ନାମରେ । ସେହି ବଟକୁ ସୋଲାଖିଆ ବଟ ଭାବେ ନାମିତ କରାଯାଇଛି ।

**ନିକୁମ୍ଭିଳାବଟ**

କୁହାଯାଏ ଶ୍ରୀପୁରୁଷୋତ୍ତମର ଏହା ତୃତୀୟ ପ୍ରାଚୀନ ବରଗଛ । ଏହାର ସ୍ଥିତି ହେଲା ଶ୍ରୀମହେଶ୍ୱର ମହାଦେବଙ୍କ ପୀଠରେ । ପୁରାଣ ପ୍ରସିଦ୍ଧ ଏହି ବଟ, ମହର୍ଷି କଣ୍ୱଙ୍କ ସମୟରୁ ରହିଛି । ଏହି ବଟ ପୁରୀର ସାହିଯାତ୍ରା ସହ ସମ୍ବନ୍ଧିତ ।

ନିକୁମ୍ଭିଳା ବଟ ଶ୍ରୀଲଙ୍କାରେ ରହିଛି । ରାବଣ ଯେଉଁଠି ବସି ଦୁର୍ବାର ସାଧନା କରିଥିଲା, ସେହିଠାରେ ଯଜ୍ଞକରି ସିଦ୍ଧିଲାଭ କରିଥିଲା । ପୁରୀରେ ଏହି ବଟବୃକ୍ଷ ତଳେ ସାହିଯାତ୍ରାର ରାମ ରାବଣ ଯୁଦ୍ଧ ପୂର୍ବରୁ ସତ୍ୟ କରାଯାଇଥାଏ । ଏହାକୁ ପୁରୀଭାଷାରେ 'ଯୁଦ୍ଧରକ୍ଷା' ନୀତି କୁହାଯାଏ । ଏହି ବରଗଛଠାରୁ ବାଲିସାହିର କଳାକାର 'ରାବଣ' ମାର୍କଣ୍ଡେଶ୍ୱର ସାହି ଆଖଡ଼ାର 'ଭଗବତୀ କୋଟ'ରୁ ବାହାରିଯାଆନ୍ତି ସୁସଜ୍ଜିତ ମଞ୍ଚକୁ । ଶ୍ରୀରାମଙ୍କୁ ବଧ କରିବାକୁ ଯିବା ପୂର୍ବରୁ ମାଆ ଭଗବତୀଙ୍କୁ ପ୍ରାର୍ଥନା କରିଥାନ୍ତି । ପ୍ରତିଟି ଶୁଭକର୍ମରେ ଆମେ ଆମର ଦେବଦେବୀମାନଙ୍କୁ ମାଜଣା ଓ ପ୍ରାର୍ଥନା ବିଧି ବହୁ ପ୍ରାଚୀନ ।

ମା'ଙ୍କର ଅନୁମତି ନେଇ ଯୁଦ୍ଧ ଜୟ ପାଇଁ ଉଭୟ ପକ୍ଷ ପ୍ରସ୍ତୁତ ହୋଇଥାନ୍ତି ଏବଂ ଯଦି ଯୁଦ୍ଧରେ ହାରିଯାଆନ୍ତି ତେବେ ସ୍ୱର୍ଗକୁ ଯିବାକୁ ନିଶୁଣି ତିଆରି କରିବାକୁ ସକ୍ଷମ ହେବା ପାଇଁ ବର ପ୍ରାର୍ଥନା କରିଥାନ୍ତି । ମାଆଙ୍କଠାରୁ ବର ପାଇ ପଣାପିଇ ଜଗନ୍ନାଥ ବଲ୍ଲଭର ସାହିଯାତ୍ରାର ରଣକ୍ଷେତ୍ରରେ ପହଞ୍ଚନ୍ତି । ବଟବୃକ୍ଷର ପୂଜା ସହିତ ଆମର ପୌରାଣିକ ଓ ସାମାଜିକ ପରଂପରା ଘନିଷ୍ଠ ଭାବେ ଜଡ଼ିତ ହୋଇ ରହିଛି ।

ଶ୍ରୀମନ୍ଦିରର ବେଢ଼ାରେ ବଟବୃକ୍ଷ 'କଳ୍ପବଟ'ର ମାନ୍ୟତା ଲାଭ କରିଥିଲା ବେଳେ ଅନ୍ୟ ସମସ୍ତ ସ୍ଥାନରେ ଥିବା ବଟବୃକ୍ଷମାନଙ୍କୁ 'ବୋଧିଦ୍ରୁମ', 'କାଳାନ୍ତକବଟ', 'ଅକ୍ଷୟବଟ', 'ବାଞ୍ଛାବଟ', 'ବଂଶୀବଟ', 'କଳ୍ପଦ୍ରୁମ', 'ଦେବନାଶନ ବଟ' ଇତ୍ୟାଦି ନାମରେ ନାମିତ କରାଯାଇଛି ।

ଶ୍ରୀମନ୍ଦିରର ପଶ୍ଚିମ ଦ୍ୱାର ନିକଟରେ 'ଅକ୍ଷୟବଟ' ବିରାଜିତ । ପଶ୍ଚିମ ଦ୍ୱାରରେ ଥିବା ବଟବୃକ୍ଷ ମଧ୍ୟ ପ୍ରାଚୀନ ଏବଂ ଏହି ଅକ୍ଷୟବଟର କିଛି ଅଂଶ କ୍ଷୟ ହୋଇ ଯାଇଥିଲେ ବି ଏହା ପୂଜା ପାଉଛନ୍ତି ।

ସ୍କନ୍ଦପୁରାଣରେ ଅକ୍ଷୟବଟ ଉତ୍ପତ୍ତି ବିଷୟରେ ନାରଦ ଇନ୍ଦ୍ରଦ୍ୟୁମ୍ନଙ୍କୁ ବୁଝିଇଛନ୍ତି । ଏହି ବୃକ୍ଷକୁ ସେ ବିଷ୍ଣୁଙ୍କର ଅଂଶ ବୋଲି କହିଛନ୍ତି ।

ଏହି ଦେବନାଶନ ବୃକ୍ଷର ଛଅ ଗୋଟି ଡାଳ । ସେମାନେ ସତ୍ୟ, ଶୀଳ, ଶାନ୍ତ, ଦୟା, ବିବେକ ଓ ଅକାମର ପ୍ରତୀକ, ଏହି ଦେବନାଶନ ବୃକ୍ଷର ପତ୍ର, ଫୁଲ, ଫଳ ଦେଖାଯାଇ ନ ଥାଏ । ଏହି ବୃକ୍ଷର ଅଶେଷ ଗୁଣ ରହିଛି । ଏହି ବୃକ୍ଷର ଚାରି ଶକ୍ତି ହେଲେ ରବି, ଅଗ୍ନି, ଶଶି, ଅନ୍ଧକାର । ଏହି ବୃକ୍ଷର ଛାଇକୁ ଆସିଲେ ଦେବତାମାନେ ମୃତ୍ୟୁବରଣ କରିଥାନ୍ତି । ସେହି ହେତୁ ଏହି ଦେବବୃକ୍ଷର ନାମ 'ଦେବନାଶନ ବୃକ୍ଷ' ଅଟେ ।

ସ୍କନ୍ଧପୁରାଣରେ ବର୍ଣ୍ଣିତ ହୋଇଛି ଯେ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ହେଉଛି ଶ୍ରୀବିଷ୍ଣୁଙ୍କର ଶରୀର ସ୍ୱରୂପ । ପ୍ରତିଟି କ୍ଷୁଦ୍ର ଅଣୁରୁ ବୃକ୍ଷ, ଜଳ, ସ୍ଥଳ ସବୁ କିଛି ଆନନ୍ଦମୟ । ସବୁକିଛି ପବିତ୍ର ଓ ପ୍ରଶାନ୍ତିର ସଂରଚନା ।

ଋଷିମୁନି, ସାଧୁ, ସନ୍ଥ ପାଗଳ ପ୍ରାୟ ଯେଉଁ ତୀର୍ଥକୁ ଧାଇଁ ଆସି ଆଉ ସେ ସ୍ଥାନ ଛାଡ଼ି ଯିବାକୁ ଚାହୁଁ ନଥିଲେ । ଏଭଳି ପରମ ପବିତ୍ର ଭୂମି ଜଗତରେ କାହିଁ ?

ଶ୍ରୀକ୍ଷେତ୍ର ଶ୍ରୀ ବିଷ୍ଣୁଙ୍କର ଶରୀର ସ୍ୱରୂପ ।
ହେବାରୁ ଶ୍ରେଷ୍ଠତ୍ୱ ଲାଭ କରି ଅମାପ ॥

ଯେତେବେଳେ ସମଗ୍ର ପୃଥ୍ୱୀ ପ୍ରଳୟରେ ସଂପୂର୍ଣ୍ଣ ଅସ୍ତିତ୍ୱ ହରାଇ ଥାଏ ସେତେବେଳେ ଏ କ୍ଷେତ୍ରର ବିଲୟ ଘଟି ନ ଥାଏ । ବିଷ୍ଣୁ ଯେତେବେଳେ ବ୍ରହ୍ମାଙ୍କୁ ପୁରୁଷୋତ୍ତମ କ୍ଷେତ୍ରର ମହିମା ସଂପର୍କରେ କହୁଥିଲେ ସେ ତାହା ପ୍ରତ୍ୟକ୍ଷ





କରି ସେଠାରେ 'ନୀଳପର୍ବତ', 'ରୋହିଣୀକୁଣ୍ଡ' ଓ 'ଅକ୍ଷୟବଟ'ର ସୂଚନା ଦେଇଥିଲେ । ଏ ସମ୍ପର୍କରେ ପୁରାଣ ବର୍ଣ୍ଣନା ହେଲା-

ସେ ନୀଳପର୍ବତର ଯେହୁ ମଧ୍ୟ ସ୍ଥାନ ।
ସେ ସ୍ଥାନେ ଅକ୍ଷୟ ନାମେ ବଟ ବିଦ୍ୟମାନ ।।

ମରଣକୁ ଜୟ କରିଥିବା ମୃତ୍ୟୁଞ୍ଜୟୀ ହେଲେ ହନୁମାନ, ବଳି, ବେଦବ୍ୟାସ, ପର୍ଶୁରାମ, କୃପାଚାର୍ଯ୍ୟ, ବିଭୀଷଣ, ମାର୍କଣ୍ଡେୟ, ଅଶ୍ୱତ୍ଥମା ପ୍ରଭୃତି ଆଠ ମହାତ୍ମାଙ୍କ ମଧ୍ୟରେ ମାର୍କଣ୍ଡେୟ ମୁନି ସାରା ସଂସାର ପ୍ରଳୟ ଜଳରେ ଉବୁଟୁବୁ ହେଉଥିବା ବେଳେ ଏହି ବଟବୃକ୍ଷର ପତ୍ରରେ ବିଷ୍ଣୁ ବାଳମୁକୁନ୍ଦ ଭାବରେ ଶୟନ କରିଥିବା ଦେଖିଥିଲେ । ମୁନି ତାଙ୍କ ଗର୍ଭରେ ପ୍ରବେଶ କରି ବିଶ୍ୱ ବ୍ରହ୍ମାଣ୍ଡ ଦର୍ଶନ କରିଥିଲେ । ଏହି ଦେବବୃକ୍ଷ ବିଷ୍ଣୁଙ୍କ ସ୍ୱରୂପ ରୋହିଣୀକୁଣ୍ଡ ନିକଟରେ ଅବସ୍ଥିତ । ଏହାଙ୍କୁ ଦର୍ଶନ, ସ୍ପର୍ଶନ ଏବଂ ଏହାର ଛାଇରେ ଦଣ୍ଡେ ବିଶ୍ରାମ, ଜପ ଧ୍ୟାନ କଲେ ସର୍ବ ପାପ ଧ୍ୱଂସ ହୋଇଯାଇଥାଏ ।

କେତେକ ଶାସ୍ତ୍ର ଏହି ବୃକ୍ଷର ଛାଲିକୁ 'ବିଷ୍ଣୁ', ଏହାଙ୍କ ଚେରକୁ 'ବ୍ରହ୍ମା', ଡାଳକୁ 'ଶିବ'ଙ୍କର ସ୍ୱରୂପ ବୋଲି ଦିବ୍ୟତା ପ୍ରଦାନ କରିଥାନ୍ତି ।

'ଆଶ୍ରମ', ଶ୍ରୀବିହାର
କଟକ-୭୫୩୦୦୮

# ହେ ଜଗତଜୀବନ

ଦିଲ୍ଲୀପ ହାଲି

ଜୟ ଜଗଦୀଶ, ଜୟ ଜନାର୍ଦ୍ଦନ
ଜଗତକରଣ ହରି
ଜଗବନ୍ଧୁ, ଜଗତ୍‌ପତି, କୃପାସିନ୍ଧୁ
ନୀଳକନ୍ଦର ବିହାରୀ
ହରି କରେ ବନ୍ଦନ
କର ପ୍ରାଣୀଙ୍କ ଦୁଃଖ ଦହନ ।
ରତ୍ନସିଂହାସନେ ଦାରୁବ୍ରହ୍ମ ମୂର୍ତ୍ତି
ରୂପରୁ ଅରୂପ ତୁହି
ଅରୂପରୁ ରୂପ ଓଁକାର ବ୍ରହ୍ମଟି
ରୂପେ ଅଛ ଉଭାହୋଇ
ପ୍ରଭୁ ଜଗତସାଇଁ
ତୁମ ବିନୁ ଆନଗତି ନାହିଁ ।
କି ଭାବେ ବନ୍ଦିବି ତୁମକୁ ହେ ପ୍ରଭୁ
ତୁମେତ ଜଗତସାଇଁ
ନିଷ୍ଠା, ଭକ୍ତି, ଆତ୍ମ ବିଶ୍ୱାସ ବଳରେ
ଜିଣିପାରେ ଜଣେ ମହୀ





ତୁମ୍ଭ ନିର୍ଦ୍ଦେଶବଳେ
କିବା ଅସାଧ୍ୟ ଏ ଭୂମଣ୍ଡଳେ ।
ଶୁଣିଛି ପୁରାଣେ, ଶ୍ରୁତି, ଅନୁଭବେ
ତୁମରି ମହିମାଗାନ
ଏ ସଙ୍କଟକାଳେ ଶରଣ ରକ୍ଷଣ
ଉଦ୍ଧାର ଭକତଜନ
ମହାମାରୀ ବିନାଶ କରି
ରକ୍ଷାକର ହୃଷୀକେଶ ।
କ୍ଷମାମୟ ହରି କର ଦୁଃଖୁପାର
ନହୁଅ ଆଉ ନିର୍ଦ୍ଦୟ
ଆହେ ଜଗନ୍ନାଥ, ପତିତପାବନ
କଟିଯାଉ ସର୍ବଭୟ
ଗଲି ପଦେ ଶରଣ
ରକ୍ଷାକର ଜଗତ ଜୀବନ ।

ବଡ଼ଗଡ଼, ଭୁବନେଶ୍ୱର-୧୮





# ବୌଦ୍ଧ ସଂସ୍କୃତି ଓ ଶ୍ରୀଜଗନ୍ନାଥ

ଅଧ୍ୟାପକ ରବୀନ୍ଦ୍ର କୁମାର ବେହୁରିଆ

ଇତିହାସ ପୃଷ୍ଠଭୂମିରେ ବୁଦ୍ଧ ଓ ଶ୍ରୀଜଗନ୍ନାଥ ପରସ୍ପର ପରିପୂରକ । ଶ୍ରୀଜଗନ୍ନାଥଙ୍କ ପୂଜାବିଧି ଓ ପର୍ବପର୍ବାଣିରେ ହେଉଥିବା ବିଭିନ୍ନ କାର୍ଯ୍ୟଧାରାକୁ ଅନୁଧ୍ୟାନ କଲେ ବୌଦ୍ଧ ଧର୍ମର ପ୍ରଭାବ କିପରି ଜଗନ୍ନାଥ ସଂସ୍କୃତିକୁ ପ୍ରଭାବିତ କରିଛି ତାହା ଜଣାପଡ଼େ । ଯୁଗେ ଯୁଗେ ଧର୍ମ ସଂକଟରୁ ରକ୍ଷା କରିବା ଦୁଷ୍ଟମାନଙ୍କୁ ସଂହାରକରି ସନ୍ଥମାନଙ୍କୁ ପାଳନ କରିବା ପାଇଁ ଭଗବାନଙ୍କର ବିଭିନ୍ନ ଅବତାର ଘଟିଛି । ବିଷ୍ଣୁଙ୍କ ଦଶାବତାର ମଧ୍ୟରୁ ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ, ବାମନ, ପର୍ଶୁରାମ, ରାମ, ବଳରାମ ଓ ବୁଦ୍ଧ ସମସ୍ତେ ଜୀବନ୍ତ ଶରୀରଧାରୀ ହୋଇଥିବାବେଳେ ଦଶମ ଅବତାରରେ କଳ୍କି ଜନ୍ମହୋଇ ପାପ ସଂହାର କରିବ ବୋଲି କୁହାଯାଇଛି । କେତେକ କ୍ଷେତ୍ରରେ ଜଗନ୍ନାଥ ହେଉଛନ୍ତି କଳିଯୁଗର କଳ୍କି ଅବତାର । ସନ୍ଥଙ୍କୁ ପାଳନ ପାଇଁ ଶ୍ରୀକୃଷ୍ଣ ଦ୍ୱାପର ଯୁଗରେ ଆବିର୍ଭାବ ହୋଇଥିଲେ । ସେହିପରି ମହାଭାରତ ଯୁଦ୍ଧର ବିଭୀଷିକାମୟ ଘଟଣା ଦ୍ୱାପର ଓ କଳିଯୁଗର ସନ୍ଧିକ୍ଷଣରେ ଘଟିଥିଲା । ଦ୍ୱାପର ଓ କଳିର ଅବତାର ମଧ୍ୟରେ ମହାପ୍ରଭୁ ଜଗନ୍ନାଥ କଳିଯୁଗର ବୁଦ୍ଧଙ୍କର ଧାର୍ମିକ ବାଣୀକୁ ଶ୍ରୀଜଗନ୍ନାଥଙ୍କ ମାଧ୍ୟମରେ ପ୍ରକାଶିତ କରାଇଛନ୍ତି ।

ବହୁ ଭକ୍ତ ପ୍ରାଚୀନ କାଳରୁ ଜଗନ୍ନାଥଙ୍କୁ ବୁଦ୍ଧ ବୋଲି କଳ୍ପନା କରିଛନ୍ତି । ଏହି କଳ୍ପନା ବହୁ ପ୍ରାଚୀନ ସମୟରୁ ବୌଦ୍ଧ ଭକ୍ତମାନଙ୍କ ମଧ୍ୟରେ ପ୍ରଚଳିତ ଥିଲା । (ପ୍ରଣିପତ୍ୟ ଜଗନ୍ନାଥ ବନ୍ଦନାଟି ଖ୍ରୀଷ୍ଟୀୟ ଷଷ୍ଠ/ସପ୍ତମ ଶତାବ୍ଦୀରୁ ବୌଦ୍ଧ ଭିକ୍ଷୁ ଜଗନ୍ନାଥଙ୍କୁ 'ସର୍ବ ବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମମ୍' ରୂପେ ସ୍ତୁତି କରିଥିବା ଜଣାଯାଏ । ଏହି କଳ୍ପନା ବିଶେଷତଃ ବୌଦ୍ଧ ବଜ୍ରଯାନ ପନ୍ଥୀଙ୍କର । ଏଥିରୁ ସ୍ପଷ୍ଟ ଯେ, ବୌଦ୍ଧ ବଜ୍ରଯାନ ପନ୍ଥାର ସାଧକମାନେ ଜଗନ୍ନାଥଙ୍କୁ ଆରାଧନା କରୁଥିଲେ । ଅତୀତରେ ବଜ୍ରଯାନର ଜଣେ ପ୍ରଧାନ ସାଧକ ଇନ୍ଦ୍ରଭୂତି ଓଡ଼ିଶାର ରାଜା ଥିଲେ । ଇନ୍ଦ୍ରଭୂତିଙ୍କ ରାଜତ୍ୱ କାଳରେ ଜଗନ୍ନାଥ ଓ ବୁଦ୍ଧ ଏକ ଏବଂ ଉଭୟେ ନିରାକାର ବୋଲି ବିଶ୍ୱାସ ରହିଥିଲା ।

ଏହାଛଡ଼ା ଇନ୍ଦ୍ରଭୂତିଙ୍କର ଶିଷ୍ୟ ଅନଙ୍ଗ ବ୍ରଜ ସ୍ୱରଚିତ 'ପ୍ରଜ୍ଞୋଦୟ ବିନିଶ୍ଚୟ ସିଦ୍ଧି' ଗ୍ରନ୍ଥରେ ବୁଦ୍ଧଙ୍କୁ ଜଗନ୍ନାଥ ରୂପେ ବର୍ଣ୍ଣନା କରିଛନ୍ତି (ଉ.ପ୍ର. ଜୁଲାଇ, ୧୯୯୪ । ପୃ.୩୨) । ବୌଦ୍ଧ ସାହିତ୍ୟରେ ବହୁଳଭାବେ ବୁଦ୍ଧଙ୍କର ଅନ୍ୟ ଏକ ନାମ ରୂପେ 'ଜଗନ୍ନାଥ' ବର୍ଣ୍ଣନା କରାଯାଇଥିବା ଜଣାଯାଏ । ବୁଦ୍ଧଙ୍କୁ ବିଷ୍ଣୁଙ୍କ ଏକ ଅବତାର (୯ ଅବତାର) ରୂପେ ପରିକଳ୍ପନା କରି ବୌଦ୍ଧ ଧର୍ମକୁ ହିନ୍ଦୁଧର୍ମର ଏକ ଅଂଶ ରୂପେ ଚିତ୍ରିତ କରାଯାଇଛି । ଏମିତିକି ଏଲୋରାର ଏକ ପ୍ରସିଦ୍ଧ ବୌଦ୍ଧ ମନ୍ଦିରର ନାମ ଜଗନ୍ନାଥ ମନ୍ଦିର ଅଟେ । କନିଂହୋମ୍ ତାଙ୍କ ପୁସ୍ତକରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ବୌଦ୍ଧ ରତ୍ନର ପ୍ରତୀକ ରୂପେ ବର୍ଣ୍ଣନା କରିଛନ୍ତି । କିମ୍ବଦନ୍ତୀ କହେ ଯେ ଶ୍ରୀକୃଷ୍ଣଙ୍କର ଅର୍ଦ୍ଧଦଗ୍ଧ ଶରୀରର ଏକ ଅଂଶ ଜଗନ୍ନାଥଙ୍କ ଦେହରେ ଅଦ୍ୟାବଧି ପୂଜା ପାଉଥିବା ସାରଳା ମହାଭାରତରେ ବର୍ଣ୍ଣନା ଓ ଲୋକବିଶ୍ୱାସ ରହିଛି । ଚୀନ୍ ପରିବ୍ରାଜକ ଫାହିୟାନ୍ ବିଭିନ୍ନ ଦେଶରେ ଚତୁର୍ଥ ଶତାବ୍ଦୀରୁ ବୌଦ୍ଧ ମୂର୍ତ୍ତିମାନଙ୍କୁ ରଥରେ ବସାଇ ରଥଯାତ୍ରା କରାଯିବାର ଯେଉଁ ବିବରଣୀ ରହିଛି, ତାହା ସହିତ ପୁରୀ





ରଥଯାତ୍ରାର ଯଥେଷ୍ଟ ସାମଞ୍ଜସ୍ୟ ରହିଥିବା ମଧ ଦୃଷ୍ଟିଗୋଚର ହୁଏ । ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦ ଅଶଂଖୁଡ଼ି ଅବଢ଼ା ଭାବରେ ପରିଚିତ ଯାହା ଏକ ବୌଦ୍ଧ ତାନ୍ତ୍ରିକ ପ୍ରଥା ଅଟେ ।

ଶବରମାନଙ୍କର ଆରାଧ ଦେବତା ''ଜଗନ୍ତ'' ହେଉଛନ୍ତି ଆଜିର ଶ୍ରୀଜଗନ୍ନାଥ । ଜଗନ୍ନାଥ ସଂସ୍କୃତିରେ ବୌଦ୍ଧ ଧର୍ମର ବହୁ ପ୍ରଭାବ ଯୋଗୁଁ ଜଗନ୍ନାଥ ରୂପୀ ବୁଦ୍ଧଙ୍କର ବିଶ୍ୱ କଲ୍ୟାଣ ଚିନ୍ତା ତାଙ୍କୁ ରାଷ୍ଟ୍ରଦେବତାର ମର୍ଯ୍ୟାଦା ଆଣି ଦେଇଛି । ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ଚୀନ୍ ପରିବ୍ରାଜକ ଫାହିୟାନ ଖୋଟାନ୍‌ରେ ଅନୁଷ୍ଠିତ ରଥଯାତ୍ରା ବିବରଣୀରେ ଯାହା ବର୍ଣ୍ଣନା କରିଛନ୍ତି ତାହା ବୌଦ୍ଧ ଧର୍ମର ପ୍ରତିଫଳନ । ଆଷାଢ଼ ମାସରେ ରଥଯାତ୍ରାର ରାଜାଙ୍କ ଛେରା ପହଁରା କଥା ଫାହିୟାନ ଲେଖିଛନ୍ତି । ବୌଦ୍ଧ ଧର୍ମରେ ଛେରା ପହଁରା କାର୍ଯ୍ୟକରିବା ଏକ ଉଚ୍ଚ ଆଦର୍ଶପଣ ନିଶ୍ଚିତ ।

କେତେକ ଗବେଷକଙ୍କ ମତ ହେଉଛି ଯେ, ଆଜିର ଶ୍ରୀକ୍ଷେତ୍ର ଅତୀତରେ ଏକ ବିରାଟ ବୌଦ୍ଧ ସ୍ତୁପ ଥିଲା ଏବଂ ଏଠାରେ ତିରନ୍ ବୁଦ୍ଧ, ଧମ୍ମ ଓ ସଂଘଙ୍କ ପୂଜା କରାଯାଉଥିଲା । ପରବର୍ତ୍ତୀ କାଳରେ ବ୍ରାହ୍ମଣ୍ୟ ଧର୍ମର ପ୍ରଭାବରେ ସେମାନଙ୍କୁ ଯଥାକ୍ରମେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଭାବରେ ରୂପାନ୍ତରିତ କରାଗଲା । ଏହା ସହ ଶ୍ରୀମନ୍ଦିରରେ ପ୍ରୋଥିତ ନୀଳଚକ୍ରକୁ ମଧ କେତେକ ବୌଦ୍ଧ ମନ୍ଦିର ଉପରେ ଥିବା ଚକ୍ର ବୋଲି ବର୍ଣ୍ଣନା କରିଥାନ୍ତି । ବୌଦ୍ଧ ଧର୍ମ ସେକାଳରେ ଏକ ଜାତି ବର୍ଣ୍ଣ ବିଚାରହୀନ ସମାଜ ପ୍ରତିଷ୍ଠାରେ ଜାଗୃତ ଥିଲା ।

ଆଦିବାସୀ ବୃକ୍ଷ ପୂଜା ପରିକଳ୍ପନା, ଖମ୍ଭପୂଜା, ବା ଦାରୁ ଦେବତାରୁ ବିବର୍ତ୍ତିତ ହୋଇ ଜଗନ୍ନାଥ ମୂର୍ତ୍ତି କଳ୍ପନାରେ ପ୍ରତିଫଳିତ ହୋଇଛି । ବୃକ୍ଷପୂଜା ସମୟରେ ନାଚ, ଗୀତ, ଫୁଲ, ଫଳ, ଧୂପ, ଦୀପ ଦାନର ପ୍ରଭାବ ଆଜି ପୁରୀ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାରେ ପରିଲକ୍ଷିତ ହୁଏ । ଶ୍ରୀଜଗନ୍ନାଥଙ୍କ ସେବକ ଦଇତାପତିମାନେ ଏ ସମସ୍ତ କାର୍ଯ୍ୟ ସମାହିତ କରାଇଥାନ୍ତି । ଏବେବି ଗ୍ରାମାଞ୍ଚଳରେ ଲୋକଙ୍କ ବିଶ୍ୱାସ ଅଛି ନୂତନ ଫଳନ୍ତି ଗଛର ଫଳ ପ୍ରଭୁଙ୍କ ରଥଯାତ୍ରା ସମୟରେ ପୂଜା କରିବା ପାଇଁ କେତେକ ଫୁଲ ଫଳ ଏହିଦିନ ମଧ ଠାକୁରଙ୍କୁ ସମର୍ପଣ କରିଥାନ୍ତି ।

ଇତିହାସ କହେ ଏହି ଶବର ଦେବ ତାଙ୍କୁ ସୋମବଂଶୀ ରାଜା ଯଯାତି କେଶରୀ ସୋନପୁରରୁ ଦିଅଁମାନଙ୍କୁ ଉଦ୍ଧାର କରି ନବକଳେବର କରେଇ ଶ୍ରୀକ୍ଷେତ୍ରରେ ୩୮ ହାତର ପବୋଳ (ମନ୍ଦିର) ନିର୍ମାଣ କରି ଶ୍ରୀଜୀଉଙ୍କୁ ବିଜେ କରାଇଥିଲେ । ସେହିଦିନଠାରୁ ପ୍ରଭୁଙ୍କର ରଥଯାତ୍ରା ଏହି ଧାମରେ ପ୍ରଚଳିତ ହୋଇଆସୁଛି । ସୋମବଂଶୀ ରାଜାଙ୍କ ସମୟରେ ବଡ଼ଦାଣ୍ଡରେ ବଳଗଣ୍ଡିଠାରେ ମାଳିନୀ ନଦୀ ପ୍ରବାହିତ ହେଉଥିବାରୁ ଛ'ରଥ ନିର୍ମାଣ କରାଯାଇଥିଲା । ବୀର ନରସିଂହଦେବ (ଖ୍ରୀ.ଅ୧୨୬୪, ୧୨୭୮) ରାଜତ୍ୱ ସମୟରେ ଏହି ମାଳିନୀ ନଦୀ ବା ଶରଧା ବାଲିକୁ ପୋତିଦେବା ଫଳରେ ଛ'ରଥ ପରିବର୍ତ୍ତେ ତିନିରଥ ପ୍ରଚଳିତ ହେଲା । ସେହିବର୍ଷଠାରୁ ମହାପ୍ରଭୁଙ୍କ ଘୋଷଯାତ୍ରା ବେଳେ ତିନିରଥ ନିର୍ମାଣ କରାଯାଇ ଜଗନ୍ନାଥ ସମେତ ଚତୁର୍ଦ୍ଧାମୂର୍ତ୍ତି ଗୁଣ୍ଡିଚା ଘରକୁ ବିଜେ କରନ୍ତି । ମାନବର ମାୟା ଓ କାମନାପୂର୍ଣ୍ଣ ଭାବନାରୁ ମୁକ୍ତିପାଇଁ ପ୍ରଭୁଙ୍କର ପତିତପାବନ ଯାତ୍ରା ଅନୁଷ୍ଠିତ ହୁଏ । ବ୍ୟକ୍ତି ଜୀବନର ସାମାଜିକ ସଂସ୍କାର ଓ ଜୀବକୁ ନୀତିମୟ ଶୁଦ୍ଧ ଓ ଆଚରଣଶୀଳ କରିବାପାଇଁ ପ୍ରଭୁଙ୍କର ଏ ଯାତ୍ରା ଅନୁଷ୍ଠିତ ହୁଏ । ବିଶ୍ୱମୈତ୍ରୀର ଭାବ ସମ୍ପଦରେ ଉଦାର ମାନବିକତା ଓ ମଣିଷ ଭିତରେ ଦିବ୍ୟ ଜ୍ଞାନର ପରିପ୍ରକାଶ ପାଇଁ ଏ ଯାତ୍ରାର ପରିକଳ୍ପନା । ବୁଦ୍ଧ ଏବଂ ଜଗନ୍ନାଥ ଉଭୟଙ୍କୁ ବିଷ୍ଣୁଙ୍କ ନବମ ଅବତାର ରୂପେ ଅବତାରଣା କରାଯାଇଛି ।

ବୌଦ୍ଧ ଧର୍ମର ଦେବତା ଜଗନ୍ନାଥଙ୍କୁ ବୈଷ୍ଣବୀୟ ଦେବତା ରୂପେ ଖ୍ରୀଷ୍ଟୀୟ ଦଶମ ଏକାଦଶ ଶତାବ୍ଦୀରେ ରଚିତ ବିଷ୍ଣୁ ପୁରାଣରେ ଉଦ୍ୟମ କରାଯାଇଛି । କୃଷ୍ଣଙ୍କର ଅନ୍ୟ ନାମ ମାଧବ । ନୀଳମାଧବ ମଧ ପୁରୁଷୋତ୍ତମ । ଇନ୍ଦ୍ରଭୂତିଙ୍କ ''ଜ୍ଞାନସିଦ୍ଧି'' ଗ୍ରନ୍ଥରେ ଜଗନ୍ନାଥ ବୌଦ୍ଧମୂଳ । ସେ ବିଷ୍ଣୁ ମୂଳ ନୁହନ୍ତି । ଦଶମ ଶତାବ୍ଦୀରେ ଶ୍ରୀମଦ୍ ଭାଗବତରେ ଓ ଦ୍ୱାଦଶ ଶତାବ୍ଦୀରେ ଜୟଦେବଙ୍କ





ଶ୍ରୀଗୀତଗୋବିନ୍ଦରେ ମଧ ବୁଦ୍ଧ ହେଉଛନ୍ତି ବିଷ୍ଣୁଙ୍କ ନବମ ଅବତାର ।

ଜଗନ୍ନାଥଙ୍କ ନବକଳେବର ସମୟରେ ଅନ୍ଧପୁଟୁଳି ବନ୍ଧା କାରିଗର ଦ୍ୱାରା ନାଭିସ୍ଥଳରେ ନ୍ୟାସିତ ହେଉଥିବା ଅଦ୍ୟାବଧି ସର୍ବ ଅଜ୍ଞାନ ପଦାର୍ଥଟିକୁ ଅନେକ ବୁଦ୍ଧଦନ୍ତ ବୋଲି ମତବ୍ୟକ୍ତ କରିଥାଆନ୍ତି ।

ଚତୁର୍ଦ୍ଧାମୂର୍ତ୍ତିଙ୍କ ଅସମ୍ପୂର୍ଣ୍ଣ ଅବସ୍ଥା ସମ୍ବନ୍ଧରେ ଯେଉଁ କିମ୍ବଦନ୍ତୀ ଶୁଣାଯାଏ, ତାହା ସହିତ ବୁଦ୍ଧଗୟାର ବୁଦ୍ଧମୂର୍ତ୍ତିର ଅସମ୍ପୂର୍ଣ୍ଣ ଅବସ୍ଥାରେ କିମ୍ବଦନ୍ତୀର ମେଳ ରହିଛି । ସେଥିପାଇଁ ଜଗନ୍ନାଥଙ୍କୁ ବୁଦ୍ଧ କୁହାଯିବା ସ୍ୱାଭାବିକ । ନୀଳାଚଳ ମନ୍ଦିରର ନୀଳଚକ୍ର ବୌଦ୍ଧଧର୍ମର ବୌଦ୍ଧମନ୍ଦିର ଉପରିସ୍ଥ ଚକ୍ରତୁଲ୍ୟ । ଚକ୍ରର ମଧରେ ବେଳେ ବେଳେ କୌଣସି ମନ୍ଦିରର ଧ୍ୟାନୀ ବୁଦ୍ଧଙ୍କର ମୂର୍ତ୍ତି ଖୋଦିତ ହୋଇଥିବା ଦୃଷ୍ଟିଗୋଚର ହୁଏ ।

ଗୟା ମାହାତ୍ମ୍ୟ ଓ ଉତ୍କଳ ମାହାତ୍ମ୍ୟ ବର୍ଣ୍ଣନାରେ ପୁରୁଷୋତ୍ତମ ଶ୍ରୀ ବିଷ୍ଣୁ ଗୟାସୁରକୁ ବଧ କରି ସଂସାରରେ ସତ୍ୟ ଓ ଶାନ୍ତି ପ୍ରତିଷ୍ଠା କଲେ । ଗୟାସୁର ନିଧନ ପରେ ତା'ର ହୃଦୟ ଯାଜପୁର, ନାଭି ଶ୍ରୀପୁରୁଷୋତ୍ତମ ଶ୍ରୀକ୍ଷେତ୍ରରେ ପତିତ ହୋଇଥିଲା । ଭଗବାନ ବିଷ୍ଣୁ ଧର୍ମସଂସ୍ଥାପନାର ସ୍ମାରକୀ ସଦୃଶ ଗୟାରେ ପାଦପଦ୍ମ, କୋଣାର୍କରେ ପଦ୍ମ, ଯାଜପୁରରେ ଗଦା, ଭୁବନେଶ୍ୱରରେ ଚକ୍ର ଓ ପୁରୀରେ ଶଙ୍ଖ ରଖିଯାଇଥିଲେ । ପୁରୀ ଶଙ୍ଖ କ୍ଷେତ୍ରରେ ନିର୍ମିତ ଅନେକ ବୌଦ୍ଧସ୍ତୂପ ଓ ମନ୍ଦିର ପରବର୍ତ୍ତୀ କାଳରେ ଶ୍ରୀଜଗନ୍ନାଥଙ୍କ ବିଜେସ୍ଥଳୀରେ ପରିଣତ ହୋଇଯାଇଛି । ଗବେଷକମାନଙ୍କ ମତ ଯେ ପ୍ରାଚୀନ ବୌଦ୍ଧପୀଠ, ବୌଦ୍ଧ ଦେବଦେବୀ, ବୌଦ୍ଧ ପରମ୍ପରା (ରଥଯାତ୍ରା) ଓ ବୌଦ୍ଧମୂର୍ତ୍ତି ସବୁ ଜଗନ୍ନାଥ ସଂସ୍କୃତିରେ ବିଲୀନ ହୋଇ ଶ୍ରୀବିଷ୍ଣୁ (ଜଗନ୍ନାଥ) ସର୍ବସ୍ୱ ହୋଇଯାଇଥିବା ଦୃଷ୍ଟିକୁ ଆସିଛି । ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ଗଜାନନ ବେଶର ଆଧାର ଅତୀତ ବୌଦ୍ଧ ସଂସ୍କୃତିର ଛାପବୋଲି ବିଶ୍ୱାସ କରାଯାଏ । ଭଗବାନ ବୁଦ୍ଧ ସ୍ୱୟଂ ହସ୍ତୀ ରୂପେ ପରିକଳ୍ପିତ ହୋଇଥିବାରୁ ବୌଦ୍ଧ ପରମ୍ପରାରେ ଗଜାନନ ଅନ୍ୟତମ ଯାହା ଜ୍ୟେଷ୍ଠ ପୂର୍ଣ୍ଣମୀରେ ଶ୍ରୀଜୀଉମାନଙ୍କର ଦେବସ୍ନାନ ଉତ୍ସବ ଭାବରେ ପାଳିତ ହୋଇ ଆସୁଅଛି । ଯୋଡା ଆଷାଢ ସମୟରେ ପ୍ରଭୁ ଜଗନ୍ନାଥଙ୍କର ନବକଳେବର ହୋଇଥାଏ । ଏଥିରେ ଦାରୁମୂର୍ତ୍ତି ନିର୍ମାଣ କରାଯାଇ ସଂକ୍ରାନ୍ତି ଅମାବାସ୍ୟାର ନିଶାର୍ଦ୍ଧ ବେଳରେ ପୁରୁଣା ମୂର୍ତ୍ତିମାନଙ୍କଠାରୁ ନୂତନ ମୂର୍ତ୍ତିମାନଙ୍କ ମଧକୁ ବ୍ରହ୍ମ ସ୍ଥାନାନ୍ତର କରାଯାଏ, ଯାହା ଏକ ଗୁପ୍ତନୀତି ଓ ତାନ୍ତ୍ରିକ ପୂଜାରେ ଅନୁସୃତ ଥାଏ । ଉକ୍ତ ଦାରୁ ସଞ୍ଚୟ ସମୟର ତନ୍ତ୍ର ପୂଜାକୁ ଗବେଷକମାନେ ବୌଦ୍ଧ ତାନ୍ତ୍ରିକ ପଦ୍ଧତିର ଅନୁସରଣ ବୋଲି ମତପୋଷଣ କରିଥାନ୍ତି । ପୁଣି କେତେକ କହନ୍ତି : ଚତୁର୍ଦ୍ଧାମୂର୍ତ୍ତିଙ୍କ ଗର୍ଭାଦେଶରେ ଭଗବାନ ବୁଦ୍ଧଙ୍କ ଦନ୍ତ (ଓ ଅନ୍ୟ କେତେକ ଶ୍ରୀକୃଷ୍ଣ ଅଦଗ୍ଧଭୂତ ବକ୍ଷୋଦେଶ) ବ୍ରହ୍ମ ଭାବରେ ରଖାଯାଇଥିବା କଥା ବୌଦ୍ଧଧର୍ମାବଲମ୍ବୀମାନଙ୍କୁ ଭଗବାନ ସର୍ବସ୍ୱ ଭାବରେ ବିଶ୍ୱାସ ଉତ୍ପନ୍ନ କରାଇଥାଏ । କେତେକ କୁହନ୍ତି, ଶ୍ରୀମନ୍ଦିରସ୍ଥ କଳ୍ପବଟ ଆଖ୍ୟାନଟି ମଧ ବୌଦ୍ଧଧର୍ମ ଦ୍ୱାରା ପ୍ରଭାବିତ । ବୁଦ୍ଧଙ୍କର ହୀନଯାନ ପନ୍ଥୀମାନେ ବୁଦ୍ଧଙ୍କ ମୂର୍ତ୍ତିକୁ ଦେଖାଇବାରେ ବାରଣ ଥିବାରୁ ବୁଦ୍ଧଙ୍କର ପ୍ରତୀକ ଭାବରେ କଳ୍ପବଟକୁ ଚିହ୍ନିତ କରାଇଥିଲେ । ବୁଦ୍ଧ କଳ୍ପବଟର ତଳେ ତପସ୍ୟାରେ ବସି ନିର୍ବିକଳ୍ପ ନିର୍ବାଣ ପ୍ରାପ୍ତି କରିଥିଲେ ବୋଲି କଳ୍ପବଟର ମହତ୍ତ୍ୱ ବେଶି । ଏବେବି ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ଭକ୍ତମାନେ କଳ୍ପବଟ ଆରାଧନା ସହ ନିଜର ମନସ୍କାମନା ପୂର୍ଣ୍ଣକରିବା ପାଇଁ ସୂତା ଓ ଖପରା ବାନ୍ଧିଥାଆନ୍ତି । ଏହା ବୌଦ୍ଧ ଧର୍ମର ଅନ୍ୟ ଏକ ଛାପ କହିବା ଅତ୍ୟୁକ୍ତି ନୁହଁ । ମାନ୍ଦ୍ରାଜ ମ୍ୟୁଜିୟମ୍‌ରେ ସାରନାଥଙ୍କ ଉଗ୍ରସ୍ତୂପରେ ବୁଦ୍ଧଙ୍କ ସ୍ଥାନରେ ଦୁଇଟି ବୃତ୍ତାକାର ପଥର ରହିଛି, ଯାହା ଦେଖିବାକୁ ଜଗନ୍ନାଥଙ୍କ ଭଳି ବୋଲି ଗବେଷକମାନେ କହନ୍ତି । ଖ୍ରୀ.ପୂ. ପ୍ରଥମ ଶତାବ୍ଦୀ ବେଳେ ପୁରୀରେ ଥିବା ବୌଦ୍ଧସ୍ତୂପରେ ପୂଜିତ ବୁଦ୍ଧ ପରବର୍ତ୍ତୀ କାଳରେ ଶଙ୍କରଙ୍କ ଦ୍ୱାରା ପରମବ୍ରହ୍ମ ରୂପେ ସ୍ୱୀକୃତ ହେଲେ ଓ ସେବେଳର ମହାଯାନୀ ବୌଦ୍ଧପୂଜକମାନେ ବର୍ତ୍ତମାନର ଶବର ବଂଶଧାରୀ ଶ୍ରୀଜଗନ୍ନାଥ ବଂଶର ସେବକ ବୋଲି କେତେକ କହନ୍ତି । ମଧପ୍ରଦେଶର ଶବରୀ ନାରାୟଣ ନିକଟବର୍ତ୍ତୀ ରାଜିସର ଶ୍ରୀରାମ ସିଂହ ଦ୍ୱାରରେ ଥିବା ଦଶ ଅବତାରଙ୍କ ମଧରେ





ଶ୍ରୀଜଗନ୍ନାଥ ରହିଛନ୍ତି । ଏଲାହାବାଦ ଗୟାରେ ବୁଦ୍ଧଙ୍କୁ ସେମାନଙ୍କ ପାଞ୍ଜିରେ ଜଗନ୍ନାଥ ସଂକେତ ଦ୍ୱାରା ଚିହ୍ନିତ କରାଯାଇଛି ।

ବୌଦ୍ଧ ଭିକ୍ଷୁମାନେ ଭିକ୍ଷା କାର୍ଯ୍ୟରେ ରହି ଆତ୍ମାକୁ ଶୁଦ୍ଧତା ଓ କର୍ମ ଧାରଣରେ ଦିବ୍ୟାତ୍ମାକୁ ଅନୁଭବ ପ୍ରକ୍ରିୟା ଜଗନ୍ନାଥ ସଂସ୍କୃତିରେ ପ୍ରଚଳିତ ଅଛି । ଓଡ଼ିଶାର ଧର୍ମଧାରାରେ ବୌଦ୍ଧ ଭିକ୍ଷୁଙ୍କ ଭିକ୍ଷାପାତ୍ର ଧାରଣ ପରି ଅଲେଖ ଧର୍ମର ମହିମା ସନ୍ନ୍ୟାସୀଗଣ ଭିକ୍ଷାବୃତ୍ତି ଧାରଣ ସହିତ ଆତ୍ମା ଓ କାର୍ଯ୍ୟର ଶୁଦ୍ଧତା ପାଇଁ କାର୍ଯ୍ୟ କରିଥାନ୍ତି । ମହାଯାନ ବୌଦ୍ଧ ଶାଖାର ଶୂନ୍ୟବାଦ କାଳକ୍ରମେ ଅଲେଖ, ନିର୍ଗୁଣ, ଅଣାକାର, ନିରଞ୍ଜନ, ଅଣଅକ୍ଷରରେ ରୂପାନ୍ତରିତ ହୋଇ ମହିମା ଧର୍ମରେ ଗୃହୀତ ହୋଇଛି । ସନ୍ଥ କବି ଭୀମଭୋଇ ବୌଦ୍ଧ ଧର୍ମ ଦ୍ୱାରା ବହୁ ଭାବରେ ଅନୁପ୍ରାଣିତ ।

ଜୟଦେବଙ୍କ ''ଗୀତ ଗୋବିନ୍ଦ'' ରଚନାର ତିନିଶହ ବର୍ଷପରେ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର ମହାକବି ସାରଳାଦାସ ଜଗନ୍ନାଥଙ୍କୁ ବୁଦ୍ଧ ରୂପରେ ବର୍ଣ୍ଣନା କରିଛନ୍ତି । ସାରଳା ଦାସଙ୍କର ଶହେବର୍ଷ ପରେ ଖ୍ରୀଷ୍ଟୀୟ ଷୋଡଶ ଶତାବ୍ଦୀରେ ପଞ୍ଚସଖାର କବିମାନେ ଜଗନ୍ନାଥଙ୍କୁ ବୁଦ୍ଧ ରୂପରେ ଦେଖି ଅସଂଖ୍ୟ କାବ୍ୟ କବିତା ସୃଷ୍ଟି କରିଛନ୍ତି । କବି ବଳରାମ ଦାସ ଖ୍ରୀ:୧୮୮୪ରେ ଏକ ଅଧ୍ୟାୟ ମହାଭାରତରେ ବୁଦ୍ଧରୂପୀ ଜଗନ୍ନାଥଙ୍କର ଅବତାରଣା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । କବି ଜଗନ୍ନାଥ ଦାସ (ଖ୍ରୀ : ୧୪୮୭) ''ଦାରୁବ୍ରହ୍ମ ଗୀତା''ରେ ଜଗନ୍ନାଥଙ୍କୁ ବୁଦ୍ଧ ରୂପରେ ଦେଖିଛନ୍ତି । କବି ଅଚ୍ୟୁତାନନ୍ଦ (ଖ୍ରୀ: ୧୪୮୨)ଙ୍କ ''ଶୂନ୍ୟ ସଂହିତା''ରେ କୃଷ୍ଣରୂପୀ ଜଗନ୍ନାଥ କଳିଯୁଗର ବୌଦ୍ଧ ରୂପରେ ଅବତୀର୍ଣ୍ଣ ବୋଲି ଉଲ୍ଲେଖ ଅଛି ।

ପଞ୍ଚସଖାର ଅନ୍ୟତମ ସାଧକ ଶିଶୁଅନନ୍ତ ଦାସ (ଖ୍ରୀ : ୧୪୮୬)ଙ୍କ ହେତୁ ଉଦୟ ଭାଗବତରେ ଜଗନ୍ନାଥଙ୍କୁ ବୌଦ୍ଧଦେବହୀ ବୋଲି କହିଛନ୍ତି । ଖ୍ରୀଷ୍ଟୀୟ ସପ୍ତଦଶ ଶତାବ୍ଦୀର ଶେଷଭାଗ କିମ୍ବା ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗରେ କବି ଈଶ୍ୱର ଦାସଙ୍କ ''ଶ୍ରୀଚୈତନ୍ୟ ଭାଗବତ'' ଗ୍ରନ୍ଥରେ ଶ୍ରୀଚୈତନ୍ୟ ବୁଦ୍ଧ ଓ ଜଗନ୍ନାଥ ରୂପରେ ଉଲ୍ଲେଖ ହୋଇଛନ୍ତି । ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର କବି (ରୀତିଯୁଗର) କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ ସାମନ୍ତ ସିଂହାର ଓ ଦୀନକୃଷ୍ଣଙ୍କ ''ନାମ ରତ୍ନ ଗୀତା''ରେ ଜଗନ୍ନାଥଙ୍କୁ ବୌଦ୍ଧାବତାର ବୋଲି ଦର୍ଶାଯାଇଛି । ଖ୍ରୀ:୭ମ ଶତକର ନୀଳମତ ପୁରାଣ, ଶ୍ରୀଜୟଦେବଙ୍କ ଗୀତଗୋବିନ୍ଦ (ଖ୍ରୀ : ୧୨ଶ ଶତାବ୍ଦୀ) ଓ ଅନ୍ୟ ବହୁ ଗ୍ରନ୍ଥରେ ବୁଦ୍ଧଙ୍କୁ ବିଷ୍ଣୁଙ୍କ ନବମ ଅବତାର ବୋଲି କୁହାଯାଇଛି । ଓଡ଼ିଶାର ଘରେ ଘରେ ଯେଉଁ ଜନ୍ମ ଜାତକ ପ୍ରଚଳିତ ତାହା ଭାରତରେ ଅନ୍ୟତ୍ର ସେହି ଅର୍ଥରେ ''ଜାତକ'' ଶବ୍ଦର ପ୍ରଚଳନ ନାହିଁ । କିନ୍ତୁ ବୌଦ୍ଧ ଧର୍ମରେ ଇହଜନ୍ମର ଓ ପରଜନ୍ମ ଇତିବୃତ୍ତିକୁ ''ଜାତକ'' କୁହାଯାଇଥାଏ । ଓଡ଼ିଶାର ବୈଷ୍ଣବ ଧର୍ମରେ ଶ୍ରୀଜଗନ୍ନାଥଙ୍କୁ ''ନିରାକାର ବିଷ୍ଣୁ'' ବୋଲି କୁହାଯାଇଛି । ମହାଶୂନ୍ୟରୁ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ସୃଷ୍ଟିବୋଲି ଓଡ଼ିଶାର ବହୁ ସନ୍ଥକବି ଲେଖିଯାଇଛନ୍ତି । ଶ୍ରୀଜଗନ୍ନାଥ ଧର୍ମରେ 'କରୁଣା' ଶବ୍ଦର ବ୍ୟବହାର ରହିଛି । ବୌଦ୍ଧ ଧର୍ମର 'କରୁଣା' ଓ 'ଅହିଂସା'ର ସ୍ପଷ୍ଟ ପ୍ରଭାବ ରହିଛି ବୋଲି ଗବେଷକମାନଙ୍କ ମତ । ଜେନେରାଲ କନିଙ୍ଗହୋମ୍ ତାଙ୍କ ଗ୍ରନ୍ଥରେ ମତ ପ୍ରକାଶ କରିଛନ୍ତି ଯେ, ମଥୁରା ଓ ବନାରସର ପଞ୍ଜିକାମାନଙ୍କରେ ଜଗନ୍ନାଥଙ୍କୁ ବ୍ରାହ୍ମଣ୍ୟଧର୍ମର ଅବତାର ବୁଦ୍ଧରୂପେ ଗ୍ରହଣ କରାଯାଇଛି ।

ଗୁରୁଗ୍ରନ୍ଥ ସାହେବରେ ଗୁରୁଗୋବିନ୍ଦ ସିଂହଙ୍କ 'ବିଚିତ୍ର ନାଟକ' (ଦଶମଗ୍ରନ୍ଥ ଅନ୍ତର୍ଭୁକ୍ତ)ରେ ବିଷ୍ଣୁଙ୍କ ବର୍ଣ୍ଣିତ ୨୪ ଅବତାର ମଧ୍ୟରୁ ୨୩ତମ ଅବତାର ହେଉଛନ୍ତି ବୁଦ୍ଧ । ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ହୋଇଥିବା ସବୁ ମନ୍ଦିରମାନଙ୍କରେ ବିଷ୍ଣୁଙ୍କର ନବମ ଅବତାର ଭାବରେ ବୁଦ୍ଧଙ୍କୁ ନିଆଯାଇଛି । ମୁକ୍ତିମଣ୍ଡପ ନିକଟସ୍ଥ ଶ୍ରୀମନ୍ଦିରର ସର୍ବପ୍ରାଚୀନ ଶ୍ରୀନୃସିଂହ ମନ୍ଦିରର ମୁଖ୍ୟ ପ୍ରବେଶ ଦ୍ୱାର ଉପରେ ଦଶାବତାର, ନିଆଳିର ଶ୍ରୀମାଧବାନନ୍ଦ ମନ୍ଦିର, ବ୍ରହ୍ମଗିରିର ଅଲାରନାଥ ମନ୍ଦିର ଆଦି ଏହାର ଉଦାହରଣ ।

ଶ୍ରୀମନ୍ଦିରରେ ଯେଉଁ ବାଇଶ ପାହାଚ ନିର୍ମିତ ହୋଇଛି ସେଥିରୁ ପ୍ରତ୍ୟେକଟି ପାହାଚ ଏକ ଏକ ଅବତାରଙ୍କ





ପାଇଁ ଉଦ୍ଦିଷ୍ଟ । ତଦନୁଯାୟୀ ୨୧ ତମ ପାବଚ୍ଛ ଭଗବାନ ବୁଦ୍ଧଙ୍କର ଏବଂ ୨୨ତମ ପାବଚ୍ଛ ମ୍ଲେଚ୍ଛ ସଂହାରକ କଳ୍କିଙ୍କର ଯେଉଁଠି ପତିତପାବନ କଳ୍କି ଭାବରେ ପୂଜାପାଆନ୍ତି । ଗୁଜୁରାଟର ପତନ ଶିଳାଲେଖରେ ୧୨୨୫ ମସିହାରୁ ଯେଉଁ ଦଶ ଅବତାର ପୂଜା ପାଉଛନ୍ତି ସେଥିରେ ବୁଦ୍ଧଙ୍କୁ ଏକ ଅବତାର ଭାବରେ ଗ୍ରହଣ କରାଯାଇଛି । ଦକ୍ଷିଣ ଭାରତର ବିଭିନ୍ନ ବିଷ୍ଣୁ ମନ୍ଦିରମାନଙ୍କରେ ମଧ୍ୟ ବୁଦ୍ଧ ମୂର୍ତ୍ତିର ନାମ ଜଗନ୍ନାଥ ବୋଲି ଉଲ୍ଲେଖ ଅଛି । ଶଙ୍କରାଚାର୍ଯ୍ୟ ବୁଦ୍ଧ ଧର୍ମକୁ ଗୌଣରୂପ ଦେଇ ଯେଉଁ ବ୍ରାହ୍ମଣ୍ୟ ବୈଷ୍ଣବ ଧର୍ମକୁ ଦେଶରେ ପ୍ରସାର କରାଇଥିଲେ, ଶେଷରେ ତାଙ୍କ ଅନ୍ତିମ ସମୟରେ 'ଯୋଗୀ ନଂ ଚକ୍ରବର୍ତ୍ତୀ' ବୋଲି ବର୍ଣ୍ଣନା କରି ଦଶଅବତାର ସ୍ତୋତ୍ର ମଧ୍ୟରେ ବୁଦ୍ଧଙ୍କୁ ବର୍ଣ୍ଣନା କରିଥିବାର ଉଲ୍ଲେଖ ଅଛି ।

ବୁଦ୍ଧ ରଚନାମୃତରେ ଅଷ୍ଟାଙ୍ଗମାର୍ଗ ଦର୍ଶନ ଜୀବନ ଶୁଦ୍ଧତା ଓ ପୂର୍ଣ୍ଣତାର କାରଣ । ସେଗୁଡ଼ିକ ମଧ୍ୟରୁ ସଦ୍‌ବୁଦ୍ଧିର ପ୍ରୟୋଗ, ସଦ୍‌ଭାବନା, ସତ୍‌କଥନ, ସତ୍‌କର୍ମ, ସତ୍‌ଜୀବିକା ଗ୍ରହଣ, ସତ୍ ଉଦ୍ୟମ, ସତ୍ ଚେତନା ଓ ସତ୍ ସମାଧିରେ ମନକୁ ଧ୍ୟାନସ୍ଥ କରାଇଲେ ପ୍ରତ୍ୟେକ ଜୀବ ଦିବ୍ୟ ଆନନ୍ଦ ଅନୁଭବ କରିପାରିବ । ବୁଦ୍ଧଙ୍କ ଏହି ଅଷ୍ଟାଙ୍ଗମାର୍ଗ ଜଗନ୍ନାଥ ସଂସ୍କୃତିରେ ମଧ୍ୟ ପ୍ରତିଫଳିତ ହୋଇଛି ।

ଶ୍ରୀଜଗନ୍ନାଥ ମନ୍ଦିରରେ ପାଳିତ ସମସ୍ତ ରୀତି ନୀତି ଓ ପର୍ବପର୍ବାଣି ଅଧିକାଂଶ କ୍ଷେତ୍ରରେ ବୌଦ୍ଧ ପରମ୍ପରା ସହ ସାମଞ୍ଜସ୍ୟ ରହିଥିବା ଦେଖିବାକୁ ମିଳୁଛି । ମହାଶ୍ରମଣ (ଶ୍ରମଣ ଅର୍ଥରେ ଗଜପତିଙ୍କୁ) ଶ୍ରୀକପଡ଼ା, ଖପରାଖିଆ (କୁଡୁଆ), ନିଶଂଖୁଡ଼ି ଭୋଗ ପ୍ରସାଦ ଆଦି ବ୍ୟବହୃତ ବୌଦ୍ଧ ସମୟରେ ଶବ୍ଦ ଶ୍ରୀମନ୍ଦିରରେ ମଧ୍ୟ ଏଯାବତ୍ ବ୍ୟବହୃତ ହେଉଛି । ତଥ୍ୟାନୁଯାୟୀ ଦଶାବତାରଙ୍କ ଜୟନ୍ତୀ ଉତ୍ସବ ପାଳନ କରାଗଲା ବେଳେ ମତ୍ସ୍ୟ ଜୟନ୍ତୀ, ଶ୍ରୀକୂର୍ମ ଜୟନ୍ତୀ, ବରାହ ଜୟନ୍ତୀ ଭଳି ଅନ୍ୟ ଜୟନ୍ତୀ ଉତ୍ସବ ପାଳନ କରାଯାଉଥିବା ବେଳେ ଅହିଂସା ଧର୍ମ, ରୋଗ, ଶୋକ ବିନାଶର ମୂର୍ତ୍ତିମନ୍ତ ପ୍ରତୀକ ଭଗବାନ ବୁଦ୍ଧଙ୍କର ସିଦ୍ଧିପ୍ରାପ୍ତ ଦିବସ ତଥା ପୌଷ ଶୁକ୍ଳ ସପ୍ତମୀ ତିଥିକୁ ବୁଦ୍ଧ ଜୟନ୍ତୀ ରୂପେ ପାଳନ କରାଯିବାର ପରମ୍ପରା ଅନୁସୃତ ହେଉଛି । ଜଗନ୍ନାଥଙ୍କ ଶ୍ରୀଗୁଣ୍ଡିଚା ରଥଯାତ୍ରା ବେଳେ ଦଶାବତାର ବେଶରେ ପୂଜା କରାଯାଇଥାଏ ବୋଲି ଏହାକୁ ଦଶାବତାର ଯାତ୍ରା ବୋଲି ମଧ୍ୟ କୁହାଯାଇଥାଏ । ଦେବସ୍ନାନ ପୂର୍ଣ୍ଣିମାରେ ଶ୍ରୀଜଗନ୍ନାଥଙ୍କ ୧୦୮ ଗରା ଜଳସ୍ନାନ ଓ ତା'ପରେ ପନ୍ଦରଦିନ କାଳ ଅସୁସ୍ଥ ହୋଇ ଅଣସର ପିଣ୍ଡିରେ ବିଶ୍ରାମ ଓ ଆୟୁର୍ବେଦ ଔଷଧ ସେବନ ବିଧି ମଧ୍ୟ ଶ୍ରୀବୁଦ୍ଧଙ୍କ ମାତୃ ଗର୍ଭରେ ସ୍ଥାନିତ ଓ ଜନ୍ମଗ୍ରହଣ କରିବା ସହ ସାମଞ୍ଜସ୍ୟ ପ୍ରତିପାଦିତ କରିଛି । ରଥଯାତ୍ରା ପରେ ଦାରୁ ଦେବତାମାନଙ୍କର ନିଳାଦ୍ରି ବିଜୟ, ସୁନାବେଶ ପରେ ପରେ ହରିଶୟନ ଏକାଦଶୀଠାରୁ ଚାରିମାସ ପ୍ରାୟ ସମୟ (ଚତୁର୍ମାସ୍ୟା)ରେ ଠାକୁର ଶୟନ କରି ପୁନଃ ଦେବ ଉତ୍ଥାନ ତିଥିରେ ନିଦ୍ରାରୁ ଉଠିଥାନ୍ତି । ଏଣୁ ଏହି ଚତୁର୍ମାସ୍ୟା ସମୟରେ କୌଣସି ଯାଗଯଜ୍ଞାଦି ଶୁଭକାର୍ଯ୍ୟ କରାଯାଇନଥାଏ । ସେହିପରି ବୌଦ୍ଧ ଶ୍ରମଣମାନେ ମଧ୍ୟ ବାହାରକୁ ନଯାଇ ବୌଦ୍ଧ ବିହାରମାନଙ୍କରେ ବିଶ୍ରାମ ଓ ଆଲୋଚନାରେ ଚତୁର୍ମାସ୍ୟା ନିର୍ବାହ କରିଥାନ୍ତି ।

ବୁଦ୍ଧଙ୍କ ରଥଯାତ୍ରା ମୁଖ୍ୟତଃ ଅହିଂସା ଓ ମାନବବାଦର ପ୍ରଚାର ପାଇଁ ଉଦ୍ଦିଷ୍ଟ ଥିଲା । ଶ୍ରୀଜଗନ୍ନାଥଙ୍କ ନବଦିନାତ୍ମକ ଯାତ୍ରାକୁ ବୌଦ୍ଧ ଧର୍ମରେ ନଗର ପରିଭ୍ରମଣ ଜନିତ ଯାତ୍ରାବୋଲି ଗ୍ରହଣ କରାଯାଇଛି । ପୁଣି ଉଭୟ ଧର୍ମୀୟ ଧାରାରେ ରଥରେ ବାମନ ଜଗନ୍ନାଥ ଓ ବୁଦ୍ଧଙ୍କୁ ଦର୍ଶନ ଓ ସ୍ପର୍ଶକଲେ ସର୍ବ ପାତକ ନାଶଯାଇ ଭକ୍ତଙ୍କ ପୁନର୍ଜନ୍ମ ହୁଏନାହିଁ ଓ ନିର୍ବାଣ ପ୍ରାପ୍ତହେବା ବିଶ୍ୱାସ ରହିଛି । ପାଲି ଗ୍ରନ୍ଥମାନଙ୍କରେ ଉଲ୍ଲେଖ ଅଛି ଯେ, ବୁଦ୍ଧ ହେଉଛନ୍ତି ସମ୍ୟକ ସମ୍ବୁଦ୍ଧ ଯାହାଙ୍କ ଦର୍ଶନ ଓ ସ୍ପର୍ଶରେ ସମସ୍ତ ଜୀବଜଗତ ମୋକ୍ଷପ୍ରାପ୍ତି କରନ୍ତି ।

ବୈଷ୍ଣବ ଧର୍ମ ଧାରଣାରେ ଜଗନ୍ନାଥଙ୍କୁ ପରବ୍ରହ୍ମ 'ନିରାକାର ବିଷ୍ଣୁ' ରୂପେ ଉପାସନା କରାଯାଇଥାଏ, ଯାହା ମହାଯାନପନ୍ଥୀ ବୌଦ୍ଧଧର୍ମର ଶୂନ୍ୟବାଦରୁ ଉଦ୍ଭୂତ ବୋଲି ବୌଦ୍ଧଧର୍ମାବଲମ୍ବୀମାନଙ୍କର ମତ ଓ ବିଶ୍ୱାସ । ମହାଶୂନ୍ୟରୁ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ସୃଷ୍ଟି ହୋଇଥିବା କଥା ସନ୍ଥମାନଙ୍କ ମତ ଯାହାକୁ ମହାଯାନ ବୌଦ୍ଧ ଦର୍ଶନର ପ୍ରଭାବ





ବୋଲି କୁହାଯାଉଛି । ବୌଦ୍ଧଧର୍ମରେ କରୁଣାବତାର, ପତିତପାବନ ଭଳି ଶବ୍ଦ ଜଗନ୍ନାଥଙ୍କଠାରେ ବ୍ୟବହାର କରାଯାଏ । କରୁଣାସାଗର, ପତିତପାବନ ନାମରେ ଜଗନ୍ନାଥଙ୍କୁ ପ୍ରାର୍ଥନା କରାଯିବା ଓ ଶ୍ରୀମନ୍ଦିରରେ ଜଗନ୍ନାଥଙ୍କୁ ଅହିଂସାର ମୂର୍ତ୍ତିମନ୍ତ ପ୍ରତୀକ ଭାବରେ ଗ୍ରହଣ କରାଯିବା ମଧ୍ୟ ବୌଦ୍ଧ ଧର୍ମର ପ୍ରଭାବ ବୋଲି ଗବେଷକମାନେ କୁହନ୍ତି । ଏହା ସହିତ ଓଡ଼ିଆ ମହାଭାରତକାର ଶୂଦ୍ରମୁନି ସାରଳା ଦାସ, ଅଚ୍ୟୁତାନନ୍ଦ, ପଞ୍ଚସଖାର ଶିଶୁ ଅନନ୍ତ, ଯଶୋବନ୍ତ ଓ ପରବର୍ତ୍ତୀ କବି ଚୈତନ୍ୟ ଦାସ ଆଦି ବହୁ କବି ସେମାନଙ୍କ ରଚନାରେ ଶ୍ରୀଜଗନ୍ନାଥଙ୍କୁ ବୁଦ୍ଧଙ୍କ ଅବତାର ମଧ୍ୟରେ ଏକ ଅବତାର ରୂପେ ବର୍ଣ୍ଣନା କରିଥିବା କଥା ଶ୍ରୀଜଗନ୍ନାଥଙ୍କ ସହ ବୁଦ୍ଧଙ୍କ ନିବିଡତାର ପ୍ରକାଶ କରିଥାଏ । ସାରଳା ମହାଭାରତରେ 'ମଧ୍ୟପର୍ବ', ଅଚ୍ୟୁତାନନ୍ଦ ଦାସଙ୍କର 'ଛୟାଳିଶ ପର୍ବ', ଶିଶୁ ଅନନ୍ତଙ୍କର 'ଗୁପ୍ତଗୀତା' ଆଦିରେ ଜଗନ୍ନାଥଙ୍କୁ ବୁଦ୍ଧାବତାର ଭାବେ ଚିତ୍ରଣ କରାଯାଇଛି । ୭ମ ଓ ଅଷ୍ଟମ ଶତାବ୍ଦୀରେ ରଚିତ କାଶ୍ମୀରର ନୀଳମତ ପୁରାଣରେ ବୁଦ୍ଧଙ୍କୁ ବିଷ୍ଣୁଙ୍କ ଅବତାର ଭାବରେ ଗ୍ରହଣ କରାଯାଇଛି । ସେହି ସମୟରେ ରଚିତ ବରାହ ପୁରାଣରେ ବିଷ୍ଣୁଙ୍କ ଦଶ ଅବତାର (ମତ୍ସ୍ୟ, କୂର୍ମ, ବରାହ, ନୃସିଂହ, ବାମନ, ପର୍ଶୁରାମ, ବାସୁଦେବ, କୃଷ୍ଣ, ବୁଦ୍ଧ ଓ କଳ୍କି) ମଧ୍ୟରେ ବୁଦ୍ଧଙ୍କ ନାମ ଉଲ୍ଲେଖ ଅଛି । ସେଇ ସମୟରେ ଭୌମ ରାଜତ୍ୱ କାଳରେ ଓଡ଼ିଶାରେ ବୁଦ୍ଧଙ୍କୁ ବିଷ୍ଣୁଙ୍କ ଅବତାର ରୂପେ ଗ୍ରହଣ କରାଯାଇଥିବାର ପ୍ରମାଣ ଅଛି । ୮ମ ଶତାବ୍ଦୀରେ ଅନଙ୍ଗ ବ୍ରଜଙ୍କର 'ପ୍ରଜ୍ଞୋପ୍ରାୟ ବିନିଶ୍ଚୟ ସିଦ୍ଧି', ନେପାଳରୁ ମିଳିଥିବା କ୍ରିୟା ସଂଗ୍ରହପଞ୍ଜିକା, ୯ମ ଶତାବ୍ଦୀର 'ସ୍ୱୟମ୍ଭୁ ପୁରାଣ' ଓ 'ତାରାଷ୍ଟୋତ୍ତର ଶତନାମ' ସ୍ତୋତରେ ଜଗନ୍ନାଥଙ୍କୁ ବୁଦ୍ଧରୂପେ ବର୍ଣ୍ଣନା କରାଯାଇଅଛି । ୯ମ ଓ ୧୦ମ ଶତାବ୍ଦୀରେ ବଙ୍ଗଳାର ପାଳବଂଶୀୟ ବୌଦ୍ଧରାଜା ଧର୍ମପାଳ ଓ ଦେବପାଳ ଓଡ଼ିଶାରେ ନିଜର ପ୍ରଭାବ ବିସ୍ତାର କରିଥିଲେ । ଯଥାକ୍ରମେ ନାରାୟଣ ପାଳଙ୍କର ଭାଗଲପୁର ଅଭିଲେଖ ଓ ମଙ୍ଗଳବାଡ଼ିସ୍ଥ ଗରୁଡ଼ସ୍ତମ୍ଭ ଶିଳାଲେଖରୁ ଜଣାପଡ଼େ, ଶୁକ୍ଳି ବଂଶର ପ୍ରଥମ ରଣସ୍ତମ୍ଭ ରଞ୍ଜିତଙ୍କୁ ରମାଇ ପଣ୍ଡିତ ନାମକ ଜଣେ ସନ୍ନ୍ୟାସୀ ଏକ ସମନ୍ୱୟବାଦୀ ଧର୍ମରେ ଦୀକ୍ଷିତ କରାଇଥିଲେ । ରମାଇଦାସଙ୍କ ଧର୍ମପୂଜା ବିଧାନରେ ପ୍ରଥମେ ପୁରୁଷୋତ୍ତମ କ୍ଷେତ୍ରର ଶ୍ରୀଜଗନ୍ନାଥଙ୍କ ସହିତ ବୁଦ୍ଧଙ୍କର ସମୀକରଣ ସ୍ପଷ୍ଟଭାବରେ ଲକ୍ଷ୍ୟ କରାଯାଏ ।

''ନବମ ମୂର୍ତ୍ତିରେ ହରି ଜଗନ୍ନାଥ ନାମଧରି
ଜଳଧୀର ତୀରେ କୈଳାବାସ
ଜଳଧୀର ତୀରେ ସ୍ଥାନ ବୌଦ୍ଧରୂପେ ଭଗବାନ
ହୟାତୁମି କୃପାବଲୋକନ ।''

(ସାହୁ, ବାସୁଦେବ । ଶ୍ରୀଜଗନ୍ନାଥ ଚେତନା । ପୃ.୬୪)

ସେହିପରି ଗୟା ମାହାତ୍ମ୍ୟ ଓ ବିଷ୍ଣୁପୁରାଣରେ ମଧ୍ୟ ବୁଦ୍ଧଙ୍କୁ ବିଷ୍ଣୁଙ୍କ ଅନ୍ୟତମ ଅବତାରରୂପେ ଗ୍ରହଣ କରାଯାଇଛି । ଦ୍ୱାଦଶ ଶତାବ୍ଦୀର କବି ଜୟଦେବ 'ଗୀତଗୋବିନ୍ଦ' ମହାକାବ୍ୟରେ ଅନୁରୂପ ବିଷ୍ଣୁଙ୍କୁ ଅବତାର ରୂପେ ବର୍ଣ୍ଣନା କରି– 'କେଶବଧୃତ ବୁଦ୍ଧଶରୀର ଜୟ ଜଗଦୀଶ ହରେ' ଭାବରେ ଭଣତି କରିଛନ୍ତି । 'ଗୀତଗୋବିନ୍ଦ' ରଚନାର ୩୦୦ବର୍ଷ ପରେ ସାରଳା ଦାସ ସ୍ୱଲିଖିତ ମହାଭାରତରେ ଜଗନ୍ନାଥଙ୍କୁ ବୁଦ୍ଧରୂପେ ବର୍ଣ୍ଣନା କରିଛନ୍ତି–

''ବନ୍ଦଇ ଜଗନ୍ନାଥ ବଇକୁଣ୍ଠ ବାସୀ
ବୌଦ୍ଧ ରୂପେ ନୀଳଗିରି ଶିଖେ ଅଛି ବସି ।''

ଯାହା ସଂସ୍କୃତ ମହାଭାରତରେ ନାହିଁ । ଏକାଦଶ ଶତାବ୍ଦୀର ରଚିତ କ୍ଷେମେନ୍ଦ୍ରଙ୍କର 'ଦଶାବତାର ଚରିତମ୍'ରେ ବୁଦ୍ଧ ବିଷ୍ଣୁଙ୍କର ନବମ ଅବତାର ରୂପେ ବର୍ଣ୍ଣିତ । ଡ଼ଃ ମାୟାଧର ମାନସିଂହ ଅନୁମାନ କରିଛନ୍ତି ମହାଯାନ ବୌଦ୍ଧ ଧର୍ମର ଉତ୍ଥାନ ପରେ ଯେତେବେଳେ ମୂର୍ତ୍ତିପୂଜାର ପ୍ରଚଳନ ପ୍ରସାର ଲାଭ କରିଥିଲା, ସେତେବେଳେ ବହୁ ଶତାବ୍ଦୀ ଧରି ଜଗନ୍ନାଥ ମନ୍ଦିର ମହାଯାନ ଧର୍ମପୀଠ ରୂପେ ଖ୍ୟାତିଲାଭ କରିଥିଲା ଓ ତହିଁରେ ବୁଦ୍ଧ, ଧର୍ମ ଏବଂ ସଂଘ ଉପସ୍ଥାପିତ ହେଉଥିଲା । ସାଲେପୁର ନିକଟବର୍ତ୍ତୀ କୋଲମପୁର ଗ୍ରାମରେ ପ୍ରତ୍ନତାତ୍ତ୍ୱିକ ଭୂଖୋଦନରୁ ମିଳିଥିବା





ତିନୋଟି ମୂର୍ତ୍ତି ହେଉଛି ଦୁଇ ଧ୍ୟାନୀ ବୁଦ୍ଧ ଓ ଜଣେ ଦେବୀ । ଏହି ତିନି ମୂର୍ତ୍ତି ସହିତ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ସମ୍ପର୍କ ଥାଇପାରେ ବୋଲି ଅନୁମାନ କରାଯାଉଛି । ଯଦି ଏହା ସତ୍ୟହୁଏ ତେବେ ନବମ ଦଶମ ଶତାବ୍ଦୀରୁ ଜଗନ୍ନାଥ, ବଳଭଦ୍ର ବୁଦ୍ଧାବତାର ସହିତ ଓ ସୁଭଦ୍ରା ବୌଦ୍ଧଧର୍ମର ଶକ୍ତି ସହିତ ସଂପୃକ୍ତ ହେବେ । ତେବେ ଦ୍ୱାଦଶ ଶତାବ୍ଦୀ ବେଳକୁ ଜଗନ୍ନାଥ ବିଷ୍ଣୁଙ୍କ ବୁଦ୍ଧାବତାର ଭାବରେ ପ୍ରତିଷ୍ଠାପାଇ ପୂର୍ଣ୍ଣତା ଲାଭ କରିସାରିଥିଲେ ।

ଅଶୋକଙ୍କ ରାଜତ୍ୱ କାଳରେ ପୁରୀରେ ମଧ୍ୟ ଏକ ବୌଦ୍ଧସ୍ତୂପ ସ୍ଥାପିତ ହୋଇ ଏହି ତ୍ରିରତ୍ନର ପ୍ରତୀକ ସେଠାରେ ରଖାଯାଇଥିଲା । ଏ ସ୍ତୂପ ବୌଦ୍ଧ ଶବରମାନଙ୍କର ଥିଲା ପ୍ରଧାନ ଉପାସନା ପୀଠ । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ବେଳକୁ ମହାଯାନ ପନ୍ଥାର ପ୍ରବର୍ତ୍ତନ ଫଳରେ ବୁଦ୍ଧ ଓ ବୋଧିସତ୍ତ୍ୱଙ୍କର ପୂଜା ଆରମ୍ଭ ହେଲା । ସରଳବିଶ୍ୱାସୀ ଶବରମାନେ ସ୍ତୂପର ତ୍ରିରତ୍ନ ମଧ୍ୟରେ ବୁଦ୍ଧଙ୍କୁ ଉପାସନା କଲେ । ଏବେବି ବହୁ ସ୍ଥାନରେ ସ୍ୱସ୍ତିକ ଚିହ୍ନର ପୂଜା ପରମ୍ପରା ରହିଛି । ତିନୋଟିଯାକ ଚିହ୍ନ ସମୂହଭାବରେ 'ଜଗନ୍ନାଥ' ନାମରେ ଅଭିହିତ ହେଲା । ପରବର୍ତ୍ତୀ କାଳରେ ଯେତେବେଳେ ମୂର୍ତ୍ତିପୂଜାର ପ୍ରଚଳନ ହେଲା, ସେତେବେଳେ ଏକ ମୂର୍ତ୍ତି ବଦଳରେ ବୌଦ୍ଧ ଧର୍ମର ବୁଦ୍ଧ, ଧମ୍ମ, ସଙ୍ଘ – ଏହି ତ୍ରିରତ୍ନକୁ ସ୍ୱତନ୍ତ୍ର ଭାବେର ରଖି ତ୍ରିମୂର୍ତ୍ତିର କଳ୍ପନା କରାଗଲା । ଏମାନଙ୍କ ମଧ୍ୟରୁ ବୁଦ୍ଧ ହେଉଛନ୍ତି ମୁଖ୍ୟ । ବୌଦ୍ଧ ଧର୍ମରେ ଧମ୍ମ ନାରୀ ରୂପରେ ପରିକଳ୍ପିତ ହୁଅନ୍ତି ଏବଂ ସଙ୍ଘରେ ପରସ୍ପର ସହିତ ଭାଇ ଭଉଣୀର ସମ୍ପର୍କ ନିହିତ ଥାଏ । ଶବରମାନେ ପୂର୍ବରୁ ଦାରୁ ଉପାସକ ଥିବାରୁ ଦାରୁରେ ଏହି ତିନିମୂର୍ତ୍ତି ନିର୍ମାଣ କରି ପୂଜା – ଆରାଧନା ଆରମ୍ଭ କଲେ । ବୋଧହୁଏ ଏହି ତ୍ରିମୂର୍ତ୍ତି ପରିକଳ୍ପନା ଓ ଗଠନର ସମୟ ଖ୍ରୀଷ୍ଟୀୟ ସପ୍ତମ ବା ଅଷ୍ଟମ ଶତାବ୍ଦୀ ଏବଂ ସେସମୟର ଭୌମ ରାଜତ୍ୱରେ ଓଡ଼ିଶାରେ ବୁଦ୍ଧଙ୍କୁ ବିଷ୍ଣୁଙ୍କ ଅବତାର ବୋଲି ଗ୍ରହଣ କରାଯାଇଥିଲା । ସେଥିପାଇଁ ଜଗନ୍ନାଥ ମନ୍ଦିରର ସିଂହଦ୍ୱାରରେ ଉପର ବନ୍ଧରେ ଥିବା 'ଦଶାବତାର' ଚିତ୍ରରେ ନବମ ଅବତାର ବୁଦ୍ଧଙ୍କ ସ୍ଥାନରେ ଜଗନ୍ନାଥହିଁ ଉତ୍କୀର୍ଣ୍ଣ ହୋଇଛନ୍ତି । ଏହି ସମୟରେ ବୁଦ୍ଧ ଜଗନ୍ନାଥଙ୍କୁ ବିଷ୍ଣୁଙ୍କ ଅବତାର ବୋଲି ଗ୍ରହଣ କରାଯାଇଥିବାରୁ ତାଙ୍କ ସହିତ ଥିବା ଅନ୍ୟ ଦୁଇ ମୂର୍ତ୍ତିଙ୍କ ସଂସ୍ଥାନର ଯଥାର୍ଥତା ପାଇଁ ବୁଦ୍ଧଙ୍କ ବାସୁଦେବ – କୃଷ୍ଣ ଅବତାରକୁ ଗ୍ରହଣ କରାଯାଇଛି । କୃଷ୍ଣଙ୍କର ଭାଇ ବଳରାମ, ବଳଦେବ ବା ବଳଭଦ୍ରରୂପେ ଓ ଭଗିନୀ ସୁଭଦ୍ରା ସେହି ନାମରେ ପରିଚିତ ହୋଇଛନ୍ତି । ପାଲିଭାଷାରେ ରଚିତ ବୌଦ୍ଧ ଗ୍ରନ୍ଥରେ ବାସୁଦେବ ଓ ବଳଦେବ ପୂଜାକୁ ଅତି ଉଚ୍ଚ ସ୍ଥାନ ଦିଆଯାଇଛି । ଦୁଇଭାଇ ଓ ଭଉଣୀରୂପେ ସ୍ୱୀକୃତ ଶତ ଶତ ବର୍ଷଧରି ଉପାସିତ ଏହି ମୂର୍ତ୍ତି ତ୍ରୟଙ୍କଠାରେ ବିଷ୍ଣୁତ୍ୱ ଆରୋପବେଳେ କୃଷ୍ଣ, ବଳରାମ ଓ ସୁଭଦ୍ରା ପରିକଳ୍ପନା ଏକାବେଳେ ଅପରିହାର୍ଯ୍ୟ ହୋଇ ପଡ଼ିଛି । ସେଥିପାଇଁ କୃଷ୍ଣ ଜଗନ୍ନାଥ ରୂପେ, ବଳରାମ ବଳଭଦ୍ର ରୂପେ ଓ ସୁଭଦ୍ରା, ସୁଭଦ୍ରା ରୂପେ ଅତି ସହଜରେ ଜନମାନସକୁ ପ୍ରଭାବିତ କରିଅଛନ୍ତି ।

ପ୍ରତ୍ନତତ୍ତ୍ୱବିଦ୍‌ମାନଙ୍କ ମତରେ ସାଞ୍ଚିର ବୌଦ୍ଧ ସ୍ତୂପର ତୋରଣ ଦେଶରେ ଅଙ୍କିତ ଏକ ଚିତ୍ର ପାଳିଭାଷାର ଯ, ର, ଳ, ବ ଓ ନ ଏହି ପଞ୍ଚମହାଭୂତ ବୀଜାକ୍ଷରର ସମ୍ମିଶ୍ରଣ । ଏହି ପଞ୍ଚମହାଭୂତ ଯଥାକ୍ରମେ ମରୁତ୍– ବୀଜ 'ଯ', ଅଗ୍ନି– ବୀଜ 'ର', ଅପ– ବୀଜ 'ଳ', କ୍ଷିତି – ବୀଜ 'ବ' ଓ ଶୂନ୍ୟ– ବୀଜ 'ନ' ର ଦ୍ୟୋତକ ବୋଲି ଜଣାଯାଏ । ଏଗୁଡ଼ିକ ପୁଣି ବୌଦ୍ଧମାନଙ୍କର ଧମ୍ମ ବା ପ୍ରକୃତିର ଚିହ୍ନ । ଏହି ଧର୍ମ୍ମା ବା ପ୍ରକୃତି ସହ ବୁଦ୍ଧ ବା ପୁରୁଷର ସଂଯୋଗରେ ସଙ୍ଘର ଉଦ୍ଭବ । ''ବୁଦ୍ଧ'' ପୁଣି ଚକ୍ରଦ୍ୱାରା ଚିହ୍ନିତ ଏବଂ ପ୍ରକୃତି ବା 'ଧମ୍ମ'ର ଚିହ୍ନ ସହିତ ମିଶ୍ରିତ ହେଲେ 'ସଙ୍ଘ'ର ଚିତ୍ର ହୋଇଥାଏ । ବୌଦ୍ଧଧର୍ମର ତ୍ରିରତ୍ନ ସହିତ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା – ଏହି ତ୍ରିମୂର୍ତ୍ତିର ମେଳଥିବା ସେମାନେ ଅନୁମାନ କରନ୍ତି । କାରଣ ସେମାନଙ୍କ ଦ୍ୱାରା ପ୍ରଦର୍ଶିତ ଚିତ୍ରରେ ଜଗନ୍ନାଥ ଓ ବଳଭଦ୍ର ଉର୍ଦ୍ଧ୍ୱବାହୁ ହୋଇଥିବା ସ୍ଥଳେ, ପ୍ରକୃତ ମୂର୍ତ୍ତିରେ ଦୁଇଙ୍କ ହାତ ସମ୍ମୁଖକୁ ସିଧାଭାବରେ ପ୍ରସାରିତ ହୋଇଛି । ଅନ୍ୟମାନଙ୍କ ମତରେ ଜଗନ୍ନାଥ ହେଉଛନ୍ତି 'ଧମ୍ମ'ର ଚିହ୍ନ ଏବଂ ଏହି ଚିହ୍ନଟି 'ପ୍ରକୃତି'ର ବିଭିନ୍ନ ରୂପ – ସୂଚକ ଛଅଟି ପାଲି ଅପକ୍ଷର 'ଯ, ର, ଳ,

ବ, ନ, ସ' ର ସମାବେଶ ମାତ୍ର । ବୌଦ୍ଧ ମନ୍ତ୍ରର ପାଲିବର୍ଣ୍ଣ ସହିତ ଏହାର ସାମଞ୍ଜସ୍ୟ ଥିବା ଅନୁମାନ କରାଯାଇପାରେ ।

ଦାର୍ଶନିକ ଦୃଷ୍ଟିକୋଣରୁ ଦେଖିଲେ ବୌଦ୍ଧ, ସଘ, ଧମ୍ମ ଓ ବୁଦ୍ଧ ଯଥାକ୍ରମେ ମୈତ୍ରୀ ଚେତନା, କରୁଣା ଓ ପତିତପାବନ ଚେତନା ଏବଂ ନିର୍ବାଣ ବା ମୁକ୍ତି ଚେତନାର ପରିପ୍ରକାଶ ଏବଂ ଏହି ଚେତନା ହେଉଛି ଜଗନ୍ନାଥ ଚେତନାରେ ଏକ ବିଶିଷ୍ଟଭାବ । ସଙ୍ଘରୂପକ ଏକକ ଅନୁଷ୍ଠାନ ବୌଦ୍ଧ ଧର୍ମର ପ୍ରସାର ଓ ଦୃଢ଼ୀକରଣରରେ ବିଶେଷ ସହାୟକ ହୋଇଥିଲା । ପୃଥିବୀର ପ୍ରାୟ ପ୍ରତ୍ୟେକ ଧର୍ମ ଏହି ସଘ ଧର୍ମୀ ଐକ୍ୟ ବା ମୈତ୍ରୀ ଚେତନାର ମହତ୍ତ୍ୱକୁ ଉଚ୍ଚ ଆସନ ଦେଇଆସିଛନ୍ତି । ଜଗନ୍ନାଥ ଧର୍ମରେ ଏହି ମୈତ୍ରୀଭାବ ବିଶ୍ୱ ଚେତନାଭାବେ ରୂପାନ୍ତରିତ ହୋଇଛି । ଏଥିରୁ ଆତ୍ମଦାନର ପ୍ରେରଣା ସୃଷ୍ଟିହୋଇ କରୁଣ ଓ ପତିତର ସେବା କରିବାପାଇଁ ଉତ୍ସାହିତ କରିଥାଏ । ଏହାହିଁ ଜଗନ୍ନାଥ ଧର୍ମର ଏକ ଅନନ୍ତ ତଥା ଅନନ୍ୟ ସାଧାରଣ ବୈଶିଷ୍ଟ୍ୟ ଏବଂ ଏହି କାରଣରୁ ବୋଧହୁଏ ଜଗନ୍ନାଥ 'ପତିତପାବନ' ନାମର ସାର୍ଥକ ମୂର୍ତ୍ତିମନ୍ତ ପ୍ରତୀକ ।

ଏହିପରି ଭାବରେ ଜଗନ୍ନାଥଙ୍କର କାଷ୍ଠମୂର୍ତ୍ତି ନିର୍ମାଣ ପରେ ବୌଦ୍ଧ ପ୍ରଥାନୁସାରେ ତାଙ୍କର ସ୍ନାନଯାତ୍ରା ଓ ରଥଯାତ୍ରା ପ୍ରଭୃତି ଆରମ୍ଭ ହୋଇଥିବା ଅନୁମାନ । ଜଗନ୍ନାଥଙ୍କର ଉଭୟ ଯାତ୍ରା ବୌଦ୍ଧ ପୂଜାବିଧାନରେ ଏକ ପ୍ରଧାନ ଅଂଶ । ଏହି ସମୟରେ ଜଗନ୍ନାଥଙ୍କ ସେବାପୂଜାର ଭାର ଶବର ବଂଶଧର 'ଦଇତା' ନାମକ ସେବକମାନଙ୍କ ଉପରେ ନ୍ୟସ୍ତଥିବା ପୂର୍ବରୁ ସୂଚିତ ହୋଇଛି । ତେଣୁ ଶବର ପୂଜିତ ଜଗନ୍ନାଥ ଯେ ବୌଦ୍ଧ ଧର୍ମର ଦେବତା, ଏହା ନିଃସନ୍ଦେହ । ସେଥିପାଇଁ ଜଗନ୍ନାଥଙ୍କ ମହାପ୍ରସାଦରେ ଜାତିଭେଦର ସୂଚନା ମିଳେ ନାହିଁ । ପୁରୁଷୋତ୍ତମ ନିରାକାର ଥିବାରୁ କେତେକ ଓଡ଼ିଆ କବି ତାଙ୍କୁ ବୁଦ୍ଧଦେବ ବୋଲି ମଧ୍ୟ କହିଛନ୍ତି । ପୁରୁଷୋତ୍ତମ ଜଗନ୍ନାଥଙ୍କୁ ସର୍ବ ଅବତାରର ମୂଳ ବା ମହାଶୂନ୍ୟ ବୋଲି ମଧ୍ୟ ଅନେକ ବର୍ଣ୍ଣନା କରିଛନ୍ତି । ବୌଦ୍ଧବିଜ୍ଞାନାତ୍ମବାଦକୁ ହିନ୍ଦୁ ଦର୍ଶନର ଏକ ଅଂଶବୋଲି ଦାର୍ଶନିକମାନେ ପରବର୍ତ୍ତୀ କାଳରେ ଗ୍ରହଣ କରିଥିବାରୁ ବୁଦ୍ଧଦେବଙ୍କୁ ବିଷ୍ଣୁଙ୍କ ଅବତାର ଭିତରେ ଗ୍ରହଣ କରିବା ସହଜ ହୋଇଛି । ପୁଣି ଅନେକଙ୍କ ମତରେ ପୂର୍ବେ ପୁରୀରେ ଜଗନ୍ନାଥ ମନ୍ଦିର ବୌଦ୍ଧ ମନ୍ଦିର ରୂପେ ଥିଲା ଏବଂ ଏଥିରେ କୃଷ୍ଣାବତାର ଜଗନ୍ନାଥ ବୁଦ୍ଧରୂପେ ପୂଜିତ ହେଉଥିଲେ । ସେଥିପାଇଁ ବୋଧହୁଏ ସାରଳା ଦାସଙ୍କ ମହାଭାରତରେ ଜଗନ୍ନାଥଙ୍କୁ ବୌଦ୍ଧାବତାର ବୋଲି ବହୁ ସ୍ଥାନରେ ବର୍ଣ୍ଣନା କରାଯାଇଛି । ସେ ଯାହାହେଉ, ଏ ମନ୍ଦିରରେ ଉଚ୍ଚନୀଚ ଭେଦଭାବ ନଥାଇ ସବୁ ବର୍ଣ୍ଣର ଲୋକେ ଏକ ସଙ୍ଗରେ ପ୍ରସାଦ ସେବନ କରୁଥିଲେ । କିନ୍ତୁପରେ ସେହି ଦେଉଳର ନାମ, ପ୍ରତିମା, ରଥ ଏବଂ ଦେଉଳ ନିଜେ ମଧ୍ୟ ବିଷ୍ଣୁ ହୋଇଯାଇ ଥିବାରୁ ଅନୁମାନ କରାଯାଏ ।

ଜଗନ୍ନାଥ ହେଉଛନ୍ତି ଭଗବାନ ପରଂବ୍ରହ୍ମ ପରମାତ୍ମା ପୁରୁଷ । ସେ ଅବତାରୀ କିନ୍ତୁ ଅବତାର ନୁହଁନ୍ତି । ସେ ହିଁ ବିଷ୍ଣୁ, ସେ ହିଁ ନୃସିଂହ, ସେ ହିଁ ସବୁ । ସେହିଁ ଏ ସୃଷ୍ଟିର ହିତ ପାଇଁ ଜ୍ଞାନରେଣୁ ପ୍ରଦାନ କରିଥାନ୍ତି ।

ସଭାପତି, ଚାନ୍ଦବାଲି ସାଂସ୍କୃତିକ ପରିଷଦ
ଚାନ୍ଦବାଲି, ଭଦ୍ରକ, ପିନ୍ – ୭୫୬୧୩୩





# ଉତ୍କଳୀୟ ଗଦ୍ୟ ସାହିତ୍ୟରେ ମାଦଳାପାଞ୍ଜି

ଶୁଭ୍ରା ନନ୍ଦ

ମାଦଳାପାଞ୍ଜି ଓଡ଼ିଆ ସାହିତ୍ୟର ଗଦ୍ୟ ସମ୍ଭାର ଓ ଏହା ଉତ୍କଳୀୟ ସମାଜର ଜୀବନ ଓ ଐତିହ୍ୟର ପଞ୍ଜିକା ଅଟେ । ମାଦଳାପାଞ୍ଜି ସାହିତ୍ୟର ଆଭିମୁଖ୍ୟ ନେଇ ରଚିତ ହୋଇନାହିଁ । ଏହାକୁ କୌଣସି ଏକ ଲେଖକ ମଧ୍ୟ ଲେଖି ନାହାନ୍ତି । ଏହା ପରମ୍ପରାକ୍ରମେ ବିଭିନ୍ନ ଲୋକମାନଙ୍କ ଦ୍ୱାରା ଲିଖିତ । ଏହି ମାଦଳାପାଞ୍ଜିରେ ମୁଖ୍ୟତଃ– ଶ୍ରୀଜଗନ୍ନାଥ ମନ୍ଦିରର ଓ ପ୍ରାଚୀନ ଗଜପତି ମହାରାଜମାନଙ୍କର ବିବରଣୀ ଲିପିବଦ୍ଧ । ଶ୍ରୀମନ୍ଦିର ପକ୍ଷରୁ ଗଜପତିଙ୍କ ଦ୍ୱାରା ଘଟଣାବଳୀକୁ ଲିପିବଦ୍ଧ କରାଯାଇ ରଖାଯାଉଥିଲା । ବିଶେଷକରି ବିଗ୍ରହକରଣମାନଙ୍କ ଦ୍ୱାରା ରାଜବଂଶର ଇତିହାସ ଏବଂ ଦେଉଳକରଣମାନଙ୍କ ଦ୍ୱାରା ଶ୍ରୀମନ୍ଦିରର ଆୟ ବ୍ୟୟର ହିସାବ, ସେବାପୂଜା, ନୀତିନିୟମ ପ୍ରଭୃତିର ବିବରଣୀ ଏହି ପାଞ୍ଜିରେ ହିଁ ଲିପିବଦ୍ଧ କରାଯାଇ ରଖା ଯାଇଥିଲା । ଏହାର ତିନିଟି ନକଲ ହେଉଥିଲା, ଗୋଟିଏ ଶ୍ରୀମନ୍ଦିରର ଓ ଅନ୍ୟ ଦୁଇଟିରୁ ଗୋଟିଏ ରାଜସଭାରେ ଓ ଅନ୍ୟଟି ଲେଖନକାରୀଙ୍କ ଗୃହରେ ସୁରକ୍ଷିତ ହୋଇ ରହୁଥିଲା ।

କରଣମାନେ ଦୁଇପ୍ରକାର ଯଥା (କ) ଦେଉଳକରଣ– ଶ୍ରୀମନ୍ଦିରର ଆୟ ବ୍ୟୟ, ସେବାପୂଜା ଓ ନୀତିନିୟମର ବିବରଣୀ ଲେଖକ (ଖ) ଚଡ଼ଉକରଣ– ରାଜବଂଶର ଇତିହାସର ବିବରଣୀ ଲେଖକ । (୧) ଏହା ମାଦଳାଦିଅଁ ଜଗନ୍ନାଥଙ୍କ କଥାବସ୍ତୁକୁ କେନ୍ଦ୍ରକରି ଲିପିବଦ୍ଧ ହେଉଥିଲା ବୋଲି ଏହା ନାମ ମାଦଳାପାଞ୍ଜି । (୨) ଏହା ମର୍ଦ୍ଦଳ ବା ମୃଦଙ୍ଗ ଆକାରରେ ଗଦାଗଦା ବନ୍ଧା ହୋଇ ତାଳପତ୍ରଗୁଡ଼ିକ ରଖାଯାଉଥିବାରୁ ଏହାକୁ ମାଦଳାପାଞ୍ଜି କୁହାଯାଉଥିବାର ଅନୁମାନ କରାଯାଏ ।

ରଚନାକାଳ – ମାଦଳାପାଞ୍ଜିକୁ ଏକବିଂଶ ଶତାବ୍ଦୀଠାରୁ ଆରମ୍ଭ କରି ଷୋଡ଼ଶ ଶତାବ୍ଦୀ ମଧ୍ୟରେ ଗବେଷକମାନେ ସୀମାବଦ୍ଧ କରିଛନ୍ତି । କେତେକ ଗବେଷକଙ୍କ ମତରେ କେଶରୀ ବଂଶର ଶେଷ ନରପତି ସୁବର୍ଣ୍ଣ କେଶରୀଙ୍କୁ ପରାସ୍ତ କରି ଏକାଦଶ ଶତାବ୍ଦୀରେ ଚୋଡ଼ଗଙ୍ଗ ଦେବ ତାଙ୍କ ମାତାଙ୍କ ଆଦେଶରେ ତନ୍ତ୍ର ବିଶାରଦା ନିତେଇ ଓ ଧୋବଣୀଠାରୁ ଆଶୀର୍ବାଦ ପାଇ ଓଡ଼ିଶା ଆଗମନ କଲେ । ସୁବର୍ଣ୍ଣ କେଶରୀଙ୍କୁ ପରାସ୍ତ କରି ସିଂହାସନ ଆରୋହଣ କଲେ । ଏହି ପ୍ରସଙ୍ଗ ସବୁ ମାଦଳାପାଞ୍ଜିରେ ରହିଛି । ତେଣୁ ବୋଧହୁଏ ଚୋଡ଼ଗଙ୍ଗ ଦେବଙ୍କ ସମୟରୁ ହିଁ ମାଦଳାପାଞ୍ଜି ଲିଖିତ ହୋଇଛି । ଗଙ୍ଗବଂଶର ପ୍ରଥମ ରାଜା ହେଉଛନ୍ତି ଚୋଡ଼ଗଙ୍ଗ ଦେବ । ସେ ହିଁ ଏହି ପବିତ୍ର ମାଦଳାପାଞ୍ଜିର ସ୍ରଷ୍ଟା । ଖ୍ରୀ ୧୦୭୭ ଶୁକ୍ଳ ଦଶମୀ କନ୍ୟା ୨୪ ଦିନ ପବିତ୍ର ଦଶହରା ପାଳିତ ହେଉଥାଏ । ସେହିଦିନ ରାଜା ଅଭିଷେକ ଅନୁଷ୍ଠିତ ହେବା ଅବସରରେ ରାଜା ଚୋଡ଼ଗଙ୍ଗ ଦେବ ଦେବପାଞ୍ଜି ରଚନା ପାଇଁ ନିର୍ଦ୍ଦେଶ ଦେଇଥିଲେ । ଏହି ପାଞ୍ଜିକୁ ଆଧାରକରି ଓଡ଼ିଶା ଇତିହାସ ରଚିତ ହୋଇଅଛି । ଚୋଡ଼ଗଙ୍ଗ ଦେବ ଦୀର୍ଘ ୭୦ ବର୍ଷ ଶାସନ କରିବା ପରେ ଖ୍ରୀ ୧୧୪୭ ମସିହାରେ ପ୍ରାଣତ୍ୟାଗ କଲେ । ସେ ଖୁବ୍ ସାହସୀ ଓ ଯୁଦ୍ଧଖୋର ଥିବାରୁ ଉତ୍ତର ପାର୍ଶ୍ୱରେ ଗଙ୍ଗାନଦୀ କୂଳରେ ଥିବା ମନ୍ଦାର ରାଜ୍ୟ ଜୟକରି ଦଖଲ କରିପାରିଥିଲେ ।





ପଶ୍ଚିମ ଦିଗରେ ଗଣ୍ଡୱାନା ରାଜ୍ୟ ନିଜ ଅଧୀନକୁ ଆଣିଥିଲେ । ଏହା ସହିତ ଦକ୍ଷିଣ ଦିଗରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ନିଜ ରାଜ୍ୟ ବଢାଇ ଥିଲେ । ଚୋଡ଼ଗଙ୍ଗ ଦେବ ଅତ୍ୟନ୍ତ ବିଦ୍ୟାନୁରାଗୀ ଥିଲେ । ସେ ବହୁ ପଣ୍ଡିତ ଓ ବିଦ୍ୱାନମାନଙ୍କୁ ରଖାଇ ସଂସ୍କୃତି ଚର୍ଚ୍ଚା କରୁଥିଲେ ।

ଖ୍ରୀ ୧୫୬୮ରେ କଳାପାହାଡ଼ ଓଡ଼ିଶା ଆକ୍ରମଣ କରି ମାଦଳାପାଞ୍ଜି ନଷ୍ଟ କରି ଦେଇଥିବା ଅନେକ ମତ ଦିଅନ୍ତି । ମାତ୍ର ଏହାକୁ ଯତ୍ନର ସହିତ ରଖିବାର ଯେଉଁ ବ୍ୟବସ୍ଥା କରାଯାଇଥିଲା ସେଥିରେ ଏହାର ନଷ୍ଟ ହେବାର ସମ୍ଭାବନା ନଥିଲା । ଗୋଟିଏ ନକଲ ନଷ୍ଟ ହୋଇଗଲେ ମାଦଳାପାଞ୍ଜି ନଷ୍ଟ ହୋଇପାରିବ ନାହିଁ କାରଣ ଏହାର ୨ଟି ନକଲ ଦେଉଳକରଣ ଓ ଚଉକରଣଙ୍କ ପାଖରେ ସାଇତି ହୋଇ ରହିଥାଏ । ଏହା ଓଡ଼ିଆ ସାହିତ୍ୟର ଏକ ଅପୂର୍ବ ଓ ଅନନ୍ୟ ମାଇଲଖୁଣ୍ଟ କହିଲେ ଅତ୍ୟୁକ୍ତି ହେବନାହିଁ । କାରଣ ମାଦଳାପାଞ୍ଜିକୁ ବାଦ୍ ଦେଇ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ବିଷୟରେ କୌଣସି ରଚନା ଅସମ୍ଭବ ।

ମାଦଳାପାଞ୍ଜି ଓଡ଼ିଆ ସାହିତ୍ୟର ପ୍ରାଚୀନ ଗଦ୍ୟ ସାହିତ୍ୟର ସ୍ୱରୂପ ଏହି ମାଦଳାପାଞ୍ଜିରୁ ହିଁ ମିଳିଥାଏ । ଚୋଡ଼ଗଙ୍ଗ ଦେବଙ୍କ ସମୟରେ ଲିଖିତ ଏହି ପାଞ୍ଜିରୁ ଗୋଟିଏ ଉଦାହରଣ ନିଆଯାଇପାରେ । ଓଡ଼ିଶା ରାଜ୍ୟର ପ୍ରଭୁ ଯେ ଶ୍ରୀଜଗନ୍ନାଥ ମହାପ୍ରଭୁ କହିଛନ୍ତି – ସେମାନେ କହିଲେ ଭୁଗଲଗୋଳ ହୋଇଲାକୁ ପତାଳି କରି ସୁନପୁର ଆଡ଼େ କେଉଁଠାରେ ବିଜେ କରାଇଲେ ଜ୍ଞାତବ୍ୟ ନାହାନ୍ତି ।

ମାଦଳାପାଞ୍ଜିରୁ ପ୍ରାଚୀନ ଓଡ଼ିଆ ଭାଷାରେ ରୂପରେଖ ବ୍ୟତୀତ, କିମ୍ବଦନ୍ତୀ ଓଡ଼ିଆ ଜନଜୀବନର ସାମାଜିକ ଚିତ୍ର, ପରମ୍ପରା, ଶ୍ରୀମନ୍ଦିରର ଇତିହାସ, ଶ୍ରୀଜଗନ୍ନାଥଙ୍କ ପୂଜା ପଦ୍ଧତି, ଗଜପତି ପରମ୍ପରା ଓ ଗଜପତି ବଂଶର ପରିଚୟ ମିଳିଥାଏ । ଏହି ମାଦଳାପାଞ୍ଜିରେ ସେହି ସମୟର ସାମାଜିକ ଚିତ୍ର ବର୍ଣ୍ଣନା କରାଯାଇଅଛି । ଦେବତା ଓ ବ୍ରାହ୍ମଣମାନଙ୍କୁ ସମ୍ମାନ ଦେବା ପାଇଁ କୁହାଯାଇଛି । ଏଥିରେ ଅନଙ୍ଗ ଭୀମଦେବଙ୍କ ପ୍ରସଙ୍ଗରେ କୁହାଯାଇଛି ଯେ ଦେବତା ବ୍ରାହ୍ମଣଙ୍କୁ ଭୋଗ କରାଇ ଯେ ସେ ପ୍ରକାର ପରିପାଳନ କରୁଥିବା ସାଆନ୍ତମାନଙ୍କୁ କଉଡ଼ି ଭାଗ ବରତନ, ମାହୁନ୍ତମାନଙ୍କୁ ଦଶମାସ ଟଙ୍କା ବରତନ, ବାଣୁଆ ପାଇକମାନଙ୍କୁ ଆଉ ସମସ୍ତ ସେବକମାନଙ୍କୁ ମଧ୍ୟ ଭୂମିର ସୁନାବର୍ତ୍ତନ ଦେଇ ପରିବାର ପୋଷୁଥିଲେ । ଏସବୁ ପ୍ରସଙ୍ଗ ବ୍ୟତୀତ ରାଜାମାନଙ୍କର ମନ୍ଦିର ନିର୍ମାଣ, କୂଅପୋଖରୀ ଖୋଳାଇବା, ରାସ୍ତାଘାଟ ବୃକ୍ଷରୋପଣ କରାଇବା ପ୍ରଭୃତି ଲୋକହିତକର କାର୍ଯ୍ୟ ସବୁ ମାଦଳା ପାଞ୍ଜିରେ ହିଁ ଉଲ୍ଲେଖ ଅଛି । ରାମଚନ୍ଦ୍ରଦେବଙ୍କ ରାଜତ୍ୱକାଳୀନ ବିବରଣୀ, ଉତ୍କଳୀୟ ସାମାଜିକ ବ୍ୟବସ୍ଥାର ଚିତ୍ର ସୁନ୍ଦରଭାବରେ ବର୍ଣ୍ଣିତ ଏହି ପାଞ୍ଜିରେ ଅଛି । ଭୋଇ ବଂଶର ପ୍ରତିଷ୍ଠା, ରାମଚନ୍ଦ୍ରଦେବଙ୍କ ସିଂହାସନ ଆରୋହଣ ଓ ତାଙ୍କର ସୁଶାସନ ତଥା ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ଓଡ଼ିଶାରେ ଅରାଜକତା ବିଷୟ ମଧ୍ୟ ଉଲ୍ଲେଖ ଅଛି ।

ଉତ୍କଳରେ ରାମଚନ୍ଦ୍ର ଦେବଙ୍କ କାଳରେ ଚତୁର୍ଥ ବର୍ଷରେ ଦୁର୍ଭିକ୍ଷ ପଡ଼ିଥିବା କଥା ଲେଖା ଅଛି । ଧାନ ଭରଣକ ଶହେ କୋଡ଼ିଏ କାହାଣ କଉଡ଼ି ହୋଇଥିବା ପ୍ରସଙ୍ଗ ଅଛି । ଆକବରଙ୍କ ମନ୍ତ୍ରୀ ତୋଡ଼ରମଲ୍ଲ ଓଡ଼ିଶାକୁ ପର୍ଯ୍ୟବେକ୍ଷକ ହୋଇ ଆସିଥିବାର ଉଲ୍ଲେଖ ପ୍ରସଙ୍ଗ ଏହି ମାଦଳାପାଞ୍ଜିରୁ ହିଁ ମିଳିଥାଏ । ଏହି ସମୟରେ ଓଡ଼ିଶାର ସାଂସ୍କୃତିକ ଜୀବନ ବିପର୍ଯ୍ୟସ୍ତ ଥିଲା । କଳାପାହାଡ଼ ମହାପ୍ରଭୁ ଜଗନ୍ନାଥଙ୍କୁ ଗଙ୍ଗାକୂଳକୁ ନେଇ ଅଗ୍ନିଦଗ୍ଧ କରୁଥିଲାବେଳେ ବିଶର ମହାନ୍ତି ପ୍ରଭୁଙ୍କର ବ୍ରହ୍ମକୁ ଉଦ୍ଧାର କରିନେଇ କୁଜଙ୍ଗ ଗଡ଼ରେ ସୁରକ୍ଷିତ ରଖିଥିଲେ । ରାମଚନ୍ଦ୍ର ଦେବ ସେହି ବ୍ରହ୍ମଙ୍କୁ ଅଣାଇ ପୁଣି ଶ୍ରୀମନ୍ଦିରରେ ପୁନଃପ୍ରତିଷ୍ଠିତ କରାଇଥିବା ପ୍ରସଙ୍ଗ ମଧ୍ୟ ମାଦଳାପାଞ୍ଜିରୁ ହିଁ ମିଳେ ।

ତତ୍‌କାଳୀନ ସମୟରେ ଲୋକମାନଙ୍କର ଶ୍ରୀଜଗନ୍ନାଥଙ୍କ ପ୍ରତି ପ୍ରଗାଢ ଭକ୍ତି ଥିଲା । ମହାପ୍ରସାଦ ସେବନ, ଭୋଗ ଓ ଭକ୍ତି ସଂପର୍କରେ ଏହି ପାଞ୍ଜିରେ ଉଲ୍ଲେଖ ଅଛି । ମହାପ୍ରଭୁଙ୍କ ବ୍ରହ୍ମ ଉଦ୍ଧାର ଶ୍ରୀମନ୍ଦିର ସଂସ୍କାର, ଦେଉଳ ଶୀର୍ଷରେ ନୀଳଚକ୍ର ସ୍ଥାପନା, ମୁକ୍ତି ମଣ୍ଡପ ନିର୍ମାଣ, ବୀର ରାମଚନ୍ଦ୍ରପୁର ଶାସନ ପ୍ରତିଷ୍ଠା ପ୍ରଭୃତି





ମାଦଳାପାଞ୍ଜିରୁ ହିଁ ମିଳିଥାଏ । ଏହା ବ୍ୟତୀତ ମାଦଳାପାଞ୍ଜିର ସାହିତ୍ୟିକ ମୂଲ୍ୟବୋଧ ମଧ୍ୟ ବହୁତ ଗୁରୁତ୍ୱପୂର୍ଣ୍ଣ ଅଟେ । ମାଦଳାପାଞ୍ଜି ଭାଷା ଛନ୍ଦ ଧର୍ମୀ ଯଥା– ସମ୍ଭବ କ୍ଷୁଦ୍ର କ୍ଷୁଦ୍ର କାବ୍ୟର ବ୍ୟବହାର ପ୍ରାଚୀନ ଶବ୍ଦାବଳୀ ଲାଳିତ୍ୟ ଭାଷାରେ ପ୍ରୟୋଗ ଦୃଷ୍ଟିରୁ ଏହାର ସାହିତ୍ୟିକ ମୂଲ୍ୟକୁ ଅସ୍ୱୀକାର କରାଯାଇନପାରେ । ମାଦଳାପାଞ୍ଜି ଓଡ଼ିଆ ସାହିତ୍ୟର ଓ ସମଗ୍ର ଭାରତବର୍ଷର ଅତ୍ୟନ୍ତ ଗୌରବମୟ ସଂପଦ । ଓଡ଼ିଆ ଜାତିର ଦୁର୍ଲ୍ଲଭ ସ୍ୱାକ୍ଷର ହେଉଛି ଏହି ପାଞ୍ଜି । ଏହା ଉତ୍କଳୀୟ ସଂସ୍କୃତିର ଜାତୀୟ ସଂପଦ ତଥା ଇତିହାସ ଦୃଷ୍ଟିରୁ ଏକ ପ୍ରାମାଣିକ ମୂଲ୍ୟବାନ ଗ୍ରନ୍ଥ ଅଟେ । ପର୍ଯ୍ୟାଲୋଚନା କଲେ ଜଣାଯାଏ ଆଜି ପର୍ଯ୍ୟନ୍ତ ମାଦଳାପାଞ୍ଜି ଓଡ଼ିଆ ସାହିତ୍ୟର ବିଭିନ୍ନ ଦିଗକୁ ପ୍ରଭାବିତ କରୁଛି । ଓଡ଼ିଆ ଗଦ୍ୟ ସାହିତ୍ୟର ବିକାଶରେ ଉଭୟ ଭାଷା ଓ ଶୈଳୀ ଦୃଷ୍ଟିରୁ ମାଦଳାପାଞ୍ଜିର ସ୍ଥାନ ସ୍ୱତନ୍ତ୍ର ।

ସାଇକୃପା, କପିଳପ୍ରସାଦ, ଭୁବନେଶ୍ୱର

# ଜଗନ୍ନାଥମୟ

ରଶ୍ମିମୟୀ ପତି

କାହା ଲାଗି ଆଜି ଓଡ଼ିଆ ଜାତିର
ଗର୍ବରେ ମଥା ଉଚ୍ଚ
ବିଶ୍ୱ ବ୍ରହ୍ମାଣ୍ଡର ମଉଡମଣି ସେ
ସାରା ଜଗତେ ପ୍ରସିଦ୍ଧ ।
ଶ୍ରୀମନ୍ଦିର ଯା'ର ବିଶ୍ୱରେ ପ୍ରସିଦ୍ଧ
ପ୍ରସିଦ୍ଧ ତା' ଘୋଷଯାତ
ସାରା ଜଗତରେ ଚହଳ ପକାଏ
ସେ ପରା ଜଗତନାଥ ।
ରଥ ଚାହେଁ ତା'ର ବାଟ
ଶରଧାବାଲି ତ ଚାହିଁ ରହିଥାଏ
ଛୁଇଁବ ସେ ନନ୍ଦିଘୋଷ ।
ଆକୁଳେ ବିକଳେ ସାରା ଜଗତରେ
ଚାହିଁଥାନ୍ତି ସବୁ ଭକ୍ତ
ଜଗନ୍ନାଥମୟ କେବେ ହେବ ଦାଣ୍ଡ
ଭେଟିବ ଜଗତନାଥ ।
ରଥ ଗଡୁଥିବ ଉଛୁଳିବ ଦାଣ୍ଡ
ହରିବୋଲ ଶୁଭୁଥିବ
ହଜିଯିବ ଭକ୍ତ ମଜିଯିବେ ସର୍ବେ
କେବେ ସେ ଦିନ ଆସିବ ।
ତା' ଚକା ଆଖିରେ ଆଖି ମିଶାଇଲେ
କେତେ ଲୁହ ଝରୁଥିବ





କୋହ ରୁଦ୍ଧ କଣ୍ଠ ନାମ ଜପୁଥିବ
ରଥ ଦଉଡି ଧରିବ ।
ଭକତ ଭିଡରେ ହେବ ଶ୍ୱାସରୁଦ୍ଧ
ତଥାପି ତହିଁ ଆନନ୍ଦ
ପ୍ରାଣ ପଛେ ଯାଉ ଏ ଧରା ଧାମରେ
ଜଗା ଦର୍ଶନେ କି ସୁଖ ।
ସାରା ବିଶ୍ୱରୁ ଛୁଟିଥାନ୍ତି ଭକ୍ତ
ଏହା ପରା ଶ୍ରେଷ୍ଠ ପୁଣ୍ୟ
ପରଂବ୍ରହ୍ମଙ୍କର ଦର୍ଶନ ଲଭିଲେ
ଜୀବନ ହୋଇବ ଧନ୍ୟ ।
ଭକ୍ତ ଆଜି ସ୍ତବ୍ଧ ଠାକୁର ନିଶବ୍ଦ
ଭିନ୍ନ ପରିସ୍ଥିତି ଆଜି
କି ମାୟା ରଚନ୍ତି ପ୍ରଭୁ ଲୀଳାମୟ
ସେ ହିଁ ନିଜେ ଜାଣନ୍ତି ।
ତାଙ୍କ ନିର୍ଦ୍ଦେଶରେ ସର୍ବେ ଆତଯାତ
ତାଙ୍କ ନିର୍ଦ୍ଦେଶ ଜଗତ
ଭାବର ସହରେ ଭାବର ପସରା
ଖୋଲିବ ଜଗତନାଥ ।

ଭୁବନେଶ୍ୱର





# ପାରାଦ୍ୱୀପରେ ପରଂବ୍ରହ୍ମ ଶ୍ରୀଜଗନ୍ନାଥ

**ବସନ୍ତ କୁମାର ନାୟକ**

ପାରାଦ୍ୱୀପର ପ୍ରାଚୀନ ନାମ ପରାଦ୍ୱୀପ । ଇତିହାସରେ ଏହା ଅଶ୍ୱତ୍‌ଥ କ୍ଷେତ୍ର, ସୁଭଦ୍ରା କ୍ଷେତ୍ର, ଓଁକାର କ୍ଷେତ୍ର ଓ ଅନନ୍ତପୁର ନାମରେ ପରିଚିତ । ତେବେ ତାହା ନାମମାତ୍ର ନୁହେଁ । ତାହା ସହିତ ଅନେକ ଗର୍ବ ଗୌରବ ଓ କୀର୍ତ୍ତିକଳାପର ସ୍ମୃତି ଜଡିତ ହୋଇ ରହିଛି । ପୁଣ୍ୟତୋୟା ମହାନଦୀ ଓ ମହୋଦଧିର ସଂଗମ ସ୍ଥଳରେ ଅବସ୍ଥିତ ଏହି ବୃହତ୍ ଦ୍ୱୀପର ମହତ୍ତ୍ୱ ସମ୍ପର୍କରେ ଏକାଧିକ କିଂବଦନ୍ତୀ ଓ ଲୋକକଥା ପ୍ରଚଳିତ । ଏଠାରେ ପ୍ରକୃତି ଓ ପବିତ୍ରତାର ମିଳନ ବ୍ୟତିରେକେ ଶାନ୍ତ ପରିବେଶ ଓ ନୈସର୍ଗିକ ଶୋଭାଭଣ୍ଡାର ଏହି ଦ୍ୱୀପର ବୈଶିଷ୍ଟ୍ୟ । ଯୁଗେ ଯୁଗେ ବହୁ ମୁନି ଋଷି, ସାଧୁ ସନ୍ଥ ଈଶ୍ୱର ଉପାସନା ତଥା ଧ୍ୟାନ ଯୋଗରେ ମଗ୍ନ ରହିବା ନିମିତ୍ତ ଏହି ଦ୍ୱୀପକୁ ପ୍ରକୃଷ୍ଟ ସ୍ଥାନ ଭାବେ ବିବେଚନା କରିଥିବା ପୌରାଣିକ ଆଖ୍ୟାୟିକାଗୁଡିକରେ ଲିପିବଦ୍ଧ । ସତ୍ୟ ଯୁଗରେ ଋଷି କୃପାଜଳ, ତେତ୍ରୟା ଯୁଗରେ ଋଷି ପର୍ଶୁରାମ ଏବଂ ଦ୍ୱାପରରେ ଋଷି ପରାଶରଙ୍କ ଆଗମନ ଏହି ଦ୍ୱୀପର ପ୍ରାଚୀନତା ଦର୍ଶାଇଥାଏ । ପ୍ରଚଳିତ ଲୋକସଂସ୍କୃତି, ଜନଶ୍ରୁତି ଅନୁଯାୟୀ ବେଦଜ୍ଞ ମହର୍ଷି ପରାଶରଙ୍କ ନାମାନୁସାରେ ଏହି ଦ୍ୱୀପ 'ପରାଦ୍ୱୀପ' କାଳକ୍ରମେ ପାରାଦ୍ୱୀପ ନାମରେ ପରିଚୟ ଲାଭ କରିଛି ।

ପାରାଦ୍ୱୀପର ଭୌଗୋଳିକ ଅବସ୍ଥିତି ଅନୁଯାୟୀ ଏହା ପୁରୁଷୋତ୍ତମ କ୍ଷେତ୍ରର ପୂର୍ବଦ୍ୱାର ଭାବେ ପୌରାଣିକ ସ୍ୱୀକୃତି ପାଇଛି । ପରା ଅପରା ଦ୍ୱୀପର ମିଳନ ତଥା ଜ୍ଞାନ-ବିଜ୍ଞାନର ଉଭୟ ତତ୍ତ୍ୱ ଓ ତଥ୍ୟର କେନ୍ଦ୍ରବିନ୍ଦୁ ଆଦ୍ୟାଶକ୍ତି ମା' ଶାରଳା ଏହି ଦ୍ୱୀପାଞ୍ଚଳର ଅଧିଷ୍ଠାତ୍ରୀ ଦେବୀ ଭାବେ ପ୍ରତିଷ୍ଠିତ । ସ୍ମରଣାତୀତ କାଳରୁ ଆଧ୍ୟାତ୍ମିକତାର ପ୍ରତୀଭୂ ରୂପେ ଇତିହାସର ତଥ୍ୟ ଓ ପୌରାଣିକ ପ୍ରାମାଣିକତାର ସାକ୍ଷ୍ୟ ସହ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଏହି କ୍ଷେତ୍ରରେ ଆବିର୍ଭାବ ବାସ୍ତବରେ ଧାର୍ମିକ ଜଗତରେ ଏକ ଅନନ୍ୟ ଦୃଷ୍ଟାନ୍ତ ସୃଷ୍ଟି କରିଛି । ଏକାଧିକବାର ଏହି ଦ୍ୱୀପାଞ୍ଚଳର ମାଟି ମହାପ୍ରଭୁଙ୍କର ସ୍ପର୍ଶରେ ଆସିଛି । ରାଜା ଇନ୍ଦ୍ରଦ୍ୟୁମ୍ନ ଓ ରାଜା ରାମଚନ୍ଦ୍ରଦେବ ଉଭୟ ବଡ ଠାକୁରଙ୍କ ସନ୍ଧାନରେ ଆସି ଏହିଠାରୁ ପ୍ରାପ୍ତ ହୋଇଥିବା ଜଗନ୍ନାଥ ସଂସ୍କୃତିର ଗବେଷକମାନେ ମତବ୍ୟକ୍ତ କରିଛନ୍ତି । ମାଦଳାପାଞ୍ଜି, ଚକଡା ପୋଥି, ଗବେଷକମାନଙ୍କ ତଥ୍ୟ ଓ ମତାମତକୁ ଆଧାର କରି ଶ୍ରୀମନ୍ଦିର ଲୀଳାକ୍ଷେତ୍ର କମିଟିର ସଦସ୍ୟ ଓ ବିଶେଷଜ୍ଞମାନେ ଏହି କ୍ଷେତ୍ରକୁ ମହାପ୍ରଭୁଙ୍କ ଲୀଳାକ୍ଷେତ୍ର ରୂପେ ଘୋଷଣା କରିଛନ୍ତି ।

ପରବର୍ତ୍ତୀ କାଳରେ ଓଡିଶାର ବହୁ ସିଦ୍ଧ ମହାପୁରୁଷମାନେ ଏହି ବିରଳ ପବିତ୍ର କ୍ଷେତ୍ରର ସନ୍ଧାନରେ ଆସି କ୍ଷେତ୍ରର ଅସାମାନ୍ୟ ଅତୀତ ତଥା ତାତ୍ପର୍ଯ୍ୟପୂର୍ଣ୍ଣ ଭବିଷ୍ୟତକୁ ଅନୁଭବ କରିପାରିଛନ୍ତି । ପଞ୍ଚଦଶ ଶତାବ୍ଦୀଠାରୁ ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ପଞ୍ଚସଖା ଓ ସନ୍ଥ ସାଧକଗଣ ସେମାନଙ୍କ ଯୋଗସିଦ୍ଧ ଦିବ୍ୟଦୃଷ୍ଟି ବଳରେ ଆଗତ ଭବିଷ୍ୟତ ମାଳିକା ସାହିତ୍ୟରେ ଯାହା ଲିପିବଦ୍ଧ କରିଯାଇଛନ୍ତି, ଅଧୁନା ସେହି ଘଟଣାଗୁଡିକ ରୂପ ପାଇଆସୁଥିବା ଦେଖିବାକୁ ମିଳେ । ଏହି କ୍ଷେତ୍ରର ନିଦର୍ଶନ ସ୍ୱରୂପ ପାରାଦ୍ୱୀପ ଉପକଣ୍ଠରେ ଥିବା ପ୍ରାଚୀନ ବଟବୃକ୍ଷ 'ଉଦୟବଟ'କୁ ସଂକେତ ରୂପେ





ଦର୍ଶାଇ ଏଠାରେ ଏକ ଆଧୁନିକ ବନ୍ଦର ପ୍ରତିଷ୍ଠା ହେବା ସହିତ ଉଦୟବଟ ପାର୍ଶ୍ୱରୁ ପରଂବ୍ରହ୍ମ ଶ୍ରୀଜଗନ୍ନାଥଙ୍କ କଳ୍‌କି ଲୀଳା ପ୍ରକଟ ହେବ ବୋଲି ଉଲ୍ଲେଖ କରିଛନ୍ତି ।

କହିବା ବାହୁଲ୍ୟ, ସମୟକ୍ରମେ ପାରାଦ୍ୱୀପରେ ବୃହତ୍ ବନ୍ଦର ପ୍ରତିଷ୍ଠା ହୋଇ ଓଡିଶାର ଆଧୁନିକ କୀର୍ତ୍ତି ଭାବେ ଉଭା ହୋଇଛି । ଅପର ପକ୍ଷେ, କଳିକବଳିତ ମାନବ ଜାତିକୁ ଏକତା ଓ ସମନ୍ୱୟ ବନ୍ଧନରେ ବାନ୍ଧି ମହାନ୍ ଆଦର୍ଶରେ ଉଦ୍‌ବୁଦ୍ଧ ହେବା ଲକ୍ଷ୍ୟରେ 'ଜଗନ୍ନାଥ ସମାଜ' ଗଠନ କରାଯାଇଛି । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଭବ୍ୟ ମନ୍ଦିର ନିର୍ମାଣ ସହ ସର୍ବଧର୍ମ ସମନ୍ୱୟ ଆଧାରିତ ସାର୍ବଜନୀନ ଆଧ୍ୟାତ୍ମିକ ଚେତନା ଜାଗରଣର ଭିତ୍ତିଭୂମି ପ୍ରସ୍ତୁତ ହୋଇସାରିଛି । ଉଲ୍ଲେଖନୀୟ କଥାହେଲା, ଜନ ମାନବ ଶୂନ୍ୟ ଲୁଣା ହେନ୍ତାଳଜଙ୍ଗଲ ପରିବେଷ୍ଟିତ ପାରାଦ୍ୱୀପରେ ବୃହତ୍ ବନ୍ଦର ପ୍ରତିଷ୍ଠା ଯେପରି ରହସ୍ୟ ଓ ରୋମାଞ୍ଚକର ଘଟଣା ଥିଲା ଅନୁରୂପ ଭାବେ ମଧୁବନ ଜଙ୍ଗଲରେ ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ ମଧ୍ୟ ସେହିପରି ଅଲୌକିକ ଓ ଅପ୍ରତ୍ୟାଶିତ ଘଟଣା ବହୁଳ କଥା ଥିଲା । ଉଭୟ ବନ୍ଦର, ମନ୍ଦିର ପ୍ରତିଷ୍ଠା ଓ କ୍ରମବିକାଶର ଅନ୍ତରାଳରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଚିନ୍ମୟ ଲୀଳାର ପରିପ୍ରକାଶ ଘଟିଥିବା କୁହାଯାଇପାରେ । ଏ ସମସ୍ତ ଘଟଣାକ୍ରମ ଇତିହାସ ପରି ସତ୍ୟ ହୋଇଥିଲେ ମଧ୍ୟ ଅଦ୍ୟାବଧି କେବଳ ସ୍ମୃତିରେ ରହିଛି ।

ଉଲ୍ଲେଖଯୋଗ୍ୟ, ବିଂଶ ଶତାବ୍ଦୀର ଷାଠିଏ ଦଶକରେ ବାଦ ବିବାଦର ଭଉଁରି ଭିତରୁ ଟାଣି ହୋଇ ପାରାଦ୍ୱୀପ ବନ୍ଦର ପ୍ରତିଷ୍ଠା ହେଲା । ଦେଶର ତୃତୀୟ ଯୋଜନା କାଳରେ ନିର୍ମାଣ ହେବାକୁ ଥିବା ବଡ ବନ୍ଦରମାନଙ୍କ ମଧ୍ୟରେ ପାରାଦ୍ୱୀପର ନାମଗନ୍ଧ ନଥିଲା । ଯୋଜନା କମିଶନଙ୍କ ଅନୁମୋଦନ ନଥିଲା କିମ୍ବା ବଜେଟରେ କୌଣସି ଅର୍ଥ ବ୍ୟବସ୍ଥା କରାଯାଇ ନଥିଲା । ଏପରିକି ପାରାଦ୍ୱୀପକୁ ଯିବା ପାଇଁ ରାସ୍ତା ମଧ୍ୟ ନଥିଲା । ଏହି କାରଣରୁ ବହୁ ପ୍ରତିରୋଧ, ପ୍ରତିବନ୍ଧକ ସୃଷ୍ଟି ହୋଇଥିଲା । ମୁଖ୍ୟମନ୍ତ୍ରୀ ବିଜୁବାବୁଙ୍କ ନିବେଦନକୁ ଏଡାଇ ନପାରି ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ କୌଣସି କଥାକୁ ଖାତିର ନକରି ମହାନଦୀର ଜଳପଥରେ ଏହି ଦ୍ୱୀପକୁ ଆସି ଏହାର ସମ୍ଭାବନାମୟ ଭବିଷ୍ୟତର ମୂଳଦୁଆ ସ୍ଥାପନ କଲେ । ପୌଷମାସ ଶୀତ ରାତିରେ ପ୍ରଧାନମନ୍ତ୍ରୀ ଦୁଇ ଘଣ୍ଟାର ଜଳଯାତ୍ରା କରିବା ଆଉ ନିର୍ଜନ ଦ୍ୱୀପରେ ଏକମାତ୍ର ନବ ନିର୍ମିତ କୋଠାଘର 'ନେହେରୁ ନିବାସ'କୁ ମଧ୍ୟ ରାତ୍ରିରେ ପ୍ରତିଷ୍ଠା ପୂର୍ବକ ସେଠାରେ ରାତ୍ରିଯାପନ କରିବା ପଣ୍ଡିତ ନେହେରୁଙ୍କ ପକ୍ଷେ ଏକ ବିସ୍ମୟକର ଘଟଣାଥିଲା, ଯାହାକୁ କି ସେତେବେଳେ ଏକ ରହସ୍ୟ ଓ ରୋମାଞ୍ଚକର ଘଟଣା ଭାବେ ଅଭିହିତ କରି ସମ୍ବାଦପତ୍ର ଶିରୋନାମାରେ ପ୍ରକାଶ କରାଯାଇଥିଲା । ତାତ୍ପର୍ଯ୍ୟପୂର୍ଣ୍ଣ ବିଷୟ ହେଲା, ସ୍ଥାପିତ ଶୁଭପ୍ରସ୍ତର ଫଳକରେ ଉଲ୍ଲେଖଥିବା ପ୍ରଧାନମନ୍ତ୍ରୀଙ୍କ ହୃଦୟସ୍ପର୍ଶୀ ବାଣୀ ଅଦ୍ୟାବଧି ରହସ୍ୟାବୃତ ହୋଇରହିଥିଲେ ମଧ୍ୟ ଏକ ନୂତନ ଅଭିଯାନ ପଥରେ ଅଗ୍ରସର ହେବାରେ ପାରାଦ୍ୱୀପ କ୍ଷେତ୍ରର ଭୂମିକା ଯେ ମହତ୍ତ୍ୱପୂର୍ଣ୍ଣ, ଏହା ନିଃସନ୍ଦେହରେ କୁହାଯାଇପାରେ । ଭାରତୀୟ ଦିବ୍ୟଦ୍ରଷ୍ଟାମାନେ ସମୟ ଓ ସ୍ଥିତିର ଉର୍ଦ୍ଧ୍ୱରେ ଥିବା ଚେତନା ମାଧ୍ୟମରେ ଯେଉଁସବୁ ସତ୍ୟର ଆଭାସ ପାଇଥିଲେ, ପ୍ରଧାନମନ୍ତ୍ରୀ ମହାଜାତି ନିର୍ଦ୍ଦେଶରେ ଦେଇଥିବା ଆହ୍ୱାନ ସହିତ ସାମଞ୍ଜସ୍ୟ ରହିଥିବା ଜ୍ଞାନୀ ଗୁଣୀ ବ୍ୟକ୍ତି ବିଶେଷ ମତବ୍ୟକ୍ତ କରିଥାନ୍ତି। ଅଦ୍ୟାବଧି ପାରାଦ୍ୱୀପ ଜନ୍ମ ଜାତକରେ ଏହି ଅଲିଭା ପ୍ରତିଲିପି 'ନେହେରୁ ନିବାସ' ସାମ୍ନାରେ ଶୋଭା ପାଉଛି । ଏହିଭଳି ଏକ ଅବିଶ୍ୱସନୀୟ ଘଟଣା ଅନ୍ତରାଳରେ ଏକ ଅଦୃଶ୍ୟ ଶକ୍ତିର ପ୍ରଚ୍ଛନ ପ୍ରେରଣା ରହିଥିବା ଅନୁଭବକୁ ଆସିଥାଏ । ଏ ପ୍ରସଙ୍ଗରେ ଚାରି ଦଶନ୍ଧି ପୂର୍ବରୁ ସନ୍ଥ ରାଜୀବ ଲୋଚନ ଦାସଙ୍କ ରଚିତ 'ଉଦୟ ସ୍କନ୍ଦ' ଭାଗବତରେ ଲିପିବଦ୍ଧ ହୋଇଥିବା ଭବିଷ୍ୟତ ବାଣୀ ଉଲ୍ଲେଖଯୋଗ୍ୟ ।

ଜବାହର ନାମେ ସୁପୁତ୍ର – ଭାରତେ ତା'ର ଅଧିକୃତ,ମହାଜାତିର ନିର୍ଦ୍ଦେଶରେ – କୁଜଙ୍ଗ ରାଜ୍ୟେ ଆସିବାରେ

ଭୂତପୂର୍ବ ରାଜବଂଶରେ – ବିଧିଭାବେ ପ୍ରତିନିଧିରେ, ଭେଟି ଦେଇ ରୌପ୍ୟ ଜାହାଜ – ପାରାଦ୍ୱୀପ ବନ୍ଦର ବୁଝ





ଲୀଳା ଯେ ହୋଇବ ପ୍ରକଟ – କହେ ରାଜୀବ ସର୍ବେ ଭେଟ ।

ପାରାଦ୍ୱୀପ ବନ୍ଦର କାର୍ଯ୍ୟକ୍ଷମ ହେଲା ବେଳକୁ ବନ୍ଦରର ପ୍ରବେଶପଥ ଅଠରବାଙ୍କିଠାରୁ ଘନଗଳିଆ ଦେଇ ବଡପଡିଆକୁ ସଂଯୋଗ କରୁଥିବା ଏକମାତ୍ର ପକ୍କା ରାସ୍ତା ପାର୍ଶ୍ୱରେ ଜନବସତି ତଥା ଦୋକାନ ବଜାର ଗଢିଉଠିଥିଲା । ତତ୍କାଳୀନ ସହରାଞ୍ଚଳରେ ଗହଳ ଚହଳ, ବ୍ୟବସାୟ, ବାଣିଜ୍ୟ ତଥା ଧର୍ମ ସଂସ୍କୃତି ମୁଖ୍ୟତଃ ବନ୍ଦର କର୍ମଚାରୀମାନଙ୍କୁ ନେଇ ଗତିଶୀଳ ଥିଲା । ସେତେବେଳେ କୌଣସି ଦେବଦେବୀ ମନ୍ଦିର ନଥିଲା ବେଳେ 'ପତ୍ରିକା ମହଲ' ପାରାଦ୍ୱୀପର ଆଧାତ୍ମିକ ଇତିହାସରେ ବିରଳ ଦୃଷ୍ଟାନ୍ତ ସୃଷ୍ଟିକଲା । ଏକ ଅପ୍ରତ୍ୟାଶିତ ଘଟଣା ପ୍ରବାହରେ ମଧୁବନ ଜଗନ୍ନାଥ ମନ୍ଦିରରେ ପ୍ରତିଷ୍ଠିତ ଚତୁର୍ଦ୍ଧାମୂର୍ତ୍ତିଙ୍କର ଜନ୍ମବେଦୀ ପାଲଟିଗଲା କିନ୍ତୁ ଏହି ପବିତ୍ର ସ୍ଥାନ ଆଜି ଦେଖିବାକୁ ମିଳେ ନାହିଁ । ପୋତାଶ୍ରୟ ସମ୍ପ୍ରସାରଣ ଯୋଜନାରେ ସମୁଦ୍ର ଗର୍ଭରେ ସମଗ୍ର ଅଂଚଳ ନିଶ୍ଚିହ୍ନ ହୋଇଯାଇଛି ଏବଂ ପାରାଦ୍ୱୀପ ଧାର୍ମିକ ପରମ୍ପରା ସହିତ ଜଡିତ ଥିବା 'ପତ୍ରିକା ମହଲ' ଅର୍ଦ୍ଧ ଶତାବ୍ଦୀ ତଳର ଏକ ବିସ୍ମୃତ ଇତିହାସରେ ପରିଣତ ହୋଇ ଯାଇଛି ।

'ପତ୍ରିକା ମହଲ' କହିଲେ ସେସମୟରେ ସବୁଠୁ ବ୍ୟସ୍ତ ବହୁଳ ବଜାର ଘନଗଳିଆ ଓ ବଡପଡିଆର ମଧ୍ୟବର୍ତ୍ତୀ ସ୍ଥାନକୁ ବୁଝାଉଥିଲା । ସେଠାରେ ଏକ କାଠ କ୍ୟାବିନରେ ପତ୍ରିକା ମହଲ ବୋର୍ଡ ଲଗାଯାଇ ବିଭିନ୍ନ ଭାଷାର ସମ୍ବାଦପତ୍ର ସହିତ ପତ୍ରପତ୍ରିକା ଓ ପୁସ୍ତକ ଇତ୍ୟାଦି ବିକ୍ରି କରାଯାଉଥିବାରୁ ସମ୍ଭବତଃ ସେ ସ୍ଥାନ ପତ୍ରିକା ମହଲ ଭାବେ ପରିଚୟ ପାଇଥିଲା । ସେଠାରେ ବସବାସ କରୁଥିବା କିଛି ବନ୍ଦର କର୍ମଚାରୀ ଶ୍ରମିକ, ବ୍ୟବସାୟୀମାନଙ୍କ ଘରର ଅଗଣା ସଦୃଶ ଏକ ଖୋଲା ବାଲି ପଡିଆ ଥିଲା, ଯାହାକି ସ୍ଥାନୀୟ ବାସିନ୍ଦାମାନଙ୍କର ସାମାଜିକ, ସାଂସ୍କୃତିକ କାର୍ଯ୍ୟକ୍ରମ ନିମନ୍ତେ ଉପଯୋଗ ହେଉଥିଲା । ସବୁଠାରୁ ଆକର୍ଷଣୀୟ ଥିଲା, ଏହାର ଚୌହାଦୀ ମଧ୍ୟରେ ଥିବା ଏକ ଆଧାତ୍ମିକ ଭାବଉଦ୍ରେକକାରୀ ପୁରାତନ ବଟବୃକ୍ଷ, ଯାହା ମୂଳରେ ଏକ ପକ୍କା ପିଣ୍ଡି ନିର୍ମାଣ କରାଯାଇ ପ୍ରତ୍ୟେକ ଦିନ ସଂଧ୍ୟାରେ ଭଜନ କୀର୍ତ୍ତନ ସହ ସୋମବାର ଦିନ ତ୍ରିନାଥ ମେଳାର ଆୟୋଜନ କରାଯାଉଥିଲା । ସମୟ କ୍ରମେ ଏଠାରେ ଦେବ ଦେବୀଙ୍କ ପୂଜା ଆରମ୍ଭ ହୋଇ ମେଳା ମହୋତ୍ସବ, ପୂଜା ପାର୍ବଣରେ ଭକ୍ତ ଓ ଶ୍ରଦ୍ଧାଳୁଙ୍କର ଭିଡ ଲାଗି ରହିଲା । ଏଠାକାର ପାରିପାର୍ଶ୍ୱିକ ସ୍ଥିତି ଓ ସାତ୍ତ୍ୱିକତାର ବାତାବରଣ ମଧ୍ୟରେ ପାରାଦ୍ୱୀପ ଆଧାତ୍ମିକ ଇତିହାସ ରୂପ ପାଇଲା । ଶୂନ୍ୟବାଣୀ, ସ୍ୱପ୍ନାଦେଶ ବଳରେ ମାଳିକା ବର୍ଣ୍ଣିତ ଶ୍ରୀଜଗନ୍ନାଥଙ୍କ କଳ୍କି ଲୀଳା ଆରମ୍ଭ ହେଲା । ୧୯୬୮ ମସିହା ଶ୍ରୀପଞ୍ଚମୀ ଦିନ ଶାରଳା ମଣ୍ଡଳର ବିଶିଷ୍ଟ ଶକ୍ତି ସାଧକ ପଣ୍ଡିତ ପଦ୍ମଚରଣ ତ୍ରିପାଠୀ କଳିକବଳିତ ମଣିଷ ସମାଜକୁ ପାପ ଓ ଗ୍ଳାନିରୁ ଉଦ୍ଧାର ଲକ୍ଷ୍ୟରେ ଏକ ଯଜ୍ଞର ଆୟୋଜନ କଲେ । ୧୯୬୯ ମସିହା ଅକ୍ଷୟ ତୃତୀୟା ତିଥିରେ କଳ୍କ୍ୟାବତାରୀ ସତ୍ୟସନ୍ଧ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଦାରୁ ସନ୍ଧାନର ଆଜ୍ଞା ପ୍ରାପ୍ତ ହେଲା । ଏପରିକି ଦିବ୍ୟ ଦାରୁଙ୍କ ସଙ୍କେତ ଓ ସୂଚନା ମଧ୍ୟ ପଣ୍ଡିତ ମହାଶୟ ପ୍ରାପ୍ତ ହେଲେ । ସଂଯୋଗବଶତଃ ସେହିବର୍ଷ ଗଜପତି ମହାରାଜା ବୀରକିଶୋର ଦେବଙ୍କ ଅ୧୫ଙ୍କ ଯୋଡ଼ା ଆଷାଢ ପଡୁଥିବାରୁ ଶ୍ରୀକ୍ଷେତ୍ରରେ ଘଟ ପରିବର୍ତ୍ତନ ବା ନବକଳେବର ପ୍ରକ୍ରିୟା ଚୈତ୍ର ଶୁକ୍ଳ ଦଶମୀଠାରୁ ଶୁଭାରମ୍ଭ ହୋଇସାରିଥାଏ । ଇତ୍ୟବସରରେ ପତ୍ରିକା ମହଲ ଅନୁଷ୍ଠାନର ଅନ୍ୟତମ ପ୍ରମୁଖ ଉଦ୍ୟୋକ୍ତା ଭାବେ ଜଣାଶୁଣା ଶ୍ରୀ ଅନନ୍ତ ଚରଣ ଓଝା ଚତୁର୍ଦ୍ଧାମୂର୍ତ୍ତିଙ୍କୁ ରାତ୍ରିର ନିର୍ଦ୍ଦିଷ୍ଟ ପ୍ରହରରେ ବାରମ୍ବାର ସ୍ୱପ୍ନ ଦେଖିଲେ । ବଡପଡିଆଠାରେ ଖୋଲାଯାଇଥିବା ଖଦୀଭଣ୍ଡାରର ସତ୍ତ୍ୱାଧିକାରୀ ଶ୍ରୀ ଶରତ ଚନ୍ଦ୍ର ଦାସ ଏ ପ୍ରସଙ୍ଗରେ ଅନୁରୂପ ସ୍ୱପ୍ନାଦେଶ ପାଇ ବଣିକ ସଂଘର ଉପସଭାପତି ତଥା ମାଳିକା ଓ ଜଗନ୍ନାଥ ତତ୍ତ୍ୱ ସମ୍ପର୍କରେ ଚର୍ଚ୍ଚା ଆଲୋଚନା କରୁଥିବା ଡାକ୍ତର ଭଗବାନ ନାୟକଙ୍କ ସହିତ ପରାମର୍ଶ କଲେ। ସଂଯୋଗ ବଶତଃ ପ୍ରତିଦିନ ସନ୍ଧ୍ୟାରେ ଡାକ୍ତର ବାବୁଙ୍କ ପାଖରେ ମିଳିତ ହେଉଥିବା କପିଳମୁନି ଆଶ୍ରମର ସାଧୁ ଗୋପୀବାବା ଓ କେତେକ ଡ୍ରାଇଭର କର୍ମଚାରୀ ସ୍ୱପ୍ନ ବୃତ୍ତାନ୍ତ ଶୁଣି ଉତ୍ସାହିତ





ହେଲେ । ସେତେବେଳର ପ୍ରଭାବଶାଳୀ ସଂଗଠନ ଡ୍ରାଇଭର ଆସୋସିଏସନକୁ ନେତୃତ୍ୱ ଦେଉଥିବା ଶ୍ରୀ ଉଦୟ ନାଥ ଦେବତା ଏବଂ ଠିକାଦାର କାକାଟପୁର ନିବାସୀ ଶ୍ରୀ ଉଦୟନାଥ ଖୁଣ୍ଟିଆ ତଥା ସେମାନଙ୍କର ଅନୁଗତମାନଙ୍କ ଅଯାଚିତ ସହଯୋଗ ମିଳିଲା । ସମସ୍ତଙ୍କ ମିଳିତ ସହଯୋଗ, ସାଧୁ କପିଳମୁନି ଆଶ୍ରମର ଗୋପୀବାବା (କେନ୍ଦ୍ରାପଡା ଯଦୁପୁର ପଞ୍ଚାୟତର ସାନଗାଁର ଗୋପୀ ନାଉରୀ)ଙ୍କ ନେତୃତ୍ୱ ତଥା ମିଳିଥିବା ସଂକେତ ଆଧାରରେ ଦାରୁ ସନ୍ଧାନ କରାଗଲା । ଉଦୟବଟ ପଶ୍ଚିମରେ ପାରାଦ୍ୱୀପ ଗଡ ମୌଜା ପୁରାତନ କୁଜଙ୍ଗ ରାଜବାଟି ଓ ଶ୍ରୀ ଲୋକନାଥ ମନ୍ଦିର ସନ୍ନିକଟ ନରହରି ସାହୁଙ୍କ ବାଡିରୁ ଉପଯୁକ୍ତ ଦାରୁ ଚିହ୍ନଟ କରାଗଲା । ଦାରୁରେ ସମସ୍ତ ଦିବ୍ୟ ଲକ୍ଷଣ ଦୃଶ୍ୟମାନ ହେଉଥିବା ବେଳେ ଦାରୁଙ୍କ ଶରୀରରେ ଏକ ବିଶେଷ ଲକ୍ଷଣ ପ୍ରକାଶ ପାଉଥିଲା । ସ୍ଥାନୀୟ ଲୋକନାଥ ମନ୍ଦିରରେ ସ୍ମରଣାତୀତ କାଳରୁ ପୂଜା ପାଉଥିବା ଖଡ଼୍ଗ ଓ ତହିଁରେ ଥିବା ଦଶ ଅବତାରଙ୍କ ସଦୃଶ ଦଶଟି ଚିହ୍ନ ପ୍ରତୀୟମାନ ହେଉଥିଲା । ସମସ୍ତଙ୍କ ସହଯୋଗରେ ତା. ୨୦.୦୫.୧୯୬୯ ମଙ୍ଗଳବାର ଦିନ ବିଧି ଅନୁସାରେ ପୂଜା ସମାପ୍ତ ପରେ ଦାରୁ ଛେଦନ, ଚଉପଟ କରାଯାଇ ନୂତନ ବସ୍ତ୍ର ଦ୍ୱାରା ଆବୃତ କରି ପାରାଦ୍ୱୀପକୁ ଅଣାଯାଇଥିଲା । ଉପଯୁକ୍ତ ସ୍ଥାନର ଅଭାବ ହେତୁ ଅବଶେଷରେ ପତ୍ରିକା ମହଲର ସେହି ବଟବୃକ୍ଷ ମୂଳରେ ତାଟି ଘରେ ଦାରୁଙ୍କୁ ରଖାଯାଇ ଗୁପ୍ତ ପୂଜା ଆରମ୍ଭ କରାଗଲା । ସେଠାରେ ରହୁଥିବା ରୋଗଗ୍ରସ୍ତ ଗୋପାଳବାବା (ମାର୍ଶାଘାଇ ଅଂଚଳର ଗୋପାଳ ପ୍ରଧାନ) ଶ୍ରୀବିଗ୍ରହଗୁଡିକର ନିର୍ମାଣ କରିବା ପାଇଁ ଶୂନ୍ୟବାଣୀ ପ୍ରାପ୍ତ ହେଲେ । ପଣ୍ଡିତ ମହାଶୟଙ୍କ ନିର୍ଦ୍ଦେଶରେ ଗୋପାଳବାବା ହବିଷ୍ୟାନ୍ନ ପାଳନ କରି ଅତ୍ୟନ୍ତ ନିଷ୍ଠା ଓ ପବିତ୍ରତାର ସହ ଶ୍ରୀବିଗ୍ରହଗୁଡିକର ନିର୍ମାଣ କାର୍ଯ୍ୟ ଶେଷ କଲେ । ସ୍ଥାୟୀ ସ୍ଥାନର ଅଭାବରୁ ବିଧି ବିଧାନ ଅନୁସାରେ ଜୀଉମାନଙ୍କ ପ୍ରତିଷ୍ଠା ସମ୍ଭବ ହୋଇପାରି ନଥିଲେ ମଧ ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା, ଶ୍ରୀଜଗନ୍ନାଥ, ଶ୍ରୀସୁଦର୍ଶନ ସେହି ଅସ୍ଥାୟୀ ତାଟି ଘରେ ଶୋଭା ପାଇଲେ । ଅଳ୍ପ ଲୋକ ସଂଖ୍ୟା ବିଶିଷ୍ଟ ବନ୍ଦର ନଗରୀରେ ଚତୁର୍ଦ୍ଧାମୂର୍ତ୍ତିଙ୍କର ଆକସ୍ମିକ ଆବିର୍ଭାବ ତତ୍‌କ୍ଷଣାତ୍ ଚାରିଆଡେ ପ୍ରଚାରିତ ହୋଇଗଲା । ଭକ୍ତ, ଶ୍ରଦ୍ଧାଳୁମାନଙ୍କର ମନରେ ଅନେକ ଉତ୍କଣ୍ଠା, ଅସରନ୍ତି ଉତ୍ସାହ ଓ ଅନନ୍ୟ ଆଧାତ୍ମିକ ଭାବ ଜାଗରିତ ହେଲା । ମାଳିକା ବର୍ଣ୍ଣିତ

ଉଦୟବଟ ପାରୁଶରେ ଲୀଳା ଉଦୟ ହେବ -<br>
ଅନାହତ ଧ୍ୱନି ଶବଦେ ଚଉଦିଗ କମ୍ପିବ,<br>
ଚାରିଦିଗ ଭକ୍ତ ସେଠାରେ ଆସି ହୋଇବେ ଭେଟ-<br>
ଚରଣ ସେବାରେ ଲାଗିବେ ଲୀଳା ହେବ ପ୍ରକଟ

ଏହି ଭବିଷ୍ୟବାଣୀର ଚର୍ଚ୍ଚା ଆଲୋଚନା ଜାରି ରହିଲା।

ଅନ୍ୟ ପକ୍ଷରେ, ପରଂବ୍ରହ୍ମ ଶ୍ରୀଜଗନ୍ନାଥଙ୍କ ଦଶମ ଅବତାର ଅନାଗତ କଳ୍‌କିଙ୍କର ଯୁଗ ଚେତନାର ବାର୍ତ୍ତା ପ୍ରଚାର ପ୍ରସାର ଲକ୍ଷ୍ୟରେ ପାରାଦ୍ୱୀପରେ ପଣ୍ଡିତ ପଦ୍ମଚରଣ ତ୍ରିପାଠୀଙ୍କ ଦ୍ୱାରା 'ଜଗନ୍ନାଥ ସମାଜ' ଗଠନ କରାଗଲା । ବାସ୍ତବରେ ଜଗନ୍ନାଥ ନାମଟି ବହୁ ତାତ୍ପର୍ଯ୍ୟ ବହନ କରେ । ବଦ୍ରିନାଥ, ଦ୍ୱାରକାନାଥ ଏବଂ ରାମନାଥ ସ୍ଥାନ ବିଶେଷର ନାମ ମାତ୍ର ଜଗତରନାଥ ନୁହନ୍ତି । କାଶୀରେ ବିଶ୍ୱନାଥ ଅଛନ୍ତି କିନ୍ତୁ ସମଗ୍ର ବିଶ୍ୱକୁ ଆଲିଙ୍ଗନ କରିବାର ଉଦାହରଣ ସେଠାରେ ନାହିଁ । ସଂପ୍ରତି ବିବର୍ତ୍ତନଗତ ସଂକଟ ଦେଇ ଗତି କରୁଥିବା କଳିକ୍ଳିଷ୍ଟ ମଣିଷ ସମାଜ ପାଇଁ ମହାର୍ଘ ଆଧାତ୍ମିକ ଉପଚାର ସଦୃଶ ଜଗନ୍ନାଥ ସମାଜ ଅନୁଷ୍ଠାନର ଏକ ସମ୍ବିଧାନ ଓ ସଂଘ ଅନୁବନ୍ଧନ ପତ୍ର ପ୍ରଣୟନ ପାଇଁ ଚିନ୍ତା କରାଗଲା । ଧର୍ମ ନିରପେକ୍ଷତା ତଥା ଜଗନ୍ନାଥ ସଂସ୍କୃତିର ଅନ୍ତର୍ଦୃଷ୍ଟି ସମ୍ବଳିତ ତତ୍ତ୍ୱକୁ ଆଧାର କରି ପଣ୍ଡିତ ମହାଶୟଙ୍କ ଅନ୍ୟତମ ପ୍ରମୁଖ ଶିଷ୍ୟ ତଥା ଦେଶର ଖ୍ୟାତନାମା ଆଇନଜ୍ଞ ବାରିଷ୍ଟର ଶ୍ରୀ ରଣଜିତ ମହାନ୍ତି ଓ ଆଡଭୋକେଟ ଗୋକୁଳ ବିହାରୀ ମହାନ୍ତିଙ୍କ ଦ୍ୱାରା ଉଭୟ ଇଂରାଜୀ ଓ ଓଡିଆ ଭାଷାରେ ଲିଖିତ ସମ୍ବିଧାନ ପ୍ରସ୍ତୁତ ହେଲା । ଧାର୍ମିକ ମୌଳବାଦୀ ଚିନ୍ତା ପରିହାର କରି ମାନବ ଧର୍ମର ଅଭ୍ୟୁଦୟ, ଯାହାକି ସ୍ନେହ-ପ୍ରେମ, ସତ୍ୟ-ଶାନ୍ତି, ଦୟା-କ୍ଷମା, ତ୍ୟାଗ-ନିଷ୍ଠା, ବ୍ୟକ୍ତିରେ ମର୍ଯ୍ୟାଦା ଓ ସଦାଚାର ଗୁଣର ଆଧାରରେ ସବୁ ଧର୍ମର





ସାରକୁ ଗ୍ରହଣ କରିବା ଏବଂ ନିଜର ମୌଳିକତାକୁ ସୁରକ୍ଷିତ ରଖି ସ୍ୱ ସ୍ୱ ମତ, ପନ୍ଥା ଆଦର୍ଶର ପରିସୀମା ମଧ୍ୟରେ ରହି ଶ୍ରୀଜଗନ୍ନାଥ ତତ୍ୱଜ୍ଞାନର ବିକାଶ କରିବା ଅନୁଷ୍ଠାନର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସ୍ଥିରୀକୃତ ହେଲା । ମାନବ ସମାଜର ଆଧିଭୌତିକ ଉନ୍ନତି ଓ ସ୍ୱାର୍ଥ ସେବା କାରଣରେ ପ୍ରତିଷ୍ଠିତ 'ଜଗନ୍ନାଥ ସମାଜ' ଓଡିଶା ସରକାରଙ୍କ ଦ୍ୱାରା ପଞ୍ଜିକୃତ ହୋଇ ୧୯୭୨ ମସିହା ଏପ୍ରିଲ ମାସରେ ପାରାଦ୍ୱୀପର ପ୍ରଥମ ଆଧ୍ୟାତ୍ମିକ ଅନୁଷ୍ଠାନ ଭାବେ ଆତ୍ମପ୍ରକାଶ କଲା । ୧୯୭୪ ମସିହାରେ ସମଗ୍ର ବିଶ୍ୱ ମଣିଷ ସମାଜକୁ ଗୋଟିଏ ସୂତ୍ରରେ ଧରି ରଖିବାର ପ୍ରତିଶ୍ରୁତି ବହନ କରିଥିବା ଜଗନ୍ନାଥ ମନ୍ଦିର ଅନୁଷ୍ଠାନକୁ ହିନ୍ଦୁ ଦେବୋତ୍ତର ଆଇନ ପରିସରଭୁକ୍ତ ମଧ୍ୟ କରାଗଲା ।

ତାତ୍ପର୍ଯ୍ୟପୂର୍ଣ୍ଣ ବିଷୟ ହେଲା, ଯେତେବେଳେ ପାରାଦ୍ୱୀପ ବନ୍ଦରର ଆର୍ଥିକ ସ୍ଥିତି ଉତ୍କଟ ବିପର୍ଯ୍ୟୟ ମଧ୍ୟରେ ଭାରସାମ୍ୟ ହରାଇ ବସିଥିଲା, ସେତେବେଳର ସେହି ଦୁର୍ଦ୍ଦିନରେ ସ୍ଥିତି ସୁଧାର ପ୍ରକ୍ରିୟାରେ 'ଜଗନ୍ନାଥ ସମାଜ' ଦେଇଥିଲା ଆଧ୍ୟାତ୍ମିକ ନେତୃତ୍ୱ । ଉତ୍କଳ ଗଜପତିଙ୍କ ମାନରକ୍ଷା ପାଇଁ ସ୍ୱୟଂ ମହାପ୍ରଭୁ କାଞ୍ଚିଯୁଦ୍ଧରେ ଅବତୀର୍ଣ୍ଣ ହେଲା ଭଳି ଆକସ୍ମିକ ଭାବେ ଏଠାରେ ଚତୁର୍ଦ୍ଧାମୂର୍ତ୍ତି ଆବିର୍ଭୂତ ହେଲେ । ପାରାଦ୍ୱୀପର ଏହି ଘଡିସନ୍ଧି ମୁହୂର୍ତ୍ତରେ ଏକ ରହସ୍ୟ ବୋଳା ବାସ୍ତବତା ଭିତରେ ନିହିତ ବନ୍ଦର ଆର୍ଥିକ ପ୍ରଗତିରେ ଦ୍ରୁତ ପରିବର୍ତ୍ତନ ଘଟିଲା । ଏହି ଦୈବାଧୀନ ଘଟଣାଟି ପାରାଦ୍ୱୀପ ଇତିହାସର ଏକ ଛିନ୍ନ ପୃଷ୍ଠା ହୋଇ ରହିଛି।

୧୯୭୪ ମସିହା ବୈଶାଖ ଶୁକ୍ଳ ତୃତୀୟା 'ଅକ୍ଷୟ ତୃତୀୟା'ରେ ମଧୁବନ ଜଙ୍ଗଲରେ ବିଧି ବିଧାନ ଅନୁଯାୟୀ ଚତୁର୍ଦ୍ଧାମୂର୍ତ୍ତି ପ୍ରତିଷ୍ଠିତ ହେଲେ । ଏହା କେବଳ ଆକସ୍ମିକ ଘଟଣା ନ ଥିଲା ବରଂ ବହୁ କାରଣ ସହିତ ଜଡିତ ଥିଲା । କାରଣଗୁଡିକ ଅନଧିଗମ୍ୟ ଥିବାରୁ ଏହା ମହାପ୍ରଭୁଙ୍କ ଚିନ୍ମୟ ଲୀଳାର ଅଂଶ ବିଶେଷ ବୋଲି ସାଧାରଣରେ ବିଶ୍ୱାସ କରାଗଲା । ଏଠାରେ ଏପ୍ରିଲ ୨୫ ତାରିଖଠାରୁ ମେ ମାସ ୧୯ ତାରିଖ ପର୍ଯ୍ୟନ୍ତ ଦୀର୍ଘ ୨୫ ଦିନ ଧରି ଏକ ଯଜ୍ଞର ଆୟୋଜନ କରାଗଲା । ଭୁବନେଶ୍ୱରର ଶ୍ରୀ ବୈଷ୍ଣବ ଦେବତା ଯଜ୍ଞର ସମସ୍ତ ଦାୟିତ୍ୱ ବହନ କଲେ । ଯାଜ୍ଞିକ ବ୍ରାହ୍ମଣମାନଙ୍କୁ ବରଣ କରାଯାଇ ଆଚାର୍ଯ୍ୟ, ପୁସ୍ତକାଚାର୍ଯ୍ୟ, ଅଗ୍ନିରକ୍ଷକ, ଚରୁ, ସମିଧ ଓ ଯାଜ୍ଞିକ ଭାବେ ଦାୟିତ୍ୱ ପ୍ରଦାନ କରି ଅନୁଷ୍ଠାନର ସଭାପତି ପଣ୍ଡିତ ପଦ୍ମଚରଣ ତ୍ରିପାଠୀ ନିଜେ ବ୍ରହ୍ମା ଆସନରେ ରହି ଯଜ୍ଞ ସମାପନ କଲେ । ଅସ୍ଥାୟୀ ଯଜ୍ଞଶାଳାରେ ଏକଲକ୍ଷ ପଞ୍ଚାବନ ହଜାର ଆଜ୍ୟାହୁତି ଓ ଶାଳଗ୍ରାମ ସମର୍ପଣ ପୂର୍ବକ ରତ୍ନବେଦୀ ନିର୍ମାଣ ହେଲା । ପତ୍ରିକା ମହଲରେ ପୂଜା ପାଉଥିବା ଚତୁର୍ଦ୍ଧାମୂର୍ତ୍ତି ସେହି ରତ୍ନବେଦୀରେ ପ୍ରତିଷ୍ଠିତ ହେଲେ ।

ଏହାଥିଲା ପାରାଦ୍ୱୀପ ଇତିହାସରେ ଗରିମାମୟ ମୁହୂର୍ତ୍ତ । ରଣର ପାହାଡ ଉପରେ ଠିଆ ହୋଇ ବଞ୍ଚିବାକୁ ସଂଗ୍ରାମ କରୁଥିବା ବନ୍ଦରର ପରିସ୍ଥିତି ବଦଳିଗଲା । ଚଳ ଚଞ୍ଚଳ ହୋଇ ଉଠିଲା ପାରାଦ୍ୱୀପ । ଜଣେ ଅଧ୍ୟାତ୍ମବାଦୀ ଓ ଦକ୍ଷ ପ୍ରଶାସକ ଭାବେ ଜଣାଶୁଣା ଶ୍ରୀ ପ୍ରେମାନନ୍ଦ ତ୍ରିପାଠୀ ସେହି ଏପ୍ରିଲ ମାସରେ ବନ୍ଦରର ୫ମ ଚେୟାର୍‌ମ୍ୟାନ ଭାବେ ଅବସ୍ଥାପିତ ହେଲେ। ତାଙ୍କର ଦୃଢ ନେତୃତ୍ୱ ଓ ପ୍ରଗତିଶୀଳ ଚିନ୍ତାଧାରା ଯୋଗୁଁ ବିକଶିତ ଭିତ୍ତିଭୂମି ସମ୍ବଳର ଯଥାର୍ଥ ଉପଯୋଗ କରାଗଲା । ପ୍ରଚଳିତ ଯୋଜନାଗୁଡିକ ତ୍ୱରାନ୍ୱିତ ହେବା ସହ ନୂଆ ଯୋଜନା କାର୍ଯ୍ୟକାରୀ ହେଲା । ପଣ୍ୟ କାରବାରରେ ବ୍ୟାପକ ସମ୍ଭାବନା ସୃଷ୍ଟି ହେଲା । ପ୍ରଗତି ଓ ସମୃଦ୍ଧିର ଧାରା ଜାରି ରହିଲା । କହିବା ନିଷ୍ପ୍ରୟୋଜନ, ସେହିଦିନଠାରୁ ପାରାଦ୍ୱୀପ ପଛକୁ ନଫେରି ସମୟସହ ତାଳ ଦେଇ କ୍ରମାଗତ ସଫଳତା ହାସଲ କରିଚାଲିଛି । ସଂପ୍ରତି ଦେଶର ଦ୍ୱିତୀୟ ବୃହତ୍ତମ ବନ୍ଦର ମାନ୍ୟତା ହାସଲ କରିବା ସହ ଏକ ଆର୍ଥିକ ଶକ୍ତିରେ ପରିଣତ ହୋଇଛି ।

ଓଡିଶାର ଏକମାତ୍ର ବୃହତ୍ ବନ୍ଦରର ସୁରକ୍ଷା ଓ ବିକାଶ ପ୍ରକ୍ରିୟାରେ ଜଗନ୍ନାଥ ସମାଜର ଆଧ୍ୟାତ୍ମିକ କାର୍ଯ୍ୟକ୍ରମର ପ୍ରତିଫଳନ ଘଟିଲା ବୋଲି ବନ୍ଦର କର୍ତ୍ତୃପକ୍ଷ ତଥା ସର୍ବସାଧାରଣଙ୍କ ହୃଦ୍‌ବୋଧ ହେଲା । ସମ୍ଭବତଃ ଏହି ବିଶ୍ୱାସ ଆଧାରରେ ବନ୍ଦର କର୍ତ୍ତୃପକ୍ଷଙ୍କ ଦ୍ୱାରା ପରିପୁଷ୍ଟ





ହୋଇ ଅନୁଷ୍ଠାନ ମଧ୍ୟ ଆଗକୁ ବଢିଲା । ଜଗନ୍ନାଥ ସଂସ୍କୃତିକୁ ଋଦ୍ଧିମନ୍ତ କରିବା ନିମନ୍ତେ ବନ୍ଦର କର୍ତ୍ତୃପକ୍ଷ ଯତ୍ନବାନ ହେଲେ । ଅନୁଷ୍ଠାନ ଲକ୍ଷ୍ୟର ମୌଳିକ ଚିନ୍ତାଧାରା ଓ ପ୍ରବହମାନତାକୁ ବିନା କୌଣସି କୃତ୍ରିମତାରେ ସଫଳ ଭାବେ ରୂପାୟନ କରିବାରେ ବନ୍ଦର ଚେୟାରମ୍ୟାନମାନଙ୍କ ଅନବଦ୍ୟ ଅବଦାନ ଓ ଆନ୍ତରିକ ଉଦ୍ୟମ ମନ୍ଦିର ଇତିହାସରେ ସ୍ମରଣୀୟ ହୋଇ ରହିଛି ଓ ରହିଥିବ । କହିବାକୁ ଗଲେ, ଅନୁଷ୍ଠାନର ଜମି ଅଧିଗ୍ରହଣ, ସନ୍ତସନ୍ତିଆ ଜଙ୍ଗଲରେ ରାସ୍ତାନିର୍ମାଣ, ପାନୀୟ ଜଳ ଓ ବିଦ୍ୟୁତ ଯୋଗାଣ, ଭିତ୍ତିଭୂମିର ବିକାଶଠାରୁ ଆରମ୍ଭ କରି ଭବ୍ୟ ମନ୍ଦିର ନିର୍ମାଣ ପର୍ଯ୍ୟନ୍ତ ଏ ସମସ୍ତ କାର୍ଯ୍ୟ ବନ୍ଦର ଚେୟାରମ୍ୟାନମାନଙ୍କ ପ୍ରଭାବଶାଳୀ ଭୂମିକା ଏବଂ ୨୫ ଜଣ ବନ୍ଦର କର୍ମଚାରୀମାନଙ୍କ ନିରନ୍ତର ଉଦ୍ୟମ ଓ ଉତ୍ସର୍ଗୀକୃତ ପ୍ରଚେଷ୍ଟା ଫଳରେ ସମ୍ଭବ ହୋଇଥିବା ଅସ୍ୱୀକାର କରାଯାଇ ପାରିବ ନାହିଁ । ମନ୍ଦିର ନିର୍ମାଣରେ ନିୟୋଜିତ ହୋଇଥିବା ଆବଶ୍ୟକ ଅର୍ଥ ପାରାଦ୍ୱୀପର ଅଗଣିତ ଜନସାଧାରଣ ଆନନ୍ଦ ଓ ଉତ୍ସାହର ସହ ଭରଣା କରିଥିଲେ । ଏଠାରେ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଆଦର୍ଶ ପରମ୍ପରା ଅନୁସରଣ କରାଯାଇଥାଏ। ବଂଶପରମ୍ପରାଗତ ସ୍ୱତ୍ୱଲିପି କାର୍ଯ୍ୟକାରୀ ନ ହୋଇ ନିଯୁକ୍ତିଭିତ୍ତିରେ ବ୍ରାହ୍ମଣମାନଙ୍କ ଦ୍ୱାରା ଦୈନନ୍ଦିନ ସେବା ପୂଜା କରାଯାଉଥିବା ବେଳେ ସ୍ୱତନ୍ତ୍ର ଉତ୍ସବ ଓ ପର୍ବ ପର୍ବାଣିରେ ସମାଜର ସଭ୍ୟମାନଙ୍କ ଦ୍ୱାରା ସେବା ସମାହିତ ହୋଇଥାଏ । ଏପରିକି ପାରାଦ୍ୱୀପର ପ୍ରଥମ ନାଗରିକ ଭାବେ ଉପସ୍ଥାପନା କରାଯାଉଥିବା ବନ୍ଦରର ଚେୟାରମ୍ୟାନମାନଙ୍କୁ ଅନୁଷ୍ଠାନର ଶୀର୍ଷତମ କର୍ମାଧିପ ତଥା ପଦପ୍ରଯୁକ୍ତ ସଭାପତି ସମ୍ମାନରେ ସମ୍ମାନିତ କରାଯିବା ପାଇଁ ୧୯୯୦ ମସିହାରେ ଅନୁଷ୍ଠାନ ପକ୍ଷରୁ ଏକ ଐତିହାସିକ ନିଷ୍ପତ୍ତି ନିଆଯାଇଛି । ଏହି ପରମ୍ପରା ଅନୁଯାୟୀ ସଂପ୍ରତି ବନ୍ଦରର ଚେୟାରମ୍ୟାନ୍ ଭାବେ ଅବସ୍ଥାପିତ ହୋଇଥିବା ଶ୍ରୀଯୁକ୍ତ ରିଙ୍କେଶ ରୟ ଅନୁଷ୍ଠାନର ୭ମ ସଭାପତି ତଥା ମହାପ୍ରଭୁଙ୍କର ଆଦ୍ୟସେବକ ଭାବେ ପ୍ରଚଳିତ ରଥଯାତ୍ରା ସମୟରେ ଛେରାପହଁରା ସେବା ସମ୍ପାଦନ କରିଆସୁଛନ୍ତି ।

କହିବା ବାହୁଲ୍ୟ, ବିଗତ ପାଞ୍ଚ ଦଶନ୍ଧି ଅବଧି ମଧ୍ୟରେ ଅନେକ ସମସ୍ୟା ଓ ସଂକଟକୁ ସାମ୍ନା କରିବା ସହିତ ଭୟଙ୍କର ବାତ୍ୟା ବିପର୍ଯ୍ୟୟକୁ ମୁକାବିଲା କରି ଜଗନ୍ନାଥ ସମାଜ ଗତିକରି ଆସିଛି । ଯାହା ଅଦ୍ୟାପି ଲୋକଲୋଚନର ଅନ୍ତରାଳରେ ରହିଯାଇଛି । ସମସାମୟିକ ଘଟଣାବଳୀ ଉପରେ ପର୍ଯ୍ୟବସିତ କେତେକ ସ୍ମୃତିଲିପି ପ୍ରକାଶ ପାଇଥିଲେ ମଧ୍ୟ ଅଦ୍ୟାବଧି ସବିଶେଷ ତଥ୍ୟ ସମ୍ବଳିତ ଅନୁଷ୍ଠାନର ଏକ ଧାରାବାହିକ ଲିଖିତ ଇତିହାସର ଅଭାବ ପରିଲକ୍ଷିତ ହୁଏ । ଆଜି ଅନୁଷ୍ଠାନର ପ୍ରତିଷ୍ଠାତା ପଣ୍ଡିତ ପଦ୍ମଚରଣ ତ୍ରିପାଠୀ ନାହାନ୍ତି । ପ୍ରାରମ୍ଭିକ ଅବସ୍ଥାରେ ଯେଉଁମାନଙ୍କ ତ୍ୟାଗ, ନିଷ୍ଠା, ସମର୍ପଣ ତଥା ଖୋଲାମନ ଓ ଦୀର୍ଘକାଳୀନ ପ୍ରଚେଷ୍ଟା ଯୋଗୁଁ ଏହା ଏକ ଅଗ୍ରଗାମୀ ଅନୁଷ୍ଠାନରେ ପରିଣତ ହୋଇଛି, ସେମାନଙ୍କ ମଧ୍ୟରୁ ଅନେକ ଆରପାରିକୁ ଚାଲିଗଲେଣି । ଆଉ କେତେକ ବନ୍ଦରରୁ ସେବା ନିବୃତ୍ତ ହୋଇ ବିଭିନ୍ନ ସ୍ଥାନରେ ରହି ଅବସର ଜୀବନ ବିତାଉଛନ୍ତି । ଏହି ପରିପ୍ରେକ୍ଷୀରେ, ଏହି ଲେଖକ ଅନୁଷ୍ଠାନର ଜଣେ ପ୍ରତିଷ୍ଠାତା ସଭ୍ୟ ଭାବେ ପ୍ରତ୍ୟକ୍ଷ କରିଥିବା ଘଟଣା ଓ ଅଙ୍ଗେ ନିଭାଇଥିବା ଅନୁଭୂତିକୁ ଆଧାର କରି କେତେକ ଅନାଲୋଚିତ ତଥ୍ୟ ଉପସ୍ଥାପନ କରିବାର ପ୍ରୟାସ ଜାରି ରଖିଛି ।

ପ୍ରତିଷ୍ଠାତା ସଭ୍ୟ
ଜଗନ୍ନାଥ ମନ୍ଦିର, ମଧୁବନ
ଅବସରପ୍ରାପ୍ତ ଯୋଗାଯୋଗ ଅଧିକାରୀ
ପାରାଦ୍ୱୀପ ବନ୍ଦର







# ଉନବିଂଶ ଶତାବ୍ଦୀରେ ପୁରୀର ରଥଯାତ୍ରା

ଦେବପ୍ରସାଦ ମିଶ୍ର

ସଂପ୍ରତି ଏକ କ୍ଷୁଦ୍ରାତିକ୍ଷୁଦ୍ର ଭୂତାଣୁ ଆଗରେ ସର୍ବ ଶକ୍ତିମାନ ମଣିଷର ଅସହାୟତାକୁ ଆଉ ଅସ୍ୱୀକାର କରିବାର ନାହିଁ, ଭୂତାଣୁ - ମଣିଷ ମଧ୍ୟରେ ଆରମ୍ଭ ହୋଇଥିବା ଏହି ଲଢେଇରେ ମଣିଷର ଜିତାପଟ ନିଶ୍ଚିତ, କିନ୍ତୁ ଏହି ଯୁଦ୍ଧ ଆଉ କେତେଦିନ ଲାଗିବ ଓ ଆଉ କେତେ ଲୋକଙ୍କର ପ୍ରାଣହାନୀ ଘଟିବ ତାହା ଆକଳନ କରିବା କଷ୍ଟସାଧ ତଥାପି ବର୍ତ୍ତମାନ ସୁଦ୍ଧା ଏଥିରେ ଲକ୍ଷାଧିକ ଲୋକଙ୍କ ପ୍ରାଣହାନୀ ଘଟି ସାରିଲାଣି । ଏହି ଭୂତାଣୁର ସଂକ୍ରମଣରୁ ରକ୍ଷା ପାଇବା ପାଇଁ ବିଶ୍ୱର ପ୍ରାୟ ସବୁ ଦେଶ ପ୍ରାଣେ ପ୍ରାଣେ ଉଦ୍ୟମ ଲଗାଇଛନ୍ତି, ଜଗତିକରଣ ବା ବିଶ୍ୱାୟନ ଉପରେ ଏହି କରୋନା ଭୂତାଣୁ ଏକ ପ୍ରଚଣ୍ଡ ପ୍ରହାର ଦେଇଛି ବୋଲି କହିବାକୁ ହେବ ।

ଏପରି ଏକ ସମୟରେ ଆମ ରାଜ୍ୟରେ ଅଧିଷ୍ଠିତ ରାଷ୍ଟ୍ରୀୟ ଦେବତା ମହାପ୍ରଭୁ ଜଗନ୍ନାଥଙ୍କ ବିଶ୍ୱପ୍ରସିଦ୍ଧ ରଥଯାତ୍ରା ହେବାକୁ ନେଇ, କେତେକ ଭକ୍ତଙ୍କ ବିଶ୍ୱାସ ଯେ, ରଥଯାତ୍ରା ସମୟରେ ମହାପ୍ରଭୁ ଗୁଣ୍ଡିଚା ମନ୍ଦିର ଯାଇ ଫେରିବା ପରେ ସିଂହଦ୍ୱାର ସମ୍ମୁଖରେ ପ୍ରଭୁଙ୍କର ରଥ ଉପରେ ଅଧର ପଣା ନୀତି ସଂପନ୍ନ ପରେ ପ୍ରଭୁ ମନ୍ଦିରକୁ ଗଲେ ଏ କରୋନା ଭୂତାଣୁ ଆପେ ଆପେ ଏ ଧରାପୃଷ୍ଠରୁ ପଳେଇବ । ଶତାବ୍ଦୀ-ଶତାବ୍ଦୀ ଧରି ଏ ରଥଯାତ୍ରା କାଳକ୍ରମେ ଅନୁଷ୍ଠିତ ହୋଇ ଆସୁଛି ଏ ପରମ୍ପରା ନୀତିକୁ ଭଙ୍ଗା ନଯାଉ । ଉନବିଂଶ ଶତାବ୍ଦୀରେ ପୁରୀ ରଥଯାତ୍ରା ସଂପର୍କରେ ଏକ ବିବରଣୀ ଏଠାରେ ପ୍ରକାଶ କରାଗଲା, ଶ୍ରୀମନ୍ଦିର ପକ୍ଷରୁ ପ୍ରକାଶିତ ଶ୍ରୀମନ୍ଦିର ପତ୍ରିକା ଓ ଗବେଷକ, ପଣ୍ଡିତମାନେ ଏହା ଉପରେ ଅନେକ ସନ୍ଦର୍ଭ ପ୍ରକାଶ କରିଛନ୍ତି, ସେମାନଙ୍କ ମଧ୍ୟରୁ ପଣ୍ଡିତ ସଦାଶିବ ରଥଶର୍ମା, ଶ୍ରୀ ପୂଜା ମଦନମୋହନ ପଣ୍ଡାସାମନ୍ତ, ହରିହର ବାହିନୀ ପତି ପ୍ରମୁଖ ।

ପୁରୀର ବିଶ୍ୱବିଶ୍ରୁତ ରଥଯାତ୍ରା ଯୁଗେ ଯୁଗେ ଅନୁଷ୍ଠିତ ହୋଇ ଓଡିଶାକୁ ମହିମାନ୍ୱିତ କରିବା ସଙ୍ଗେ ସଙ୍ଗେ ଆମ ଦେଶ ତଥା ଦେଶ ବାହାରର ଅଧିବାସୀଙ୍କର ଦୃଷ୍ଟି ଆକର୍ଷଣ କରିପାରିଛି । ଏହାର ପ୍ରସିଦ୍ଧି ଉପରେ ୧୫୧୪ ଖ୍ରୀଷ୍ଟାବ୍ଦରେ ଶ୍ରୀଚୈତନ୍ୟଙ୍କର ମନ୍ତବ୍ୟ ପ୍ରଣିଧାନଯୋଗ୍ୟ । ସେ ସେହିବର୍ଷ ରଥଯାତ୍ରା ଦିନ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି କହିଥିଲେ ଯେଉଁ କୁରୁକ୍ଷେତ୍ରରେ ଶ୍ରୀକୃଷ୍ଣଙ୍କୁ ଖୋଜୁଥିଲି ମୁଁ ଆଜି ସେହି ପ୍ରାଣନାଥଙ୍କୁ ପାଇଲି । (କୃଷ୍ଣଦାସ କବିରାଜ-ଚୈତନ୍ୟଚରିତାମୃତ - ଅନ୍ତ୍ୟଲୀଳା ୪୦ ଧାଡି) ସେହିପରି ଉନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଫର୍ଗୁସେନ ନାମଧେୟ ଜନୈକ ଇଂରେଜ ପ୍ରଶାସକ ପୁରୀର ରଥଯାତ୍ରା ଦେଖି କହିଥିଲେ, ଅନ୍ୟ କେଉଁଠି ମୁଁ ଏତେ ବଡ ରଥ ଦେଖିନାହିଁ କି ଅନ୍ୟ କୌଣସି ଉତ୍ସବରେ ଏତେ ସଂଖ୍ୟକ ଲୋକ ଯୋଗ ଦେଇଥିବାର ମଧ୍ୟ ଦେଖିନାହିଁ ।

ଏବେ ଦେଖାଯାଉ ଉନବିଂଶ ଶତାବ୍ଦୀର ରଥଯାତ୍ରା ଉପରେ କେତେକ ବିବରଣୀ । ଏହା ତତ୍କାଳୀନ ସମ୍ବାଦପତ୍ର ଓ ଚିଠିପତ୍ରରୁ ଜଣାଯାଏ । ସେତେବେଳେ ପୁରୀର ରଥଯାତ୍ରା ସମୟରେ ବିଶେଷତଃ ୩ଟି ବିଷୟ ପ୍ରତି ଅଧିକ ଗୁରୁତ୍ୱ ଦିଆଯାଉଥିଲା । ତାହାଥିଲା ଯାତ୍ରୀମାନଙ୍କର ନଦୀପାରଜନିତ ବ୍ୟବସ୍ଥା, ରଥଟଣା ସମୟରେ ସ୍ୱେଚ୍ଛାକୃତ

ଓ ଦୁର୍ଘଟଣାଜନିତ ଅପମୃତ୍ୟୁର ପ୍ରତିରୋଧ ଏବଂ ଓଲାଓଠା (ହଇଜା) ରୋଗର ପ୍ରତିଷେଧକ ବ୍ୟବସ୍ଥା । ଏହା ଥିଲା ତତ୍କାଳୀନ ସରକାରଙ୍କର ଦାୟିତ୍ୱ । ସେତେବେଳେ ରଥତଳେ ଚାପିହୋଇ ମୃତ୍ୟୁବରଣ କରିବାର ବହୁ ଦୃଷ୍ଟାନ୍ତ ରହିଥିଲା । ତନ୍ମଧ୍ୟରୁ ସ୍ୱେଚ୍ଛାକୃତ ମୃତ୍ୟୁ ଥିଲା ଅନ୍ୟତମ । ଏହାକଲେ ପୁନଃଜନ୍ମ ହେବନାହିଁ ବୋଲି ବିଶ୍ୱାସର ବଶବର୍ତ୍ତୀ ହୋଇ ଲୋକମାନେ ମୃତ୍ୟୁବରଣ କରୁଥିବାର ଜୁହାଯାଉଥିଲା । ମାତ୍ର ପ୍ରକୃତପକ୍ଷେ ଦୁଃସାଧ୍ୟ ଓ ଯନ୍ତ୍ରଣା ଦାୟକ ରୋଗରେ ପୀଡିତ ଲୋକ ସାଧାରଣତଃ ରଥତଳେ ସ୍ୱେଚ୍ଛାକୃତ ଭାବେ ମୃତ୍ୟୁବରଣ କରୁଥିବାର ଦେଖାଯାଇଥିଲା । ଯାତ୍ରୀଙ୍କ ତୁଳନାରେ ଶାନ୍ତିରକ୍ଷା କରିବା ଦିଗରେ ମୁତୟନ ହେଉଥିବା ପୋଲିସଙ୍କର ସଂଖ୍ୟା ବହୁତ କମ୍ ଥିଲା । ସେ ସମ୍ପର୍କରେ ଏକ ତଥ୍ୟ ପରେ ସୂଚୀତ ହୋଇଛି । ବର୍ତ୍ତମାନ ପରି ଊନବିଂଶ ଶତାବ୍ଦୀରେ ରଥଯାତ୍ରା ସମୟରେ ପୁରୀରେ ଯାତ୍ରୀଙ୍କର ଭିଡ ଅତ୍ୟଧିକ ହୋଇଥିବାର ଜଣାଯାଏ । ବିଶେଷତଃ ୧୮୪୦ ମସିହାପରେ ଯାତ୍ରୀଙ୍କର ସମାଗମ ବୃଦ୍ଧି ପ୍ରାପ୍ତ ହୋଇଥିଲା । କାରଣ ସେହିବର୍ଷ ତୀର୍ଥକରକୁ ଉଚ୍ଛେଦ କରାଯାଇଥିଲା । ଲାସିଙ୍କର ଗଣନାରୁ ଜଣାଯାଏ ୧୮୪୧ ମସିହାରେ ଓଡିଶା ବାହାରୁ ଆସିଥିବା ୩୦,୦୦୦ ତୀର୍ଥଯାତ୍ରୀଙ୍କ ସମେତ ୫୦,୦୦୦ ଯାତ୍ରୀଙ୍କର ସମାଗମ ହୋଇଥିଲା । ତାଙ୍କର ସେହି ବିବରଣୀରୁ ଜଣାଯାଏ ଯେ ୧୮୪୬ ମସିହାରେ ୧୮୦,୦୦୦ ଯାତ୍ରୀ ରଥଯାତ୍ରା ଦେଖିଥିଲେ । ତା' ପୂର୍ବରୁ ଓ ତା' ପରେ ଊନବିଂଶ ଶତାବ୍ଦୀରେ ଏତେ ସଂଖ୍ୟକ ଯାତ୍ରୀ ସମାଗମ ହୋଇଥିବାର ଜଣାଯାଏ ନାହିଁ, ଏପରିକି ବଡଦାଣ୍ଡରେ ସ୍ଥାନାଭାବରୁ ମଠ, ଛୋଟ ଛୋଟ ମନ୍ଦିର, ବାସଗୃହର ଛାତ ଓ ବୃକ୍ଷ ଉପରେ ବସି ବହୁ ସଂଖ୍ୟକ ଯାତ୍ରୀ ରଥଟଣା ଦେଖିଥିବାର ସେ ନିଜେ ଦେଖିଛନ୍ତି ବୋଲି ଲେଖିଛନ୍ତି । ସେହିପରି ୧୮୬୦ ମସିହାରେ ମଧ୍ୟ ଯାତ୍ରୀଙ୍କର ସଂଖ୍ୟା ବହୁ ପରିମାଣରେ ବୃଦ୍ଧିପ୍ରାପ୍ତ ହୋଇଥିବାର ଜଣାଯାଏ । ଅବଶ୍ୟ ସେମାନଙ୍କର ସଂଖ୍ୟା ୧୮୪୬ ମସିହାର ଯାତ୍ରୀଙ୍କଠାରୁ ଅଧିକ ନଥିଲା । ତତ୍କାଳୀନ ପୁରୀର ମାଜିଷ୍ଟ୍ରେଟ ୧୮୬୧ ମସିହା ଜୁଲାଇ ୫ ତାରିଖ ଦିନ କମିଶନରଙ୍କ ନିକଟକୁ ଲେଖିଥିବା ଚିଠିରୁ ଜଣାଯାଏ ଯେ ସେହିବର୍ଷ ଅର୍ଥାତ ୧୮୬୦ ମସିହାରେ ୬୦,୦୦୦ ଯାତ୍ରୀଙ୍କର ସମାଗମ ହୋଇଥିଲା । ପୁରୀ ରାଜାଙ୍କର ଦେୱାନ୍ ଏକ ବୟାନରେ ପ୍ରକାଶ କରିଥିଲେ, ମୁଁ ଜାଣେ ଯେ ଅଠରନଳାଠାରେ କେବଳ ମାତ୍ର ୬୦,୦୦୦ ବଙ୍ଗାଳୀ ତୀର୍ଥଯାତ୍ରୀ ବାହାରୁ ଆସିଥିବାର ହିସାବ ରହିଥିଲା ଏବଂ ଗୁଣ୍ଡିଚା ଯାତ୍ରାର ତୃତୀୟ ଦିନରେ ବଡଦାଣ୍ଡରେ ଅନ୍ତତଃପକ୍ଷେ ୧,୦୦,୦୦ ଯାତ୍ରୀଙ୍କର ସମାଗମ ହୋଇଥିଲା । ଏହା ନିଶ୍ଚିତ ପକ୍ଷେ ଜୁହାଯାଇପାରିବ । ସେହିବର୍ଷ ମଧ୍ୟ ଏତେ ସଂଖ୍ୟକ ଯାତ୍ରୀଙ୍କୁ ନିୟନ୍ତ୍ରଣ କରିବା କଷ୍ଟସାଧ୍ୟ ହୋଇଥିଲା । ପ୍ରଥମଦିନ ପ୍ରବଳ ଭିଡ ପାଇଁ ଦେଓାନ୍ଙ୍କ ପରାମର୍ଶକ୍ରମେ ପୂଜାବିଧିର ମାତ୍ର ଦୁଇଘଣ୍ଟା ପରେ ଶ୍ରୀମନ୍ଦିର ମଧ୍ୟକୁ ପ୍ରବେଶ ବନ୍ଦ କରି ଦିଆଯାଇଥିଲା । ସେ ଯାହାହେଉ ଯାତ୍ରୀମାନଙ୍କୁ ନିୟନ୍ତ୍ରଣ କରିବା ପାଇଁ ବହୁ ଦିନରୁ ପ୍ରଚଳିତ ବେତମାଡ ପୁରୀ ମାଜିଷ୍ଟ୍ରେଟଙ୍କ ଆଦେଶ କ୍ରମେ ସେହି ୧୮୬୦ ମସିହାରେ ବନ୍ଦ କରିଦିଆଯାଇଥିଲା । ଏହାସତ୍ତ୍ୱେ ସେହିବର୍ଷ କୌଣସି ଦୁର୍ଘଟଣା ଘଟିନଥିଲା । ଯାତ୍ରୀଙ୍କୁ ନିୟନ୍ତ୍ରଣ କରୁଥିଲେ ଜଣେ ମାତ୍ର ଦରୋଗାଙ୍କ ଅଧୀନରେ ଥିବା ପ୍ରାୟ ୧୫୦ ଜଣ ବଙ୍ଗାଳୀ ଓ ଓଡିଆ ପୋଲିସ ଏବଂ ସେମାନଙ୍କୁ ସହାୟତା ପ୍ରଦାନ କରିଥିଲେ ରାଜାଙ୍କ କେତେକ ସଂଖ୍ୟକ ଲୋକ । ଦୁର୍ଘଟଣା ପ୍ରତିରୋଧ କରିବା ଥିଲା ସେମାନଙ୍କର ଦାୟିତ୍ୱ । ରଥଟଣାକୁ ନିୟନ୍ତ୍ରଣ କରିବାପାଇଁ ପ୍ରତ୍ୟେକ ରଥ ଦଉଡି ପାଖେ ପାଖେ ରହିବା ନିମନ୍ତେ ଅଳ୍ପ ସଂଖ୍ୟକ ବରକାନ୍ଦଜଙ୍କୁ ନିଯୁକ୍ତ କରାଯାଇଥିଲା । ଏତେ ସ୍ୱଳ୍ପ ସଂଖ୍ୟକ ପୋଲିସ କିପରି ଲକ୍ଷାଧିକ ଯାତ୍ରୀଙ୍କୁ ନିୟନ୍ତ୍ରଣ କରୁଥିଲେ ତାହା ଏବେ ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଏ ସଂପର୍କରେ ଗୋଟିଏ କଥା ଚିନ୍ତା କରାଯାଇପାରେ । ବର୍ତ୍ତମାନ ପରି ସେତେବେଳେ ଲୋକମାନେ ଏତେ ଜଟିଳ ନଥିଲେ । ଏତେ ପରିମାଣରେ ସେମାନଙ୍କ ଚାରିତ୍ରିକ ଅଧପତନ ଘଟି ନଥିଲା । ବହୁ କଷ୍ଟ ସ୍ୱୀକାର ପୂର୍ବକ ପଥ ଅତିକ୍ରମ କରି





ଦୂରଦୂରାନ୍ତରୁ ଯାତ୍ରୀମାନେ ଆସୁଥିଲେ ଭକ୍ତିପୂର୍ଣ୍ଣ ହୃଦୟ ନେଇ । କୌଣସି ଅସାମାଜିକ କାର୍ଯ୍ୟରେ ଲିପ୍ତ ରହିବା ଥିଲା ସେମାନଙ୍କ କଳ୍ପନାର ବାହାରେ । ଏହି ପରିପ୍ରେକ୍ଷୀରେ ଊନବିଂଶ ଶତାବ୍ଦୀରେ ସବୁଠାରୁ କମସଂଖ୍ୟକ ଯାତ୍ରୀ ଯୋଗଦେଇଥିବା ଏକ ରଥଯାତ୍ରା ଉପରେ କିଞ୍ଚିତ ସୂଚନା ଦେବା ଆବଶ୍ୟକ । ଏହାଥିଲା ୧୮୭୮ ମସିହାର କଥା । ସେହିବର୍ଷ ପୁରୀର ରଥଯାତ୍ରା ଜୁଲାଇ ମାସ ୭ ତାରିଖ ଦିନ ପଡିଥାଏ । ସେଥର ରଥ ନିର୍ମାଣ କରିବା ପାଇଁ ନିର୍ଦ୍ଦିଷ୍ଟ ଦିନ ଅତିକ୍ରାନ୍ତ ହୋଇଥିଲେ ମଧ୍ୟ ଏ ଦିଗରେ ମଧ୍ୟ କୌଣସି ପଦକ୍ଷେପ ଗ୍ରହଣ କରାଯାଇନଥାଏ । ଶେଷରେ ସ୍ଥାନୀୟ ହାକିମ ଓ ଲୋକଙ୍କ ପ୍ରଚେଷ୍ଟାରେ ଖୁବ୍ ବିଳମ୍ବରେ ରଥଗୁଡିକର ନିର୍ମାଣ କାର୍ଯ୍ୟ ସମାପ୍ତ ହୋଇଥିଲା । ସେହିବର୍ଷ ମଧ୍ୟ ଯାତ୍ରୀଙ୍କର ସମାଗମ ପୂର୍ବବର୍ଷ ତୁଳନାରେ ବହୁତ କମ୍ ହୋଇଥିଲା । ସ୍ୱଦେଶୀ ଓ ବିଦେଶୀ ଯାତ୍ରୀଙ୍କୁ ଲଗାଇ ସଂଖ୍ୟାଥିଲା ମାତ୍ର ୨୦ ହଜାର । ଏତେ କମ୍ ସଂଖ୍ୟକ ଯାତ୍ରୀ ପୂର୍ବରୁ ଦେଖାହୋଇ ନଥିବା ବିଷୟ ସେହି ବର୍ଷ ଜୁଲାଇ ୧୩ ତାରିଖର 'ଉତ୍କଳ ଦୀପିକା' ସଂଖ୍ୟାରେ ପରିବେଷିତ ଏକ ସମ୍ବାଦରୁ ଜଣାଯାଏ । ଅବଶ୍ୟ ଏହି ବର୍ଷ ଏକ ଦୁର୍ଭିକ୍ଷ ପଡିଥିଲା । ମାତ୍ର ତାହା ଯେ ରଥ ନିର୍ମାଣରେ ବିଳମ୍ବ ଓ ଯାତ୍ରୀଙ୍କ ସ୍ୱଳ୍ପ ସମାଗମର ମୁଖ୍ୟ କାରଣ ଥିଲା ତା ନୁହେଁ, ମୁଖ୍ୟ କାରଣ ଥିଲା ସେହିବର୍ଷ ପୁରୀର ରାଜା ଦିବ୍ୟସିଂହ ଦେବଙ୍କୁ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡାଦେଶ । ଫଳରେ ସେ ଆଣ୍ଡାମାନ ଦ୍ୱୀପକୁ ଯାଇ ଏକ ପ୍ରକାର ବନ୍ଦୀର ଜୀବନଯାପନ କରିଥିଲେ । ଏହି ସମ୍ବାଦ ଓଡିଶା ଓ ଓଡିଶା ବାହାରେ ପ୍ରଚାରିତ ହେବା ଫଳରେ ଲୋକମାନଙ୍କ ମଧ୍ୟରେ ଏକ ଧାରଣା ଜନ୍ମିଥିଲା ଯେ ରାଜା କଳାପାଣି ଯାଇଥିବାରୁ ତାଙ୍କ ସହିତ ଶ୍ରୀଜଗନ୍ନାଥ ସେଠାକୁ ଯାଇଛନ୍ତି । ସେ ଶ୍ରୀକ୍ଷେତ୍ରରେ ନଥିବାରୁ ଠାକୁର ଦର୍ଶନରେ ସେପରି କିଛି ଫଳ ମିଳିବ ନାହିଁ । ଅନ୍ୟ କେତେକ ମଧ୍ୟ ଭାବିଥିଲେ ଯେ ରାଜାତ ବନ୍ଦୀହୋଇ ବାହାରେ ଅଛନ୍ତି ଆଉ ଠାକୁର ଯାତ୍ରା କିଏ କରାଉଥିବେ ? ସେଥିପାଇଁ ବହୁ ଯାତ୍ରୀ ପୁରୀ ଆସିପାରି ନ ଥାଆନ୍ତି । ଆଉ କେତେଜଣ ମଧ୍ୟ କହିବାର ଶୁଣାଯାଉଥିଲା ଯେ ଜଗନ୍ନାଥ ନିଜର ରାଜାଙ୍କୁ ତ ରକ୍ଷା କରି ପାରିଲେ ନାହିଁ – ସେ କଳାପାଣି ଦଣ୍ଡ ଭୋଗିଲେ – ସେ ଠାକୁରଙ୍କୁ ଦର୍ଶନ କରି ଲାଭ କ'ଣ ବା ମିଳିବ ? ସୁତରାଂ ରାଜାଙ୍କର କଳାପାଣି ଦଣ୍ଡ ସହିତ ଯାତ୍ରୀସଂଖ୍ୟା ଊଣା ହେବାର ସମ୍ପର୍କ ଯେ ଥିଲା, ଏଥିରେ ସନ୍ଦେହ ନାହିଁ । ଯାତ୍ରୀ ସଂଖ୍ୟା ଊଣା ହୋଇଥିଲେ ମଧ୍ୟ ରଥଯାତ୍ରାର ବିଧିବିଧାନ ଓ କାର୍ଯ୍ୟମାନ ସେହିବର୍ଷ ନିର୍ବିଘ୍ନରେ ଓ ଯଥା ସମୟରେ ସମ୍ପାଦିତ ହୋଇଥିବାର ଜଣାଯାଏ । ପୁରୀର ତତ୍କାଳୀନ ମାଜିଷ୍ଟ୍ରେଟ ଆର୍ମଷ୍ଟ୍ରଙ୍ଗ ନିଜେ ଅନ୍ୟ ଡେପୁଟି କଲେକ୍ଟରଙ୍କ ସହ ରଥ ପାଖରେ ରହି ସମସ୍ତ ବିଷୟ ତଦାରଖ କରୁଥିଲେ । ଦିନ ୧୨ଟା ସମୟରେ ତିନୋଟି ଯାକ ରଥ ଟଣା ହୋଇ ଦୁଇଦିନ ମଧ୍ୟରେ ଗୁଣ୍ଡିଚାମନ୍ଦିରରେ ପହଞ୍ଚିଲେ । ସେହିବର୍ଷ କୌଣସି ବିଶୃଙ୍ଖଳା ବା ଦୁର୍ଘଟଣା ଘଟିନଥିଲା । ଅବଶ୍ୟ ପୂର୍ବବର୍ଷପରି କେତେଜଣ ଯାତ୍ରୀ ହଇଜା ରୋଗରେ ପୀଡିତ ହୋଇ ମୃତ୍ୟୁବରଣ କରିଥିଲେ । ଊନବିଂଶ ଶତାବ୍ଦୀରେ ରଥଯାତ୍ରା ଉପରେ ଏକ ଧାରଣା ଦେବାପାଇଁ ତତ୍କାଳୀନ ସମ୍ବାଦପତ୍ର 'ଉତ୍କଳ ଦୀପିକା'ରେ ପ୍ରକାଶିତ ତଥ୍ୟ ଉପରେ ଆଧାରିତ ଏକ ବିବରଣୀ ନିମ୍ନରେ ପ୍ରଦାନ କରାଗଲା ।

୧୮୮୭ ମସିହାର ସ୍ନାନଯାତ୍ରାଠାରୁ ରଥଯାତ୍ରା ପର୍ଯ୍ୟନ୍ତ ସବୁ କାର୍ଯ୍ୟର ଦାୟିତ୍ୱ ଦୁଇଜଣ ଡେପୁଟି ମାଜିଷ୍ଟ୍ରେଟଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ସେମାନେ ଥିଲେ ବାବୁ ରାଜଗୋପାଳ ରାୟ ଓ ବାବୁ ମନମୋହନ ଚକ୍ରବର୍ତ୍ତୀ । ଅବଶ୍ୟ ସେମାନଙ୍କର ପରାମର୍ଶକ୍ରମେ ଯାତ୍ରୀମାନଙ୍କର ସୁବିଧା ନିମନ୍ତେ ବହୁ ପଦକ୍ଷେପ ଗ୍ରହଣ କରାଯାଇଥିଲା ଓ ତା'ର ଦାୟିତ୍ୱରେ ରହିଥିଲେ ବାଲେଶ୍ୱର ଜିଲ୍ଲାର ଭାରପ୍ରାପ୍ତ କଲେକ୍ଟର ଟ୍ୟୁଟ୍ ସାହେବ । ତାଙ୍କର ପ୍ରଚେଷ୍ଟାରେ ପଥିକମାନଙ୍କ ପାଇଁ ଚିକିତ୍ସାଳୟ ପ୍ରତିଷ୍ଠା କରାଯାଇଥିଲା । ରାସ୍ତା କଡରେ ନୂତନ ପୁଷ୍କରିଣୀ ଖନନ କରାଯିବା ସଙ୍ଗେ ସଙ୍ଗେ ପୁରାତନଗୁଡିକର ସଂସ୍କାର କରାଯାଇଥିଲା । ଉତ୍ତରାଛକଠାରୁ ସାତଶଙ୍ଖ ପର୍ଯ୍ୟନ୍ତ ଜଗନ୍ନାଥ ସଡକର ଉଭୟ ପାର୍ଶ୍ୱରେ ଅବସ୍ଥିତ ବେଣ୍ଟ



ପୋଖରୀ, ପୁଷ୍କପୋଖରୀ, ମଙ୍ଗୁଳିଘୋଷ ପୋଖରୀ ସମ୍ଭବତଃ ସେହି ସମୟରେ ଖନନ କରାଯାଇଥିଲା । ଅବଶ୍ୟ ଏଥିପାଇଁ ବଦାନ୍ୟ ବ୍ୟକ୍ତିଙ୍କ ନିକଟରୁ ଅର୍ଥ ସଂଗ୍ରହ କରାଯାଇଥିଲା । ବାଲେଶ୍ୱରର ପ୍ରଖ୍ୟାତ ଜମିଦାର ରାଜା ବୈକୁଣ୍ଠ ନାଥ ଦେ ଏଥିପାଇଁ ଟ୨୦୦୦ଙ୍କା ଦାନ କରିଥିଲେ । ସେହି ୧୮୮୭ ମସିହାରେ ରଥଯାତ୍ରା ସମୟରେ ସୌଭାଗ୍ୟବଶତଃ ଦୁଇଟି ଚିନ୍ତାର ବିଷୟ କୌଣସି ପ୍ରତିବନ୍ଧକ ସୃଷ୍ଟି କରି ନଥିଲା । ସେ ଦୁଇଟି ବିଷୟ ଥିଲା ନଦୀପାର ଓ ଓଲାଓଟା ରୋଗ । ସେହିବର୍ଷ ମହାନଦୀ ଓ କାଠଯୋଡିରେ ସାମାନ୍ୟ ବଢ଼ିପାଣି ହୋଇଥିବା ସ୍ଥଳେ ପୁରୀଜିଲ୍ଲାର ନଦୀଗୁଡିକ ଶୁଖିଲା ପଡିଥିଲା । ସେହିପରି ଓଲାଓଟା ରୋଗର ନିରାକରଣ ପାଇଁ ପୁରୀ ମ୍ୟୁନିସିପାଲିଟି ବିଭିନ୍ନ ପଦକ୍ଷେପ ନେଇଥିଲେ । ପ୍ରଥମତଃ କାଠଯୋଡି କୂଳରେ ମେହେନ୍ତର ଓ ଅଧିକ ସଂଖ୍ୟକ ଡାକ୍ତରଙ୍କୁ ନିଯୁକ୍ତି ଦିଆଯାଇଥିଲା । ଏ ସମ୍ପର୍କରେ 'ଉତ୍କଳ ଦୀପିକା'ରେ ପ୍ରକାଶ ପାଇଥିଲା । ରୋଗୀଙ୍କ ଚିକିତ୍ସା ଓ ଶୁଶ୍ରୁଷା ବିଷୟରେ କିଛି କଷ୍ଟ ହୋଇନାହିଁ । ମ୍ୟୁନିସିପାଲିଟିର ସୁଯୋଗ୍ୟ ଭାଇସ୍ ଚେୟାରମ୍ୟାନ ଚିକିତ୍ସାଳୟକୁ ଦିବାରାତ୍ରି ୨୪ ଘଣ୍ଟା ଖୋଲା ରଖିବାର ଆଦେଶ ଦେଇଥିଲେ ଯେ କାହାର ପୀଡା ହେଲେ ସେ ତତ୍‌କ୍ଷଣାତ୍ ଔଷଧ ପାଇପାରିବ । ସେଥିପାଇଁ ମ୍ୟୁନିସିପାଲିଟି ପକ୍ଷରୁ ପ୍ରତିଷେଧକ ବ୍ୟବସ୍ଥାଗୁଡିକ ସମ୍ପର୍କରେ ମଧ୍ୟ ପ୍ରଚାର କରାଯାଇଥିଲା । ବର୍ତ୍ତମାନ ପରି ସେତେବେଳେ ମଧ୍ୟ ସୂର୍ଯ୍ୟପୁରାଣରେ ବର୍ଣ୍ଣିତ ନିୟମାନୁଯାୟୀ ରଥଗୁଡିକୁ ଖୁବ୍ ଧୀରେ ଧୀରେ ଟଣାଯାଉଥିଲା । ଅବଶ୍ୟ ତା' ମୂଳରେ ଗୋଟିଏ କାରଣ ନିହିତ ଥିବାର ଜଣାଯାଏ । ରଥ ଟାଣିବା ସମୟରେ ଯଦି ତା'ର କୌଣସି ଅଂଶ ଭାଙ୍ଗିଯାଏ ତେବେ ସେହିବର୍ଷ ଦେଶ ଓ ମାନବଜାତି ପାଇଁ ବିପଦ ପଡିବାର ଆଶଙ୍କା ରହିଛି ବୋଲି ଏକ ବିଶ୍ୱାସ ବହୁ ଦିନରୁ ରହି ଆସିଥିଲା । ତେଣୁ ରଥଟିକୁ ଧୀରେ ଧୀରେ ଟଣାଯାଉଥିଲା ।

ଏହା ହେଉଛି ଉନବିଂଶ ଶତାବ୍ଦୀର ରଥଯାତ୍ରା ଉପରେ କେତୋଟି ସୂଚନା । ସେହି ସମୟରେ ଯାତ୍ରୀମାନଙ୍କର ଅସୁବିଧା ଓ ଦୁଃଖଦୁର୍ଦ୍ଦଶା ଅଧିକ ହୋଇଥିଲେ ମଧ୍ୟ ସେମାନଙ୍କର ସଂଖ୍ୟା ବର୍ତ୍ତମାନଠାରୁ ବିଶେଷ କିଛି ନ୍ୟୂନ ନଥିଲା । ଏପରିକି ଗୋଟିଏ ବର୍ଷ ୧ ଲକ୍ଷ ୮୦ ହଜାର ଯାତ୍ରୀଙ୍କର ସମାଗମ ହୋଇଥିବାର ଜଣାଯାଏ । ତଥାପି ସେମାନେ ଆସୁଥିଲେ କଷ୍ଟ ନକଲେ କୃଷ୍ଣ ମିଳିବ ନାହିଁ ବୋଲି ବିଶ୍ୱାସରେ ବଶବର୍ତ୍ତୀ ହୋଇ । ସେଥିପାଇଁ ସେମାନେ ସବୁ କଷ୍ଟ ହସି ହସି ବରଣ କରିନେଉଥିଲେ ।

ବରିଷ୍ଠ ସାମ୍ବାଦିକ
ସାମ୍ବାଦିକ କଲୋନୀ, ତୁଳସୀପୁର, କଟକ–୮







# ଆଧ୍ୟାତ୍ମ ନଗରୀ ପୁରୀ ଓ ଶ୍ରୀଜଗନ୍ନାଥ ମନ୍ଦିରର ଅର୍ଥନୈତିକ ବିଶ୍ଳେଷଣ

ଡକ୍ଟର ପୀତବାସ ରାଉତରାୟ

ଭାରତବର୍ଷ ତଥା ସମଗ୍ର ବିଶ୍ୱରେ ପୁରୀ ଶ୍ରୀକ୍ଷେତ୍ର ଅର୍ଥାତ୍ କ୍ଷେତ୍ର ମଧ୍ୟରେ ଶ୍ରେଷ୍ଠ ଓ ପ୍ରଥମ ବୋଲି ମାନ୍ୟତା ଲାଭ କରିଅଛି । ଏହି କ୍ଷେତ୍ର ଶ୍ରୀପୁରୁଷୋତ୍ତମ କ୍ଷେତ୍ର ନାମରେ ବହୁ ପ୍ରାଚୀନ କାଳରୁ ପ୍ରଚଳିତ । ପୁରୁଷୋତ୍ତମ, ଜଗନ୍ନାଥଙ୍କର ଅନ୍ୟ ଏକ ନାମ । ଶ୍ରୀ ହେଉଛନ୍ତି ସୌନ୍ଦର୍ଯ୍ୟ, ସୁଲକ୍ଷଣ, ଶୌର୍ଯ୍ୟ ଓ ସମୃଦ୍ଧିର ପ୍ରତୀକ । ଏହି କ୍ଷେତ୍ରରେ ଭକ୍ତ ମୁକ୍ତିଦାତା ଶ୍ରୀଜଗନ୍ନାଥଙ୍କ ସହ ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟ ବର୍ଷଣକାରୀ ମା' ଲକ୍ଷ୍ମୀଙ୍କର ସାନ୍ନିଧ୍ୟ ଲାଭ କରିଥାଏ । ଏହି କ୍ଷେତ୍ରରେ ତୀର୍ଥରାଜ, କ୍ଷେତ୍ରରାଜ ଓ ଦେବରାଜ ରହିଥିବାରୁ ଏଭଳି ଶ୍ରେଷ୍ଠତମ କ୍ଷେତ୍ର ଅନ୍ୟ କୌଣସି ସ୍ଥାନରେ ଦୃଷ୍ଟିଗୋଚର ହୁଏ ନାହିଁ ।

ହିନ୍ଦୁ ସଂସ୍କୃତିରେ ଏହି କ୍ଷେତ୍ର ସବୁଠାରୁ ଅଧିକ ପ୍ରାଧାନ୍ୟ ଲାଭ କରିଛି । ସେଥିପାଇଁ ତା'ର ଠାକୁର ବଡ଼ଠାକୁର, ଦେଉଳ ବଡ଼ଦେଉଳ, ଦାଣ୍ଡ ବଡ଼ଦାଣ୍ଡ, ପଣ୍ଡା ବଡ଼ପଣ୍ଡା, ପ୍ରସାଦ ମହାପ୍ରସାଦ, ଦୀପ ମହାଦୀପ, ବଟ କଳ୍ପବଟ, ସମୁଦ୍ର ମହୋଦଧି ଏବଂ ଶ୍ମଶାନ ସ୍ୱର୍ଗଦ୍ୱାର ନାମରେ ନାମିତ ହୋଇଅଛି ।

ଜଗନ୍ନାଥ ସଂସ୍କୃତିର ଅନ୍ୟ ଏକ ଆକର୍ଷଣ ହେଲା ପରମ ଉପାସ୍ୟ ଦେବତା ଶ୍ରୀପୁରୁଷୋତ୍ତମ ଜଗନ୍ନାଥ ହେଉଛନ୍ତି ଦାରୁବ୍ରହ୍ମ । ତାଙ୍କର ମାନବୀୟ ଲୀଳାରେ ବାରମାସରେ ତେରପର୍ବ ଅନୁଷ୍ଠିତ ହୋଇଥାଏ । ତାଙ୍କର ପ୍ରତ୍ୟହ ସେବାପୂଜା ମଧ୍ୟ ଅନନ୍ୟ । ତାଙ୍କର ସେବକ ଶ୍ରେଣୀ ୧୦୦ରୁ ଊର୍ଦ୍ଧ୍ୱ ଓ ସଂଖ୍ୟା ୮୦୦୦ରୁ ଊର୍ଦ୍ଧ୍ୱ । ସେ ଛପନଭୋଗୀ । ବିଶ୍ୱର ସର୍ବବୃହତ୍ ପାକଶାଳା ହେଉଛି ଶ୍ରୀମନ୍ଦିର ପାକଶାଳା ।

ଏହି ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ କେବଳ ଶ୍ରୀମନ୍ଦିର ନୁହେଁ, ଏହା ଏକ ମନ୍ଦିର ମାଳିନୀ ସହର । ଏହି ପୁରୁଷୋତ୍ତମ କ୍ଷେତ୍ରରେ ଅଛି ପଞ୍ଚତୀର୍ଥ, ଅଷ୍ଟଶମ୍ଭୁ, ପଞ୍ଚ ମହାଦେବ ତଥା ଅଷ୍ଟଚଣ୍ଡୀ । ଏହି ପୁରୁଷୋତ୍ତମ କ୍ଷେତ୍ରରେ ଶତାଧିକ ମଠ ଓ ଆଶ୍ରମ ପ୍ରତିଷ୍ଠିତ, ତାହା ପୁଣି ବିଭିନ୍ନ ସମ୍ପ୍ରଦାୟର । ଏହି ଶ୍ରୀକ୍ଷେତ୍ରରେ ଅଛି ମାର୍କଣ୍ଡେୟ ପୁଷ୍କରିଣୀ, ଶ୍ୱେତଗଙ୍ଗା ପୁଷ୍କରିଣୀ ଓ ଇନ୍ଦ୍ରଦ୍ୟୁମ୍ନ ସରୋବର ଯାହା ତୀର୍ଥର ମାନ୍ୟତା ପାଇଅଛି । ଏହା ବ୍ୟତୀତ ନରେନ୍ଦ୍ର ପୁଷ୍କରିଣୀର ଅନୁଷ୍ଠିତ ଚନ୍ଦନ ଯାତ୍ରା ମଧ୍ୟ ବିଶ୍ୱ ପ୍ରସିଦ୍ଧ ।

ଏହି ଶ୍ରୀକ୍ଷେତ୍ରରେ ବିଶ୍ୱର ଶ୍ରେଷ୍ଠ ଧର୍ମଗୁରୁ, ସାଧକ, ମୁନିଋଷି ଓ ଆଧ୍ୟାତ୍ମିକ ପୁରୁଷ ପଦାର୍ପଣ କରି ପ୍ରଭୁଙ୍କ ଶରଣାଗତ ହୋଇ ପ୍ରଚାର କରିଚାଲିଛନ୍ତି ପ୍ରଭୁଙ୍କ ଲୀଳାଗାନ ।

ଶ୍ରୀକ୍ଷେତ୍ରର କ୍ରମବର୍ଦ୍ଧିଷ୍ଣୁ ଯାତ୍ରୀ ଆଗମନର ସାମାଜିକ ଓ ସାଂସ୍କୃତିକ କାରଣକୁ ଅଧ୍ୟୟନ କଲେ ନିମ୍ନଲିଖିତ ଦିଗ ପ୍ରତି ଧ୍ୟାନ ଦେବାକୁ ହେବ ।

### ପୁରୀ ସହରର ଆଧ୍ୟାତ୍ମିକ ମାହାତ୍ମ୍ୟ

ପୁରାଣ ଯୁଗରୁ ଏହା ପ୍ରସିଦ୍ଧି ଲାଭ କରିଥିବା ଶ୍ରୀପୁରୁଷୋତ୍ତମ କ୍ଷେତ୍ର ନାମରେ ପରିଚିତ । ପୁରୀର ମୁଖ୍ୟ ଆକର୍ଷଣ ହେଉଛନ୍ତି ଶ୍ରୀଜଗନ୍ନାଥ । ଶ୍ରୀଜଗନ୍ନାଥଙ୍କର କେବଳ

ଦର୍ଶନ ନୁହେଁ, ଶ୍ରୀଜଗନ୍ନାଥଙ୍କ ଦୈନନ୍ଦିନ ରୀତିନୀତି, ବିଭିନ୍ନ ପର୍ବପର୍ବାଣି ପାଳନ ଓ ସ୍ନାନଯାତ୍ରା, ରଥଯାତ୍ରା ଭଳି ବିଶ୍ୱ ପ୍ରସିଦ୍ଧ ଉତ୍ସବ ପାଳନ ଯାତ୍ରୀ ଆକର୍ଷଣର ମୁଖ୍ୟ କେନ୍ଦ୍ରବିନ୍ଦୁ ହୋଇଯାଏ । ପୁରୀ ଚାରି ଧାମରୁ ଶ୍ରେଷ୍ଠ ଧାମ ଭାବେ ପରିଗଣିତ ହେଉଥିବାରୁ ଓ ହିନ୍ଦୁ ସଂସ୍କୃତିର ଧାମରେ ରାତ୍ରିଯାପନ କରିବାର ନିୟମ ଯୋଗୁଁ ପୁରୀ ବର୍ଷତମାମ ଭକ୍ତଙ୍କ ଆଗମନରେ ମୁଖରିତ ହୋଇଉଠେ ଓ ପୁରୀର ହୋଟେଲ ଓ ଧର୍ମଶାଳାମାନଙ୍କରେ ଯାତ୍ରୀ ଭିଡ଼ ହୋଇଯାଏ ।

**ପୁରୀ ସହରର ଭୌଗୋଳିକ ଅବସ୍ଥିତି –** ପୁରୀ ସହର କେବଳ ଜଗନ୍ନାଥଙ୍କୁ କେନ୍ଦ୍ର କରି ଗଢ଼ି ଉଠି ନାହିଁ । ଓଡ଼ିଶାର ପର୍ଯ୍ୟଟନ ମାନଚିତ୍ରରେ ମଧ ସୁବର୍ଣ୍ଣ ତ୍ରିଭୁଜର ଗୋଟିଏ ଅଂଶ ହୋଇ ବିଶ୍ୱରେ ପର୍ଯ୍ୟଟନର ମାନ୍ୟତା ପାଇଅଛି । ଏହି ସୁବର୍ଣ୍ଣ ତ୍ରିଭୁଜର ଅନ୍ୟ ଦୁଇ ବାହୁ ହେଲା କୋଣାର୍କ ଓ ଭୁବନେଶ୍ୱର । ଭୁବନେଶ୍ୱରରୁ ପୁରୀ ମାତ୍ର ୬୦ କିଲୋମିଟର ଓ କୋଣାର୍କଠାରୁ ପୁରୀ ମାତ୍ର ୩୦ କିଲୋମିଟର । ଭୁବନେଶ୍ୱରରେ ବିମାନବନ୍ଦର ଅବସ୍ଥିତ । ପୁରୀ ଓ ଭୁବନେଶ୍ୱର ରେଳ ଯୋଗେ ଭାରତର ବହୁ ସହର ସହ ସଂଯୋଗ ହୋଇଅଛି । ଭୁବନେଶ୍ୱରରୁ ପୁରୀ ମଧ୍ୟ ଜାତୀୟ ରାଜପଥର ମାନ୍ୟତା ପାଇଛି । ପ୍ରତିଦିନ କେବଳ ଓଡ଼ିଶାର ବିଭିନ୍ନ ସହର ନୁହେଁ ଓଡ଼ିଶାର ପଡ଼ୋଶୀ ପ୍ରଦେଶମାନଙ୍କରୁ ମଧ ଶହ ଶହ ବସ୍‌ରେ ଆସି ପୁରୀ ସହରକୁ ଯାତ୍ରୀମାନଙ୍କୁ ଆଣିଥାନ୍ତି । ଏହା ବ୍ୟତୀତ କାର୍, ଟ୍ୟାକ୍ସି ଓ ଦୁଇ ଚକିଆ ଯାନ ଅନବରତ ପୁରୀ ଅଭିମୁଖେ ଛୁଟିଥାନ୍ତି । ପୁରୀ ନିକଟବର୍ତ୍ତୀ ସାକ୍ଷୀଗୋପାଳ, ଦକ୍ଷିଣ କାଳିକା, ବାଟମଙ୍ଗଳା, ରାମଚଣ୍ଡୀ, ଅଲାରନାଥ ଓ ସାତପଡ଼ା ଆଦି ସ୍ଥାନ ମଧ୍ୟ ଯାତ୍ରୀ ଆକର୍ଷଣର ଅନ୍ୟ ଏକ କାରଣ । ବଙ୍ଗୋପ ସାଗର ଏଠାରେ ସମୁଦ୍ର ନୁହେଁ ଭକ୍ତମାନଙ୍କ ପାଇଁ ମହୋଦଧି । ପୁରୀ ସମୁଦ୍ରକୂଳ ଯାତ୍ରୀ ଆକର୍ଷଣର ଅନ୍ୟ ଏକ ମୁଖ୍ୟ କାରଣ ଯାତ୍ରୀମାନେ ପୁରୀରେ ଶ୍ରୀଜଗନ୍ନାଥଙ୍କ ଦର୍ଶନ ପରେ ସମୁଦ୍ରରେ ସ୍ନାନ କରିବା ନିମନ୍ତେ ହୋଟେଲମାନଙ୍କରେ ଅବସ୍ଥାନ କରିଥାନ୍ତି ।

**ପୁରୀ ସହରର ଅନ୍ୟାନ୍ୟ ଆକର୍ଷଣ –** ପୁରୀ ସହରର ଅନ୍ୟ ବହୁ ଆଧ୍ୟାତ୍ମିକ ସ୍ଥାନ ଅବସ୍ଥିତ, ଯାହା ବିଭିନ୍ନ ସମ୍ପ୍ରଦାୟର ଯାତ୍ରୀମାନଙ୍କୁ ମଧ୍ୟ ଆକର୍ଷିତ କରେ । ସେଗୁଡ଼ିକ ହେଲା –

କ) ମଠ ଓ ଆଶ୍ରମ : ବିଭିନ୍ନ ସମ୍ପ୍ରଦାୟର ପ୍ରସିଦ୍ଧ ଗୁରୁ ଓ ସାଧକମାନେ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଆଗମନ କରି ଶ୍ରୀଜଗନ୍ନାଥଙ୍କ ଦର୍ଶନ ପରେ ଅଭିଭୂତ ହୋଇ ପୁରୀରେ ତତ୍କାଳୀନ ଗଜପତିମାନଙ୍କ ସହାୟତାରେ ମଠମାନ ସ୍ଥାପନ କରିଯାଇଛନ୍ତି । ତନ୍ମଧ୍ୟରୁ ଶ୍ରୀ ଶଙ୍କର ସମ୍ପ୍ରଦାୟ, ଶ୍ରୀ ରାମାନୁଜ ସମ୍ପ୍ରଦାୟ, ଶ୍ରୀ ବିଷ୍ଣୁସ୍ୱାମୀ ସମ୍ପ୍ରଦାୟ, ଶ୍ରୀ ରାମାନନ୍ଦୀ ସମ୍ପ୍ରଦାୟ, ଶ୍ରୀ ନିମ୍ବାର୍କ ସମ୍ପ୍ରଦାୟ, ବ୍ରହ୍ମମାଧ୍ୱ ଗୌରେଶ୍ୱର ସମ୍ପ୍ରଦାୟ, ଶ୍ରୀ ଅତିବଡୀ ସମ୍ପ୍ରଦାୟ ଆଦି ବହୁ ସମ୍ପ୍ରଦାୟର ମଠ ତଥା ଆଶ୍ରମ ନିର୍ମାଣ ହୋଇ ଭକ୍ତ ସମାବେଶ ହୋଇଥାଏ ।

ଖ) ପଞ୍ଚତୀର୍ଥ : ମାର୍କଣ୍ଡେୟ ସରୋବର, ଶ୍ୱେତଗଙ୍ଗା, ଇନ୍ଦ୍ରଦ୍ୟୁମ୍ନ ସରୋବର, ରୋହିଣୀକୁଣ୍ଡ ଓ ମହୋଦଧି ଯାତ୍ରୀ ଆକ୍ରମଣର ଅନ୍ୟତମ ତୀର୍ଥ ।

ଗ) ପଞ୍ଚ ମହାଦେବ : ଶ୍ରୀ ଲୋକନାଥ, ଶ୍ରୀ ଜମ୍ବେଶ୍ୱର, ଶ୍ରୀ ମାର୍କଣ୍ଡେଶ୍ୱର, ଶ୍ରୀ କପାଳମୋଚନ, ଶ୍ରୀ ନୀଳକଣ୍ଠେଶ୍ୱର ।

ଘ) ଅଷ୍ଟଚଣ୍ଡୀ : ଦ୍ୱାରବାସିନୀ, ମହାବ୍ରଜେଶ୍ୱରୀ, ସ୍ୱର୍ଣ୍ଣଭୈରବୀ, ଭଦ୍ରକାଳୀ, ବେଢ଼ାକାଳୀ, ଭୁବନେଶ୍ୱରୀ, ଶୀତଳା ଓ ଯଜ୍ଞେଶ୍ୱରୀ ।

ଙ) ଶ୍ରୀକ୍ଷେତ୍ର ଓ ଶ୍ରୀମନ୍ଦିରରେ ଅନୁଷ୍ଠିତ ହେଉଥିବା ପର୍ବପର୍ବାଣି – ଓଡ଼ିଆ ନବବର୍ଷ ପଣାସଂକ୍ରାନ୍ତିଠାରୁ ଆରମ୍ଭ କରି ବର୍ଷ ଶେଷ ରାମନବମୀ ଓ ଦୟଣା ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ପ୍ରାୟ ପଚାଶଟି ପର୍ବ ପାଳନ ହୋଇଥାଏ । ତନ୍ମଧ୍ୟରୁ ସ୍ନାନପୂର୍ଣ୍ଣିମାଠାରୁ ଆରମ୍ଭ କରି ରଥଯାତ୍ରା, ବାହୁଡ଼ା ଓ ନୀଳାଦ୍ରିବିଜେ ସମୟରେ ଲକ୍ଷାଧିକ ଯାତ୍ରୀଙ୍କ ସମାଗମ ହୋଇଥାଏ ।

ଚ) ଶ୍ରୀଜୀଉଙ୍କ ବେଶ ବୈଶିଷ୍ଟ୍ୟ – ପ୍ରତ୍ୟେକ ଦିନର ଅବକାଶ ବେଶ, ଦୈନନ୍ଦିନ ବେଶ ଓ ବଡ଼ସିଂହାର ବେଶ





ବ୍ୟତୀତ ପ୍ରତିବର୍ଷ ବିଭିନ୍ନ ପର୍ବପର୍ବାଣିରେ ସ୍ୱତନ୍ତ୍ର ବେଶରେ ଚତୁର୍ଦ୍ଧାମୂର୍ତ୍ତି ସୁଶୋଭିତ ହୋଇ ଦର୍ଶକମାନଙ୍କର ମନ ଆକର୍ଷିତ କରନ୍ତି ।

### ପୁରୀ ସହରର ଅର୍ଥନୀତି

ପୁରୀ ସହରର ଜନସଂଖ୍ୟା ୨୦୧୧ରେ ଥିଲା ୨,୦୧,୦୨୬ । ପୁରୀର ଜନସଂଖ୍ୟା ବୃଦ୍ଧି ହାରରେ (୨.୪୨%)୨୦୨୦ ମସିହା ସୁଦ୍ଧା ଜନସଂଖ୍ୟା ୨,୪୮,୮୨୪ରେ ପହଞ୍ଚିବ ।

ଶ୍ରୀକ୍ଷେତ୍ରର ଅର୍ଥନୀତିରେ ପ୍ରାୟ ୮୦ ଭାଗ ଯାତ୍ରୀ ବା ପର୍ଯ୍ୟଟକଙ୍କ ଉପରେ ନିର୍ଭରଶୀଳ । ଏହି ଯାତ୍ରୀ ସମାଗମର ମୁଖ୍ୟ ଆକର୍ଷଣ ହେଲା ଶ୍ରୀଜଗନ୍ନାଥ, ଶ୍ରୀମନ୍ଦିର ଓ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ବାରମାସରେ ତେରଯାତ୍ରା । ଏହା ବ୍ୟତୀତ ଯାତ୍ରୀମାନଙ୍କର ଅନ୍ୟତମ ଆକର୍ଷଣ ହେଉଛି ପୁରୀ ସମୁଦ୍ରକୂଳ, ସୁବର୍ଣ୍ଣ ତ୍ରିଭୁଜର ଆଉ ଦୁଇଟି ସହର କୋଣାର୍କ ଓ ଭୁବନେଶ୍ୱର ତଥା ପୁରୀ ସହରର ବହୁ ଧର୍ମୀୟ ଅନୁଷ୍ଠାନ ଓ ମନ୍ଦିର । ପୁରୀର ଖୁବ୍ ନିକଟତର ଥିବା ସାକ୍ଷୀଗୋପାଳ, ବାଟମଙ୍ଗଳା, ଦକ୍ଷିଣକାଳୀକା, ଅଲାରନାଥ ଓ କିଛି ଦୂରରେ ଚିଲିକାର ସାତପଡ଼ା ଯାତ୍ରୀମାନଙ୍କୁ ମଧ୍ୟ ବହୁଳଭାବେ ଆକର୍ଷିତ କରେ ।

ପୁରୀ ସହରର ଅର୍ଥନୈତିକ ବ୍ୟବସ୍ଥା ପର୍ଯ୍ୟାଲୋଚନା କଲେ ନିମ୍ନଲିଖିତ କେତୋଟି ବିଭାଗକୁ ଦୃଷ୍ଟି ଦେବା ଆବଶ୍ୟକ ।

କ) ପର୍ଯ୍ୟଟନ ଶିଳ୍ପ – ପୁରୀ ପର୍ଯ୍ୟଟନର ଏକ ପ୍ରଧାନ ଆକର୍ଷଣ କେନ୍ଦ୍ର, ଯାହା ବର୍ଷ ପରେ ବର୍ଷ ବୃଦ୍ଧି ପାଇଚାଲିଛି । ସବୁଠାରୁ ଆଶ୍ଚର୍ଯ୍ୟର କଥା ଓଡ଼ିଶାକୁ ଯେତେ ପର୍ଯ୍ୟଟକ ଆସନ୍ତି ତା'ର ୯୦ରୁ ଊର୍ଦ୍ଧ୍ୱ ଭାଗ କେବଳ ପୁରୀକୁ ଆସିଥାନ୍ତି । ଯାହା ନିମ୍ନସାରଣୀରୁ ଅନୁମାନ କରିହେବ ।

### ଓଡ଼ିଶା ଓ ପୁରୀକୁ ଯାତ୍ରୀ ଆଗମନ

| ବର୍ଷ | ଓଡ଼ିଶାକୁ ଯାତ୍ରୀ ଆଗମନ | ପୁରୀକୁ ଯାତ୍ରୀ ଆଗମନ | ପ୍ରତିଶତ |
|---|---|---|---|
| ୨୦୦୮ | ୬୪ଲକ୍ଷ | ୪୮ଲକ୍ଷ | ୭୫ଭାଗ |
| ୨୦୧୮ | ୧୪୧ଲକ୍ଷ | ୧୩୫ଲକ୍ଷ | ୯୨ ଭାଗ |

ଏହି ହିସାବରୁ ଜଣାଯାଏ ଯେ ପୁରୀକୁ ପ୍ରତିବର୍ଷ ଯାତ୍ରୀ ସଂଖ୍ୟା ବୃଦ୍ଧି ପାଇଚାଲିଛି । ସେହି ଅନୁପାତରେ ପୁରୀ ହୋଟେଲ ପରିସଂଖ୍ୟାନରୁ ଜଣାଯାଏ ଯେ, ୨୦୦୮ରେ ୨୨ଲକ୍ଷ ଯାତ୍ରୀ ହୋଟେଲରେ ରହିଥିବା ସ୍ଥଳେ ୨୦୧୮ରେ ୫୨ଲକ୍ଷ ଯାତ୍ରୀ ରାତ୍ରିଯାପନ କରିଥିଲେ । ପର୍ଯ୍ୟଟନ ଶିଳ୍ପ ସହ ଯୋଡ଼ିହୋଇ ରହିଛି ପରିବହନ ଶିଳ୍ପ । ପୁରୀକୁ ହାରାହାରି ହିସାବରେ ପ୍ରତିଦିନ ୫୦ଟି ଟ୍ରେନ୍ ଆସୁଥିବା ବେଳେ ସରକାରୀ ବସ୍, ବେସରକାରୀ ବସ୍, ଟ୍ରେକର, ମିନିବସ୍, କାର୍ ଆଦି ଗାଡ଼ି ଓ ଦୈନିକ ହଜାର ହଜାର ଟ୍ୟାକ୍ସି, କାର୍, ଜିପ୍, ଦୁଇଚକିଆ ମଟର ସାଇକେଲ, ସ୍କୁଟର, ଟୁରିଷ୍ଟବସ୍ ପୁରୀକୁ ଆସିଥାନ୍ତି ।

### ପୁରୀର ହୋଟେଲ ବ୍ୟବସାୟ

| ବର୍ଷ | ହୋଟେଲ ସଂଖ୍ୟା | ରୁମ୍ ସଂଖ୍ୟା |
|---|---|---|
| ୨୦୦୭ | ୩୦୨ | ୬୦୬୪ |
| ୨୦୦୮ | ୩୧୭ | ୬୨୧୩ |





**ପୁରୀର ହୋଟେଲ ବ୍ୟବସାୟ**

| ବର୍ଷ | ହୋଟେଲ ସଂଖ୍ୟା | ରୁମ୍ ସଂଖ୍ୟା |
|---|---|---|
| ୨୦୦୯ | ୩୩୯ | ୬୫୬୨ |
| ୨୦୧୦ | ୩୪୦ | ୬୯୮୨ |
| ୨୦୧୧ | ୩୪୦ | ୬୯୮୨ |
| ୨୦୧୨ | ୪୨୩ | ୮୯୩୪ |
| ୨୦୧୩ | ୪୨୭ | ୯୮୭୩ |
| ୨୦୧୪ | ୪୯୯ | ୧୦୪୮୭ |
| ୨୦୧୫ | ୫୨୨ | ୧୧୧୧୩ |
| ୨୦୧୬ | ୫୨୮ | ୧୧୨୪୭ |
| ୨୦୧୭ | ୫୩୫ | ୧୧୩୩୦ |
| ୨୦୧୮ | ୫୫୨ | ୧୧୯୦୬ |

ଏହି ହୋଟେଲମାନଙ୍କ ବ୍ୟତୀତ ପୁରୀରେ ବହୁ ଧର୍ମଶାଳା ଓ ବିଭିନ୍ନ କମ୍ପାନୀମାନଙ୍କର ହଲିଡ଼େ ହୋମ୍ ଓ ଗେଷ୍ଟହାଉସ୍ ରହିଅଛି, ଯେଉଁଠାରେ ବିଭିନ୍ନ ବର୍ଗର ଯାତ୍ରୀ ଅବସ୍ଥାନ କରନ୍ତି ।

**ଅର୍ଥନୈତିକ ଅଭିବୃଦ୍ଧିର ଅନ୍ୟତମ ପରିଚାୟକ**

**ପୁରୀକୁ ଆସୁଥିବା ଟ୍ରେନ୍**

| ମସିହା | ନିୟମିତ | ପର୍ବପର୍ବାଣି ପାଇଁ ବିଶେଷ ଟ୍ରେନ୍ |
|---|---|---|
| ୨୦୦୭ | ୨୪ | ୬୫ |
| ୨୦୧୭ | ୫୧ | ୧୩୨ |

ଖ) ହସ୍ତଶିଳ୍ପ – ପୁରୀକୁ ଲକ୍ଷାଧିକ ଲୋକଙ୍କ ପ୍ରତିଦିନ ଆଗମନ ଫଳରେ ପୁରୀ ସହରରେ ଓ ଆଖପାଖ ଅଞ୍ଚଳରେ ବିଭିନ୍ନ ହସ୍ତଶିଳ୍ପ ସଂସ୍ଥା ଗଢ଼ି ଉଠିଛି । ତା'ମଧ୍ୟରେ ଶାଢ଼ୀ, କଟକୀ, ବମକାଇ ପାଟ ଓ ଚାନ୍ଦୁଆ ସର୍ବାଧିକ ପ୍ରସ୍ତୁତ କରାଯାଏ । ଏହା ବ୍ୟତୀତ ପଟ୍ଟଚିତ୍ରର ବିଭିନ୍ନ ପ୍ରକାର କାରୁକାର୍ଯ୍ୟ ଦର୍ଶକଙ୍କର ଚାହିଦା ବଢ଼ାଇଥାଏ । ତାଳପତ୍ରରେ ଗଞ୍ଜପୀ କାମ ବହୁଳ ପରିମାଣରେ ବିକ୍ରି ହୋଇଥାଏ । ଏହା ସହିତ ପଥର ଖୋଦେଇ, କାଠ ଖୋଦେଇ କାମ, ବାଉଁଶ ଓ ଲାଖର କାମ ଏପରିକି ରୁପାର ତାରକସି କାମର ବହୁତ ଚାହିଦା ଥିବାରୁ ଏହା ମଧ୍ୟ ପ୍ରସ୍ତୁତ କରାଯାଇ ବିକ୍ରି କରାଯାଏ । ହସ୍ତଶିଳ୍ପର ଚାହିଦା ଅଧିକ ହୋଇଥିବାରୁ ପୁରୀ ନିକଟସ୍ଥ ଚନ୍ଦନପୁରର ଆଖପାଖ ଗାଁ ରଘୁରାଜପୁର ଓ ଦାଣ୍ଡସାହି ସ୍ୱତନ୍ତ୍ର ହେରିଟେଜ ଗ୍ରାମର ମାନ୍ୟତା ପାଇଅଛନ୍ତି ।

ଗ) କ୍ଷୁଦ୍ର ଓ ମଧ୍ୟମ ଶିଳ୍ପ – ବିଭିନ୍ନ ପ୍ରକାର ମଧ୍ୟମ ଓ କ୍ଷୁଦ୍ର ଶିଳ୍ପ ଉଦ୍ୟୋଗଙ୍କୁ ପ୍ରୋତ୍ସାହନ ଦେବା ପାଇଁ ଜିଲ୍ଲା କୃଷିକେନ୍ଦ୍ର, ପୁରୀରେ ୧୯୭୮ ମସିହାରେ ସ୍ଥାପିତ ହୋଇଥିଲା । ଏହି କେନ୍ଦ୍ରର ସହାୟତାରେ ପୁରୀ ସହରରେ କାଠର ଆସବାବପତ୍ର, ବାଉଁଶ ଶିଳ୍ପ, ଶାଳମଞ୍ଜି ତେଲ, କତା ଦଉଡ଼ି, ଧାନକଳ, ଆଚାର, ଖଜା, ଜାମ୍, ଜେଲି, ଆଇସ୍କ୍ରିମ ଇତ୍ୟାଦି ପ୍ରସ୍ତୁତ କରାଯାଏ ।

ପୁରୀରେ ଖଜା ପ୍ରସ୍ତୁତ ଗୋଟିଏ ଉଦାହରଣ ଆକାରରେ ନେଲେ ଶ୍ରୀଜଗନ୍ନାଥ ସଂସ୍କୃତିର ବିଶିଷ୍ଟ

ଗବେଷକ ଡ଼କ୍ଟର ଭାସ୍କର ମିଶ୍ରଙ୍କ (ପୌରୁଷ ବିଶେଷାଙ୍କ ୨୦୧୭) ଆଲୋଚ଼ନାରୁ ଜଣାଯାଏ ଯେ, ପୁରୀ ସହରରେ ବାର୍ଷିକ ୫ ରୁ ୬ କୋଟିର ଖଜା ବିକ୍ରି ହୁଏ ଓ ଏହି ଖଜା ଉତ୍ପାଦନ ଓ ବିକ୍ରି ପାଇଁ ଖଜାପଟି ବୋଲି ଗୋଟିଏ ପ୍ରସିଦ୍ଧ ସ୍ଥାନ ଅଛି । ଏହା ବ୍ୟତୀତ ଶ୍ରୀମନ୍ଦିରର ଆନନ୍ଦ ବଜାରରେ ଥିବା ୩୦ରୁ ଉର୍ଦ୍ଧ୍ୱ ଦୋକାନରେ ମଧ ଖଜା ବିକ୍ରି ହୁଏ । ସାଧାରଣତଃ ଭକ୍ତଙ୍କ ଚ଼ାହିଦାକୁ ନେଇ ଛୋଟ, ମଧ୍ୟମ ଓ ବଡ଼ଆକାରର ଖଜା ପ୍ରସ୍ତୁତ ହୋଇଥାଏ । ଏବେ ମଧ୍ୟ ବିନା ଚ଼ିନିରେ ଖଜା ପ୍ରସ୍ତୁତ ହୋଇ ମିଠା ଖାଉ ନଥିବା ଲୋକଙ୍କ ପାଇଁ ସ୍ୱତନ୍ତ୍ର ଭାବେ ମିଳୁଅଛି । ଏହି ଖଜା ମାସେ ପର୍ଯ୍ୟନ୍ତ ରହିପାରେ ବୋଲି ଏବଂ ଏହାର ଚ଼ାହିଦା ବହୁତ ଥିବାରୁ ଖଜା ଶିଳ୍ପ ବେଶ୍ ଉନ୍ନତି କରିଚ଼ାଲିଛି ।

ଘ) ମତ୍ସ୍ୟ ସମ୍ବନ୍ଧୀୟ ଶିଳ୍ପ – ପୁରୀର ଏକ ସୁଦୀର୍ଘ ବେଳାଭୂମି ଥିବାରୁ ପୁରୀ ସମୁଦ୍ରକୂଳରେ ମତ୍ସ୍ୟଜୀବୀମାନେ (ଯାହାଙ୍କୁ ନୋଳିଆ ବୋଲି ଡ଼କାଯାଏ) ବିଭିନ୍ନ ପ୍ରକାରର ସାମୁଦ୍ରିକ ଜୀବ, ମାଛ, ଚ଼ିଙ୍ଗୁଡ଼ି ଓ କଙ୍କଡ଼ା ଆଦି ଧରି ବଜାରରେ ଓ ହୋଟେଲରେ ବିକ୍ରି କରନ୍ତି । ମାଛକୁ ଉତ୍ତମରୂପେ ପ୍ୟାକିଙ୍ଗ କରି ମଧ୍ୟ ବିଦେଶକୁ ପଠାଇବାର ବ୍ୟବସ୍ଥା ଥିବାରୁ ମତ୍ସ୍ୟ ସମ୍ବନ୍ଧୀୟ ଶିଳ୍ପ ବେଶ୍ ଉନ୍ନତି ହୋଇପାରିଛି ।

ଙ) ଅନ୍ୟାନ୍ୟ ନିର୍ଭରଶୀଳ ବ୍ୟକ୍ତି ଓ ଅନୁଷ୍ଠାନ – ଶ୍ରୀମନ୍ଦିରର ସେବକ ସମ୍ପ୍ରଦାୟ ବ୍ୟତୀତ ବହୁ ବ୍ୟକ୍ତି ଓ ଅନୁଷ୍ଠାନ ବ୍ୟବସାୟିକ ଦୃଷ୍ଟିକୋଣରୁ ରୋଜଗାର କରିବାକୁ ସକ୍ଷମ ହୋଇଥାନ୍ତି । ସେମାନଙ୍କୁ ଦୁଇଭାଗରେ ବିଭକ୍ତ କରିହେବ ।

**୧) ମନ୍ଦିର ଭିତରେ ସେବାୟତଙ୍କ ବ୍ୟତୀତ ଅନ୍ୟ ବ୍ୟକ୍ତିବିଶେଷ ଯେଉଁମାନଙ୍କ ରୋଜଗାର ମନ୍ଦିରକୁ ଆସୁଥିବା ଯାତ୍ରୀଙ୍କ ଉପରେ ନିର୍ଭରଶୀଳ ।**

- ଦୀପ ବିକ୍ରେତା
- ତୁଳସୀମାଳ (ଜଗନ୍ନାଥଙ୍କ ମନ୍ଦିର ସାମ୍ନା) ବିକ୍ରେତା
- ପଦ୍ମମାଳ (ମହାଲକ୍ଷ୍ମୀଙ୍କ ସାମ୍ନା) ବିକ୍ରେତା
- ବଳିତା ବାଲୀ
- ନିର୍ମାଲ୍ୟ ବିକ୍ରେତା
- ଅବଢ଼ା ବୋହିବା ପାଇଁ ଭିତର ବୋଝିଆ
- ଅବଢ଼ା ବୋହିବା ପାଇଁ ବାହାର ବୋଝିଆ
- ବାଇଶ ପାହାଚ଼ରେ ଶ୍ରାଦ୍ଧ ଦେଉଥିବା ବ୍ରାହ୍ମଣ
- ମୁକ୍ତି ମଣ୍ଡପରେ ଉପବେଷ୍ଟିତ ବ୍ରାହ୍ମଣ
- ଶୁଖିଲି ମହାପ୍ରସାଦ ବିକ୍ରେତା
- ଅନ୍ନଦାନ ଆଟିକାର ସେବକ ଗୋଷ୍ଠୀ
- ମନ୍ଦିର ଭିତରର ପୁସ୍ତକ ବିକ୍ରେତା
- ଖେଇ ମହାପ୍ରସାଦ ବିକ୍ରି କରୁଥିବା ପସରତିଆ

**ଧୂଳିଆ ପଣ୍ଡା**

**୨) ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ମନ୍ଦିର ବାହାରେ ଥିବା ବିଭିନ୍ନ ବର୍ଗର ବ୍ୟକ୍ତି ଓ ଅନୁଷ୍ଠାନ–**

- ଗୋଟିପୁଅ ନାଚ଼ ଦଳ
- ଓଡ଼ିଶୀ ନାଚ଼ ଶିଳ୍ପୀ ଓ ସଂସ୍ଥା
- ପାଲା ଓ ଦାସକାଠିଆ ଶିଳ୍ପୀ
- ସଂଗୀତ ସିଡ଼ି ଓ କ୍ୟାସେଟ୍ ପ୍ରସ୍ତୁତ କରୁଥିବା ସଂସ୍ଥା ତଥା କଣ୍ଠଶିଳ୍ପୀ ଓ କଳାକାରବୃନ୍ଦ
- ମୂର୍ତ୍ତି (ପଥର ଓ କାଠ) ନିର୍ମାତା
- ଚିତ୍ରକର (ପଟ୍ଟଚ଼ିତ୍ର ଓ ବ୍ୟବସାୟିକ ପେଣ୍ଟିଂ)
- ପ୍ରକାଶକ (ବହୁ ସଂସ୍ଥା ପୁସ୍ତକ ପ୍ରକାଶନରେ ସାମିଲ ଅଛନ୍ତି)
- ପ୍ରଭୁଙ୍କ ପାଇଁ ପାଟବସ୍ତ୍ର (ବାନ୍ଧ ଶାଢ଼ୀ, ଟସର ବସ୍ତ୍ର) ବୁଣାଳୀ ।
- ପତିତପାବନ ବାନା ପ୍ରସ୍ତୁତକାରୀ ।





• ଚାନ୍ଦୁଆ ଶିଳ୍ପୀ ଓ ଶିଳ୍ପ ସଂସ୍ଥା ।

• ସୋଲ କାରିଗର

• ରଘୁରାଜପୁରର ଶିଳ୍ପକଳାର ଶିଳ୍ପୀକୁଳ ।

• ଯାତ୍ରୀ ଗୁମାସ୍ତା

• ପୁରୀସ୍ଥିତ ହୋଟେଲ

• ପୁରୀର ଯାତ୍ରୀ ପରିଚାଳନା ନିମନ୍ତେ ଟ୍ରାଭେଲ ଏଜେଣ୍ଟ ।

• ତାଳପତ୍ର ଭୋଗେଇ ନିର୍ମାତା ।

• ମହାପ୍ରସାଦ କୁଡୁଆ ନିର୍ମାତା ।

• ବଡ଼ଦାଣ୍ଡର ଦୁଇପାର୍ଶ୍ୱର ବିକ୍ରେତା (ଯେଉଁମାନେ ପସରା ମେଲାଇ ପଥର, କାଠ ଖୋଦେଇ, କାଠ ଖେଳନା,ମୁଖା, ପିତଳ, ବେତ, ତାରକସି କାମର ବିକ୍ରେତା)

• ପୁରୀ ସମୁଦ୍ର କୂଳର ଦୋକାନୀ (ଶାମୁକା, ଶଙ୍ଖ, ଲାଖ, କାଠ ଓ ପଥର ଖୋଦେଇ, ମାଳି, ଚୁଡ଼ି ଓ ଅନ୍ୟାନ୍ୟ ଜିନିଷ)

• ପୁରୀ ସମୁଦ୍ର କୂଳର ନୋଳିଆ (ଯାତ୍ରୀମାନଙ୍କୁ ଗାଧୋଇ ଦେବା)

• ସମୁଦ୍ର କୂଳରେ ଓଟରେ ବୁଲାଇବା ବ୍ୟକ୍ତି

• ପୁରୀ ଖଜା ବିକ୍ରେତା

• ସ୍ୱର୍ଗଦ୍ୱାରର ବ୍ୟବସ୍ଥାରେ ଜଡ଼ିତ ବ୍ୟକ୍ତିବିଶେଷ

• ଭୁବନେଶ୍ୱରରୁ ପୁରୀ ରାସ୍ତାରେ ପଇଡ଼ ବିକ୍ରେତା

• ଯାତ୍ରୀ ପର୍ଯ୍ୟଟନରେ ସଂଶ୍ଲିଷ୍ଟ ଟାଉନ ବସ୍, କାର୍, ଟ୍ୟାକ୍ସି, ମିନି ବସ୍, ଟୁରିଷ୍ଟ ବସ୍

• ଭାରତୀୟ ରେଳବାଇର ଟ୍ରେନ୍ (ଲୋକାଲ ଓ ରାଜ୍ୟ ବାହାରୁ ଆସୁଥିବା) ଓ ବିମାନ ସେବା ସଂସ୍ଥା ।

**ଶ୍ରୀମନ୍ଦିରର ଅର୍ଥନୈତିକ ସମୀକ୍ଷା**

ଶ୍ରୀକ୍ଷେତ୍ର ପୁରୀର ଅର୍ଥନୈତିକ ସମୀକ୍ଷା ଶ୍ରୀମନ୍ଦିର, ଶ୍ରୀ ମହାପ୍ରସାଦ ଓ ଶ୍ରୀମନ୍ଦିରର ସେବକ ତଥା ଶ୍ରୀମନ୍ଦିର ସହିତ ଜଡ଼ିତ ଅନ୍ୟାନ୍ୟ ବ୍ୟକ୍ତିଙ୍କୁ ବାଦ୍ ଦେଇ ହେବ ନାହିଁ କାରଣ ଏହା ଶ୍ରୀକ୍ଷେତ୍ରର ଏକ ମୁଖ୍ୟ ନିର୍ଣ୍ଣାୟକ ଅଟେ । ପ୍ରଥମେ ଶ୍ରୀମନ୍ଦିରର ଆୟ ଓ ବ୍ୟୟର ସମୀକ୍ଷା କଲେ ଶ୍ରୀମନ୍ଦିରର ଅର୍ଥନୈତିକ ଅବସ୍ଥା ଜଣାପଡ଼ିବ ।

ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନା କମିଟି ଶ୍ରୀଜଗନ୍ନାଥ ମନ୍ଦିର ଆଇନ୍ ୧୯୫୪, (ଯାହା ୨୦୦୪ ମସିହାରେ ସଂଶୋଧିତ) ଅନୁଯାୟୀ ରାଜ୍ୟ ସରକାରଙ୍କ ଦ୍ୱାରା ଗଠିତ ହୋଇଥାଏ, ଯେଉଁଥିରେ ଶ୍ରୀମନ୍ଦିର ପ୍ରଶାସନ, ରାଜ୍ୟ ପ୍ରଶାସନ (ପୁରୀ ଜିଲ୍ଲାପାଳ, ପୋଲିସ ସୁପରି ଟେଣ୍ଡେଣ୍ଟ, ଆଇନ୍ ବିଭାଗ, ପ୍ରତ୍ନତତ୍ତ୍ୱ ବିଭାଗ) ସେବକ ସମ୍ପ୍ରଦାୟ ପ୍ରତିନିଧି, ମଠ ପ୍ରତିନିଧି, ମୁକ୍ତିମଣ୍ଡପ ପ୍ରତିନିଧି ତଥା ଅର୍ଥ ବିଭାଗ ପରାମର୍ଶଦାତା ସଭ୍ୟ ଆକାରରେ ଅବସ୍ଥାପିତ ହୁଅନ୍ତି ଓ ଗଜପତି ମହାରାଜା ଏହାର ଅଧ୍ୟକ୍ଷଭାବେ କର୍ତ୍ତବ୍ୟ ସମ୍ପାଦନ କରନ୍ତି । ଏହି କମିଟି ପ୍ରତିବର୍ଷ ଶ୍ରୀମନ୍ଦିର ପାଇଁ ଆୟ ଓ ବ୍ୟୟ ନୀତି ନିର୍ଦ୍ଧାରଣ କରିଥାଏ ।

**ଶ୍ରୀମନ୍ଦିର ବଜେଟ୍**

**ଶ୍ରୀମନ୍ଦିର ବଜେଟର ସଂକ୍ଷେପ ବିଶ୍ଳେଷଣ (କୋଟିରେ)**

| ବର୍ଷ | ଆୟ | ବ୍ୟୟ | |
|---|---|---|---|
| ୧୯୯୬–୯୭ | ୩.୬୦ | ୩.୪୦ | .୦୨୦ |
| ୨୦୦୧–୦୨ | ୮.୧୮ | ୮.୦୨ | .୦୬୦ |





## ଶ୍ରୀମନ୍ଦିର ବଜେଟ୍

### ଶ୍ରୀମନ୍ଦିର ବଜେଟର ସଂକ୍ଷେପ ବିଶ୍ଳେଷଣ (କୋଟିରେ)

| ବର୍ଷ | ଆୟ | | ବ୍ୟୟ |
|---|---|---|---|
| ୨୦୦୬-୦୭ | ୨୧.୦୦ ୨୦.୯୪ | | .୦୬୦ |
| ୨୦୧୧-୧୨ | ୬୦.୫୫ ୨୦.୭୭ | | ୩୯.୬୮ |
| ୨୦୧୨-୧୩ | ୬୦.୮୩ ୨୪.୬୬ | | ୩୬.୧୭ |
| ୨୦୧୩-୧୪ | ୭୧.୧୭ ୨୮.୨୧ | | ୪୨.୯୬ |
| ୨୦୧୪-୧୫ | ୧୦୪.୫୯ | ୫୬.୫୩ | ୪୮.୦୬ |
| ୨୦୧୫-୧୬ | ୧୩୭.୭୬ | ୧୦୮.୬୮ | ୨୯.୦୮ |
| ୨୦୧୬-୧୭ | ୧୪୦.୬୧ | ୧୧୨.୩୧ | ୨୮.୩୮ |
| ୨୦୧୭-୧୮ | ୧୬୯.୬୦ | ୧୨୧.୧୫ | ୪୮.୪୫ |

## ଶ୍ରୀମନ୍ଦିର ଓ ମହାପ୍ରସାଦ

ଶ୍ରୀମନ୍ଦିରରେ ପ୍ରସ୍ତୁତ ମହାପ୍ରସାଦ ମଧ୍ୟ ବିଶ୍ୱର ଏକ ବିରଳ ବ୍ୟବସ୍ଥା । କୁହାଯାଇଥାଏ ଯେ, ଏହା ବିଶ୍ୱର ସର୍ବବୃହତ୍ ପାକଶାଳା । ଏହି ପାକଶାଳାକୁ ନିର୍ଭର କରି ବହୁ ସେବକ ତଥା ଯୋଗାଣିଆ ଏପରିକି ରୋଷଶାଳାକୁ ଯୋଗାଇ ଦେଉଥିବା ଦୈନିକ ସରଞ୍ଜାମର ମାତ୍ରା ହିସାବ କଲେ ଜଣାପଡ଼େ ଯେ, ଏହା ଏକ ବୃହତ୍ ବ୍ୟବସ୍ଥା । ପାକଶାଳାରେ ରୋଷେଇ ପାଇଁ ପ୍ରତିଦିନ ଯୋଗାଇ ଦେବା ପାଇଁ ମାଟିପାତ୍ର ମଧ୍ୟ ବହୁଳ ପରିମାଣରେ ବ୍ୟବହାର କରାଯାଏ ଓ ଜାଳେଣୀ କାଠ ମଧ୍ୟ ପର୍ଯ୍ୟାପ୍ତ ପରିମାଣରେ ମହଜୁଦ୍ ରଖାଯାଏ । ଛପନଭୋଗୀ ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ କେବଳ ଭୋଗମଣ୍ଡପରେ ହେଉଥିବା ମହାପ୍ରସାଦର ବାର୍ଷିକ ଆନୁମାନିକ ହିସାବ ନିମ୍ନରେ ପ୍ରଦାନ କରାଗଲା ।

### ଶ୍ରୀମନ୍ଦିରରେ ଯାତ୍ରୀମାନଙ୍କ ପାଇଁ ମହାପ୍ରସାଦ ପ୍ରସ୍ତୁତିର ବିବରଣୀ

| ଦିନର ବିବରଣୀ | ଦୈନିକ ପ୍ରସ୍ତୁତି | ଦିନ ସଂଖ୍ୟା | ମୋଟ ବାର୍ଷିକ ପ୍ରସ୍ତୁତି |
|---|---|---|---|
| କ) ପ୍ରତିଦିନ(ସାଧାରଣ ଦିନ) | ୧୦,୦୦୦ | ୩୬୫ | ୩୬,୫୦,୦୦୦ |
| ଖ) କାର୍ତ୍ତିକ ମାସରେ | ୩୦,୦୦୦ | ୩୦ | ୯,୦୦,୦୦୦ |
| ଗ) ଛୁଟିଦିନ, ପର୍ବପର୍ବାଣି | ୩୦,୦୦୦ | ୫୦ | ୧୫,୦୦,୦୦୦ |
| ଘ) ବିବାହ ବ୍ରତଘର ପାଇଁ | ୪୦,୦୦୦ | ୫୦ | ୨୦,୦୦,୦୦୦ |
| ଙ) ଜନ୍ମ ପାଇଁ ଏକୋଇଶା ଓ ମୃତ୍ୟୁ ପାଇଁ ଏକାଦଶାହ | ୧୦,୦୦୦ | ୩୬୫ | ୩୬,୫୦,୦୦୦ |
| | | ମୋଟ | **୧,୧୭,୦୦,୦୦୦** |





ଉପରୋକ୍ତ ହିସାବରୁ ଜଣାଯାଏ ଯେ, ପ୍ରତିବର୍ଷ ହାରାହାରି କୋଟିଏରୁ ଊର୍ଦ୍ଧ୍ୱ ଲୋକଙ୍କ ପାଇଁ ମହାପ୍ରସାଦ ରନ୍ଧନ ହୋଇଥାଏ ।

ରୋଷଘରର ଦାୟିତ୍ୱରେ ଥିବା ସୂପକାରଙ୍କ ହିସାବରେ ପଚ଼ାଶ ଲୋକଙ୍କ ପାଇଁ ଗୋଟିଏ ସେଟ୍‌ରେ (ଯାହା ଦଶକିଲୋ ଚ଼ାଉଳର ରୋଷେଇ ସହ ଆନୁଷଙ୍ଗିକ ଡ଼ାଲି, ବେସର, ମହୁର , ଖଟା ସହ) ଆନୁମାନିକ ଟ୪୬୦୦ଙ୍କା ଖର୍ଚ୍ଚ ହୁଏ ଓ ତାହା ହାରାହାରି ୫,୦୦୦ ଟଙ୍କାରେ ବିକ୍ରି ହୁଏ । ଯାହାର ଅର୍ଥ ହେଲା ପ୍ରତିବର୍ଷ ହାରାହାରି ୨ଲକ୍ଷ ସେଟ୍ ରୋଷେଇ ହୁଏ, ଯାହାର ଆନୁମାନିକ ମୂଲ୍ୟ ୮୦୦ କୋଟିରୁ ଊର୍ଦ୍ଧ୍ୱ ଓ ତାହାର ଲାଭ ବାବଦରେ ହାରାହାରି ୧୨କୋଟି ହୋଇଥାଏ ।

ଏହାବ୍ୟତୀତ ଶ୍ରୀମନ୍ଦିରରେ ପ୍ରଭୁଙ୍କ ପାଇଁ ଗୋପାଳବଲ୍ଲଭ, ସକାଳଧୂପ, ମଧ୍ୟାହ୍ନ ଧୂପ, ସନ୍ଧ୍ୟାଧୂପ ଓ ବଡ଼ସିଂହାର ଧୂପ (ଯାହା କୋଠଭୋଗ ବା ରାଜଭୋଗ ନାମରେ ନାମିତ), ବିଭିନ୍ନ ପର୍ବପର୍ବାଣି ଭୋଗ, ପାର୍ଶ୍ୱ ଦେବାଦେବୀଙ୍କ ଦୈନିକ ଭୋଗ ପାଇଁ ବହୁ ସେବକ ନିୟୋଜିତ ରହି କାର୍ଯ୍ୟ ସମ୍ପାଦନ କରିଥାନ୍ତି, ଯାହାର ଖର୍ଚ୍ଚ ଅଧିକାଂଶ ଶ୍ରୀମନ୍ଦିର ପ୍ରଶାସନ ବହନ କରିଥାନ୍ତି ।

**ଶ୍ରୀମନ୍ଦିର ସେବାୟତମାନଙ୍କ ସାମାଜିକ ଓ ଅର୍ଥନୈତିକ ସର୍ବେକ୍ଷଣ**

ପ୍ରଭୁ ଶ୍ରୀଜଗନ୍ନାଥ ଓ ଅନ୍ୟ ବିଗ୍ରହମାନଙ୍କର ଜଟିଳ ନୀତି, ସେବାପୂଜା, ସମଗ୍ର ଭାରତବର୍ଷରେ ସୁପ୍ରତିଷ୍ଠିତ ଅନ୍ୟାନ୍ୟ ମନ୍ଦିର ସହ ତୁଳନୀୟ ନୁହେଁ । କେବଳ ଦୈନନ୍ଦିନ ସେବା ବ୍ୟତୀତ ପର୍ବପର୍ବାଣି, ସେବାପୂଜା ଓ ଅନ୍ୟାନ୍ୟ ବିଶିଷ୍ଟ ଯାତ୍ରା ଶ୍ରୀଜଗନ୍ନାଥ ସଂସ୍କୃତିକୁ ଅତୁଳନୀୟ କରି ଗଢ଼ିତୋଳିଛି । ଏହି ବିସ୍ତୃତ ସେବାପୂଜା ପାଇଁ ବହୁ ପ୍ରକାରର ସେବକ ନିୟୋଜିତ ହୋଇ ନିଷ୍ଠାର ସହ ସେବାପୂଜା କରିଆସୁଛନ୍ତି ।

ମାଦଳାପାଞ୍ଜି ଅନୁଯାୟୀ ଯଯାତି କେଶରୀଙ୍କ ସମୟରେ ୬ ପ୍ରକାର ସେବକ ସେବାପୂଜା ସହ ସଂଶ୍ଳିଷ୍ଟ ଥିଲେ । ଗଙ୍ଗବଂଶର ପ୍ରଖ୍ୟାତ ନରପତି ଅନଙ୍ଗଭୀମ ଦେବଙ୍କ ସମୟରେ ଶ୍ରୀମନ୍ଦିରରେ ଛତିଶା ନିଯୋଗର ସୃଷ୍ଟି ହୋଇଥିଲା । ବ୍ରିଟିଶ ଶାସନ ସମୟରେ ତାହା ୨୫୦ରେ ପହଞ୍ଚିଥିଲା । ୧୯୫୨ ମସିହାରେ ପ୍ରସ୍ତୁତ ଶ୍ରୀମନ୍ଦିର ସତ୍ତ୍ୱଲିପି ଅନୁଯାୟୀ ୧୧୯ ପ୍ରକାରର ସେବା ଲିପିବଦ୍ଧ ହୋଇଅଛି । ଏହି ୧୧୯ ସେବାରେ ବେହେରା କରଣ ସେବା ପରେ ମିଶା ଯାଇ ୧୨୦ ପ୍ରକାର ସେବକ ରହିଛନ୍ତି ମାତ୍ର ତା' ମଧ୍ୟରୁ ପ୍ରାୟ ୧୫ ପ୍ରକାର ସେବା ଆଉ ସମ୍ପନ୍ନ ହେଉ ନଥିବାରୁ ବର୍ତ୍ତମାନ ୧୦୫ ପ୍ରକାର ସେବାରେ ସେବକମାନେ ନିୟୋଜିତ ହୋଇଛନ୍ତି । ଏହି ସେବକ ପରିବାର ହେଉଛନ୍ତି ଶ୍ରୀମନ୍ଦିର ତଥା ଶ୍ରୀକ୍ଷେତ୍ରର ଆଧ୍ୟାତ୍ମିକ ପରମ୍ପରାର ବାହକ, ଯେଉଁମାନଙ୍କର ଅର୍ଥନୈତିକ ବିଶ୍ଳେଷଣ ପାଇଁ ଶ୍ରୀମନ୍ଦିର ତରଫରୁ ୧୯୮୫ ମସିହାରେ ନିଷ୍ପତ୍ତି ନିଆଯାଇ ୧୯୮୮ ମସିହାରେ ସେମାନଙ୍କର ସାମାଜିକ ଓ ଅର୍ଥନୈତିକ ସର୍ବେକ୍ଷଣ ଅନୁଷ୍ଠିତ ହୋଇଥିଲା । ପରବର୍ତ୍ତୀ ସମୟରେ ୨୦୦୩ ମସିହାରେ ପରିଚ଼ାଳନା କମିଟିର ନିଷ୍ପତ୍ତି ଅନୁଯାୟୀ ୨୦୦୫ ମସିହାରେ ଦ୍ୱିତୀୟ ସର୍ବେକ୍ଷଣ ଅନୁଷ୍ଠିତ ହୋଇଥିଲା । ଏହା ପରେ ୨୦୧୩ ମସିହାରେ ଆନୁଷ୍ଠାନିକ ଭାବେ ''ନବକୃଷ୍ଣ ଚୌଧୁରୀ ସେଣ୍ଟର ଫର ଡେଭଲପ୍‌ମେଣ୍ଟ ଷ୍ଟଡ଼ିଜ'' ନାମକ ଏକ ଖ୍ୟାତନାମା ସଂସ୍ଥାକୁ ଏହି କାର୍ଯ୍ୟ ସମ୍ପାଦନ କରିବା ପାଇଁ ଦାୟିତ୍ୱ ଦିଆଯାଇଥିଲା, ଯାହା ହେଉଛି ଶ୍ରୀମନ୍ଦିର ପ୍ରଶାସନ ତରଫରୁ ଏହି ଦିଗରେ ଶେଷ ପ୍ରଚ଼େଷ୍ଟା ।

**ଶ୍ରୀମନ୍ଦିର ସେବାୟତଙ୍କ ବିବରଣୀ**

| ସେବାୟତଙ୍କ ସଂଖ୍ୟା | ୧୯୮୮ ସର୍ଭେ | ୨୦୦୫ ସର୍ଭେ | ୨୦୧୩ ସର୍ଭେ |
|---|---|---|---|
| ସେବାୟତ ପରିବାର ସଂଖ୍ୟା | ୬୯୬୨ | ୮୩୩୮ | ୮୭୭୫ |
| | ୧୧୨୯ | ୧୩୪୮ | ୧୪୯୨ |

**ଶ୍ରୀମନ୍ଦିର ସେବାୟତଙ୍କ ଆର୍ଥିକ ବିବରଣୀ**

| **ରୋଜଗାରର ମାଧ୍ୟମ** | **ଅନୁପାତ** |
|---|---|
| ଶ୍ରୀମନ୍ଦିର ସେବା | ୨୧% |
| ଯାତ୍ରୀ ସେବା | ୨୦% |
| ଚାଷ | ୧% |
| ବ୍ୟବସାୟ | ୨୮% |
| ଚାକିରି | ୨୬% |
| ଅନ୍ୟାନ୍ୟ | ୪% |
| **ମୋଟ** | **୧୦୦%** |

(ଶ୍ରୀ ନବକୃଷ୍ଣ ଚୌଧୁରୀ ସେଣ୍ଟର ଫର ଡେ଼ଭଲପମେଣ୍ଟ ଷ୍ଟଡ଼ିଜ୍, ଓଡ଼ିଶା, ୨୦୧୩)

ଶ୍ରୀମନ୍ଦିରର ସେବାୟତମାନେ ଶ୍ରୀମନ୍ଦିରରେ ସେବାରୁ ଯାହା ରୋଜଗାର କରନ୍ତି ତାହା ତାଙ୍କର ଭରଣପୋଷଣରେ ସମ୍ପୂର୍ଣ୍ଣ ସହାୟକ ହୁଏନାହିଁ । ପ୍ରାୟ ୫୦ଭାଗ ସେବକ ଶ୍ରୀମନ୍ଦିର ସେବାରୁ ମିଳୁଥିବା ଟଙ୍କାରେ ଚଳୁଥିବା ବେଳେ ବାକି ୫୦ଭାଗ ସେବାୟତ ବ୍ୟବସାୟ, ଚାକିରି ଓ କିଛି ଯାତ୍ରୀ ସେବାରୁ ଆୟ କରିଥାନ୍ତି ।

୨୦୧୩ ମସିହା ସର୍ଭେକ୍ଷଣ ଅନୁଯାୟୀ ସେବକ ସମ୍ପ୍ରଦାୟଙ୍କ ମଧ୍ୟରୁ ପ୍ରାୟ ୬୦% ସେବକଙ୍କ ବାର୍ଷିକ ଆୟ ଏକଲକ୍ଷରୁ ଉର୍ଦ୍ଧ୍ୱ ଅଟେ । ଅନ୍ୟମାନଙ୍କ ଆୟ ତା'ଠାରୁ କମ୍ ଥିବାରୁ ସେବକମାନେ ଅନ୍ୟ ଜୀବିକା ପାଇଁ ପ୍ରଚେଷ୍ଟା କରିଥାନ୍ତି ।

**ଶ୍ରୀକ୍ଷେତ୍ର ଓ ଶ୍ରୀମନ୍ଦିରର ବ୍ୟକ୍ତି ଓ ଅନୁଷ୍ଠାନ ଦ୍ୱାରା ରୋଜଗାରର ଶ୍ରେଣୀ ବିଭାଗ**

ଶ୍ରୀକ୍ଷେତ୍ର ଓ ଶ୍ରୀମନ୍ଦିରରେ ବିଭିନ୍ନ କାର୍ଯ୍ୟରତ ବ୍ୟକ୍ତି ଓ ଅନୁଷ୍ଠାନମାନଙ୍କର ଗୋଟିଏ ଅର୍ଥନୈତିକ ସର୍ଭେ ପ୍ରାବନ୍ଧିକଙ୍କ ଦ୍ୱାରା ୨୦୧୮–୧୯ରେ କରାଯାଇଥିଲା, ଯାହାକୁ ଭିତ୍ତିକରି ନିମ୍ନରେ ରୋଜଗାରର ବିଭିନ୍ନ ବିଭାଗରେ ସ୍ଥାନିତ କରାଯାଇଅଛି ।

କ) ମାସିକ ୧୫,୦୦୦ରୁ ୩୦,୦୦୦ ଟଙ୍କା ରୋଜଗାର କରୁଥିବା ବ୍ୟକ୍ତି :

ଫୁଲମାଳ ବିକ୍ରେତା, ତୁଳସୀମାଳ ବିକ୍ରେତା, ବଳିତାବାଲୀ, ମୁକ୍ତିମଣ୍ଡପର ଉପବେଶିତ ବ୍ରାହ୍ମଣ, ବାଇଶ ପାହାଚରେ ଶ୍ରାଦ୍ଧ ଦେବା ପାଇଁ ବସୁଥିବା ବ୍ରାହ୍ମଣ, ପୁରୀ–ଭୁବନେଶ୍ୱର ରାସ୍ତାର ପଇଡ଼ ବିକ୍ରେତା ।

ଖ) ମାସିକ ୩୦,୦୦୦ରୁ ଉର୍ଦ୍ଧ୍ୱ ମାତ୍ର ୭୫,୦୦୦ ଟଙ୍କାରୁ କମ୍ ରୋଜଗାର କରୁଥିବା ବ୍ୟକ୍ତି ଓ ଅନୁଷ୍ଠାନ :

ଖଜା ବିକ୍ରେତା, ଦୀପ ବିକ୍ରେତା, ବାହାର ଦେଉଳ ପୂଜକ, ଧୂଳିଆ ପଣ୍ଡା, କୁମ୍ଭାର (ମାଟି ପାତ୍ର ନିର୍ମାତା), ତାଳପତ୍ର (ଭୋଗେଇ ନିର୍ମାତା), ପୁରୀ ସମୁଦ୍ରକୂଳ ବେପାରୀ, ବଡ଼ଦାଣ୍ଡର ବେପାରୀ, ପସରତିଆ (ମନ୍ଦିର ସେବକଙ୍କ ଖେଇ ବିକ୍ରେତା), ରଘୁରାଜପୁରର ଶିଳ୍ପୀ, ଗୋଟିପୁଅ ନାଚ଼ ସଂସ୍ଥା, ଭିତର ବୋଝିଆ, ବାହାର ବୋଝିଆ ।

ଗ) ମାସିକ ୭୫,୦୦୦ରୁ ଊର୍ଦ୍ଧ୍ୱ ମାତ୍ର ୧,୫୦,୦୦୦ ଟଙ୍କାରୁ କମ୍ ରୋଜଗାର କରୁଥିବା ବ୍ୟକ୍ତି ଓ ଅନୁଷ୍ଠାନ :

ଯାତ୍ରୀ ଗୁମାସ୍ତା, ହସ୍ତଶିଳ୍ପ ସାମଗ୍ରୀ ବିକ୍ରେତା, ଟ୍ରାଭେଲ ଏଜେଣ୍ଟ, ଓଡ଼ିଶୀ ନୃତ୍ୟ ଅନୁଷ୍ଠାନ, ବସ୍ ମାଲିକ ।

ଘ) ମାସିକ ୧,୫୦,୦୦୦ରୁ ଅଧିକ ଉପାର୍ଜନ କରୁଥିବା ସଂସ୍ଥା/ବ୍ୟକ୍ତିବିଶେଷ :

ହୋଟେଲ ମାଲିକ, କୋଠା ନିର୍ମାଣକାରୀ ସଂସ୍ଥା ।

**ପରୋକ୍ଷ ବ୍ୟବସାୟ**

ଶ୍ରୀଜଗନ୍ନାଥଙ୍କୁ ନେଇ ନିର୍ମାଣ ହୋଇଥିବା ୨୮ଟି ଚ଼ଳଚ୍ଚିତ୍ର ୧୯୪୯ରେ 'ଲଳିତା'ଠାରୁ ଆରମ୍ଭ କରି ୨୦୦୭ରେ ବହୁ ଭାଷୀ 'ଜୟ ଜଗନ୍ନାଥ' ପର୍ଯ୍ୟନ୍ତ । ଏହା ବ୍ୟତୀତ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ବହୁ ଭଜନ ଓ ଜଣାଣର ପ୍ରାରମ୍ଭରୁ ଗ୍ରାମୋଫୋନ୍ ରେକର୍ଡ଼ ଓ ପରେ ପରେ ଅଡ଼ିଓ ଓ ଭିଡ଼ିଓ ହୋଇ ବିଭିନ୍ନ କ୍ୟାସେଟ୍ କମ୍ପାନୀ ବହୁଳଭାବେ ବ୍ୟବସାୟ କରି ଲାଭବାନ ହୋଇଛନ୍ତି ।

ଓଡ଼ିଶା ରାଜ୍ୟ ପର୍ଯ୍ୟଟନ ବିଭାଗ ଗୋଟିଏ ଯାତ୍ରୀ ସର୍ବେକ୍ଷଣ ୨୦୦୮ ଓ ତା'ର ପାଞ୍ଚବର୍ଷ ପରେ ୨୦୧୩ ମସିହାରେ କାର୍ଯ୍ୟ କରିଥିଲେ । ସେମାନଙ୍କ ହିସାବ ଯାତ୍ରୀଙ୍କର ମୁଣ୍ଡପିଚ୍ଛା ଖର୍ଚ୍ଚ ୨୭୬୩ ଟଙ୍କା ଓ ବିଦେଶୀ ଯାତ୍ରୀଙ୍କ ଖର୍ଚ୍ଚ ୪୧୬୭ ଟଙ୍କା ହୋଇଥାଏ । ପର୍ଯ୍ୟଟନ ବିଭାଗର ହିସାବକୁ ଅନୁଧ୍ୟାନ କଲେ ଜଣାଯାଏ, ପୁରୀରେ ଯାତ୍ରୀମାନଙ୍କ ଦ୍ୱାରା ହାରାହାରି ଖର୍ଚ୍ଚର ମୁଖ୍ୟ ଅଂଶ ଗମନାଗମନ, ହୋଟେଲ ରହଣି, ଖାଦ୍ୟପେୟ, କିଣାକିଣି ଓ ମନ୍ଦିରରେ ହୋଇଥାଏ ।

ପୁରୀ ସହରରେ ଯାତ୍ରୀମାନଙ୍କ ଆଗମନର ସଠିକ୍ ଅର୍ଥନୈତିକ ପ୍ରଭାବ କୌଣସି ସଂସ୍ଥା ଦ୍ୱାରା ଏପର୍ଯ୍ୟନ୍ତ ହୋଇନାହିଁ ମାତ୍ର ରାଜ୍ୟ ସରକାରଙ୍କର ଯାତ୍ରୀପିଚ୍ଛା ଖର୍ଚ୍ଚର ହିସାବକୁ ନେଲେ ଅତି କମ୍‌ରେ ପାଞ୍ଚ ହଜାର କୋଟିର ବ୍ୟବସାୟ ହେଉଥିବାର ଅଟକଳ କରାଯାଇପାରିବ ।

ଏହା ନିଃସନ୍ଦେହରେ କୁହାଯାଇପାରେ ବିଭିନ୍ନ ବ୍ୟକ୍ତି, ଅନୁଷ୍ଠାନ ଓ ବ୍ୟବସାୟିକ ସଂସ୍ଥା ପୁରୀକୁ କ୍ରମବର୍ଦ୍ଧିଷ୍ଣୁ ଯାତ୍ରୀ ଆଗମନ ଫଳରେ ଦିନକୁ ଦିନ ଅଧିକରୁ ଅଧିକ ରୋଜଗାର ମାଧ୍ୟମ ଖୋଜି ପାଉଛନ୍ତି । ପୁରୀ ଶ୍ରୀଜଗନ୍ନାଥ ଓ ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ ଯୋଗୁଁ ଯାତ୍ରୀ ସଂଖ୍ୟା ବୃଦ୍ଧି ସହ ବହୁ ବ୍ୟକ୍ତି ଓ ଅନୁଷ୍ଠାନର ଉନ୍ନତି ଭବିଷ୍ୟତରେ ବଢ଼ି ଚ଼ାଲିବ, ଏଥିରେ ସନ୍ଦେହ ନାହିଁ ।

ଏ/୬୬, ଅନନ୍ୟା, ପିପିଏଲ ହାଉସିଂ କଲୋନୀ
ଖଣ୍ଡଗିରି ଛକ, ଭୁବନେଶ୍ୱର– ୭୫୧୦୧୯



# ଶ୍ରୀକ୍ଷେତ୍ରରେ ମହାପ୍ରଭୁଙ୍କ ଶ୍ରୀକୃଷ୍ଣ ଲୀଳା

ରବୀନ୍ଦ୍ର ନାଥ ମିଶ୍ର

ଅନନ୍ତ କୋଟି ବିଶ୍ୱ ବ୍ରହ୍ମାଣ୍ଡର ନାୟକ, ସକଳ ତତ୍ତ୍ୱ ଦର୍ଶନର ସାର ସ୍ୱରୂପ ପରମ ବ୍ରହ୍ମ ପରମାତ୍ମା ସାକାର ରୂପ ଧାରଣ ପୂର୍ବକ ନୀଳକନ୍ଦରରେ କାହିଁ କେଉଁ ଅନାଦି କାଳରୁ ପ୍ରତ୍ୟହ ଲୌକିକ ମାନବୀୟ ଲୀଳା ଆଚରଣ କରିବା ସହ ଅତି ମାନବୀୟ ଲୀଳା ମଧ୍ୟ ସନ୍ଦର୍ଶନ କରାଇ ଭକ୍ତଗଣଙ୍କୁ ବିମୋହିତ କରୁଛନ୍ତି । ଅଧା ଗଢ଼ା ଅଥଚ କମନୀୟ ତାଙ୍କ ରୂପର କୌଣସି ଉପମା ନାହିଁ । ସେ ନିଜେ ହିଁ ନିଜର ଉପମା । ପାଦ ନାହିଁ କିନ୍ତୁ ଭକ୍ତ ପାଇଁ କଳା ଧଳା ଘୋଡା ଚଢ଼ି ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇପାରନ୍ତି । କାନ ନାହିଁ ଅଥଚ ଗୀତଗୋବିନ୍ଦର ମଧୁର ପଦାବଳୀ ଶୁଣିବାକୁ ବାଇଗଣ କିଆରିରେ ପଶି ଖଣ୍ଡୁଆ ପାଟ ଚିରିପାରନ୍ତି । ହାତ ନାହିଁ ହେଲେ ଦାସିଆ ବାଉରୀ ପ୍ରଦତ୍ତ ନଡିଆକୁ ହାତ ବଢ଼େଇ ନେଇ ପାରନ୍ତି ।

ସତରେ ସେ ବଡ ବିଚିତ୍ର ଓ ବିସ୍ମୟକର ଦେବତା । ଅବ୍ୟକ୍ତ, ଅଚିନ୍ତ୍ୟ, ଅପରିସୀମା ଓ ଅନନ୍ତ ଚେତନାର ପ୍ରତୀଭୂ ସେ । କଳିଯୁଗର ମୁଖ୍ୟ ଆରାଧ୍ୟ ଦେବତା ଭାବେ ସେ ଆରାଧିତ ହେଉଥିବା ବେଳେ ତାଙ୍କୁ ଚାରିଯୁଗର ଉପାସ୍ୟ ଦେବତା ରୂପେ ମଧ୍ୟ ଉପାସନା କରାଯାଇଥାଏ । ବୌଦ୍ଧ, ଜୈନ, ଶୈବ, ଶାକ୍ତ, ସୌର, ଗାଣପତ୍ୟ ଓ ବୈଷ୍ଣବ ସଂପ୍ରଦାୟର ମଧ୍ୟ ଇଷ୍ଟଦେବତା ସେ । ଆର୍ଯ୍ୟ ଓ ଅନାର୍ଯ୍ୟଙ୍କର ପୂଜିତ ବିଗ୍ରହ ସେ ନାରୀ ପୁଣି ପୁରୁଷ ଆଉ ପୁଣି ପୁରୁଷୋତ୍ତମ ମଧ୍ୟ ଅଟନ୍ତି । ମୁସଲମାନ ଖ୍ରୀଷ୍ଟିୟାନମାନେ ମଧ୍ୟ ତାଙ୍କ ଦ୍ୱାରା ପ୍ରଭାବିତ । ନାନା ମତ, ତତ୍ତ୍ୱ , ଧର୍ମ ଓ ଦର୍ଶନରୁ ସେ ମଧ୍ୟ ଊର୍ଦ୍ଧ୍ୱରେ । କେବଳ ଶାନ୍ତି, ମୈତ୍ରୀ, ଭାବ, ଭକ୍ତି, ପ୍ରେମ ଓ ପ୍ରୀତି ରଜ୍ଜୁରେ ସେ ଆବଦ୍ଧ ହୋଇପାରନ୍ତି ।

କେତେବେଳେ ସେ ସତ୍ୟ ଯୁଗର ଉଗ୍ରବୀର ଶ୍ରୀନୃସିଂହ ରୂପେ ଉପାସିତ ହୁଅନ୍ତି ତ କେତେବେଳେ ତ୍ରେତୟାର ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ର ଭାବେ ପୂଜିତ ହୁଅନ୍ତି । ପୁନଃ ସମୟରେ ସେ ଦ୍ୱାପରର ଶ୍ରୀକୃଷ୍ଣ ରୂପେ ଆରାଧିତ ହୋଇଥାନ୍ତି । ଅତଏବ ତାଙ୍କ ଲୀଳାର ରହସ୍ୟ ଦେବତାମାନେ ବୁଝିବାକୁ ଅସମର୍ଥ । ସାଧାରଣ ମନୁଷ୍ୟ ବା କାହୁଁ ବୁଝିବ ? ଏଇଥିପାଇଁ ତ ବିଶ୍ୱର କୋଣ ଅନୁକୋଣରୁ ନାନା ମତ ଓ ପଥର ଧର୍ମଗୁରୁ, ଆଚାର୍ଯ୍ୟ, ଧର୍ମ ସଂସ୍କାରକଗଣ ଧାଇଁ ଆସନ୍ତି ଏଠାକୁ ମହାପ୍ରଭୁଙ୍କ କୃପାକଣିକା ଟିକିଏ ପାଇବା ପାଇଁ । ଆମ କ୍ଷେତ୍ରପତିଙ୍କର ମହିମା ଏହିପରି । ତେବେ ଏହି କ୍ଷେତ୍ରର ମହିମା ଆସନ୍ତୁ ଜାଣିବା ।

ପୃଥିବୀ ପୃଷ୍ଠରେ ଭୂସ୍ୱର୍ଗ ଭାବେ ବିଖ୍ୟାତ ପୁରୁଷୋତ୍ତମ କ୍ଷେତ୍ର ସବୁଠାରୁ ଶ୍ରେଷ୍ଠ କ୍ଷେତ୍ର ଅଟେ । ଏଠାରେ ଜନ୍ମ ଲାଭ କରିବାକୁ ଦେବତାମାନେ ମଧ୍ୟ ଇଚ୍ଛା ପ୍ରକାଶ କରିଥାନ୍ତି । ପରମବ୍ରହ୍ମ କାଳିଆ ସାଆନ୍ତେ ଅବତାରୀ ଅଟନ୍ତି । ତାଙ୍କରିଠାରୁ ସବୁ ଅବତାରମାନଙ୍କର ସୃଷ୍ଟି ଓ ପୁଣି ଲୀଳା ଖେଳା ସାରି ସବୁ ଅବତାର ତାଙ୍କରିଠାରେ ମଧ୍ୟ ଲୀନ ହୋଇଥାନ୍ତି ବୋଲି ଅଚ୍ୟୁତାନନ୍ଦ ତାଙ୍କ ରଚିତ ଶୂନ୍ୟ ସଂହିତାରେ କହିଛନ୍ତି ।

ମହାପ୍ରଭୁ ଶ୍ରୀଜଗନ୍ନାଥ ସବୁର ମୂଳ ଆଧାର ଓ ଅବତାରୀ ପୁରୁଷ । ଦଶ ଅବତାରମାନଙ୍କ ମଧ୍ୟରୁ ଅଷ୍ଟମ





ଅବତାର ହିଁ ତାଙ୍କରିଠାରୁ ସୃଷ୍ଟ । ଏଣୁ ତାଙ୍କୁ ଶ୍ରୀକୃଷ୍ଣ ରୂପେ ଉପାସନା କରିବାରେ ଯଥାର୍ଥତା ରହିଛି । ଇତିହାସ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ ୬୭୫ ଖ୍ରୀଷ୍ଟାବ୍ଦରେ ଶୋଭନ ଦେବଙ୍କ ରାଜତ୍ୱ କାଳରେ ରକ୍ତବାହୁର ଆକ୍ରମଣରେ ମହାପ୍ରଭୁଙ୍କୁ ଶ୍ରୀମନ୍ଦିରରୁ ସ୍ଥାନାନ୍ତରିତ କରାଯାଇଥିଲା । ସେତେବେଳେ ମହାପ୍ରଭୁ ରତ୍ନସିଂହାସନ ଛାଡି ବାହାରେ ପ୍ରାୟ ୧୪୪ ବର୍ଷ ଅବସ୍ଥାନ କରିଥିଲେ । ଏଥିରୁ ପ୍ରାୟ ୯୯ ବର୍ଷ ମହାପ୍ରଭୁଙ୍କୁ ବଲାଙ୍ଗୀର ସୋନପୁରର କୋଟ ସମଲାଇଠାରେ ଥିବା ଛଳିଆ ପାହାଡର ପାଦ ଦେଶରେ ପାତାଳୀ କରାଯାଇଥିଲା । ସୋମ ବଂଶର ରାଜା ଯଯାତି କେଶରୀଙ୍କ ସମୟରେ ଅର୍ଥାତ୍ ନବମ ଶତାବ୍ଦୀର ପ୍ରାରମ୍ଭରେ ଆଦିଗୁରୁ ଶଙ୍କରାଚାର୍ଯ୍ୟ ଶ୍ରୀକ୍ଷେତ୍ର ଆସି ମହାପ୍ରଭୁଙ୍କ ଦର୍ଶନ ନ ପାଇ ତାଙ୍କୁ ଅନ୍ୱେଷଣ କରିଥିଲେ । ଶେଷରେ ରାଜା ଯଯାତିଙ୍କ ସହାୟତାରେ ମହାପ୍ରଭୁଙ୍କୁ କୋଟ ସମଲାଇରୁ ଉଦ୍ଧାର କରି ଶ୍ରୀମନ୍ଦିରସ୍ଥ ରତ୍ନସିଂହାସନରେ ଅଧିଷ୍ଠିତ କରାଇଲେ । ସେତେବେଳେ ସେ ମହାପ୍ରଭୁଙ୍କୁ ଦର୍ଶନ କରି ଯେଉଁ ଅଷ୍ଟକ ପାଠ କରିଥିଲେ, ତାହା ଶ୍ରୀଜଗନ୍ନାଥାଷ୍ଟକ ନାମରେ ପ୍ରସିଦ୍ଧ ।

''ଓଁ କ୍ଲୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀ–ଜନ–ବଲ୍ଲବାୟ ସ୍ୱାହା'', ଶ୍ରୀକୃଷ୍ଣଙ୍କର ଏହି ବୀଜମନ୍ତ୍ରରେ ଜଗନ୍ନାଥଙ୍କୁ ଆଜି ବି ପୂଜା କରାଯାଉଅଛି । ସେହିଦିନଠାରୁ ପରମ୍ପରାକ୍ରମେ ପୁରୀର ପୀଠର ପୀଠାଧୀଶ ଶ୍ରୀ ଶଙ୍କରାଚାର୍ଯ୍ୟ ଜଗନ୍ନାଥ ମନ୍ଦିରର ଉପଦେଷ୍ଟା ଭାବେ କାର୍ଯ୍ୟ କରି ଆସୁଛନ୍ତି ।

ସେହିପରି ଦ୍ୱାଦଶ ଶତାବ୍ଦୀରେ ଭକ୍ତ କବି ଜୟଦେବ ଶ୍ରୀରାଧାକୃଷ୍ଣଙ୍କର ଅମର ଗାଥା ତଥା ଅପ୍ରାକୃତ ପ୍ରେମରସର କାହାଣୀକୁ ଆଧାର କରି ରଚନା କରିଥିଲେ ଗୀତଗୋବିନ୍ଦ କାବ୍ୟ । ଏହି ଗୀତଗୋବିନ୍ଦ ମହାପ୍ରଭୁଙ୍କର ଅତିପ୍ରିୟ ଅଟେ ।

ନିମ୍ବାର୍କ ପନ୍ଥୀ ଶ୍ରୀଜୟଦେବ ଜଗନ୍ନାଥଙ୍କୁ ରାଧାକୃଷ୍ଣଙ୍କର ମିଳିତ ତନୁ ଭାବରେ ଗ୍ରହଣ କରିନେଇ ଥିଲେ । ଆଉ ଶୁଣାଉ ଥିଲେ ଗୀତଗୋବିନ୍ଦର ସୁଲଳିତ ପଦାବଳୀ । ଆଜି ପର୍ଯ୍ୟନ୍ତ ମଧ୍ୟ ଶ୍ରୀମନ୍ଦିରରେ ପ୍ରତ୍ୟହ ଗୀତଗୋବିନ୍ଦ ପାଠ କରାଯାଉଅଛି । ଗୀତଗୋବିନ୍ଦ ପଦାବଳୀ ଖୋଦିତ ଖଣ୍ଡୁଆପାଟ ବଡ ସିଂହାର ବେଶରେ ନ ପିନ୍ଧିଲେ ଆଉ ରାତ୍ର ପହଡ ସମୟରେ ଗୀତଗୋବିନ୍ଦ ନ ଶୁଣିଲେ ମହାପ୍ରଭୁଙ୍କୁ ସୁଖନିଦ୍ରା ହୁଏନି । ବାସ୍ତବରେ କୃଷ୍ଣଲୀଳାର ଏହା ହେଉଛି ସର୍ବାଧିକ ପରିପ୍ରକାଶ । କୁହାଯାଏ ଏହି ଗୀତଗୋବିନ୍ଦ କାବ୍ୟ ରଚନା ସମୟରେ ସ୍ୱୟଂ ମହାପ୍ରଭୁ ଜୟଦେବଙ୍କ ''ଦେହି ପଦ ପଲ୍ଲବ ମୁଦାରଂ'' ପଂକ୍ତିର ଭାବକୁ ସମ୍ମାନ ଦେଇ ଏଥିରେ ନିଜର ସ୍ୱାକ୍ଷର ପ୍ରଦାନ କରିଅଛନ୍ତି । ଏଥିରୁ ଜଣାଯାଏ ଯେ, ମହାପ୍ରଭୁ କାଳିଆ ସାଆନ୍ତେ ହେଉଛନ୍ତି ଭଗବାନ ଶ୍ରୀକୃଷ୍ଣଙ୍କର ଭିନ୍ନ ରୂପ ।

ଆଦି କବି ସାରଳା ଦାସ ଓଡ଼ିଆ ଆଧ୍ୟାତ୍ମିକ ସାହିତ୍ୟ କ୍ଷେତ୍ରରେ ଏକ ଚର୍ଚ୍ଚିତ ନାମ । ଗଜପତି କପିଳେନ୍ଦ୍ର ଦେବଙ୍କ ସମୟରେ ଏହାଙ୍କ ଆବିର୍ଭାବ ହୋଇଥିଲା । ସେ ଓଡ଼ିଆ ମହାଭାରତର ମୂଷଳୀ ପର୍ବରେ ଶ୍ରୀକୃଷ୍ଣ ଓ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ଏକ ତଥା ଅଭିନ୍ନ ବୋଲି ବର୍ଣ୍ଣନା କରିଅଛନ୍ତି । ବ୍ୟାସଦେବଙ୍କ ସଂସ୍କୃତ ମହାଭାରତ ଗ୍ରନ୍ଥଠାରୁ ଭିନ୍ନ ତଥା ନିଜସ୍ୱ ଶୈଳୀରେ ରଚନା କରିଥିବା ସାରଳା ମହାଭାରତରେ ସେ ଲେଖିଛନ୍ତି – ଦ୍ୱାପର ଯୁଗର ଶେଷରେ ଶ୍ରୀକୃଷ୍ଣଙ୍କ ଅର୍ଦ୍ଧ ଦଗ୍ଧ ପିଣ୍ଡକୁ ସମୁଦ୍ରରେ ଭସାଇ ଦିଆଯାଇଥିଲା । ଯାହା ଭାସି ଆସି ଶ୍ରୀକ୍ଷେତ୍ରର ମହୋଦଧି ତଟରେ ଲାଗିଥିଲା । ଶ୍ରୀକୃଷ୍ଣଙ୍କ ଅପୋଡା ପିଣ୍ଡ ହିଁ ଶବର ରାଜ ବିଶ୍ୱାବସୁ ଦ୍ୱାରା ପ୍ରଥମେ ଶବରୀ ନାରାୟଣ ଭାବେ ପୂଜା ପାଉଥିଲେ । ଆଜି ତାହା ଦାରୁବ୍ରହ୍ମ ଜଗନ୍ନାଥ ରୂପେ ଉପାସିତ ହେଉଛନ୍ତି ।

୧୫୦୯ ଖ୍ରୀଷ୍ଟାବ୍ଦରେ ଗଜପତି ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ କାଳରେ ଶ୍ରୀଚୈତନ୍ୟଙ୍କ ଶ୍ରୀକ୍ଷେତ୍ର ଆଗମନ ଘଟିଥିଲା । ମହାପ୍ରଭୁଙ୍କ ପ୍ରଥମ ଦର୍ଶନରେ ସେ ପରମ ବ୍ରହ୍ମ ଜଗନ୍ନାଥଙ୍କଠାରେ ରାଧାକୃଷ୍ଣଙ୍କର ନିତ୍ୟଲୀଳା ଦର୍ଶନ





କରି ଚେତାଶୂନ୍ୟ ହୋଇପଡିଥିଲେ । ଶ୍ରୀଚୈତନ୍ୟ ନିଜର ପ୍ରେମରଜ୍ଜୁରେ ରାଜା ପ୍ରଜାଙ୍କ ସମେତ ସମଗ୍ର ଉତ୍କଳବାସୀଙ୍କୁ କରିଥିଲେ ବନ୍ଦୀ । ଗଜପତି ପ୍ରତାପରୁଦ୍ର ଦେବ ମଧ୍ୟ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଫଳରେ ପୂର୍ବରୁ କେତେବେଳେ କେମିତି ଶ୍ରୀକୃଷ୍ଣ ଭାବେ ଉପାସିତ ହେଉଥିବା ଶ୍ରୀଜଗନ୍ନାଥ ଏହାଙ୍କ ସମୟରୁ ଦୈନିକ ପୂଜାନୀତିରେ ଓ ବର୍ଷର ବିଭିନ୍ନ ପର୍ବପର୍ବାଣିରେ ଶ୍ରୀକୃଷ୍ଣ ରୂପେ ଉପାସିତ ହେବାକୁ ଲାଗିଲେ । ରାଜାନୁଗତ ଧର୍ମ । ଗଜପତି ପ୍ରତାପରୁଦ୍ର ଦେବ ବୈଷ୍ଣବ ଧର୍ମରେ ଦୀକ୍ଷିତ ହେବା ପରେ ଶ୍ରୀମନ୍ଦିରର ସେବାନୀତି ପ୍ରଭାବିତ ହେଲା । ବିଭିନ୍ନ ପୂଜାନୀତିରେ ଶ୍ରୀକୃଷ୍ଣଙ୍କ ଲୀଳାମାନ ଦେଖିବାକୁ ମିଳିଲା । ବିଶେଷ କରି ଜନ୍ମାଷ୍ଟମୀ, ନନ୍ଦୋତ୍ସବ ଓ ଦୋଳଯାତ୍ରା ପ୍ରଭୃତି ସମାରୋହରେ ପାଳିତ ହେଲା । ଦୈନନ୍ଦିନ ପୂଜାନୀତି, ବେଶ, ଧୂପ ପ୍ରଭୃତିରେ ଶ୍ରୀକୃଷ୍ଣଙ୍କ ବୃନ୍ଦାବନୀୟ ଅଷ୍ଟକାଳୀୟ ଲୀଳାର ପ୍ରଭାବ ଦେଖିବାକୁ ମିଳିଲା । ଗୋପାଳାର୍ଚ୍ଚନ ପଦ୍ଧତି ଅନୁଯାୟୀ ଶ୍ରୀଜଗନ୍ନାଥଙ୍କୁ ବାଳଧୂପରେ ବାଳକୃଷ୍ଣ ରୂପରେ, ମଧ୍ୟାହ୍ନ ଧୂପରେ ବୃନ୍ଦାବନ ବିହାରୀ ଭାବେ, ସନ୍ଧ୍ୟାଧୂପରେ ଦ୍ୱାରକାଧିପତି ରୂପେ ଓ ଶେଷରେ ରାତ୍ରଧୂପରେ ରାସରସିକ କୁଞ୍ଜବିହାରୀ ଭାବେ ଉପାସନା କରାଗଲା । ଫଳରେ କୃଷ୍ଣଲୀଳାର ପରିପ୍ରକାଶ ବହୁ ଭାବରେ ଦେଖାଗଲା । ଶ୍ରୀକୃଷ୍ଣଙ୍କ ପୂଜାବିଧି ବର୍ଣ୍ଣିତ ହୋଇଥିବା ନାରଦ ପୁରାଣ ମଧ୍ୟ ଶ୍ରୀଜଗନ୍ନାଥଙ୍କ ସେବାନୀତି ପାଇଁ ଅନୁସୃତ ହେଲା । ଦୈନିକ ପୂଜା ବିଧିରେ ଶ୍ରୀକୃଷ୍ଣଙ୍କ ବୀଜମନ୍ତ୍ର ଓ ଧ୍ୟାନର ପ୍ରୟୋଗ ହେଲା । ବ୍ୟବହାର କରାଯାଉଥିବା ଏହି ଅଷ୍ଟାଦଶାକ୍ଷର ଗୋପାଳମନ୍ତ୍ରର ତତ୍ତ୍ୱାର୍ଥକୁ ବିଶ୍ଳେଷଣ କଲେ ଜଣାଯାଏ ଯେ ଏଥିରେ ପରମବ୍ରହ୍ମ ବିଶ୍ୱନିୟନ୍ତା ଶ୍ରୀଜଗନ୍ନାଥଙ୍କୁ ହିଁ ଧ୍ୟାନ କରାଯାଇଛି । ଏହି ଗୋପାଳ ମନ୍ତ୍ର କେବଳ ଶ୍ରୀକୃଷ୍ଣଙ୍କୁ ବୁଝାଏ ନାହିଁ, ଏହା ଜଗନ୍ନାଥ, ରାମ, କୃଷ୍ଣ, ବିଷ୍ଣୁ ସମସ୍ତଙ୍କୁ ହିଁ ବୁଝାଇଥାଏ । ଶ୍ରୀଚୈତନ୍ୟଙ୍କ ବିଚାରରେ ରସରାଜ ଶ୍ରୀକୃଷ୍ଣ ବୃନ୍ଦାବନରେ ଥିଲେ ଆଉ ଆଜି ଶ୍ରୀକ୍ଷେତ୍ରରେ ଅବସ୍ଥାନ କରୁଛନ୍ତି -

''ମହାଭାବ ରସରାଜ ନିତ୍ୟଖେଲେ ଧୂଳେ
ବୃନ୍ଦାବନେ ଛିଲେନ କୃଷ୍ଣ ଆଛେ ନୀଲାଚଲେ ।''

ଜ୍ଞାନମିଶ୍ରା ଭକ୍ତି ଭାବର ପ୍ରବକ୍ତା ଓଡ଼ିଶା ବୈଷ୍ଣବଗଣ ବଳରାମ, ଜଗନ୍ନାଥ, ଅଚ୍ୟୁତ, ଅନନ୍ତ ଓ ଯଶୋବନ୍ତ ପ୍ରଭୃତି ବୋଧହୁଏ ଶ୍ରୀଚୈତନ୍ୟଙ୍କ ଦ୍ୱାରା ପ୍ରଭାବିତ ହୋଇ ଜଗନ୍ନାଥଙ୍କୁ ରାଧାକୃଷ୍ଣଙ୍କ ମିଳିତ ବିଗ୍ରହ ଭାବେ ଗ୍ରହଣ କରି ନେଇଥିଲେ ।

ବଳରାମ ଦାସ ବେଦାନ୍ତସାର ଗୁପ୍ତଗୀତାର ୨୪ ଅଧ୍ୟାୟରେ ଲେଖିଛନ୍ତି ଶ୍ରୀକ୍ଷେତ୍ର ହେଉଛି ନିତ୍ୟ ବୃନ୍ଦାବନ ନିତ୍ୟ ରାସସ୍ଥଳୀ । ବଳଦେବ ହେଉଛନ୍ତି ଅନନ୍ତ ଶେଷଦେବ । ସୁଭଦ୍ରା ହେଉଛନ୍ତି ପ୍ରେମ ସ୍ୱରୂପିଣୀ, ସ୍ୱୟଂ ଜଗନ୍ନାଥ ହେଉଛନ୍ତି ରାଧାକୃଷ୍ଣଙ୍କର ମିଳିତ ତନୁ । ଗୁଣ୍ଡିଚା ନବର ହେଉଛି ଗୋପପୁର ।

ଅତିବଡୀ ଜଗନ୍ନାଥ ଦାସ ଶ୍ରୀଜଗନ୍ନାଥଙ୍କଠାରେ ରାଧାକୃଷ୍ଣଙ୍କର ପ୍ରେମମୟ ଲୀଳାକୁ ଦର୍ଶନ କରି ଆତ୍ମବିଭୋର ହୋଇଥିବାର ''ଶୈବାଗମ ଭାଗବତ'' ଗ୍ରନ୍ଥରେ ବର୍ଣ୍ଣନା କରାଯାଇଛି ।

ଶିଶୁ ଅନନ୍ତ ମଧ୍ୟ ପଦ୍ମ ବନ ରାସ ଗ୍ରନ୍ଥରେ ନୀଳାଚଳକୁ ଶ୍ରୀରାଧାକୃଷ୍ଣଙ୍କ ନିତ୍ୟ ରାସସ୍ଥଳୀ ଭାବେ ଅଭିହିତ କରି ଲେଖିଛନ୍ତି ।

ସେଠାରେ ଦେଖିଲି ଉଦାସ ବିଜେ ଜଗନ୍ନାଥ
ରାଧାଙ୍କୁ ସଙ୍ଗତେ ଘେନିଣ ବେନି ଏକ ରୂପାନ୍ତ
ଅଷ୍ଟସଖୀ ସେବା କରନ୍ତି ଅଷ୍ଟକୋଣରେ ରହି
ଉପମା କି ଦେବି ତାହାଙ୍କୁ ଆଉ ଉପମା ନାହିଁ ।

କଳ୍କି ଭାଗବତରେ ଶିଶୁ ଅନନ୍ତ ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥ ରୂପୀ ଶ୍ରୀକୃଷ୍ଣ କିଶୋରୀ ରାଧିକାଙ୍କ ସହ ନିତ୍ୟ ରାସରେ ମତ୍ତ ଅଛନ୍ତି ବୋଲି କହିଛନ୍ତି ।

ସିଦ୍ଧ ସାଧକ ଯଶୋବନ୍ତଙ୍କ ବିଚାରରେ ଶ୍ରୀଜଗନ୍ନାଥଙ୍କ ବିଗ୍ରହର ନିମ୍ନାଂଶ ହେଉଛନ୍ତି ଶ୍ରୀରାଧା ଓ ଉର୍ଦ୍ଧ୍ୱାଂଶ ହେଉଛନ୍ତି ଶ୍ରୀକୃଷ୍ଣ । ସେ ଦାରୁବ୍ରହ୍ମ ରୂପରେ ଭକ୍ତଙ୍କୁ ମୁକ୍ତି ପ୍ରଦାନ



କରୁଥିବା ବେଳେ ରତ୍ନସିଂହାସନରେ ନିତ୍ୟ ମହାରାସୋତ୍ସବ ସମ୍ପାଦନ କରି ଭକ୍ତମାନଙ୍କୁ ପରମାନନ୍ଦ ପ୍ରଦାନ କରୁଛନ୍ତି ।

ପଞ୍ଚସଖାଙ୍କ ମଧ୍ୟରୁ ବଳରାମ ଦାସ କୃଷ୍ଣ ମନ୍ତ୍ର, ଜଗନ୍ନାଥ ରାଧାମନ୍ତ୍ର, ଅନନ୍ତ ଗୋପାଳ ମନ୍ତ୍ର, ଯଶୋବନ୍ତ ଶ୍ୟାମମନ୍ତ୍ର ଓ ଅଚ୍ୟୁତାନନ୍ଦ ରାମମନ୍ତ୍ରରେ ଦୀକ୍ଷିତ ହୋଇଥିଲେ ବି ରାଧାକୃଷ୍ଣଙ୍କ ଯୁଗଳ ଉପାସନା ଏମାନଙ୍କର ସାଧନ ଭଜନର ପ୍ରଣାଳୀ ଥିଲା । କିନ୍ତୁ ଏମାନେ ଏହାର ପୃଷ୍ଠଭୂମିରେ ଶ୍ରୀଜଗନ୍ନାଥଙ୍କୁ ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତି ଭାବେ ଗ୍ରହଣ କରିନେଇଥିଲେ ।

ଚୈତନ୍ୟ ଭାଗବତରେ ସନ୍ଥ ଈଶ୍ୱର ଦାସ, ରସ ବିନୋଦ ଗ୍ରନ୍ଥରେ କବି ଦୀନକୃଷ୍ଣ ଦାସ, ସନ୍ଥ ହାଡିଦାସ ଓ ଆହୁରି ଅନେକ ବୈଷ୍ଣବ କବି ମଧ୍ୟ ଶ୍ରୀଜଗନ୍ନାଥଙ୍କ ବିପୁଳତନୁରେ ଶ୍ରୀରାଧାକୃଷ୍ଣଙ୍କର ଘନ ଆଲିଙ୍ଗନ ରୂପ ଦର୍ଶନ କରି ବିମୋହିତ ହୋଇଛନ୍ତି ।

ବୋଧହୁଏ ଷୋଡଶ ଶତାବ୍ଦୀରୁ ଶ୍ରୀଚୈତନ୍ୟଙ୍କ ପ୍ରଭାବରେ ଗଜପତି ପ୍ରତାପରୁଦ୍ର ଦେବ, ପଞ୍ଚସଖାଗଣ ଓ ଅନ୍ୟାନ୍ୟ ବୈଷ୍ଣବମାନେ ଶ୍ରୀଜଗନ୍ନାଥଙ୍କ ବିଗ୍ରହରେ ଶ୍ରୀକୃଷ୍ଣଙ୍କ ଅଭିନ୍ନତ୍ୱ ଉପଲବ୍ଧି କରି ଶ୍ରୀମନ୍ଦିର ବେଢ଼ାରେ ଅନେକ ରାଧାକୃଷ୍ଣ ମନ୍ଦିର ପ୍ରତିଷ୍ଠାରେ ସହାୟକ ସାଜିଥିଲେ । ଫଳରେ ଶ୍ରୀମନ୍ଦିରରେ ରାଧାକୃଷ୍ଣ ଉପାସନା ଅନ୍ୟାନ୍ୟ ଉପାସନାଠାରୁ ଅଧିକ ଦୃଢ଼ୀଭୂତ ହୋଇଛି । ସିଂହଦ୍ୱାର ଦେଇ ଶ୍ରୀମନ୍ଦିରରେ ପ୍ରବେଶ କଲେ ବାମପାର୍ଶ୍ୱ କାନ୍ଥରେ ରାଧାକୃଷ୍ଣଙ୍କ ବିଗ୍ରହ ରହିଛନ୍ତି । କୂର୍ମବେଢ଼ାସ୍ଥିତ ସତ୍ୟନାରାୟଣ ମନ୍ଦିର ନିକଟରେ, ମୁକ୍ତି ମଣ୍ଡପ ପାଖରେ, ବିମଳା ମନ୍ଦିର ପାର୍ଶ୍ୱରେ, ଶ୍ରୀମନ୍ଦିର କୂର୍ମବେଢ଼ାରୁ ପଶ୍ଚିମ ଦ୍ୱାରକୁ ଗଲାବେଳେ ବାମପଟେ କାଞ୍ଚିଗଣେଶ ମନ୍ଦିର ପାର୍ଶ୍ୱରେ ରହିଛି ସାକ୍ଷୀଗୋପାଳ ମନ୍ଦିର ଓ ଡାହାଣ ପଟେ ମଧ୍ୟ ରହିଛି ରାଧାକୃଷ୍ଣଙ୍କର ଏକ ସୁନ୍ଦର ମନ୍ଦିର । ଏହାଛଡା ନବଗ୍ରହ ମନ୍ଦିର ପାଖରେ ଶ୍ରୀମନ୍ଦିର ଗାରଦରେ, ପାତାଳେଶ୍ୱର ମନ୍ଦିର ନିକଟରେ ଶ୍ରୀମନ୍ଦିରସ୍ଥ ଜଗମୋହନରେ ଓ ପୁଷ୍ପାଳକ ନିଯୋଗ ଦ୍ୱାରା ମଧ୍ୟ ରାଧାକୃଷ୍ଣ ଉପାସନା କରାଯାଇ ଆସୁଅଛି । ଏହିପରି ଶ୍ରୀମନ୍ଦିରରେ ମହାପ୍ରଭୁଙ୍କ ଶ୍ରୀକୃଷ୍ଣ ଲୀଳା ଓ ଉପାସନା ସମ୍ପର୍କରେ ଲେଖୁଥିଲେ ସରିବନି ।

ଶ୍ରୀମନ୍ଦିରରେ ପାଳିତ ବିଭିନ୍ନ ପର୍ବପର୍ବାଣିରେ ମଧ୍ୟ ମହାପ୍ରଭୁଙ୍କ ଶ୍ରୀକୃଷ୍ଣଲୀଳା ବାସ୍ତବରେ ଉଲ୍ଲେଖଯୋଗ୍ୟ । ବୈଶାଖ ମାସର ଶୁକ୍ଳ ତୃତୀୟା ଅକ୍ଷୟ ତୃତୀୟା ନାମରେ ପ୍ରସିଦ୍ଧ । ଏହିଦିନଠାରୁ ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିରରେ ମହାପ୍ରଭୁଙ୍କର ଚନ୍ଦନଯାତ୍ରା ଅନୁଷ୍ଠିତ ହୋଇଥାଏ । ଏହା ପ୍ରାୟ ୪୨ ଦିନ ଧରି ଅନୁଷ୍ଠିତ ହୋଇଥାଏ । ଏଥିରୁ ପ୍ରଥମେ ୨୧ ଦିନ ବାହାର ଚନ୍ଦନ ଯାତ୍ରା ସମୟରେ ମହାପ୍ରଭୁ ଦ୍ୱାପର ଯୁଗର ଲୀଳାକୁ ମନେ ପକାଇ ନିଜର ପ୍ରିୟପରିଜନଙ୍କୁ ସାଥିରେ ଧରି ଚାପ ଖେଳିବାକୁ ନରେନ୍ଦ୍ର ଅଭିମୁଖେ ଯାତ୍ରା କରିଥାନ୍ତି । ଏଥିରେ ମହାପ୍ରଭୁଙ୍କ ଚଳନ୍ତି ପ୍ରତିମା ଶ୍ରୀମଦନ ମୋହନ (ଶ୍ରୀକୃଷ୍ଣ) ଶ୍ରୀଦେବୀ ଭୂଦେବୀଙ୍କ ସହିତ ଭଦ୍ରାଚାପରେ ଓ ଦକ୍ଷିଣ ଘରୁ ରାମ କୃଷ୍ଣ ଯୁଧିଷ୍ଠିର ଆଦି ପଞ୍ଚୁପାଣ୍ଡବ ଅର୍ଥାତ୍ (ଯମେଶ୍ୱର, ଲୋକନାଥ, ମାର୍କଣ୍ଡେୟ, କପାଳମୋଚନ ଓ ନୀଳକଣ୍ଠେଶ୍ୱର) ନରେନ୍ଦ୍ର ପୁଷ୍କରିଣୀ ଅଭିମୁଖେ ଯାଇ ନନ୍ଦା ଚାପରେ ବସି ନୌବିହାର କରିଥାନ୍ତି । ଏହି ଏକୋଇଶି ଦିନ ଯାତ୍ରାରେ ଦ୍ୱାପର ଯୁଗର କୃଷ୍ଣ ଲୀଳାର ସ୍ମୃତିଚାରଣ ଉଦ୍ଦେଶ୍ୟରେ ବିଭିନ୍ନ ବେଶ ଅନୁଷ୍ଠିତ ହୋଇଥାଏ । ପ୍ରଥମ ଦିନ ତ୍ରିଭଙ୍ଗୀ ଛନ୍ଦରେ ଉଭା ନଟବର ବେଶ, ଦ୍ୱିତୀୟ ଦିନ ବସୁଦେବଙ୍କ ଦ୍ୱାରା ଶ୍ରୀକୃଷ୍ଣଙ୍କୁ ମୁଣ୍ଡରେ ଧରି ଯମୁନା ନଦୀ ପାରି ହେବା ବେଶ ଅର୍ଥାତ୍ ଜନ୍ମାଷ୍ଟମୀ ବେଶ, ତୃତୀୟ ଦିନ ଖଟଦୋଳି ବେଶ ଅର୍ଥାତ୍ କୁଞ୍ଜରେ ଦୋଳି ଖେଳ ବେଶ, ଚତୁର୍ଥରେ ରାଜାଧିରାଜ ବେଶ, ପଞ୍ଚମରେ ବତ୍ସାଚାରଣ ବେଶ ବା ଗୋପାଳ ବେଶ, ଷଷ୍ଠଦିନ ବସ୍ତ୍ରାହରଣ ବେଶ, ସପ୍ତମ ଦିନ ବ୍ରହ୍ମଗୋପାଳ ବେଶ, ଅଷ୍ଟମ ଦିନ ଅର୍ଘାସୁର ବଧ ବେଶ, ନବମ ଦିନ ଚକ୍ରଧାରୀ କୃଷ୍ଣ ବେଶ, ଦଶମ ଦିନ ନାବକେଳି ବେଶ, ଏକାଦଶ ଦିନ ରାସକ୍ରୀଡା ବେଶ, ଦ୍ୱାଦଶ ଦିନ ନୃସିଂହ ବେଶ, ତ୍ରୟୋଦଶ ଦିନ କନ୍ଦର୍ପ ରଥ ବେଶ (ଗୋପାଙ୍ଗନାମାନଙ୍କ ଦ୍ୱାରା ପରିବେଷ୍ଟିତ କୃଷ୍ଣ ବେଶ),

ଚତୁର୍ଦ୍ଦଶ ଦିନ ଷଡଭୁଜ ଗୌରାଙ୍ଗ ବେଶ, ପଞ୍ଚଦଶ ଦିନ ରଘୁନାଥ ବେଶ, ଷୋଡଶ ଦିବସରେ ବସ୍ତ୍ରହରଣ ବେଶ, ସପ୍ତଦଶ ଦିବସରେ ଗୋବର୍ଦ୍ଧନ ପୂଜା ବେଶ, ଅଷ୍ଟାଦଶ ଦିବସରେ ଗୋବର୍ଦ୍ଧନଧାରୀ ବେଶ, ଊନବିଂଶ ଦିବସରେ ମଦନମୋହନ ବେଶ, ବିଂଶ ଦିବସରେ ଗଜ ଉଦ୍ଧାରଣ ବେଶ ଓ ଶେଷରେ ଏକବିଂଶ ଦିବସରେ ଗୋପାଙ୍ଗନାମାନଙ୍କ ମେଳରେ ଦୋଳିଖେଳ ବେଶ ଅନୁଷ୍ଠିତ ହୋଇଥାଏ । ଏହି ବେଶମାନଙ୍କ ମଧ୍ୟରୁ ୧୭ଦିନ କେବଳ ଶ୍ରୀକୃଷ୍ଣଙ୍କ ଲୀଳା ସମ୍ବନ୍ଧୀୟ ବେଶ ଅନୁଷ୍ଠିତ ହୋଇଥାଏ । ମଦନମୋହନ ଶ୍ରୀକୃଷ୍ଣ ନିଜର ବଡ ଭାଇ ବଳରାମ ତଥା ପଞ୍ଚୁପାଣ୍ଡବ ଭାବେ ପରିଚିତ ପୂର୍ବୋକ୍ତ ପଞ୍ଚ ମହାଦେବଙ୍କ ସହିତ ମିଶି ଗ୍ରୀଷ୍ମ ତାପରୁ ଉଦ୍ଧାର ପାଇବା ନିମନ୍ତେ ନାବକେଳି କରି ସ୍ୱୀୟ ଲୀଳାର ପରିପ୍ରକାଶ କରିଥାଆନ୍ତି ।

ମହାପ୍ରଭୁଙ୍କର ମୁଖ୍ୟ ଦ୍ୱାଦଶ ଯାତ୍ରା ମଧ୍ୟରୁ ଶ୍ରୀଗୁଣ୍ଡିଚା ରଥଯାତ୍ରା ସର୍ବଶ୍ରେଷ୍ଠ ଯାତ୍ରାର ମାନ୍ୟତା ଲାଭ କରିଛି । ଆଷାଢ଼ ଶୁକ୍ଳ ଦ୍ୱିତୀୟାରେ ମହାପ୍ରଭୁ ଜଗନ୍ନାଥ ଦ୍ୱାପର ଯୁଗର ରଥଯାତ୍ରାର ସ୍ମୃତିକୁ ଉଜ୍ଜୀବିତ କରିବା ପାଇଁ ନିଜେ ଶ୍ରୀକୃଷ୍ଣ ଜ୍ୟେଷ୍ଠ ଭ୍ରାତା ବଳରାମ ଓ ସୁଭଦ୍ରା ରୂପରେ ଗୁଣ୍ଡିଚା ମନ୍ଦିର ଅଭିମୁଖେ ଯାତ୍ରା କରିଥାନ୍ତି । କୃଷ୍ଣଭକ୍ତମାନଙ୍କ ମତରେ ବିଶେଷ କରି ଚୈତନ୍ୟ ମହାପ୍ରଭୁଙ୍କ ଦୃଷ୍ଟିରେ ଶ୍ରୀମନ୍ଦିର ଦ୍ୱାରକାପୁରୀ ଓ ଗୁଣ୍ଡିଚାବାଡି ବୃନ୍ଦାବନ ଅଟେ । ଶ୍ରୀମନ୍ଦିର ରୂପୀ ଦ୍ୱାରକା ପୁରୀରେ ଶ୍ରୀକୃଷ୍ଣ ରୂପୀ ମହାପ୍ରଭୁ ଐଶ୍ୱର୍ଯ୍ୟ ଲୀଳା ପ୍ରଦର୍ଶନ କରୁଥିବା ବେଳେ ଗୁଣ୍ଡିଚା ବାଡି ରୂପକ ବୃନ୍ଦାବନରେ ମାଧୁର୍ଯ୍ୟ ଲୀଳା ପରିପ୍ରକାଶ କରିଥାନ୍ତି । ସତ୍ୟଯୁଗର ଦେବତା ନୃସିଂହ ଉପାସକମାନଙ୍କ ପାଇଁ ଗୁଣ୍ଡିଚା ବାଡି ନୃସିଂହ କ୍ଷେତ୍ର ହୋଇଥିବା ବେଳେ ତ୍ରେତା ଯୁଗର ରାମ ଭକ୍ତମାନଙ୍କ ପାଇଁ ଏହା ଜନକପୁରୀ । ରାଜର୍ଷି ଜନକ ଏହିଠାରେ ଯଜ୍ଞ କରି ଲଙ୍ଗଳ ସିଆରରୁ ମାଟିରେ ମଞ୍ଜୁଷା ଭିତରେ ପୋତି ହୋଇରହିଥିବା ସୀତାଙ୍କୁ ପ୍ରାପ୍ତ ହୋଇଥିଲେ ।

ଅତୀତରେ ଶ୍ରୀଗୁଣ୍ଡିଚା ରଥଯାତ୍ରା ପୂର୍ବରୁ ଅବ୍ୟବହୃତ ହୋଇ ପଡି ରହିଥିବା ଗୁଣ୍ଡିଚା ବାଡିକୁ ଧୁଆ ଧୋଇ କରି ପରିଷ୍କାର ପରିଛନ୍ନ କରାଯାଉଥିଲା ହେଲେ ଚୈତନ୍ୟ ମହାପ୍ରଭୁ ଆପେ ଆପେ ଶ୍ରୀକ୍ଷେତ୍ର ରହଣି କାଳରେ ମହାପ୍ରଭୁଙ୍କର ଏହି ମାଧୁର୍ଯ୍ୟ ଲୀଳା ଭୂମିକୁ ସଫା କରିବାର ଦାୟିତ୍ୱ ଗ୍ରହଣ କଲେ । ଚୈତନ୍ୟଙ୍କ ଆହ୍ୱାନରେ ସାର୍ବଭୌମ ଭଟ୍ଟାଚାର୍ଯ୍ୟ, ନିତ୍ୟାନନ୍ଦ, ରାୟରାମାନନ୍ଦ ଅଦ୍ୱୈତ ଓ ସ୍ୱରୂପ ଦାମୋଦର ପ୍ରଭୃତି ଶହ ଶହ କଳସୀ, ଝାଡୁ, ଟୋକେଇ ଧରି ଗୁଣ୍ଡିଚା ବାଡି ଧୁଆ ସଫା କରିଥିଲେ । ଚୈତନ୍ୟ ଚରିତାମୃତର ଦ୍ୱାଦଶ ପରିଚ୍ଛେଦରେ ଏହାର ବିସ୍ତୃତ ବର୍ଣ୍ଣନା ରହିଅଛି ।

ମହାପ୍ରଭୁ ଶ୍ରୀଚୈତନ୍ୟ ନିଜର ପରିକର ମାନଙ୍କ ସହିତ ସ୍ୱୀୟ ମନତୋଷ ହେବା ପର୍ଯ୍ୟନ୍ତ ଗୁଣ୍ଡିଚା ମନ୍ଦିର ମାର୍ଜନ ଓ ପ୍ରକ୍ଷାଳନ ପୂର୍ବକ ଶୀତଳ ଓ ଉଜ୍ଜ୍ୱଳ କରି ଶ୍ରୀକୃଷ୍ଣ ରୂପୀ ଶ୍ରୀଜଗନ୍ନାଥଙ୍କ ଅବସ୍ଥାନର ଯୋଗ୍ୟ କରିଥିଲେ । ଏହି ଗୁଣ୍ଡିଚା ମାର୍ଜନ ଲୀଳା ଏବେ ବି ପୁରୀର ଝାଞ୍ଜପିଟା ମଠର ପୌରୋହିତ୍ୟରେ ଆୟୋଜିତ ହେଉଅଛି । ଅନ୍ୟ ମଠ ଓ ବୈଷ୍ଣବଗଣ ଏଥିରେ ସହାୟତା କରୁଛନ୍ତି ।

ଗୁଣ୍ଡିଚା ବାଡିର ଜଗମୋହନର ଉତ୍ତର ପାର୍ଶ୍ୱସ୍ଥ କାନ୍ଥରେ ମହାପ୍ରଭୁଙ୍କ ବିଭିନ୍ନ ଯୁଗର ଲୀଳା ସମ୍ପର୍କିତ ଚିତ୍ର ଅଙ୍କିତ ହୋଇଥିବାବେଳେ ଦ୍ୱାପର ଯୁଗର ଶ୍ରୀକୃଷ୍ଣ ଲୀଳାମାନ ମଧ୍ୟ ଚିତ୍ରିତ ହୋଇଅଛି । ପୁତନା ବଧ, କାଳୀୟ ଦଳନ, ଜାମଳା ଭଞ୍ଜନ, ଅର୍ଘାସୁର ବଧ, ନନ୍ଦରାଜାଙ୍କ କୋଳରେ କୃଷ୍ଣ ବଳରାମ, ଗୋପାଳ ବାଳକମାନଙ୍କ ମେଳରେ ରାମ ବଳରାମ ଓ ସୁଦାମା ତଥା ରାଧାକୃଷ୍ଣଙ୍କ ଯୁଗଳ ମୂର୍ତ୍ତି ପ୍ରଭୃତି ଏଥିରୁ ଅନ୍ୟତମ ଅଟେ । ଗୁଣ୍ଡିଚା ମନ୍ଦିରକୁ ରଥରେ ଯିବା ସମୟରେ ଓ ମହାବେଦୀରେ ଶ୍ରୀକୃଷ୍ଣ ରୂପୀ ମହାପ୍ରଭୁଙ୍କ ଅବସ୍ଥାନ କାଳରେ ତାଙ୍କୁ ଦର୍ଶନ କଲେ ବିଷ୍ଣୁ ଲୋକ ପ୍ରାପ୍ତି ହୁଏ ବୋଲି କୁହାଯାଏ ।

ସେହିପରି ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ କାଳରେ ଅର୍ଥାତ୍ ବାହୁଡା ଯାତ୍ରାରେ ଦକ୍ଷିଣାଭିମୁଖୀ ରଥସ୍ଥ ବଳଭଦ୍ର, ଜଗନ୍ନାଥ ଓ ସୁଭଦ୍ରାରୂପୀ ରାମକୃଷ୍ଣ ଓ ଭଦ୍ରାଙ୍କୁ ଯେଉଁମାନେ ଦର୍ଶନ



କରନ୍ତି, ସେମାନେ ମୁକ୍ତିଭାଗୀ ହୋଇଥାନ୍ତି ବୋଲି ସ୍କନ୍ଧପୁରାଣ କୁହନ୍ତି ।

ରଥଯାତ୍ରା ପୂର୍ବରୁ ବଳଭଦ୍ରଙ୍କୁ ବଳରାମ ରୂପରେ ଅର୍ଚ୍ଚନା କରାଯାଇ ରଥ ନିର୍ମାଣ ନିମନ୍ତେ ତାଙ୍କର ନିର୍ଦ୍ଦେଶକୁ ଅପେକ୍ଷା କରାଯାଏ ଓ ଜଗନ୍ନାଥ ରୂପୀ ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କରାଯାଇଥାଏ ମଧ୍ୟ ।

ତାଳଧ୍ୱଜ ରଥରେ ରାମକୃଷ୍ଣ ଓ ନନ୍ଦିଘୋଷ ରଥରେ ମଦନମୋହନ (ଶ୍ରୀକୃଷ୍ଣ) ଯାତ୍ରା କରିଥାନ୍ତି । ଦେବଦଳନ ରଥରେ ଭଗ୍ନୀପତି ଅର୍ଜୁନ ସାରଥି ଭୂମିକା ନିଭାନ୍ତି । ସେହିପରି ଶୟନୋତ୍ସବରେ ମଧ୍ୟ ବଳଭଦ୍ରଙ୍କୁ ବଳରାମ ଭାବେ ପ୍ରାର୍ଥନା ପୂର୍ବକ କୁହାଯାଏ,

ଦ୍ୱାପର ଯୁଗର ଫଗୁ ଉତ୍ସବ ଅର୍ଥାତ୍ ଅବିର ଓ ରଙ୍ଗ ପିଚକାରୀ ଖେଳକୁ ସ୍ମରଣ କରି ମହାପ୍ରଭୁ ଦୋଳଗୋବିନ୍ଦ ରୂପରେ ଶ୍ରୀଦେବୀ ଭୂଦେବୀଙ୍କ ସହ ବିମାନରେ ବସି ଜଗନ୍ନାଥ ବଲ୍ଲଭ ମଠକୁ ଗମନ କରିଥାନ୍ତି । ଅତୀତରେ ଚତୁର୍ଦ୍ଧାମୂର୍ତ୍ତି ଶ୍ରୀମନ୍ଦିର ବାହାରେ ଅଗ୍ନିକୋଣରେ ଥିବା ଦୋଳବେଦୀକୁ ଝୁଲଣ ଉତ୍ସବ ନିମନ୍ତେ ବିଜେ କରୁଥିଲେ । ଅଧୁନା କେବଳ ଦୋଳଗୋବିନ୍ଦ ଶ୍ରୀଦେବୀ ଭୂଦେବୀଙ୍କ ସହ ଦୋଳବେଦୀକୁ ବିଜେ କରୁଛନ୍ତି । ସେଠାରେ ଝୁଲଣ ଉତ୍ସବ ଅନୁଷ୍ଠିତ ହେଉଛି । ରତ୍ନସିଂହାସନରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଅବିର ଲାଗି କରାଯିବା ସହ ଚାଚେରୀ ବେଶରେ ସଜେଇ ଦିଆଯାଇଥାଏ । ଦୋଳପୂର୍ଣ୍ଣିମା ଦିନ ସୁନାବେଶ ମଧ୍ୟ ଅନୁଷ୍ଠିତ ହୋଇଥାଏ ।

ଗହ୍ମାପୂର୍ଣ୍ଣିମା ଦିନ ବଳଭଦ୍ରଙ୍କୁ ବଳରାମ ରୂପରେ ଅର୍ଚ୍ଚନା କରାଯାଇ ତାଙ୍କର ଜନ୍ମୋତ୍ସବ ପାଳନ କରାଯିବା ସହ ରାକ୍ଷୀବନ୍ଧନ ମଧ୍ୟ କରାଯାଇଥାଏ । ଭାଦ୍ରବ କୃଷ୍ଣାଷ୍ଟମୀ ଦିନ ଶ୍ରୀଜଗନ୍ନାଥଙ୍କୁ ଶ୍ରୀକୃଷ୍ଣ ରୂପେ ଗ୍ରହଣ ପୂର୍ବକ ତାଙ୍କର ଜନ୍ମୋତ୍ସବ ପାଳନ କରାଯାଏ । ଜନ୍ମାଷ୍ଟମୀ ପରଦିନ ଦ୍ୱାପରରେ ଗୋପପୁରରେ ନନ୍ଦୋତ୍ସବ ପାଳିତ ହେଲା ପରି ଶ୍ରୀମନ୍ଦିରରେ ନନ୍ଦୋତ୍ସବ ପାଳନ କରାଯାଇଥାଏ । ପୂର୍ବରାତ୍ରିରେ ଜନ୍ମ ନେଇଥିବା ଶ୍ରୀକୃଷ୍ଣଙ୍କୁ ନନ୍ଦରାଜା ଦୋଳିରେ ଝୁଲାନ୍ତି । ଏହି ଅବସରରେ ଶ୍ରୀକୃଷ୍ଣଙ୍କ ଗୋପଲୀଳା ସମ୍ବନ୍ଧୀୟ ଅନେକ ଘଟଣାର ସ୍ମୃତିକୁ ଉଜ୍ଜୀବିତ କରି ରଖିବା ପାଇଁ ମହାପ୍ରଭୁଙ୍କୁ ବିଭିନ୍ନ ବେଶ କରାଯାଇଥାଏ । ଭାଦ୍ରକୃଷ୍ଣ ଦଶମୀରେ କୋଳିବିକା ବେଶ, ବନଭୋଜି ବେଶ ଓ ବକାସୁର ବଧ ତଥା ଅର୍ଘାସୁର ବଧ ବେଶ ଅନୁଷ୍ଠିତ ହୋଇଥାଏ । ଭାଦ୍ରବକୃଷ୍ଣ ଏକାଦଶୀରେ କାଳୀୟ ଦଳନ ବେଶ ଓ ଧେନୁକାସୁର ବଧ ଅନୁଷ୍ଠିତ ହୋଇଥାଏ । ମାର୍କଣ୍ଡ ପୁଷ୍କରିଣୀରେ କାଳୀୟ ଦଳନ ଲୀଳା ଅନୁଷ୍ଠିତ ହୋଇଥାଏ । ମାର୍କଣ୍ଡ ପୁଷ୍କରିଣୀକୁ ମହାପ୍ରଭୁଙ୍କ ଚଳନ୍ତି ପ୍ରତିମା ବିଜେ କରିଥାନ୍ତି । ଭାଦ୍ରବ କୃଷ୍ଣ ଦ୍ୱାଦଶୀରେ ବଳଭଦ୍ର ବଳରାମ ରୂପରେ ପ୍ରଳମ୍ବାସୁର ବଧ କରିଥାନ୍ତି । ସେହିପରି କୃଷ୍ଣ ତ୍ରୟୋଦଶୀରେ ଶ୍ରୀଜଗନ୍ନାଥଙ୍କୁ ଓ ଶ୍ରୀବଳଭଦ୍ରଙ୍କୁ କୃଷ୍ଣ ବଳରାମ ବେଶରେ ସଜ୍ଜିତ କରାଯାଇଥାଏ । ଭାଦ୍ରବ ଅମାବାସ୍ୟାରେ ଦ୍ୱାପର ଯୁଗର ଶ୍ରୀକୃଷ୍ଣଙ୍କ ବସ୍ତ୍ରହରଣ ଲୀଳା ଶ୍ରୀମନ୍ଦିରରେ ପାଳିତ ହୋଇଥାଏ । ଏହାଛଡା ଆହୁରି ମହାପ୍ରଭୁଙ୍କ ଅନେକ ଶ୍ରୀକୃଷ୍ଣ ଲୀଳା ଶ୍ରୀମନ୍ଦିରରେ ମଧ୍ୟ ପାଳିତ ହୋଇଥାଏ । ଭାଦ୍ରବ ଶୁକ୍ଳ ଅଷ୍ଟମୀରେ ରାଧାଷ୍ଟମୀ ଉତ୍ସବ, ଶୁକ୍ଳ ଦଶମୀରେ କୁବୁଜା ଉଦ୍ଧାର ଲୀଳା ଓ ଭାଦ୍ରବ ପୂର୍ଣ୍ଣିମାରେ ଗିରି ଗୋବର୍ଦ୍ଧନ ଧାରଣ ଲୀଳା ଅନୁଷ୍ଠିତ ହୋଇଥାଏ । ଆଶ୍ୱିନ ଶୁକ୍ଳ ଏକାଦଶୀରୁ କାର୍ତ୍ତିକ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ମାସେ ବ୍ୟାପୀ ରାଧା ଦାମୋଦର ବେଶ, କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀରେ ବାଙ୍କ ଚୂଡା ବେଶରେ ମହାପ୍ରଭୁ ଭକ୍ତମାନଙ୍କୁ ଦର୍ଶନ ଦେଇଥାନ୍ତି । ଏତଦ୍‌ବ୍ୟତୀତ ପ୍ରତିଦିନ ରାତ୍ରିରେ ହେଉଥିବା ବଡସିଂହାର ବେଶ ମଧ୍ୟ ଶ୍ରୀକୃଷ୍ଣଙ୍କ କୁଞ୍ଜ ବନର ରାସଲୀଳାକୁ ସ୍ମରଣ କରାଇ ଦେଇଥାଏ । ଧନୁ ସଂକ୍ରାନ୍ତିରୁ ମକର ସଂକ୍ରାନ୍ତି ପର୍ଯ୍ୟନ୍ତ ଶ୍ରୀମନ୍ଦିରରେ ପହିଲି ଭୋଗ ଅନୁଷ୍ଠିତ ହୋଇଥାଏ । ଚୈତନ୍ୟଙ୍କ ସମୟରୁ ଏହା ପ୍ରଚଳିତ ହୋଇଥିବାର ଜଣାଯାଏ । ମାତା ଯଶୋଦା ରାତି ପାହିବା ପୂର୍ବରୁ ରାମକୃଷ୍ଣଙ୍କୁ ବିଭିନ୍ନ ସୁସ୍ୱାଦୁ ଲଘୁ ଜଳଖିଆ ତିଆରି କରି ଖୁଆଇଥାଆନ୍ତି । ମା' ଯଶୋମତୀଙ୍କ ବାତ୍ସଲ୍ୟ ପ୍ରେମର ନିଦର୍ଶନ ସ୍ୱରୂପ ଏହି ନୀତି ଆଜି ବି ଶ୍ରୀମନ୍ଦିରରେ ଅନୁଷ୍ଠିତ ହେଉଛି ।





ଭଗବାନ୍ ଶ୍ରୀକୃଷ୍ଣ ଗୋପପୁରରେ ଗୋପାଙ୍ଗଣୀମାନଙ୍କ ଲବଣି ଚୋରି କରି ଖାଉଥିଲେ । ଗୋପାଙ୍ଗନାମାନଙ୍କର ବସ୍ତ୍ର ଚୋରି କରିଥିବାର ଅଭିଯୋଗ ମଧ୍ୟ ତାଙ୍କ ନାମରେ ରହିଛି । ଆଜି ବି ମହାପ୍ରଭୁ ରାମକୃଷ୍ଣ ରୂପରେ ଜଗନ୍ନାଥ ବଲ୍ଲଭ ମଠକୁ ଦୟଣା ଚୋରି କରିବାକୁ ଯାଇଥାନ୍ତି । ଦ୍ୱାପର ଯୁଗରେ ଭଗବାନ ଶ୍ରୀକୃଷ୍ଣ ଗୋପବାଳାମାନଙ୍କ ସହିତ ରାସକେଳି କରିଥିଲେ । ତା'ର ସ୍ମରଣରେ ଆଜି ବି ଶ୍ରୀମନ୍ଦିରରେ ଶାରଦୀୟ ରାସୋତ୍ସବ ପାଳିତ ହୋଇ ଆସୁଛି । ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ ତିଥିରେ ଶ୍ରୀକୃଷ୍ଣ ରୁକ୍ମିଣୀ ହରଣ କରିଥିଲେ । ଅଧୁନା ଶ୍ରୀମନ୍ଦିରରେ ମହାପ୍ରଭୁଙ୍କ ପ୍ରତିନିଧି ଶ୍ରୀମଦନମୋହନ ଶିଶୁପାଳ ପ୍ରଭୃତି ରାଜାମାନଙ୍କୁ ପରାସ୍ତ କରି ବଳପୂର୍ବକ ରୁକ୍ମିଣୀଙ୍କୁ ହରଣ କରି ଆଣିଥାନ୍ତି ।

ଏହିପରି ଦୈନନ୍ଦିନ ଓ ବର୍ଷର ବିଭିନ୍ନ ପର୍ବପର୍ବାଣିରେ ଶ୍ରୀମନ୍ଦିରରେ ମହାପ୍ରଭୁ ଶ୍ରୀକୃଷ୍ଣ ଲୀଳା ପ୍ରଦର୍ଶନ କରି ଭକ୍ତମାନଙ୍କୁ ବିମୋହିତ କରି ଆସୁଛନ୍ତି ।

ମହାପ୍ରଭୁଙ୍କ ମହିମା ଅନନ୍ୟ । ତାଙ୍କୁ ଯିଏ ଯେଉଁ ଭାବରେ ଦେଖିବାକୁ ଚାହେଁ, ସେ ତା'କୁ ସେହି ରୂପରେ ଦେଖା ଦେଇ ତା'ର ମନସ୍କାମନା ପୂରଣ କରିଥାନ୍ତି ।

ସଭାପତି, ବଟ ଶ୍ରୀକ୍ଷେତ୍ର
ପାଟେଣୀଗାଁ, ଜଗତସିଂହପୁର

# ହୋଇଯିବି ପାଦଧୂଳି

କବିତା ଦେବୀ

ନିରବ ନିଶ୍ଚଳେ ଦିବାନିଶି ବସି
ପ୍ରାଣର ପ୍ରଦୀପ ଜାଳି
ସଦା ମୁଁ ଭଜୁଛି ତୁମ ନାମ ଖାଲି
ହାତେ ଧରି ଜପାମାଳି ।
ସାଧନା ମୋହର କରିବ ସଫଳ
ଆଶାରେ ଭାସୁଛି ମନ
ଅଶ୍ରୁଳ ନୟନେ ନିରବେ ତୁମକୁ
ସଦା କରୁଅଛି ଧ୍ୟାନ ।
ମିଛମାୟା ଜାଲେ ସଂସାରରେ ବୁଡି
ପାପର ଆହୁଲା ମାରି
ଛଳନା ପଥରେ କେତେ ମୁଁ ଚାଲିବି
ଅଭିନୟ କରି କରି ।
ନୀଳାଚଳ ଧାମେ ରତ୍ନ ସିଂହାସନେ
ବସିଛ ଜଗତ ନାଥ



ଏତିକି ପ୍ରାର୍ଥନା କରୁଛି ପ୍ରଭୁ ହେ
ବଢାଅ ଆଶିଷ ହାତ ।
ଆହେ ଭାବଗ୍ରାହୀ କରୁଣା ସାଗର
କିଛିନାହିଁ ଅବଶୋଷ
ମୁକ୍ତି ପାଇଯିବି ପଙ୍କିଳ ସଂସାରୁ
ଲୋଭ ମୋହ ହେବ ଶେଷ ।
ପାପୀ ଜୀବନରୁ ଆତ୍ମା ଚାଲିଯିବ
ଶାନ୍ତିପଥ ଅନୁସରି
ଆହେ ମହାବାହୁ ତୁମ ଚରଣରେ
ହୋଇଯିବି ପାଦଧୂଳି ।



ଅବସରପ୍ରାପ୍ତ ଶିକ୍ଷୟିତ୍ରୀ
ସେକ୍ଟର–୩/୫୫
ନୀଳାଦ୍ରି ବିହାର, ଭୁବନେଶ୍ୱର–୨୧

# ଲୀଳାମୟ ଠାକୁର ଶ୍ରୀଜଗନ୍ନାଥ

**ଦେବଦତ୍ତ ରଥ**

ବିଚିତ୍ର ଏ ଭାରତବର୍ଷ, ବହୁବିଧ ରୂପାତ୍ମିକା ଭାରତମାତାର କୋଳରେ ଶ୍ରେଷ୍ଠ ଏକ ରାଜ୍ୟ ଯାହା ଉତ୍କଳ ଯିଏ ଭୂସ୍ୱର୍ଗ ପୁରୁଷୋତ୍ତମ ମଧ୍ୟ । କବିଙ୍କ ଭାଷାରେ– 'ଜଗତ ସରସେ ଭାରତ କମଳ, ତା ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।' ଏ ବିଶ୍ୱ ସରସୀରେ ଭାରତ କମଳ ସଦୃଶ, ତା'ର କେଶର ତୁଲ୍ୟ ଏ ପୁଣ୍ୟ ପାବନକ୍ଷେତ୍ର ନୀଳାଚଳ । ଭାଗବତାକାର ଲେଖିଛନ୍ତି –

'ଦେଖ ଏ ଯେତେ ନଦନଦୀ,
ପ୍ରବାହେ ମିଳନ୍ତି ଜଳଧି
ଲବଣ ଜଳେ ସେ ମିଶନ୍ତି ନିଜ ସ୍ୱଗୁଣ ପାଶୋରନ୍ତି ।'

ଏଠାରେ ସମସ୍ତ ସ୍ମୃତିଶାସ୍ତ୍ର, ପୁରାଣ, କାବ୍ୟ, ସାହିତ୍ୟ, ଧର୍ମ ଏକ । ଏକ ଧର୍ମ, ଏକ ମତ, ଦ୍ୱିମତ ନାହିଁ ବିଭେଦତ୍ୱରେ ଅଭେଦତ୍ୱ ସର୍ବତ୍ର ବିଦ୍ୟମାନ । ସମସ୍ତ ପ୍ରକାର ମତବାଦଠାରୁ ଊର୍ଦ୍ଧ୍ୱରେ ସେ ।

ପୁନଶ୍ଚ କେହି କେହି ତାଙ୍କର ବିଶାଳ ଉପଲବ୍ଧି ପ୍ରସଙ୍ଗ କ୍ରମରେ କହିଛନ୍ତି–

'କ୍ଷେତ୍ରାଣାଂ ସର୍ବକ୍ଷେତ୍ରାଣାଂ ରାଜାଶ୍ରୀ ପୁରୁଷୋତ୍ତମଃ
ରାଜାନାଂ ସର୍ବ ରାଜାନାଂ ରାଜା ଶ୍ରୀ ପୁରୁଷୋତ୍ତମଃ ।'

ଏଠାରେ କ୍ଷେତ୍ର ବୋଲି ପୁରୁଷୋତ୍ତମ କ୍ଷେତ୍ର, ରାଜା ମଧ୍ୟ ଶ୍ରୀପୁରୁଷୋତ୍ତମ, ଏହା ହିଁ ଦେବତାର ଆଦିଭୂମି । ଏହି ସ୍ଥାନରେ ତାଙ୍କର ଆବିର୍ଭାବ । ଏ ରହସ୍ୟ ଯେ ସମ୍ପୂର୍ଣ୍ଣ କାଳାତୀତ ଓ ଅଗମ୍ୟ, ଏହା ଜନମାନସଗୋଚର । ଏ ସ୍ଥଳରେ ସେ ଦାରୁ ଦେବତାଙ୍କର ଦାରବୀ ମାନବୀୟ ଲୀଳାର ଅନ୍ତଃ କାହିଁ ? ସତ୍ୟ, ତ୍ରେତା, ଦ୍ୱାପର ଲୀଳାକ୍ରମରେ ବିବର୍ତ୍ତିତ ଭଗବତ୍ ସାର ଏ ଏକ ଭବ୍ୟ, ବର୍ଣ୍ଣାଢ୍ୟ, ସ୍ୱାଦ୍ୟ ତଥା ଦୁର୍ଲ୍ଲଭ ସ୍ୱର୍ଗୀୟ ମାନବିକ ଅନିର୍ବଚନୀୟ ଉତ୍ତରଣ, ଯାହା ଭାଗବତରେ ପ୍ରମାଣ ସାପେକ୍ଷ ହୋଇସାରିଛି–

'ଯୁଗକୁ ଯୁଗ ଏହି ମତେ, ପରମାନନ୍ଦ ଏ ଜଗତେ ।'

ମହତ୍ୱ ମହୀୟାନ୍ ପରି ଏହି ନିର୍ଗୁଣାତୀତ ପବିତ୍ର ପାବନଭୂମି ।

'ଦେବ ଦେବୀଙ୍କର ପ୍ରିୟ ଲୀଳାସ୍ଥଳୀ
ଏ ମହା ଉତ୍କଳ କ୍ଷେତ୍ର
ପ୍ରତି ରେଣୁ ଯାର ଦେବଦେବୀଙ୍କର
ପଦ ପରଶେ ପବିତ୍ର ।'

ଏଠାରେ ରଥ ଓ ପଥ ସମସ୍ତେ ଦେବତାର ମହାନ୍ ଆଶିଷ ରେଣୁରେ ଝଲସିତ । ସେ ପଞ୍ଚମହାଭୂତ ଅଗ୍ନି, ବାୟୁ, ଜଳ, ଭୂ, ତେଜର ରନ୍ଧ୍ରେ ରନ୍ଧ୍ରେ ପୂର୍ଣ୍ଣମାତ୍ରାରେ ଯେ ଅବସ୍ଥାନ କରନ୍ତି, ଏ କଥା ନିଃସନ୍ଦେହ । ହେଲେ ସେ





ଦେବତାର ସୁଷୁପ୍ତି ଅଛି, ଜାଗୃତି ବି ଅଛି । ସେଥିନିମନ୍ତେ ଷୋଡ଼ଶୋପଚାର ପୂଜା ତାଙ୍କ ନିମନ୍ତେ ଉଦ୍ଦିଷ୍ଟ ।

ସପ୍ତ ରଥକାର – ଏହି ରଥ ନିର୍ମାତାମାନଙ୍କୁ ରଥନାୟକ କୁହାଯାଏ । ଏମାନେ ସପ୍ତ ଭାଗରେ ବିଭକ୍ତ (୧) ଗୁଣାକାର – ଯେଉଁମାନେ ରଥର ଭିନ୍ନ ଅଙ୍ଗ ନିର୍ଦ୍ଧାରଣ କରିଥାନ୍ତି । (୨) ମୁଖ୍ୟ ରଥକାର – ଏମାନେ ରଥର ମୁଖ୍ୟାଂଶ ନିର୍ମାଣ କରନ୍ତି । (୩) ଲୌହକାର – ଏମାନେ ରଥରେ ବ୍ୟବହୃତ ଲୁହା, ଚକାବଳା, କୁରାଡ଼ିଆ ଆଦି ନିର୍ମାଣ କରନ୍ତି (୪) ଛନ୍ଦକାର – ଏମାନେ ରଥତ୍ରୟର କାଠକୁ କାନ୍ଧରେ ବୋହି ଛନ୍ଦ ଓ ଛେକାରେ ସଜାନ୍ତି (୫) ରୂପକାର – ରୂପକାରମାନେ ରଥର ସାରଥୀ, ଅଶ୍ୱ ଓ ରଥପାଳ ଆଦି ରୂପ ପ୍ରଦାନ କରନ୍ତି (୬) ଚିତ୍ରକାର – ଏମାନେ ରଥ ନିର୍ମାଣ ସମୟରେ ରଥର ଅଂଶକୁ ଚିତ୍ର ବିଚିତ୍ର କରନ୍ତି (୭) ସୂଚୀକାର – ଏମାନେ କାନରେ ମଣ୍ଡଣି, ଚାନ୍ଦୁଆ, ନେତ ଆଦି ପ୍ରସ୍ତୁତ କରନ୍ତି । ପୂର୍ବରୁ ସପ୍ତନାୟକମାନଙ୍କ ଦ୍ୱାରା ରଥ ନିର୍ମାଣର ବିବିଧ କାର୍ଯ୍ୟ ସମ୍ପାଦିତ ହେଉଥିଲା । ଏମାନଙ୍କ ସହ ଜଉଶାଳିଆ, ରଙ୍ଗତା ନାମକ । ସେବାୟତ ନିଯୋଗର ସୃଷ୍ଟି ହେଲା । ଏମାନେ ଯଥାକ୍ରମେ ଜଉଶାଳାଦ୍ୱାରା ଅରମୁଣ୍ଡି, ଝରା, କଦକମୁଣ୍ଡିରେ ରଙ୍ଗକାର୍ଯ୍ୟ ସହିତ ରାହୁମୁଣ୍ଡ, ହଂସ ଏବଂ ନବଗୁଞ୍ଜର ମଧ ସଜାଇଥାନ୍ତି ।

ରଥଖଳା – ଗଜପତି ମହାରାଜାଙ୍କ ଶ୍ରୀନଅର ସମ୍ମୁଖରେ ଚୈତ୍ରମାସ ଅକ୍ଷୟତୃତୀୟା ଦିନ ଯଜ୍ଞର ବିଧାନ ପୂର୍ବକ ରଥର ନିର୍ମାଣ କାର୍ଯ୍ୟ ସମାପିତ ହୋଇଥାଏ । ଏହି ରଥ ତ୍ରୟର ନିର୍ମାଣ ସମ୍ବନ୍ଧରେ ମାନସାର, ଅପରାଜିତା, ପୁଚ୍ଛା, ଶୁଲ୍ୟସୂତ୍ର, ବିଶ୍ୱକର୍ମୀୟ ରଥ ନିର୍ମାଣ ପଦ୍ଧତି, ଗୃହକର୍ଣ୍ଣିକା, ଶିଳ୍ପସାର ସଂଗ୍ରହାଦି ଗ୍ରନ୍ଥମାନଙ୍କରେ ରଥ ନିର୍ମାଣର ବର୍ଣ୍ଣନା ଉଲ୍ଲେଖ ମିଳେ । ରଥର ମୂଳରୁ ଚୂଳ ପର୍ଯ୍ୟନ୍ତ ସମଗ୍ର ରଥକୁ ୨୭ ଭାଗରେ ବିଭକ୍ତ କରାଯାଇଛି, ଯାହା ଜୀଉମାନଙ୍କ ଶରୀର ମଧରେ ଅବସ୍ଥାନ କରୁଥିବା ୨୭ ନକ୍ଷତ୍ରଙ୍କ ସହିତ ତୁଳନୀୟ । ଶ୍ରୀକ୍ଷେତ୍ରର ବଳିଷ୍ଠ ପରମ୍ପରା ଅନୁସାରେ ଜଣାଯାଏ ଶ୍ରୀଜଗନ୍ନାଥଙ୍କର ରଥ ନିର୍ମାଣ ପଦ୍ଧତି ହିଁ କଳିଙ୍ଗ କଳାତ୍ମକ ଶାଖାର ଏକ ଗୁରୁତ୍ୱପୂର୍ଣ୍ଣ କଳା ।

ରଥର ମୂଳରୁ ଚୂଳ ପର୍ଯ୍ୟନ୍ତ ବିବିଧ ଅଂଶମାନଙ୍କ ମଧରେ ଚକ, ଦଣ୍ଡିଆ, ଅର, ବାଙ୍କି, ହଂସପଟା, କଣି, ଶଙ୍ଖଦ୍ୱାର, ଜାଲି, ଗାଇପଟା, ସିଂହାସନ, କନକଗୁଣ୍ଡେଇ, ଭୂମି, ଷୋହଳନାହାକା, ମକରଦଣ୍ଡା, ବସନ୍ତ, ଦୁଆର, ଘୋଡ଼ା, ସାରଥୀପୀଡ଼, କୁମ୍ଭପଟି, ରାହୁପଟି, ଅଠରନାହାକା, ପିଢ଼, ରଷିପଟା, ଦଣ୍ଡା, ପାରାଭାଡ଼ି, ଖପୁରି, ପାଦ, ଓଲଟପୁଆ, ଦଧିନଉତି, କଳସ, କଣ୍ଠି, କେତନ, ଦଣ୍ଡ ଓ ଚକ୍ର ଇତ୍ୟାଦି ।

ରଥର ଅଙ୍ଗ ବିଭିନ୍ନ ଭାଗରେ ବିଭକ୍ତ, ସେଗୁଡ଼ିକ ହେଲା– ଚକ୍ରପୀଠ, ଆଦଣ୍ଡା, ଗର୍ଗରା, ମୂଳାନାଉ, ବରାଣ୍ଡି, ହଂସପଟା, ରଥର୍ଗା, ପାରାଭାଡ଼ି, କଳସପୀଠ, ଦଧିନଉତି, କଣ୍ଠଅନା, ଧାତୁକଳସ, ଆୟୁଧ ଧ୍ୱଜା ।

ଦୋଳବେଦୀରେ ଦୋଳଗୋବିନ୍ଦ, ଚାପରେ ମଧୁସୂଦନ ଓ ରଥୋପରେ ସ୍ୱୟଂ ବାମନରୂପୀ ଜଗନ୍ନାଥଙ୍କ ପ୍ରତ୍ୟକ୍ଷ ଦର୍ଶନ ହିଁ ସକଳ ମୁକ୍ତି ପ୍ରଦାୟକ । ରଥଯାତ୍ରାର ମାହାତ୍ମ୍ୟ ଓ ପରମ୍ପରା ସମଗ୍ର ବିଶ୍ୱରେ ଅଦ୍ୱିତୀୟ । ପ୍ରଥମ ଓ ଦ୍ୱିତୀୟ ଶତକର ବ୍ରହ୍ମପୁରାଣ, ୩ୟ ଶତକର ପଦ୍ମପୁରାଣ, ନୀଳାଦ୍ରି ମହୋଦୟ, ବାମଦେବ ସଂହିତାରେ ଏହି କ୍ଷେତ୍ରର ବିଶାଳ ମାହାତ୍ମ୍ୟ ସ୍ଥାନ ପାଇଛି । ରଥ ନିର୍ମାଣ ପଦ୍ଧତିରେ ଷଡ଼ଭୂମିର ପରମ୍ପରା ରହିଅଛି, ୧) ବେଦୀଭୂମି (୨) କର୍ମଭୂମି (୩) ସୁର୍ଦ୍ଧଭୂମି (୪) ସମଉଦ୍ଭୂମି (୫) ବୃଟସ୍ତମ୍ଭ ଭୂମି (୬) ଭୂପୁର ବା ଚକ୍ରମୂକି ଏହିପରି ୬ ଭୂମିର ଲୀଳାଗତ ରହସ୍ୟ ଅଛି ।

ଏ ଭୂମିରେ ପାଦ ସ୍ଥାପନ କରିବାର ଅବ୍ୟବହିତ ପୂର୍ବରୁ ବିଶ୍ୱବିଜୟୀ ଧ୍ୱଜାଧାରୀ ପ୍ରତାପୀ ମଗଧ ନରେଶ ଅଶୋକଙ୍କର ସେନାବାହିନୀ ପ୍ରଥମେ ଭୟ କରିଥିଲେ। ଶ୍ରୀକ୍ଷେତ୍ରର ସେହିପରି ପଞ୍ଚକୋଣ ପର୍ଯ୍ୟନ୍ତ ଜଣାଯାଏ ଏମାଟିକୁ କୌଣସି ତନ୍ତ୍ରଶକ୍ତିର ପ୍ରବେଶର ପ୍ରମାଣ ନାହିଁ । ପ୍ରାଚୀନ କାଳରେ ସମ୍ରାଟ ଚୋଡ଼ଗଙ୍ଗ ଦେବଙ୍କର ତନ୍ତ୍ରଗୁରୁ





ନିତେଇ ଧୋବଣୀ ଯେ ସୁଦୂର ସୁବର୍ଣ୍ଣପୁରରୁ ବୃକ୍ଷ ଧରି ଆକାଶମାର୍ଗରେ ଆସି ଜଗନ୍ନାଥ ଦର୍ଶନ ଉଦ୍ଦେଶ୍ୟରେ ତନ୍ତ୍ରବିଦ୍ୟାର ପ୍ରଚଣ୍ଡ ପ୍ରଭାବରେ ହାରିଯାଇ ଶ୍ରୀକ୍ଷେତ୍ରଠାରୁ ଅନତି ଦୂରରେ ରହି ପୂଜାର୍ଚ୍ଚନା କରୁଥିଲେ । ସେ ସ୍ୱୟଂ ତନ୍ତ୍ରାଧିରୂଢ ଦେବତା, ଯେଉଁଠାରେ ବିମଳା ହିଁ ଭୈରବୀ ଓ ଜଗନ୍ନାଥ ସ୍ୱୟଂ ଭୈରବ । ତେଣୁ ଏ କ୍ଷେତ୍ରରେ ତନ୍ତ୍ର, ମନ୍ତ୍ର, ଯନ୍ତ୍ରର କୌଣସି ପ୍ରାଦୁର୍ଭାବ ନାହିଁ । ଆଦିଗୁରୁ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ଆବିର୍ଭାବ ପରେ ନବମ ଶତକରେ ଶ୍ରୀମନ୍ଦିରରେ ୫ମାକାର ପୂଜାର ପ୍ରଚଳନ ଦେଖାଗଲା । ମତ୍ସ୍ୟ, ମାଂସ, ମୁଦ୍ରା, ମଦ୍ୟ ଓ ମୈଥୁନ, ଏହା କେବଳ ବିଧିରେ ସୀମିତ ରହିଲା । ପରବର୍ତ୍ତୀ ସମୟରେ ଦୈନନ୍ଦିନ ପୂଜାବିଧିରେ ବ୍ୟବହୃତ ହେଉଅଛି ।

ଠାକୁରମାନଙ୍କ ପୂଜାରେ ବ୍ୟବହୃତ ଅଧିକାଂଶ ପିଠାରେ ଅଦା ଓ ବିରି ପ୍ରୟୋଗ ତାନ୍ତ୍ରିକ ଉପଚାରର ଏକ ସାର୍ଥକ ତଥା ସାତ୍ତ୍ୱିକ ମତବାଦ ରହସ୍ୟ । ପରମ୍ପରା ଅନୁସାରେ ଠାକୁରମାନେ ସପ୍ତାହବ୍ୟାପି ପ୍ରତ୍ୟେକ ଦିନ ରାଶି ଅନୁସାରେ ନିର୍ଦ୍ଦିଷ୍ଟ ରଙ୍ଗର ବସ୍ତ୍ର ପରିଧାନ କରିଥାନ୍ତି । (୧) ରବିବାର– ଲାଲ (୨) ସୋମବାର – କଳାଛିଟାମିଶା ଶୁକ୍ଳ ବର୍ଣ୍ଣ (୩) ମଙ୍ଗଳବାର – ବାର ଚାଟିଆ (ପାଞ୍ଚରଙ୍ଗ ମିଶା) (୪) ବୁଧବାର – ନୀଳରଙ୍ଗ (୫) ଗୁରୁବାର – ବସନ୍ତ (ହଳଦିଆ) (୬) ଶୁକ୍ରବାର – ଶୁକ୍ଳରଙ୍ଗ (୭) ଶନିବାର– କଳାରଙ୍ଗ, ଯାହା ଜ୍ୟୋତିଷମାନଙ୍କ ମତରେ ସପ୍ତଗ୍ରହର ପ୍ରତୀକ । କନକଲାଗି ବା ଶ୍ରୀଯୁଗସିଂହାର ଏକ ପ୍ରଚଳିତ ମହାନ ପରମ୍ପରା । ପ୍ରତି ସପ୍ତାହର ବୁଧବାର କିମ୍ବା ଗୁରୁବାର ଦିନ ଦ୍ୱିପହର ଧୂପ ପରେ ଏହା ହେବାର ବିଧି ରହିଛି । ଏହାର ପ୍ରସ୍ତୁତିରେ ହିଙ୍ଗୁଳ, ହରିତାଳ, ଶଙ୍ଖ, କଇଁଠଅଠା, କେଶର, କର୍ପୂର, କସ୍ତୁରୀ, କଳାତେଲର ପ୍ରଭୃତି ଭୂମିକା ଅଛି । ସଗୁଣରେ ସାକାର, ନିର୍ଗୁଣରେ ନିରାକାର, ନିରାମୟ, ନିର୍ବିକାର, ଅନିର୍ବଚନୀୟ । ଏହି ସାକାର ମଧ୍ୟରେ ସାକ୍ଷାତ୍ ବ୍ରହ୍ମୋପଲବ୍ଧି ଆତ୍ମକୁ ସ୍ତବ୍ଧ କରିଦିଏ ।

ଶ୍ରୀମନ୍ଦିର, ଶ୍ରୀକ୍ଷେତ୍ର ଓ ଶ୍ରୀପୁରୁଷୋତ୍ତମ ବିଗ୍ରହଙ୍କର ଲୀଳାଖେଳା ବର୍ଷ ସାରା ଯୁଗ ଯୁଗ ଧରି ଆନନ୍ଦ ଓ ବିସ୍ମୟ ପ୍ରଦାନ କରିଆସୁଅଛି । ମାନବୀୟ ଲୀଳା ଖେଳାର ପରିସମାପ୍ତି ପରେ ସେ ନିଅନ୍ତି ପାତାଳି ଆଶ୍ରୟ, ଦାରବୀୟ ପରିବର୍ତ୍ତନ । କିଏ କହେ ସେ ନେପାଳର ଗଣ୍ଡୁକୀ ନଦୀର ଜୀବନ୍ତ ଶାଳଗ୍ରାମ କିଏ କହେ ଭଗବାନ ଶ୍ରୀକୃଷ୍ଣଙ୍କର ପରକାଳ ପ୍ରାପ୍ତି ପରେ ତାଙ୍କର ଶରୀରର ଯେଉଁ ମଧ୍ୟ ଅଂଶ ଦାହ୍ୟ ନହୋଇ ରହିଥିଲା, ସେହି ବ୍ରହ୍ମ । କିନ୍ତୁ କେହି ପୁଣି କହନ୍ତି ଯେ ଭଗବାନ ବୁଦ୍ଧଙ୍କର ଏ ଦନ୍ତବିଶେଷ ।

ହେ ଲୀଳାମୟ ଏସବୁ ତୁମରି ଖେଳ, ଏ ସୃଷ୍ଟିର ସବୁ ଅସମ୍ଭବ ମଧ୍ୟରେ ସମ୍ଭବ, ସମ୍ଭବ ମଧ୍ୟରେ ଅସମ୍ଭବ ତୁମେ ହିଁ ପ୍ରକୃତ ସମାଧାନ । ଅନିତ୍ୟ ଏ ସଂସାର । ଏଠାରେ ସବୁ କିଛି ଅଳୀକ, ହେଲେ ତୁମେ ନିର୍ଦ୍ଦିଷ୍ଟ, କାଳ ହିଁ ନିର୍ଦ୍ଦିଷ୍ଟ ।

ପର୍ଯ୍ୟଟନ ବିଭାଗ



# କେନ୍ଦ୍ରାପଡ଼ାର ଇତିହାସ ଓ ପୁରାଣ ପୃଷ୍ଠଭୂମିରେ ସିଦ୍ଧ ବଳଦେବ

ଡକ୍ଟର ସର୍ବେଶ୍ୱର ସେଣ

ତୁଳସୀ କ୍ଷେତ୍ରାଧିପତି ଶ୍ରୀସିଦ୍ଧ ବଳଦେବ ବା ବଳରାମ । ସେ ବଳିଆରଭୁଜ, ହଳ ମୂଷଳଧାରୀ, ସ୍ୱୟଂ ପରଂବ୍ରହ୍ମ । ନୀଳାଦ୍ରି ଧାମରେ ବଳଦେବ ଦାରୁବ୍ରହ୍ମ, ତୁଳସୀକ୍ଷେତ୍ରରେ ମଣିବ୍ରହ୍ମ । ସେ ଶ୍ରୀବିଷ୍ଣୁଙ୍କର ଅଷ୍ଟମ ଅବତାର । ତାଙ୍କ ମହିମା ଅବର୍ଣ୍ଣନୀୟ, ଅନାକଳନୀୟ ତାଙ୍କର ଲୀଳା, ଖେଳା, ବିଭୂତି । ସେ ଆଦି ଅନାଦି, ପରିବ୍ୟାପ୍ତ ଅସୀମ, ଅଣାକାର, ନିରାକାର, ଅନନ୍ତ । ଶ୍ରୀ, ବୀର୍ଯ୍ୟ, ଜ୍ଞାନ, ଧୃତି, ବୈରାଗ୍ୟ, ଧନଧାନ୍ୟ, ଗୋପ-ଲକ୍ଷ୍ମୀ, ଗୋସମ୍ପଦ, ସୃଜନୀ, ସବୁଜିମା ତଥା ଜ୍ୟୋତିବ୍ରହ୍ମର ପ୍ରତୀକ ବଳଦେବ । ପୁରାଣ ପୃଷ୍ଠାରେ ସେ ଶ୍ରୀବିଷ୍ଣୁଙ୍କ ଶଯ୍ୟା ବା ଆଧାର । । ସହସ୍ର ଫଣାଧାରୀ ବଳଦେବ - ଶେଷ ଅନନ୍ତ ବା ଶେଷନାଗ । ମହାପ୍ରଭୁଙ୍କର ସହସ୍ର ନାମ । କାହା ପାଇଁ ସେ ବଳଭଦ୍ର, ବଳଦେବ, ବଳରାମ, ସଙ୍କର୍ଷଣ, କେଉଁ ଭକ୍ତଙ୍କ ନିକଟରେ ସେ ହଳାୟୁଧ, ହଳଧର, ହଳୀ, ମୂଷଳୀ, ଅନ୍ତରାମ, କାମପାଳ, ଶେଷଦେବ । ପ୍ରଭୁଙ୍କ ବିଜେ କେନ୍ଦ୍ରାପଡ଼ା ଇଚ୍ଛାପୁରରେ । କ୍ଷେତ୍ରଟି ତାଙ୍କ ପତ୍ନୀଙ୍କ ନାମାନୁସାରେ 'ତୁଳସୀକ୍ଷେତ୍ର' । ପୁରାଣ ଶାସ୍ତ୍ରରେ ତାହା 'ଗୁପ୍ତ ବୃନ୍ଦାବନ', 'ଉତ୍କଳେ ଗୁପ୍ତ ବୃନ୍ଦାବନ', 'ବ୍ରହ୍ମକ୍ଷେତ୍ର' । ଗୀତଗୋବିନ୍ଦ ରଚୟିତା ମହାକବି ଜୟଦେବ । ପ୍ରଭୁଙ୍କ ଗୁଣ କୀର୍ତ୍ତନରେ ବିଭୋର- ''ବହସି ବପୁଷି ବିଶଦେ ବସନଂ ଜଳଦାଂ/ହଳ ହତି ଭିତି ମିଳିତ ଯମୁନାଭଂ/ କେଶବ ଧୃତ ହଳଧର ରୂପ ଜୟ ଜଗଦିଶ ହରେ ।'' ଶ୍ରୀବିଷ୍ଣୁଙ୍କ ଦଶାବତାର । ତନ୍ମଧ୍ୟରେ 'ହଳଧର' ରୂପ ଅନ୍ୟତମ । ସିଦ୍ଧ ବଳଦେବଙ୍କ ପବିତ୍ର ଭୂମି କେନ୍ଦ୍ରାପଡ଼ା । କେବଳ ଓଡ଼ିଶା କିମ୍ବା ଭାରତ ନୁହେଁ ସାରା ବିଶ୍ୱରେ ତୁଳସୀ କ୍ଷେତ୍ର ମହିମା ପ୍ରକଟିତ । ବ୍ରହ୍ମ ତନ୍ତ୍ରରେ କ୍ଷେତ୍ରର ଶ୍ରେଷ୍ଠତ୍ୱ ପ୍ରତିପାଦିତ- ''ବର୍ଷାଣାଂ ଭାରତ ଶ୍ରେଷ୍ଠଃ ଦେଶାନାଂ ଉତ୍କଳ ତଥା/ ଉତ୍କଳେ ଶ୍ରେଷ୍ଠ ତୀର୍ଥାଣି କୃଷ୍ଣାର୍କ ପାର୍ବତୀ ହରାଃ / ଯାତ୍ରାୟାଂ ହଳାୟୁଧ ଗଚ୍ଛେତ୍ ତୁଳସୀକ୍ଷେତ୍ରେ ତିଷ୍ଠତଃ/ ଉତ୍କଳେ ପଞ୍ଚ କ୍ଷେତ୍ରଞ୍ଚ ବଦନ୍ତି ମୁନି ପୁଙ୍ଗବାଃ ।'' ଶ୍ରୀକ୍ଷେତ୍ରରେ ଅନୁଜ ଜଗନ୍ନାଥ, ତୁଳସୀ କ୍ଷେତ୍ରରେ ଅଗ୍ରଜ ବଳଦେବ - ଉଭୟ ତୀର୍ଥ ବିଶ୍ୱ ବିଦିତ । ବିଶ୍ୱ ପର୍ଯ୍ୟଟନ ମାନଚିତ୍ରରେ ତୁଳସୀକ୍ଷେତ୍ରର ସ୍ଥାନ ସ୍ୱତନ୍ତ୍ର ।

ବଳଦେବଜୀଉ ମନ୍ଦିରର ମୁଖ୍ୟଦେବତା ବଳରାମ ବା ବଳଦେବ । ତାଙ୍କ ବିଜେ ରତ୍ନସିଂହାସନରେ । ପରବର୍ତ୍ତୀ ସମୟରେ ତାଙ୍କ ସହିତ ଉପାସିତ ଜଗନ୍ନାଥ, ସୁଭଦ୍ରା, ସୁଦର୍ଶନ । ମୁଖ୍ୟ ମନ୍ଦିରର ପ୍ରବେଶ ଦ୍ୱାରରେ ପବିତ୍ର ବାଇଶି ପାହାଚ । ଏହାର ଅନତି ଦୂରରେ ଦେବୀ ତୁଳସୀଙ୍କ ପ୍ରତିମା, ମା'ଙ୍କ ଉପବିଷ୍ଟ ମୁଦ୍ରା । ଏତଦ୍‌ଭିନ୍ନ ମନ୍ଦିର ମଧ୍ୟରେ କେତେକ ପାର୍ଶ୍ୱଦେବତା । ବଳରାମ ହିଁ ବଳଦେବ । ଏଇଟି ବୈଷ୍ଣବମାନଙ୍କର ମତ । ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ, ସୁଦର୍ଶନ ଚତୁର୍ଦ୍ଧାମୂର୍ତ୍ତି । ବୈଷ୍ଣବଙ୍କ ଅନୁଯାୟୀ ସେମାନେ ବଳରାମ, ଭଗିନୀ ସୁଭଦ୍ରା, ଶ୍ରୀକୃଷ୍ଣ, ତାଙ୍କ ଆୟୁଧ ସୁଦର୍ଶନ ।

ରାଜା ଯଯାତି କେଶରୀ । ନିର୍ମାଣ କଲେ ବଳଦେବଜୀଉ ମନ୍ଦିର । ଏହାର ସମୟସୀମା ୧୦ମ ଶତାବ୍ଦୀ । ଆଉ କେତେକ ଐତିହାସିକଙ୍କ ଭିନ୍ନ ମତ । ରାଜା ଅନଙ୍ଗଭୀମ ଦେବ ତୃତୀୟ । ତାଙ୍କ ଦ୍ୱାରା ନିର୍ମିତ





ଶ୍ରୀଜୀଉଙ୍କ ରେଖା ମନ୍ଦିର । ତାହା ଥିଲା ମୂଳ ମନ୍ଦିର । ହିନ୍ଦୁଧର୍ମ ବିଦ୍ୱେଷୀ କଳାପାହାଡ଼ । ଧ୍ୱଂସ କରିଦେଲା ସେଇ ମନ୍ଦିରଟିକୁ (ଖ୍ରୀ.ଅ. ୧୫୬୮) । ଏ କଥାଟି ଏବେ ବି ଜନଶ୍ରୁତିରେ ଉଜ୍ଜୀବିତ । କେବଳ ସେତିକି ନୁହେଁ ? ପୁରୀ ଶ୍ରୀମନ୍ଦିର, ରାମଚଣ୍ଡୀ ମନ୍ଦିର, ମୟୂରଭଞ୍ଜର କିଚକେଶ୍ୱରୀ, ଗୌହାଟିର କାଉଁରୀ କାମାକ୍ଷା ମନ୍ଦିର । ଏଗୁଡ଼ିକ ସହିତ ଆହୁରି ଅନେକ ଦେବଦେବୀ ପୀଠ । କଳାପାହାଡ଼ା ଆକ୍ରମଣରୁ ବର୍ତ୍ତି ନ ଥିଲେ । ମାତ୍ର ଇତିହାସରେ କଳାପାହାଡ଼ ଏକ ବିବଦମାନ ଚରିତ୍ର । ତାହାର ଅସ୍ତିତ୍ୱକୁ ଅନେକ ଅସ୍ୱୀକାର କରନ୍ତି । କିନ୍ତୁ ମୋଗଲ ଶାସନ କାଳୀନ ନଥିପତ୍ର । ଏଥିରେ କଳାପାହାଡ଼ ପ୍ରସଙ୍ଗ ବର୍ଣ୍ଣିତ । କଳାପାହାଡ଼ ଜଣେ ବଂଗୀୟ ବୈଷ୍ଣବ ବ୍ରାହ୍ମଣ । ତା'ର ନାଁ ରାଜୀବ ଲୋଚନ ରାୟ (ବାହାଦୂର), ଗଜପତି ମୁକୁନ୍ଦ ଦେବଙ୍କ ସେ ମୁଖ୍ୟ ସେନାପତି । ବିଚକ୍ଷଣ ତା'ର ସମର କୌଶଳ । ତ୍ରିବେଣୀ ଯୁଦ୍ଧରେ ମୁସଲମାନ ଶାସକ ସୁଲେମାନ ଦୁରାନି ପରାସ୍ତ । ବିଜୟଲାଭ କଲେ ଗଜପତି ମୁକୁନ୍ଦ ଦେବ । ଭୀତତ୍ରସ୍ତ କରାନି । କୂଟନୀତି ପ୍ରୟୋଗ କଲେ । ତାଙ୍କର ଅନିନ୍ଦ୍ୟ ସୁନ୍ଦରୀ କନ୍ୟାଟେ । ତା' ସହ ରାଜୀବ ଲୋଚନର ପ୍ରେମ ସମ୍ବନ୍ଧ ସୁଯୋଗ ସୃଷ୍ଟି କଲେ । ଫାଶରେ ପଡ଼ିଲେ ରାଜୀବ । ମୁସଲମାନ ଧର୍ମ ଗ୍ରହଣ କଲେ । ବିବାହ କଲେ ମୁସଲମାନ କନ୍ୟାଙ୍କୁ । ହିନ୍ଦୁମାନଙ୍କ ଆଖିରେ ସେ ବିଧର୍ମୀ । ରାଜୀବର ପଶ୍ଚାତାପ । ଆସିଲେ ପୁରୀ, ସ୍ୱଧର୍ମ ପ୍ରତ୍ୟାବର୍ତ୍ତନ ଇଚ୍ଛା । ପ୍ରତ୍ୟାକ୍ଷିତ ହେଲା ରାଜୀବ । ପୁରୀର ରକ୍ଷଣଶୀଳ ପଣ୍ଡାମାନଙ୍କ ଦୁର୍ବ୍ୟବହାର । ନିରାଶ ରାଜୀବ ହେଲା ପ୍ରତିଶୋଧ ପରାୟଣ । ହିନ୍ଦୁ ଧର୍ମର ପ୍ରତିମା ପୂଜାକୁ ଘୋର ବିରୋଧ କଲା । ସମସ୍ତ ହିନ୍ଦୁ ଦେବଦେବୀ ମନ୍ଦିର ଧ୍ୱଂସ, ଏଇ ବଜ୍ର ଶପଥ ନେଲା । ହେଇଗଲା କଳାପାହାଡ଼ । ପୁରୀ ଶ୍ରୀମନ୍ଦିର, କୋଣାର୍କ ସୂର୍ଯ୍ୟମନ୍ଦିର, କେନ୍ଦ୍ରାପଡ଼ା ବଳଦେବଜୀଉ ମନ୍ଦିର, ଏଥି ସହିତ ଅନ୍ୟାନ୍ୟ ଦେବଦେବୀ ମନ୍ଦିର । ତା' ସେନା ସହ ଆକ୍ରମଣ କଲା । କେନ୍ଦ୍ରାପଡ଼ା ବଳଦେବଜୀଉ ମନ୍ଦିର, ସମ୍ପୂର୍ଣ୍ଣ ଧୂଳିସାତ ହେଲା । ମାତ୍ର କେତେକ ଐତିହାସିକ ଏ କଥାକୁ ଅସ୍ୱୀକାର କରନ୍ତି ।

ଆଉ ଜଣେ ମୁସଲମାନ ସେନାପତି ହୁସେନ ସାହା । ସେ ଥିଲା ଦୁର୍ଦ୍ଦାନ୍ତ । କୋଣାର୍କ ସମେତ ଅନ୍ୟ ହିନ୍ଦୁ ମନ୍ଦିର ଧ୍ୱଂସର କାରଣ ପାଲଟିଲା (ଖ୍ରୀ.ଅ. ୧୪୯୮– ୧୫୧୬ ଖ୍ରୀ.ଅ.) । କେତେକ ଐତିହାସିକଙ୍କ ଏଇ ମତ । ଗଜନୀର ମହମ୍ମଦ ଗୁଜରାଟ ପାଇଁ ଯେମିତି ଘୃଣ୍ୟ, ଠିକ୍ ସେମିତି କଳାପାହାଡ଼ ଓଡ଼ିଶାବାସୀଙ୍କ ପାଇଁ । ଉଭୟ ଚରିତ୍ର ମଧ୍ୟରେ ରହିଛି ସାମାନ୍ୟ ତାରତମ୍ୟ । ମାଦଳାପାଞ୍ଜିରେ ସ୍ଥାନିତ କଳାପାହାଡ଼ ଆଖ୍ୟାନ । ମାଦଳାପାଞ୍ଜି ଏକ ଐତିହାସିକ ପୋଥି । ଓଡ଼ିଶା ଗଜପତି ରାଜାଙ୍କର ଶାସନକାଳୀନ ଘଟଣାମାନ । ତାହା ସେହି ପୋଥିରେ ଲିଖିତ । କଳାପାହାଡ଼ ଶ୍ରୀମନ୍ଦିର ଆକ୍ରମଣ କଲା (୧୫୬୮) । ଏ ତଥ୍ୟଟି ମାଦଳା ପାଞ୍ଜି କହେ । ମାଦଳା ପାଞ୍ଜି ରାଜାଙ୍କ ଆଦେଶରେ ଲିଖିତ । ନିଜକୁ ସୁହାଇଲା ଭଳି ତଥ୍ୟ ଏଥିରେ ଲେଖାଇଥାଇ ପାରନ୍ତି । ଏ କଥାଟି ମଧ୍ୟ ଗୁରୁତ୍ୱପୂର୍ଣ୍ଣ । କଳାପାହାଡ଼ ବଳଦେବଜୀଉ ମନ୍ଦିର ଧ୍ୱଂସ କଲା । ଏ ସମ୍ଭାବନାକୁ ମଧ୍ୟ ଏଡ଼ାଇ ଦିଆ ଯାଇ ନପାରେ । ତେବେ କେନ୍ଦ୍ରାପଡ଼ା ମନ୍ଦିର ବିଧର୍ମୀଙ୍କ ଦ୍ୱାରା ଧୂଳିସାତ୍, ଏହା ଇତିହାସ ସିଦ୍ଧ । କେନ୍ଦ୍ରାପଡ଼ା ଇଚ୍ଛାପୁରଠାରେ ଶ୍ରୀଜୀଉଙ୍କ ନୂତନ ମନ୍ଦିର । ଏଇଟି ମୂଳ ମନ୍ଦିର ନୁହେଁ । କେନ୍ଦ୍ରାପଡ଼ା ପୁରୁଣା ବସ୍‌ଷ୍ଟାଣ୍ଡ, ପାଖରେ କଚେରି ପଡ଼ିଆ । ସେଇଠି ନିର୍ମିତ ଜୁମା ମସ୍‌ଜିଦ୍ । ତାହା ବଳଦେବଜୀଉଙ୍କ ଭଗ୍ନ ମନ୍ଦିର ଉପରେ ନିର୍ମିତ । ଏ କଥାଟି ବିଶ୍ୱାସ କରାଯାଏ । ଦିଲ୍ଲୀର ମୋଗଲ ବାଦଶାହା ଆଉରଙ୍ଗଜେବ୍, ସେ ଜଣେ ନିଷ୍ଠୁର, ମୌଳବାଦୀ ଶାସକ । ହିନ୍ଦୁ ଦେବଦେବୀ ମନ୍ଦିର ଭଗ୍ନ । ତା' ଉପରେ ମସ୍‌ଜିଦ୍ ନିର୍ମାଣ, ଏହା ଥିଲା ତାଙ୍କର ଲକ୍ଷ୍ୟ । ଏଇ ଉଦ୍ଦେଶ୍ୟକୁ କାର୍ଯ୍ୟକାରୀ କଲେ । ବଙ୍ଗ ଓଡ଼ିଶାର ସୁବେଦାର ଖାନ୍–ଇ–ଦୁରାଣୀ । ତାଙ୍କର ଦୁର୍ଦ୍ଧର୍ଷ ସେନାନାୟକ ମିଆଦ ମହମ୍ମଦ । ତାଙ୍କରି ସାହାଯ୍ୟ ନେଲେ ସୁବେଦାର । ମିଆଦ ମହମ୍ମଦ ବଳଦେବ ମନ୍ଦିରଟିକୁ ମାଟିରେ ମିଶାଇ ଦେଲା (୧୬୬୩ ଖ୍ରୀ.ଅ.) । ମନ୍ଦିର ଉପରେ ନିର୍ମିତ ହେଲା ଜୁମା ମସ୍‌ଜିଦ୍ । ସ୍ୱୟଂ ସୁବେଦାର ମିଆଦ୍ ମହମ୍ମଦକୁ ସାବାସୀ





ଦେଲେ, ପୁରସ୍କୃତ କଲେ । ପୁରୁଣା ମନ୍ଦିରଟି ନିର୍ମିତ ସ୍ଥାନ ଔରଙ୍ଗ କନ୍ଦରାପାଡ଼ି । ବନ୍ଦୋବସ୍ତ କାଗଜପତ୍ରରେ ତାହା ସ୍ପଷ୍ଟ । ପୁରୁଣା ବସ୍ତିଷ୍ଟାଣ୍ଡର ଅନତି ଦୂର, ସେଠାରେ ପୁଷ୍କରିଣୀଟେ, ନାଁ ଔରଙ୍ଗ ପୁଷ୍କରିଣୀ । ସେଠାରେ ଶ୍ରୀଜୀଉଙ୍କର ଚନ୍ଦନ ଯାତ୍ରା ହେଉଥିଲା । ବିଲୁପ୍ତ ମନ୍ଦିରଠାରୁ ସାନ୍ତସାହି ପର୍ଯ୍ୟନ୍ତ ରାସ୍ତା । ଏକଦା ଥିଲା ରଥଦାଣ୍ଡ । ଶ୍ରୀଜୀଉଙ୍କ ରଥଯାତ୍ରା ହେଉଥିଲା । ସାନ୍ତସାହିଠାରେ ଗୁଣ୍ଡିଚା ମନ୍ଦିରର ଭଗ୍ନାଂଶ । ଏବେବି ଅତୀତ ସ୍ମୃତିକୁ ରୋମନ୍ଥନ କଲେ । ପୁରୁଣା ମନ୍ଦିର ପୀଠରେ ସଦର୍ପେ ଦଣ୍ଡାୟମାନ ତିନିଟି ଲିମ୍ବବୃକ୍ଷ । ପୁରାତନ ମନ୍ଦିର ପରିସର ଦୁଇ ଡିସିମିଲି ଭୂମି । ନିକଟ ଅତୀତରେ ସେଠାରେ ଭୂଖନନ ହେଲା । ମିଳିଲା ଏକ ଭଗ୍ନ ମନ୍ଦିରର ଦଧିନଉତି । ତାହା ବଳଦେବଜୀଉ ମନ୍ଦିରର । ପୁରାତନ ମନ୍ଦିର ନିର୍ମିତ ଭୂମିର ଆୟତନକୁ ବିଚାରକୁ ନିଆଯାଏ । ତାହା ମାତ୍ର ଦୁଇ ଡେସିମିଲି । ସେଠାରେ କେବଳ ସ୍ୱୟଂ ବଳଦେବଙ୍କ ମୂର୍ତ୍ତି ପୂଜା ପାଉଥିଲେ । ଏକଥାଟି ବି ସ୍ୱୀକୃତ । ଖ୍ରୀ.ଅ. ୯ମ ଶତାବ୍ଦୀର ଅନ୍ତିମ ପାଦ । ଏଇ ସମୟରେ ପୁରାତନ ମନ୍ଦିରଟି ନିର୍ମିତ । ଭୌମ୍ୟକର ରାଜବଂଶର ମହାରାଣୀ ପୃଥ୍ୱୀ ମହାଦେବୀ । ତାଙ୍କର ଅନ୍ୟ ନାମ ତ୍ରିଭୁବନ ଦେବୀ । ସେ ବୈଷ୍ଣବ ଧର୍ମର ପୃଷ୍ଠପୋଷକ । ମହାରାଣୀ ନିଜକୁ 'ପରବ ବୈଷ୍ଣବୀ' ଘୋଷଣା କଲେ । ଅନେକ ବୈଷ୍ଣବ ମନ୍ଦିର ତିଆରି କଲେ । ତନ୍ମଧ୍ୟରେ କେନ୍ଦ୍ରାପଡ଼ାର ବଳଦେବଜୀଉଙ୍କ ମୂଳ ମନ୍ଦିର ଅନ୍ତର୍ଭୁକ୍ତ । ତ୍ରିଭୁବନ ଦେବୀଙ୍କ ଆଉ ଗୋଟେ ନାମ 'ସିଦ୍ଧ ଗୌରୀ ଦେବୀ' । ପ୍ରଥମେ ସେ ବଳଦେବଙ୍କ ଉପାସନା ଆରମ୍ଭ କଲେ । ତେଣୁ ତାଙ୍କ ନାମାନୁସାରେ ବଳଦେବ ସିଦ୍ଧ ବଳଦେବ । ବାହ୍ୟ ଶତ୍ରୁ ଆକ୍ରମଣରୁ ଶ୍ରୀମନ୍ଦିର ବର୍ତ୍ତି ନଥିଲା । ଚତୁର୍ଦ୍ଧା ମୂର୍ତ୍ତି ମୋଟ୍ ୨୨ ଥର ସ୍ଥାନାନ୍ତରିତ । କେଇବାର ପାତାଳି ହେଇଛନ୍ତି । ଠିକ୍ ସେମିତି କେନ୍ଦ୍ରାପଡ଼ା ବଳଦେବ, ସେ ମଧ୍ୟ ପାତାଳି ହୋଇଛନ୍ତି । ଜନୈକ ବ୍ରାହ୍ମଣ ସିଦ୍ଧାଚାର୍ଯ୍ୟ । ଇଚ୍ଛାପୁରର ଅନତି ଦୂରରେ ତୁଳସୀପୁର ନାମକ ପଡ଼ିଆ । ପାତାଳଗର୍ଭରୁ ସିଦ୍ଧାଚାର୍ଯ୍ୟ ଉଦ୍ଧାର କଲେ ବଳଦେବଜୀଉ ମୂର୍ତ୍ତି । ସେଇ ମୌଜାର ନାଁ ଭଗବାନପୁର । କେହି କେହି 'ସିଦ୍ଧ ଦାସ' ନାମକ ଗୋପାଳ କଥା ଉଠାନ୍ତି । ସେ ଶ୍ରୀଜୀଉଙ୍କୁ ଉଦ୍ଧାର କରିଛନ୍ତି । ତେଣୁ ସିଦ୍ଧ ଦାସଙ୍କ ନାମାନୁସାରେ 'ସିଦ୍ଧ ବଳଦେବ' । ଏସବୁ କିମ୍ବଦନ୍ତୀ । ମାତ୍ର ବଳଦେବଜୀଉ ବିଗ୍ରହ ଉଦ୍ଧାର ସମ୍ବନ୍ଧୀୟ ଆଉ ଏକ ତଥ୍ୟ । ତାହା ଅଧିକ ଯୁକ୍ତିଯୁକ୍ତ । ଏଥି ସହ ଇତିହାସ ସଂଯୁକ୍ତ ।

ଖାନ୍–ଇ–ଦୁରାଣୀଙ୍କ ସେନାପତି ମିଆଦ ମହମ୍ମଦ । ଆକ୍ରମଣ କଲେ ବଳଦେବଜୀଉ ମନ୍ଦିର । ଶ୍ରୀଜୀଉଙ୍କ ବିଗ୍ରହ । ସେବକମାନେ ଗୋପନରେ ନେଇଗଲେ । ପ୍ରଥମେ ବିଗ୍ରହ ଗୁପ୍ତରେ ରହିଲେ । ସ୍ଥାନ ବାରଙ୍ଗ (ଛେଦରା) ଜଙ୍ଗଲରେ । ପରେ ହେଲେ ସ୍ଥାନାନ୍ତରିତ । କେନ୍ଦ୍ରାପଡ଼ା ପାର୍ଶ୍ୱ ଦେଇ ପ୍ରବାହିତା ପୁଣ୍ୟତୋୟା ଗୋବରୀ । ସେଇ ନଦୀବାଟେ । ବିଗ୍ରହଙ୍କୁ ଅଣାଗଲା । ଜିଲ୍ଲାର ଅପର ଦିଗରେ ବହିଯାଇଛି ଲୁଣାନଦୀ । ପାଖ ଗାଁ ବଳରାମପୁର । ଗାଁ ଶେଷରେ ସଖୀବଟ । ସେଇଠି ରହିଲେ ବଳଦେବଜୀଉଙ୍କ ବିଗ୍ରହ । ଢେର୍ ବର୍ଷ ଗଲା । ଶ୍ରୀଜୀଉଙ୍କ ନୂତନ ମନ୍ଦିର, ନିର୍ମିତ ହେଲା ଇଚ୍ଛାପୁରଠାରେ । ସେତେବେଳେ ମରାଠା ଶାସନ । ୧୭୬୧ ଖ୍ରୀ.ଅ. । କୁଜଙ୍ଗରାଜା ଗୋପାଳ ଷଣ୍ଢ, ଛେଦରା କିଲ୍ଲା ଜମିଦାର ଶ୍ରୀନିବାସ ନରେନ୍ଦ୍ର ମହାପାତ୍ର ଉଭୟ ମନ୍ଦିରଟି ତିଆରି କଲେ । ସଖୀବଟରୁ ଦିଅଁ ଆସିଲେ । ବିଜେ କଲେ ରତ୍ନସିଂହାସନରେ । ଜଣେ ସାଧୁ ଗୋପୀଦାସ, ତାଙ୍କ ସହ ସୈରତକ ଗିରି, ମରାଠା ଶାସନ ମୁଖ୍ୟ ଥାଆନ୍ତି ଯୋନୋଜୀ । ତାଙ୍କ ଅନୁମତି ଲୋଡ଼ିଲେ । ନିର୍ମାଣ କଲେ ଜଗମୋହନ, ଭୋଗମଣ୍ଡପ, ଏସବୁ ମୁଖ୍ୟ ମନ୍ଦିରର ଅଂଶବିଶେଷ । ଏଥିସହ ନିର୍ମିତ ହେଲା ଗୁଣ୍ଡିଚା ମନ୍ଦିର । ମନ୍ଦିର ଚତୁଃପାର୍ଶ୍ୱ ବେଢ଼ା । ସବୁର ଊର୍ଦ୍ଧ୍ୱରେ ଆଉ ଗୋଟେ ନିଛକ ସତ୍ୟ । ବଳଦେବଜୀଉଙ୍କ ମୂଳ ମନ୍ଦିର ନିର୍ମାଣ । ଏ ସମ୍ପର୍କିତ ଇତିହାସ ନୁହେଁ ଦୃଢ଼ ନିଶ୍ଚିତ । କେହି ଅଷ୍ଟମ ଶତାବ୍ଦୀ ତ ଅନ୍ୟମାନେ ଏକାଦଶ ଶତାବ୍ଦୀ– ଏମିତି ଭିନ୍ନ ମତ । ଅଧୁନା ଜୀଉଙ୍କର ମନ୍ଦିର ଯେ ମୂଳ ମନ୍ଦିର ନୁହେଁ ଏଥିରେ ଦ୍ୱିମତ ନାହିଁ ।

ସିଦ୍ଧ ବଳଦେବଜୀଉ ଜଗନ୍ନାଥଙ୍କର ଜ୍ୟେଷ୍ଠଭ୍ରାତା, ତେଣୁ ତାଙ୍କ ମନ୍ଦିର 'ବଡ଼ ଦେଉଳ' ବା 'ବଡ଼ ମନ୍ଦିର' । ତୁଳସୀକ୍ଷେତ୍ରର ଆୟତନ ପ୍ରାୟ ଆଠକୋଶ, ମଧ୍ୟସ୍ଥଳରେ ଶ୍ରୀଜୀଉଙ୍କ ସାମ୍ପ୍ରତିକ ମନ୍ଦିର । କେନ୍ଦ୍ରାପଡ଼ା ସଦର ମହକୁମାର ପୂର୍ବ ଦିଗକୁ ମାତ୍ର ୪ କି.ମି. ଦୂର । ସେଇଠି ଶ୍ୟାମଗୁଡ଼ିଆ ମୌଜା (ଇଚ୍ଛାପୁର ଗ୍ରାମ) । ମନ୍ଦିରଟି ସେଠାରେ ଦଣ୍ଡାୟମାନ । ବଡ଼ ଦେଉଳରୁ ଗୁଣ୍ଡିଚା ମନ୍ଦିର । ଦୂରତା ପ୍ରାୟ ୧ କି.ମି. (୯୪୨ ମିଟର) । ରଥଦାଣ୍ଡ ଚଉଡ଼ା ୫୦/୬୦ ମିଟର । ଶ୍ରୀଜୀଉଙ୍କ ବିଜେସ୍ଥଳି ଭୂସମ୍ପତ୍ତିଗାଏ ମୋଟ୍ ୩ ଏକର ୨୪ ଡିସିମିଲି । ତନ୍ମଧ୍ୟରୁ ଖାତା ନଂ–୩୭୫, ପ୍ଲଟ୍ ନଂ–୨୧୮୨ – ଏଥିରେ ମୋଟ୍ ଏକ ଏକର ୧୪ ଡେସିମିଲି, ତାହା ଜୀଉଙ୍କ ବେଢ଼ାର ଆୟତନ । ଖାତା ନଂ–୩୭୫ରୁ ପ୍ଲଟ୍ ନଂ–୨୧୮୧, ମୋଟ୍ ଜମି ୧୦୦ ଡେସିମିଲି । ଏଇ ପରିସରରେ ବଡ଼ ଦେଉଳ, ମଝି ଦେଉଳ, ଜଗମୋହନ, ରୋଷଘର, ଶ୍ରୀବାସୁଦେବ ମନ୍ଦିର, ମୁକ୍ତି ମଣ୍ଡପ, ସ୍ନାନ ମଣ୍ଡପ, ଝୁଲଣ ମଣ୍ଡପ, ଶ୍ରୀଜୀଉଙ୍କ ଭଣ୍ଡାର କକ୍ଷ, କାଶୀ ବିଶ୍ୱନାଥ ମନ୍ଦିର, ଶ୍ରୀରାମ ମନ୍ଦିର, ବୈକୁଣ୍ଠେଶ୍ୱର ମନ୍ଦିର, ଶ୍ରୀ ଶ୍ରୀ ବଳଦେବଜୀଉଙ୍କ ମନ୍ଦିର ସମେତ, ବେଢ଼ା ମଧ୍ୟସ୍ଥ ଅନ୍ୟ ମନ୍ଦିର । ସବୁର ଗଠନ ପିଢ଼ ଶୈଳୀରେ । ମୁଖ୍ୟ ଗର୍ଭଗୃହର ଉଚ୍ଚତା ୭୦ ଫୁଟ୍, ଲମ୍ବ ୩୫ ଫୁଟ୍, ଏଇଟି ଏକ ବର୍ଗାକାର ମନ୍ଦିର । ନଅପିଢ଼ ବିଶିଷ୍ଟ ମୁଖ୍ୟ ମନ୍ଦିର, ଶୀର୍ଷରେ ନୀଳଚକ୍ର । ତହିଁ ପରେ ଧବଳ ରଙ୍ଗର ନେତ ଚିର ଉଡ଼ୁଡ଼ୀୟମାନ । ନୀଳଚକ୍ର ଅଷ୍ଟଧାତୁ ନିର୍ମିତ, ଏହାର ଉଚ୍ଚତା ୪ ଫୁଟ୍ । ନୀଳଚକ୍ରରେ ବନ୍ଧା ଯାଏ ପାଞ୍ଚହାତ ଆଠ ଆଙ୍ଗୁଳ ଲମ୍ବ ଧବଳ ବାନା । ନେତ୍ରୋତ୍ସବ, ବଳଭଦ୍ର ଜନ୍ମ (ଗହ୍ମା ପୂର୍ଣ୍ଣିମା), ପୁଷ୍ୟାଭିଷେକ– ଏଇ ପବିତ୍ର ତିଥିରେ ନୀଳଚକ୍ର ବାନା ପରିବର୍ତ୍ତନ ବିଧି ।

ରତ୍ନବେଦୀ ବା ଗର୍ଭଗୃହ ଆଉ ଜଗମୋହନ – ମଧ୍ୟ ଭାଗରେ ମଝି ଦେଉଳ । ଏ ମନ୍ଦିର ପାଞ୍ଚ ପିଢ଼ ବିଶିଷ୍ଟ, ଉଚ୍ଚତା ୪୦ ଫୁଟ, ଲମ୍ବ ୩୫ ଫୁଟ । ମନ୍ଦିର ପ୍ରସ୍ଥ ବଡ଼ ଦେଉଳ, ଜଗମୋହନ ସହିତ ପ୍ରାୟ ସମାନ । କାନ୍ଥର ମୋଟେଇ ୬ ଫୁଟ । ଭିତର କ୍ଷେତ୍ରଫଳ ପ୍ରାୟ ୬୦୦ ବର୍ଗ ଫୁଟ । ଜଗମୋହନ ମନ୍ଦିରଟି ନିର୍ମିତ ସପ୍ତପିଢ଼ ଶୈଳୀରେ । ମନ୍ଦିରର ଉଚ୍ଚତା ୬୨ ଫୁଟ । ଭିତର ପଟ କ୍ଷେତ୍ରଫଳ ୬୨୦ ବର୍ଗ ଫୁଟ । ମନ୍ଦିର ମଝିରେ ଗରୁଡ଼ ସ୍ତମ୍ଭ । ଏହାର ଗୋଲେଇ ୪ ଫୁଟ ଉଚ୍ଚତା ୭୦ ଫୁଟ । ସ୍ତମ୍ଭ ଉପରେ ୧ ଫୁଟ ୨ ଇଞ୍ଚ ଉଚ୍ଚତାର ସୁନ୍ଦର ଗରୁଡ଼ ମୂର୍ତ୍ତି ବିରାଜମାନ । ଶ୍ରୀଜୀଉଙ୍କର ବାଟ ଦେଉଳ ବା ପ୍ରବେଶ ମନ୍ଦିରର ହିଁ ପ୍ରବେଶ ଦ୍ୱାର । ଏହାର ଦୁଇଟି ଦ୍ୱାର । ମୁଖ୍ୟ ପଥଟି ଶକ୍ତ କବାଟ ଦ୍ୱାରା ବନ୍ଦ । ମନ୍ଦିର ପ୍ରବେଶ ସମୟରେ ଡାହାଣ ପଟ ସମ୍ମୁଖରେ ପତିତପାବନ ମୂର୍ତ୍ତି, ତାଙ୍କ ସମ୍ମୁଖରେ ମହାବୀର ହନୁମାନ ବିରାଜିତ । ବାଟ ଦେଉଳର ନିର୍ମାତା ରାଧାଶ୍ୟାମ ନରେନ୍ଦ୍ର (ଖ୍ରୀ.ଅ. ୧୮୭୪–୧୮୭୭) । ଆଉ ଗୋଟେ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ତଥ୍ୟ । ବାରଙ୍ଗଗଡ଼ ଠାକୁର ରାଜା ଦୁର୍ଗାପ୍ରସାଦ ନରେନ୍ଦ୍ର ମହାପାତ୍ର । ତାଙ୍କ ଉପରେ ନ୍ୟସ୍ତ ଶ୍ରୀଜୀଉଙ୍କ ଛେରା ପହଁରା ନୀତି । ତାଙ୍କ ବିଧବା ରାଣୀଙ୍କଠାରୁ ଶ୍ରୀଜୀଉଙ୍କ 'ଛେରା ପହଁରା ସେବା' କ୍ରୟକଲେ ଜଗନ୍ନାଥ ଭ୍ରମରବର ରାୟ (୧୮୭୨) । ପରମ୍ପରା ସୂତ୍ରେ ଛେରା ପହଁରା ଚାଲିଲା । କ୍ରମେ ସେଇ ବଂଶର ଉତ୍ତରାଧିକାରୀମାନେ, ପରସ୍ପରରେ ବିବାଦ ମୁଣ୍ଡ ଟେକିଲା । କୁଳଗୋସେଇଁଙ୍କୁ 'ଛେରାପହଁରା' କ୍ଷମତା ଅର୍ପିତ ହେଲା । ତାହା ଏଯାବତ୍ ସମ୍ପାଦିତ ହୋଇ ଆସୁଛି । ସିଦ୍ଧବଳଦେବଜୀଉଙ୍କ ପୃଷ୍ଠଭୂମିରେ ଏସବୁ ଐତିହାସିକ ପ୍ରସଙ୍ଗ । ମାତ୍ର ପୁରାଣ, କିମ୍ବଦନ୍ତୀ ଖୁବ୍ ବଳିଷ୍ଠ । ଲୋକପ୍ରିୟ ମଧ୍ୟ ।

ଦ୍ୱାପର ଯୁଗର ଶ୍ରୀକୃଷ୍ଣ/ ବାସୁଦେବଙ୍କର ସେ ଅଗ୍ରଜ । ମହାଭାରତ ଯୁଦ୍ଧରେ ନିରପେକ୍ଷ ରହିଲେ । ଏହି ସମୟରେ ନାନାଦି ତୀର୍ଥ ପରିଦର୍ଶନ କଲେ । ଆସିଲେ ପବିତ୍ର ଉତ୍କଳ ଭୂମିକୁ । ଲଳିତଗିରିରେ ରାଜତ୍ୱ କରୁଥିଲା ମହାପ୍ରତାପୀ ରାକ୍ଷସ କନ୍ଦରା । ସେ ଶିବଙ୍କର ପରମ ଭକ୍ତ । ଅନ୍ୟ ଧର୍ମାବଲମ୍ବୀଙ୍କୁ ହୀନ ଚକ୍ଷୁରେ ଦେଖିଲା, ତା'ର ଉତ୍ପୀଡ଼ନ ସୀମା ଟପିଲା । ପ୍ରଭୁ ତାକୁ ନିଧନ କଲେ, ବିବାହ କଲେ ତା'ର ପାଳିତା କନ୍ୟା 'ତୁଳସୀ'ଙ୍କୁ ।





ରାକ୍ଷସର ଖଣ୍ଡବିଖଣ୍ଡିତ ଅଙ୍ଗପ୍ରତ୍ୟଙ୍ଗ, ବିଚ୍ଛୁରିତ ହୋଇ ପଡ଼ିଲା । ସେଇ ଅନୁସାରେ ସ୍ଥାନଗୁଡ଼ିକର ନାମକରଣ । ଶିରପଡ଼ିଥିବା ସ୍ଥାନ ଅସୁରଶିର, ଏବେ ଅସୁରେଶ୍ୱର ନାମରେ ବିଦିତ । ଦାନବ କନ୍ଦରାର ହସ୍ତ, ଆଙ୍ଗୁଳି, କଟି, ନାଭି, କେଶ, ଗଣ୍ଡିକୁ ନେଇ ଅନ୍ୟସ୍ଥାନଗୁଡ଼ିକ ନାମିତ । ସେଗୁଡ଼ିକ ହେଲା– ହାତିଆ, ଅଙ୍ଗୁଳେଇ, ନାଭିଖଣ୍ଡ (ନାହାଖଣ୍ଡ), କଟିକଟା, କମରଖଣ୍ଡି (କମାରଖଣ୍ଡି), ବଳଗଣ୍ଡି, ମଧଖଣ୍ଡି । କନ୍ଦରାର ମୃତ୍ୟୁ ସ୍ଥାନଟି 'କନ୍ଦରାପଡ଼ି' । ତାହା କାଳକ୍ରମେ କେନ୍ଦରାପଡ଼ା, କେନ୍ଦ୍ରାପଡ଼ା ନାମରେ ପରିଚିତ ହେଲା । ଦ୍ୱାପର ଯୁଗର ଶେଷ, କଳିର ଅୟମାରମ୍ଭ । ପ୍ରଭୁ ମହାଯୋଗରେ ଧ୍ୟାନସ୍ଥ ହେଲେ, ଅନନ୍ତରୂପରେ ଦେହତ୍ୟାଗ କଲେ । ଏଇ ସ୍ଥାନଟି ଲଳିତଗିରି । ଲଳିତଗିରି ବଳଦେବଙ୍କ ମହାପ୍ରୟାଣ ପୀଠର ମାନ୍ୟତା ପ୍ରାପ୍ତ । ବଳଦେବଙ୍କ ଏକ ମୂର୍ତ୍ତି ସେଠାରେ ପ୍ରକାଶ ପାଇଛି । ହାତରେ ମୂଷଳ, ମସ୍ତକରେ ପଞ୍ଚଫଣୀ ନାଗ ଶୋଭିତ । ମୂର୍ତ୍ତିଟି ବହୁ ପ୍ରାଚୀନ, ପ୍ରାୟ ୨୩୦୦ ବର୍ଷ ପୂର୍ବର । ମୂର୍ତ୍ତିଟିର ପ୍ରାଚୀନତା ସମ୍ପର୍କରେ ଏଇଟି ଏକ ଆନୁମାନିକ ତଥ୍ୟ ।

ସିଦ୍ଧ ବଳଦେବଜୀଉ କନ୍ଦରା ନିଧନ କଲେ । ସ୍ୱଇଚ୍ଛାରେ ଆପଣାଇଲେ ବିଜେସ୍ଥଳୀ । କେନ୍ଦ୍ରାପଡ଼ାର ପୂତ ସଲିଳା ମଧୁସାଗର । ବହି ଯାଉଥିଲା ମଧସ୍ଥଳରେ । ଏବେ ନଦୀଟି ପୋତି ହୋଇଗଲାଣି । ତଟବର୍ତ୍ତୀ ସ୍ଥାନ କୃଷିକ୍ଷେତ୍ର, ଜନବସତି । ରୋହିଣୀ ନନ୍ଦନ ମଧୁସାଗର ତଟକୁ ଆପଣାର ନିବାସ ସ୍ଥଳୀ ବାଛିଲେ । ସ୍ୱଇଚ୍ଛାରେ ସ୍ଥାନଟି ନିରୂପଣ କଲେ, ତାହା ଇଚ୍ଛାପୁର ନାମରେ ଖ୍ୟାତ । ନିର୍ମିତ ହେଲା ସୁଦୃଶ୍ୟ ମନ୍ଦିରଟିଏ । ବ୍ୟାସଦେବଙ୍କ ପ୍ରଣୀତ ବ୍ରହ୍ମତନ୍ତ୍ର, ପଦ୍ମପୁରାଣ ଏ ଦୁଇ ଉପାଦେୟ ଗ୍ରନ୍ଥରେ ତୁଳସୀ କ୍ଷେତ୍ର ମାହାତ୍ମ୍ୟ ବର୍ଣ୍ଣିତ । ଶ୍ଳୋକଗୁଡ଼ିକ ସଂସ୍କୃତରେ ଲିପିବଦ୍ଧ । ଏହାକୁ ବିପ୍ରମାଧୁରୀ ନାମକ ଜଣେ ସନ୍ଥ ପ୍ରାକୃତ ଭାଷାରେ ରଚନା କଲେ । ଏହା ନବାକ୍ଷରୀ ଛନ୍ଦରେ ଲିଖିତ, ତୁଳସୀ କ୍ଷେତ୍ରରେ ପ୍ରଭୁ ବଳଦେବ, ସାନଭାଇ ଜଗନ୍ନାଥ, ଭଗିନୀ ସୁଭଦ୍ରା ପୂଜିତ ହେଉଥିଲେ, ଏ କଥାଟି ତୁଳସୀ ମାହାତ୍ମ୍ୟରେ ବର୍ଣ୍ଣିତ । ଏଥି ସହିତ ମଧୁସାଗର ସୃଷ୍ଟି ସମ୍ପର୍କିତ ତଥ୍ୟ ଏଥିରେ ବି ପ୍ରଦତ୍ତ । କନ୍ଦରାର ସେନାଧ୍ୟକ୍ଷ 'ମଧୁ' । ବଳଦେବଙ୍କ ସହ ଘୋର ରଣ କଲା । ଶେଷରେ ନିଧନ ହେଲା । ଦୈତ୍ୟର ରକ୍ତରେ ନଦୀଟିଏ ସୃଷ୍ଟି ହେଲା, ମିଶିଲା ମହୋଦଧି ବଙ୍ଗୋପସାଗରରେ । ମଧୁଦୈତ୍ୟର ନାମାନୁସାରେ ନଦୀଟି ନାମିତ । ତାହା ମଧୁସାଗର । ପ୍ରକାଶ ଥାଉକି, ପବିତ୍ର କାର୍ତ୍ତିକ ଏକାଦଶୀରେ କନ୍ଦରା ନିହତ ହେଲା । ଦ୍ୱାଦଶୀରେ ପ୍ରଭୁ ତୁଳସୀଙ୍କ ପାଣିଗ୍ରହଣ କଲେ । ସ୍ୱର୍ଗରୁ ଆସିଲେ ବିଶ୍ୱକର୍ମା । କନ୍ଦରା ପାଡ଼ିରେ କ୍ଷେତ୍ର ରଚନା କଲେ । କାର୍ତ୍ତିକ ପୂର୍ଣ୍ଣମାରେ ସ୍ୱର୍ଗରୁ ଦେବଦେବୀ ଓହ୍ଲାଇ ଆସିଲେ । କ୍ଷେତ୍ରଟିକୁ ପ୍ରତିଷ୍ଠା କଲେ । ଏସବୁ ପୁରାଣର କଥା । 'ମଧୁସାଗର' ସମ୍ପର୍କରେ 'ତତ୍ତ୍ୱ ବୋଧୟିନୀ' ପୁସ୍ତକରେ ସୂଚନା ରହିଛି । ଏହାର ଲେଖକ ଅଚ୍ୟୁତାନନ୍ଦ ଦାସ, ସେ ଭବିଷ୍ୟବାଣୀ କରିଥିଲେ– ''ମଧୁସାଗର ଗୁପ୍ତ ହୋଇବ/ଅନନ୍ତ କୀରତି ପ୍ରକାଶ ହେବ ।'' ଅଧୁନା ମଧୁସାଗର ତା'ର ଅସ୍ତିତ୍ୱ ହରାଇଛି, ତଥାପି କ୍ଷୀର୍ଣ୍ଣ ଧାରାଟିଏ ହେଇ ବହିଚାଲିଛି ।

ତୁଳସୀ କ୍ଷେତ୍ରାଧିପତି 'ମଣିବ୍ରହ୍ମ' । ସେ ସ୍ୱୟଂ ବ୍ରହ୍ମସ୍ୱରୂପ । ନବକଳେବର ନୀତିରେ ମହାପ୍ରଭୁଙ୍କ କେବଳ ବସ୍ତ୍ର ପରିଧାନ ପରିବର୍ତ୍ତନ ହୁଏ । ପ୍ରଭୁ ବଳଦେବ ସ୍ୱୟଂ 'ବ୍ରହ୍ମ' । ତାଙ୍କ କ୍ଷେତ୍ର 'ବ୍ରହ୍ମକ୍ଷେତ୍ର' – ''ସାନ୍ନିଧ କଲ୍ପୟିତ୍ୱ ସ୍ମିନ୍ କ୍ଷେତ୍ରେ ବ୍ରହ୍ମ ପ୍ରତିଷ୍ଠିତ/ବିଖ୍ୟାତଂ ତୁଳସୀ ସାମ୍ନା କ୍ଷେତ୍ରଂ ପ୍ରଭୁ ସୁରେଶ୍ୱରଃ ।'' ସନ୍ଥ ହାଡ଼ିଦାସଙ୍କ ଭାଷାରେ – ''ବଳଦେବ ଯେ ଚିର ବସନ୍ତ/ସେହି ଶେଷଦେବ ସେହି ଅନନ୍ତ ।'' ତାଙ୍କରି କ୍ଷେତ୍ର ତୁଳସୀ କ୍ଷେତ୍ର, ବ୍ରହ୍ମକ୍ଷେତ୍ର । ଶ୍ରୀମଦ୍ ଭାଗବତ ଦଶମ ସ୍କନ୍ଧରେ ପ୍ରଭୁଙ୍କ ମହିମା ବର୍ଣ୍ଣିତ– ''ଗର୍ଭ ସଙ୍କର୍ଷଣାକତ୍ ତଂ ବୈ ପ୍ରାହୁଃ ସଂକର୍ଷଣ ଭୁବି / ରାମେତ ଲୋକରମଣାତ୍ ବଳଂ ବଳବଦୁଚ୍ଛୟାତ୍ ।''

ବଳଦେବ ବଳଶାଳୀ, ଯୋଦ୍ଧା ମାତ୍ର ଶାନ୍ତି ପ୍ରିୟ । ଯୁଦ୍ଧଠାରୁ ସେ ବହୁ ଦୂରରେ । ମହାଭାରତ ଯୁଦ୍ଧରେ ସେ କୌଣସି ପକ୍ଷ ସମର୍ଥନ କରିନଥିଲେ । ଅହିଂସାରେ ସେ



ବିଶ୍ୱାସୀ । ବୌଦ୍ଧ ଧର୍ମାବଲମ୍ବୀମାନେ ଶାନ୍ତି ପ୍ରିୟ । ଅହିଂସା ସେମାନଙ୍କର ପରମ ଧର୍ମ । ତେଣୁ ବୁଦ୍ଧପନ୍ଥୀମାନେ ବଳଦେବଙ୍କୁ ଦେବତାଭାବେ ସ୍ୱୀକାର କରନ୍ତି । ସିଦ୍ଧ ବଳଦେବ ପୀଠ, ଉଭୟ ବୌଦ୍ଧ ହିନ୍ଦୁ ଧର୍ମର ମିଳନସ୍ଥଳୀ । କେନ୍ଦ୍ରାପଡ଼ା ସହରସ୍ଥ ବାରଙ୍ଗ ଝାଡ଼ ମଧ୍ୟରେ ଏକ ଉତ୍ତରାଭିମୁଖୀ ମନ୍ଦିର ଥିଲା । ଛେଦରା ଜିଲ୍ଲାର ରାଜା ଶ୍ରୀନିବାସ ନରେନ୍ଦ୍ର, ସେଇ ମନ୍ଦିରରେ ବୁଦ୍ଧ ମୂର୍ତ୍ତିଟିଏ ସ୍ଥାପନ କଲେ । ଚାଲିଲା ପୂଜାରାଧନା । ସେହି ସ୍ଥାନରେ ବର୍ତ୍ତମାନର ସିଦ୍ଧ ବଳଦେବଜୀଉ ମନ୍ଦିର ତୋଳିଲେ (୧୬୬୦ ମସିହା) । ଏହି ବୌଦ୍ଧ ମୂର୍ତ୍ତି ବଳଦେବଙ୍କ ପିତା ବାସୁଦେବ ଭାବେ ଉପାସିତ । ଜୈନ ଧର୍ମରେ ବଳଦେବଙ୍କ ଆୟୁଧ ହଳ, ମୂଷଳ, ଧନୁତୀର । ଜୈନଧର୍ମାବଲମ୍ବୀମାନେ ଅହିଂସା ପନ୍ଥୀ । କୋଟି ସିଂହ ପରାକ୍ରମଶାଳୀ ବଳଦେବ ତଥାପି ସେ ଯୁଦ୍ଧର ପରିପନ୍ଥୀ । ଏଇଥି ପାଇଁ ତାଙ୍କୁ ଆପଣାର ଦେବତା ଭାବେ ଜୈନମାନେ ପୂଜା କରନ୍ତି ।

ମଣିବ୍ରହ୍ମ-ଶିଳା ବିଗ୍ରହ ସିଦ୍ଧ ବଳଦେବ । ବୌଦ୍ଧ, ଶୈବ, ଜୈନ, ନାଥ – ଏ ସମସ୍ତ ଧର୍ମଦର୍ଶନର ସମନ୍ୱିତ, ବଳଦେବ ଦର୍ଶନ । ମ୍ଲେଚ୍ଛ ସଂହାର, ଦୁଷ୍ଟ ନିବାରଣ, ସନ୍ଥ ପାଳନ, ଗୋବ୍ରାହ୍ମଣ ହିତାର୍ଥେ ତାଙ୍କର ଏ ଅବତାର । ଗୁପ୍ତ ବ୍ରହ୍ମକ୍ଷେତ୍ରରେ ସେ ସିଦ୍ଧ ବଳଦେବଜୀଉ, ସର୍ବଧର୍ମ – ସର୍ବମତର ଅପୂର୍ବ ସମନ୍ୱୟର ଦେବତା ସେ । ତାଙ୍କୁ ଥରୁଟିଏ ଦର୍ଶନ ପାଇଁ ଭକ୍ତଟିଏ ବ୍ୟାକୁଳ । ଆକୁଳରେ ମିନତି କଲେ ମହାପ୍ରଭୁଙ୍କ ଆଶିଷ ବରଷେ, ଭକ୍ତ ଜନ-ମନ ଚାତକ ତୃଷା ମେଣ୍ଟେ । ପାପୀ-ତପି ଉଦ୍ଧରି ଯାଆନ୍ତି ଭବ ବନ୍ଧନରୁ । ନିର୍ଗୁଣ ବ୍ରହ୍ମ ସିଦ୍ଧ ବଳଦେବଜୀଉ ସାଧୁ, ସଜ୍ଜନ, ସନ୍ଥ, ମୁନି ଋଷିଙ୍କୁ ସୁରକ୍ଷା ପ୍ରଦାନ କରନ୍ତି । ଏଇଥି ପାଇଁ ସେ 'ବଳଦେବ' । ପ୍ରଭୁ ଧର୍ମ, ଅର୍ଥ, କାମ, ମୋକ୍ଷ – ଚଉବର୍ଗ ଫଳ ପ୍ରଦାନ କରନ୍ତି, ତେଣୁ ସେ 'ବଳଭଦ୍ର' । ପାପ ନିବାରଣ, କୃଷି ଉତ୍ପାଦନ, ପ୍ରାଚୁର୍ଯ୍ୟ ସୃଷ୍ଟିକାରୀ, ଆନନ୍ଦ ବର୍ଦ୍ଧକ ହୋଇଥିବାରୁ ମହା ପ୍ରଭୁ 'ବଳରାମ' । କୂଟ, କପଟ, ହିଂସା ରହିତ, ନିରହଙ୍କାର ଦେବତା ସିଦ୍ଧ ବଳଦେବ । ତାଙ୍କରି ତୁଲ୍ୟ କାହିଁ ଆନ ଦେବତା ସଂସାରେ ନାହାନ୍ତି । ତାଙ୍କରି କରୁଣାଶିଷ ଟିକକ ପାଇଁ ଭକ୍ତଟି ବ୍ୟାକୁଳ, ବହି ଯାଉଛି ଆନନ୍ଦାଶ୍ରୁ, ତଲ୍ଲୀନ ମନ, ପ୍ରାଣ, ହୃଦୟ ବିଭୁରସ ପାନରେ । ଯୋଡ଼ ହସ୍ତରେ ଗାଉଛି – ''ଶ୍ରୀ ତୁଳସୀକ୍ଷେତ୍ର ମଧ୍ୟସ୍ଥଳେ ଅଷ୍ଟୋତ୍ତର ଶତଦଳ କମଳେ ରତ୍ନ ସିଂହାସନସ୍ଥଂ/ ନାନାଳଙ୍କାରେ ରମ୍ୟଙ୍ଗ ଶାଦରକୋଟି ସଦୃଶଂ/ ବାସୁଦେବାଗ୍ରଜଜାତୋ/ ଭଦ୍ରାୟ ଦକ୍ଷଭାବେ, ଶିରସି ସପ୍ତଫଣାଞ୍ଚିତଂ/ ସର୍ବ ଦେବେନ୍ଦ୍ର ବନ୍ଦ୍ୟଂ/ ମଧୁସାଗର କୂଳସ୍ଥାଂ ନବରୁଦ୍ରାଷ୍ଟ ଚଣ୍ଡୀପରିବୃତ୍ତଂ/ ମଣି ବିଗ୍ରହ ନମାମି ।'' ପ୍ରଭୁଙ୍କ ମୁଖ୍ୟ ନୈବେଦ୍ୟ ରସାବଳୀ । ଏଥିରୁ କଣିକାଏ, ତୁଣ୍ଡରେ ଦେଲେ ମିଳିଯାଏ ମୋକ୍ଷ, ମୁକ୍ତି । ପ୍ରଭୁ ବଳଦେବଜୀଉ କେନ୍ଦ୍ରାପଡ଼ାର ମୁଖ୍ୟ ଉପାସ୍ୟ ଦେବତା, ତାଙ୍କର ମହାପ୍ରସାଦ ରସାବଳୀ ପାଇଁ କେନ୍ଦ୍ରାପଡ଼ା ବିଖ୍ୟାତ ।

ସା/ପୋ: ପୁରୁଷୋତ୍ତମପୁର
ଜି: କେନ୍ଦ୍ରାପଡ଼ା -୭୫୪୨୨୩



# ସୁହୃଦ ଜଗନ୍ନାଥ

**ଶିବସୁନ୍ଦର ପଟ୍ଟନାୟକ**

ଶ୍ରୀଜଗନ୍ନାଥ ବିଦ୍ୟମାନ ଥିବା ଧାମ ପୁରୀ ଶ୍ରୀକ୍ଷେତ୍ର ରୂପେ ପରିଚିତ ଅଟେ । କ୍ଷେତ୍ରର ଅର୍ଥ ଲମ୍ବ ଓ ଓସାରରେ ଚାରି କୋଶ ପରିମିତ ସ୍ଥାନ ଯାହାକି ଏକ ନଦୀ ପୁଷ୍କରିଣୀ ବା ସମୁଦ୍ର ନିକଟସ୍ଥାନ ଯେଉଁଠାରେ କ୍ଷେତ୍ରାଧିପତି ଦେବତାଙ୍କ ମନ୍ଦିର ରହିଅଛି । ଏକ କୋଶର ଲମ୍ବା ଦୁଇ ମାଇଲ ଏବଂ ପାଞ୍ଚ ମାଇଲର ଲମ୍ବା ଆଠ କିଲୋମିଟର ଅଟେ । ପୁରୀ ସମୁଦ୍ରକୂଳବର୍ତ୍ତୀ ଅଞ୍ଚଳ ଯେଉଁଠାରେ ଶ୍ରୀଜଗନ୍ନାଥ ମନ୍ଦିର ଅଛି । ପୁରୀକୁ ଶ୍ରୀକ୍ଷେତ୍ର କୁହାଯାଏ କାରଣ ଶ୍ରୀଦେବୀ ଲକ୍ଷ୍ମୀଙ୍କର ଏଠାରେ ଭକ୍ତଙ୍କ ପ୍ରତି ଅନୁକମ୍ପା ରହିଥାଏ । ତା' ଛଡ଼ା ପୁରୀ ମଧ୍ୟ ଦେବତାତ୍ମା ରୂପେ ଖ୍ୟାତ କାରଣ ଏଠାରେ ଦେବତାମାନେ ଆସି ଶ୍ରୀଜୀଉ ଜଗନ୍ନାଥଙ୍କୁ ବନ୍ଦନା ଓ ସେବାପୂଜା କରିଯାଆନ୍ତି । ବିଭିନ୍ନ ଗ୍ରନ୍ଥମାନଙ୍କରେ ଶ୍ରୀଜଗନ୍ନାଥଙ୍କ ମହିମା ବର୍ଣ୍ଣନା ଅଛି । ଭୂପତି ପଣ୍ଡିତଙ୍କ 'ପ୍ରେମ ପଞ୍ଚାମୃତ'ରେ ବର୍ଣ୍ଣନା ଅଛି ଯେ ବସୁଦେବଙ୍କ ପ୍ରାର୍ଥନାରେ ଭଗବାନ ଶ୍ରୀଜଗନ୍ନାଥ ରୂପେ ଅବତୀର୍ଣ୍ଣ ହୋଇଅଛନ୍ତି । ଯଶୋବନ୍ତ ଦାସଙ୍କ ପ୍ରେମ ଭକ୍ତି ବ୍ରହ୍ମ ଗୀତାରେ ବର୍ଣ୍ଣନା ଅଛି ଯେ ରତ୍ନ ସିଂହାସନରେ ବ୍ରହ୍ମା, ବିଷ୍ଣୁ ଓ ଶିବ ବିଦ୍ୟମାନ ଏବଂ ଚାରିବେଦ ଚାରୋଟି ପାବଚ୍ଛ, ତିନୋଟି ବଇଠି–ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ଅଟେ ଏବଂ ବଳଭଦ୍ର–ବିରାଟ, ଶ୍ରୀଜଗନ୍ନାଥ–କୈବଲ୍ୟ ମୁକ୍ତିଦାତା, ସୁଭଦ୍ରା–ବ୍ରହ୍ମା ଓ ରାଧା, ସୁଦର୍ଶନ–ମହାଶୂନ୍ୟ, ବ୍ରହ୍ମଜ୍ୟୋତି ଓ ସନାତନ ଅଟନ୍ତି । ଏହାର ବିସ୍ତୃତି ବଳରାମ ଦାସଙ୍କ 'ବେଦାନ୍ତସାର ଗୁପ୍ତଗୀତା' ଏବଂ ଅଚ୍ୟୁତାନନ୍ଦଙ୍କ ଶୂନ୍ୟ ସଂହିତାରେ ପାଇ ପାରିବା । ଦିବାକର ଦାସ 'ଜଗନ୍ନାଥ ଚରିତା ମୃତ'ରେ ମଧ୍ୟ ବର୍ଣ୍ଣନା କରିଅଛନ୍ତି ଯେ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ସାକ୍ଷାତ୍ ଈଶ୍ୱର ଏବଂ ସମସ୍ତ ଅବତାରମାନ ଏଠାରୁ ପ୍ରକଟ ହୋଇଥାଏ । ଦୀନକୃଷ୍ଣ ଦାସଙ୍କ 'ରସକଲ୍ଲୋଳ'ରେ ବର୍ଣ୍ଣନା କରାଯାଇଛି ।

ଶ୍ରୀଜଗନ୍ନାଥ ଯଦି କୈବଲ୍ୟ ମୁକ୍ତିଦାତା ତେବେ ତାଙ୍କୁ ପାଇବା ପାଇଁ ଭକ୍ତି କରିବାକୁ ହେବ । ଶ୍ରୀମଦ୍ ଭାଗବତ ଗ୍ରନ୍ଥରେ ନବଧା ଭକ୍ତି ବିଷୟରେ ବର୍ଣ୍ଣନା ଅଛି ତାହା ମିଶ୍ର ବା ବୈଧ ଭକ୍ତି ଅଟେ । ତା'ର ଉଚ୍ଚ ସ୍ତର ହେଲା ରାଗାନୁଗା ଭକ୍ତି ଯାହାକି ଗୋପ ପୁରୁଷ ଓ ରମଣୀମାନେ ଗ୍ରହଣ କରିଥିଲେ । ଏଥିରେ ବାତ୍ସଲ୍ୟ ରସ ସାଖ୍ୟରସ ଓ ପ୍ରେମ ରସ ଅଛି । ପ୍ରେମ କାୟିକ ପ୍ରେମ ନୁହେଁ ଏହା ଶୁଦ୍ଧ ପ୍ରେମଭକ୍ତି ବା ନିଷ୍କାମ ପ୍ରେମ ଭକ୍ତି ଅଟେ । ଶ୍ରୀଜଗନ୍ନାଥ ଭକ୍ତିର ଅବତାର ଅଟନ୍ତି । ସେ କେବଳ ପ୍ରହ୍ଲାଦ ପରି ଭକ୍ତଙ୍କ ପ୍ରତି ସୁହୃଦ୍ ନୁହନ୍ତି ସେ ମଧ୍ୟ ଶତ୍ରୁଙ୍କ ପ୍ରତି ସୁହୃଦ ଅଟନ୍ତି । ଯେପରି ପୁତନା, ରାବଣ ପ୍ରତି ସେ ସଦୟ ହୋଇଥିଲେ । ପୁତନା ନିଜ ଛାତିରେ କାଳକୂଟ ବିଷ ବୋଲି ପାଞ୍ଚଦିନର ଶିଶୁ ଶ୍ରୀକୃଷ୍ଣଙ୍କୁ ମାରିବାକୁ ଚାହିଁଥିଲା । ସେ ନିଜେ ମଲା । କିନ୍ତୁ ଭଗବାନ ତାକୁ ସ୍ୱର୍ଗସୁଖ ଭୋଗ କରିବାକୁ ସୁଯୋଗ ଦେଲେ ।

ଭଗବାନ ଶ୍ରୀଜଗନ୍ନାଥଙ୍କୁ ପାଇବାକୁ ହେଲେ ଭକ୍ତିଭାବକୁ ଆଶ୍ରୟ କରିବାକୁ ହେବ । ଶ୍ରୀଜଗନ୍ନାଥଙ୍କୁ ଭକ୍ତି କଲେ ସେ ସହଜ ଲବ୍ଧ ହୋଇଯିବେ । କାମନା ଶୂନ୍ୟ ଭକ୍ତି ହେଲେ ଉତ୍କୃଷ୍ଟ କଥା । ଯେହେତୁ ସାଂସାରିକ ବନ୍ଧନରେ





ଆମେମାନେ ପଡ଼ିଅଛେ ଆମର କିଛି ଅପୂରଣୀୟ ରହିଥାଏ । ସେଥିପାଇଁ ଆମକୁ ଶ୍ରୀଜଗନ୍ନାଥଙ୍କୁ କିଛି ମାଗି ପ୍ରାପ୍ତ ହେବାପାଇଁ ସିଧା ଶ୍ରୀଜଗନ୍ନାଥଙ୍କୁ ମାଗିବା ଉଚିତ୍ ହେବ ନାହିଁ, ଯଦିଓ ଶ୍ରୀଜଗନ୍ନାଥ ସହଜ ଲବ୍ଧ ଅଟନ୍ତି । ଏହାର ସମାଧାନ ଜଗଦ୍‌ଗୁରୁ ଶ୍ରୀଳ ରାମାନୁଜ ଆଚାର୍ଯ୍ୟ ଉପଯୁକ୍ତ ନିର୍ଦ୍ଦେଶ ଦେଇଅଛନ୍ତି ଶ୍ରୀଜଗନ୍ନାଥଙ୍କୁ ମାଗିବାକୁ ହେଲେ ମା ଲକ୍ଷ୍ମୀଙ୍କୁ ଶ୍ରୀ କାହିଁକି କୁହାଯାଏ ତାହାର କାରଣ ଲାଗି ଏପରି ନିର୍ଦ୍ଦେଶ ଦେଇଅଛନ୍ତି । ''ହେ ଜନନୀ ! (୧) ସମସ୍ତ ଜୀବମାନଙ୍କ ଦ୍ୱାରା ଆପଣ ସେବିତ ଅଟନ୍ତି । (୨) ଆପଣ ଭଗବାନ ଶ୍ରୀଜଗନ୍ନାଥଙ୍କ ସେବାରେ ସଦା ନିଯୁକ୍ତ ଅଟନ୍ତି (୩) ଆପଣ ଆଶ୍ରିତ ଜୀବମାନଙ୍କ ପ୍ରାର୍ଥନା ଶୁଣନ୍ତି । ତଥା ଶ୍ରୀଜଗନ୍ନାଥଙ୍କୁ ଶୁଣାନ୍ତି (୫) ଆପଣ ଆଶ୍ରିତ ଜୀବମାନଙ୍କ ଦୋଷ ସମ୍ପୂର୍ଣ୍ଣ ବିନାଶ କରିବା ପାଇଁ ଶ୍ରୀଜଗନ୍ନାଥଙ୍କ କରୁଣା ଲାଭ କରାଇ ଥାଆନ୍ତି ଏବଂ (୬) ଆପଣ ନିଜର ଦିବ୍ୟ ଗୁଣରେ ଜଗତରେ ବିସ୍ତାର କରିଥାନ୍ତି । ସେଥିପାଇଁ ବେଦଜ୍ଞ ପଣ୍ଡିତମାନେ ଆପଣଙ୍କୁ ଶ୍ରୀ ପଦବାଚ୍ୟ କରିଅଛନ୍ତି ।'' ଉପସଂହାରରେ ଏତିକି କୁହାଯାଇପାରେ ଯେ, ଶ୍ରୀଦେବୀ ବା ମହାଲକ୍ଷ୍ମୀ ଏକ ମାଧ୍ୟମ ହେଲେ ହେଁ ଶ୍ରୀଜଗନ୍ନାଥ ଶୁଦ୍ଧପୂତ ହୃଦୟରେ ବିରାଜମାନ କରିଥା'ନ୍ତି । ସେ ସମସ୍ତଙ୍କ ପ୍ରତି ସୁହୃଦ ଅଟନ୍ତି ।

କନକମୃଗ, କାରାଗାରପଥ, ଖୋରଧା

# ଜଗନ୍ନାଥ ଶ୍ରୀକ୍ଷେତ୍ରର କ୍ଷେତ୍ରଫଳ

କୃଷ୍ଣପ୍ରିୟା ଦାସ

ଶାନ୍ତି, ମୈତ୍ରୀ, ପ୍ରୀତି ତିନି ରଥେ ଠୁଳ
ଧନ୍ୟ ଧନ୍ୟ ତିନି ପୁରେ ନୀଳାଚଳ
ଲୟ ଲଗାଇଲେ ନଭେ ଦିଗପାଳ
ବ୍ରହ୍ମା ଶଙ୍କର ଇନ୍ଦ୍ରାଦି ନାଗକୁଳ
ସ୍ତୁତି ଆରମ୍ଭନ୍ତି ସୁଖେ ହୋଇ ଭୋଳ
ବାଜେ ଘଣ୍ଟା, ଘଣ୍ଟ କରେ କରତାଳ
ରଙ୍ଗେ ନାଚନ୍ତି ଭକତେ ହୋଇ ମେଳ
ଝୁମେ ଗଗନ, ପବନ, ଜଳ, ସ୍ଥଳ
ହରିବୋଲ ହୁଳହୁଳି ଶୁଭେ ଗୋଳ
ଭାଇ, ଭଉଣୀ, ସୁଭଦ୍ରା, କାମପାଳ
ଜଗନ୍ନାଥ ଶ୍ରୀକ୍ଷେତ୍ରରେ କ୍ଷେତ୍ରପାଳ ।
ମନ ବସିରେ ସାଦରେ ନୀଳାଚଳ...
ବାରମାସେ ତେର ଯାତ ନୀଳ ଶୈଳ
ସ୍ନାନ ଗୁଣ୍ଡିଚା ଏ ବେନି ସ୍ୱୟଂ ଖେଳ
ଗ୍ରୀଷ୍ମ ବରଷା ଆହ୍ଲାଦ ଭୂମଣ୍ଡଳ
ମନ୍ଦ ମଧୁର ଧରଣୀ ପରିମଳ
ବାଜେ କାହାଳି ସାଜନ୍ତି ହସ୍ତୀକୁଳ
ପଢ଼େ ଚାମର, ଆଲଟ, ଫୁଲମାଳ
ରଥ ଖରକନ୍ତି ରାଜା ହୋଇ ଭୋଳ
ଅନୁରାଗେ ସରାଗରେ ଜନ ମେଳ
ଜଗନ୍ନାଥ ଶ୍ରୀକ୍ଷେତ୍ରରେ କ୍ଷେତ୍ରପାଳ
ମନ ଭ୍ରମର ଚୁମ୍ବୁଥା ନୀଳାଚଳ..... ।
ଅଷ୍ଟ ଅଇଶ୍ୱର୍ଯ୍ୟ ଶଂଖ ନାଭିସ୍ଥଳ
ରତ୍ନ କୋରକ ତା' ମଧ୍ୟେ ନୀଳଶୈଳ
ସୁର ସିଦ୍ଧ ବିଚରନ୍ତି ମାଳ ମାଳ
ଥିଲେ କଇବଲ୍ୟ ନାହିଁ ଯମ ଜାଳ
ବାନା ପତିତ ପାବନ ଚକ୍ର ନୀଳ
ଲକ୍ଷ୍ମୀ ଘରଣୀ, ଶ୍ୱଶୁର ରତ୍ନାକର
ନେତା ଏକା ସିଏ ସାରା ଜଗତର
ନାଚି ନଚାଇବା ପେସା ଅଟେ ତା'ର
ଜଗନ୍ନାଥ ଶ୍ରୀକ୍ଷେତ୍ରରେ କ୍ଷେତ୍ରପାଳ
ମର୍ତ୍ତ୍ୟ ବଇକୁଣ୍ଠ ମୁକ୍ତି ନୀଳାଚଳ...।

ମୈଥିଳୀ ନିବାସ
୫୮/ଗଜପତି ନଗର, ପୁରୀ – ୨

# ଶ୍ରୀଜଗନ୍ନାଥ ମନ୍ଦିରର ଇତିବୃତ୍ତ ଓ ସ୍ଥାପତ୍ୟକଳା

**ମଧୁସୂଦନ ପଟ୍ଟନାୟକ**

ଗଙ୍ଗ ବଂଶର ପ୍ରଥମ ନରପତି ଅନନ୍ତବର୍ମନ ଚୋଡ଼ଗଙ୍ଗଙ୍କ ଦ୍ୱାରା ଖ୍ରୀ.୧୧୧୫–୧୧୪୫ ମଧ୍ୟରେ ପୁରୀର ଶ୍ରୀମନ୍ଦିର ନିର୍ମିତ ହୋଇଥିଲା । ଏହା ତାଙ୍କ ପୌତ୍ର ଅନଙ୍ଗ ଭୀମଦେବଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିବାର ଅଭିଲେଖାରୁ ଜ୍ଞାତ ହୁଏ । ମନ୍ଦିରର ନିର୍ମାଣରେ ୧୮ଶହ ଶିଳ୍ପୀଙ୍କଦ୍ୱାରା ୧୮ ବର୍ଷରେ ଓଡ଼ିଶାର ୧୮ ବର୍ଷ ରାଜସ୍ୱ ଖର୍ଚ୍ଚରେ ନିର୍ମିତ ହୋଇଥିଲା । ଏହାକୁ ବୈଦେଶିକ ପର୍ଯ୍ୟଟକମାନେ 'ହ୍ୱାଇଟ୍ ପାଗୋଡ଼ା' ନାମରେ ନାମିତ କଲେ । ଶ୍ରୀମନ୍ଦିରରେ ପ୍ରାୟ ୩୦୦ ବର୍ଷ ଧରି ଚୁନବାଲିର ୧୮ ଇଞ୍ଚ ବହଳରେ ଆସ୍ତରଣ ଥିବାରୁ ଏହାର ନିର୍ମାଣଶୈଳୀ ଓ କଳାକୃତିର ଐତିହାସିକ ଗବେଷଣା ହୋଇ ପାରିନଥିଲା । ତେଣୁ ଭାରତୀୟ ପ୍ରତ୍ନତତ୍ତ୍ୱ ସର୍ବେକ୍ଷଣ ସଂସ୍ଥା ଚୁନ ଛଡ଼ା ଆରମ୍ଭ କରିବାରୁ ଏହାର ଅତୁଳନୀୟ କାରୁକାର୍ଯ୍ୟ ଲୋକଲୋଚନକୁ ଆସିପାରିଲା ।

ଏହା କେବଳ ବୈଷ୍ଣବ ଧର୍ମର ପ୍ରମୁଖକେନ୍ଦ୍ର ହୋଇ ନ ଥିଲା । ଶିବ, ଗଣେଶ, କାଳୀ, ଭୈରବ, ବୁଦ୍ଧ, ଜୈନ ଆଦି ପ୍ରତିମୂର୍ତ୍ତିର ଅବସ୍ଥାନ ଯୋଗୁଁ ଏହା ଏକ ସର୍ବଧର୍ମ ସମନ୍ୱୟର ପୀଠ ରୂପେ ପ୍ରତିପାଦିତ ହୋଇପାରିଲା ।

ମନ୍ଦିର ନିର୍ମାଣ ନିମିତ୍ତ ଖୋରଧା ନିକଟବର୍ତ୍ତୀ ପାହାଡ଼ମାନଙ୍କରୁ ଉତ୍କୃଷ୍ଟ ପ୍ରସ୍ତର ସଂଗୃହୀତ ହୋଇଥିଲା । ଏଗୁଡ଼ିକ ଲବଣାକ୍ତ ପର୍ବତଜନିତ କ୍ଷୟରୋଧକାରୀ ପ୍ରସ୍ତର । ତିନିମହଲା ବିଶିଷ୍ଟ ୨୦୦ ଫୁଟ ଉଚ୍ଚ ବିମାନର ନିମ୍ନ କାନ୍ଥର ଓସାର ୧୭ ଫୁଟ ୪ ଇଞ୍ଚ । କାରିଗରୀ ଜ୍ଞାନ କୌଶଳ ଦୃଷ୍ଟିରୁ ସ୍ଥପତିମାନେ ବାଲୁକା ଶଯ୍ୟାରେ ମନ୍ଦିରର ଭାର ସହ୍ୟ କଲା ଭଳି ଗଭୀର ଓ ପ୍ରସାରିତ ଏକ ସୁଦୃଢ଼ ମୂଳଦୁଆ ସ୍ଥାପନ କରିଥିଲେ । ଫଳରେ କ୍ରୁର ବୃଷ୍ଟିବାତ ସଂଘାତ ସହ୍ୟ କରି ଶତାବ୍ଦୀ ଶତାବ୍ଦୀ ଧରି ଅକ୍ଷୁଣ୍ଣ ରହି ପାରିଥିଲା ।

ଓଡ଼ିଶାର ପ୍ରାଚୀନ ସ୍ଥାପତ୍ୟ କଳାର ଉତ୍କୃଷ୍ଟ ନିଦର୍ଶନ ଶ୍ରୀମନ୍ଦିରର ବିମାନ, ଜଗମୋହନ, ନାଟମଣ୍ଡପ ଓ ଭୋଗମଣ୍ଡପରୁ ଜ୍ଞାତ ହୁଏ । ବିମାନ, ଜଗମୋହନ ଓ ଭୋଗମଣ୍ଡପର ଶୀର୍ଷଭାଗ ଶିଖର ସଦୃଶ ଓ ନାଟମଣ୍ଡପର ଛାତ ସମତଳ । ସ୍ଥାପତ୍ୟ ଦୃଷ୍ଟିକୋଣରୁ ଏହାର ଶରୀର ତିନି ଭାଗରେ ବିଭକ୍ତ ଯଥା – ବାଡ଼, ଗଣ୍ଡି ଓ ମସ୍ତକ । ଏହାର ନିମ୍ନ ଅଂଶ ବାଡ଼ । ବାଡ଼ ଉପରୁ ବକ୍ରାକାରରେ ଗଠିତ ଗଣ୍ଡି । ଗଣ୍ଡି ଉପରେ ଥାଏ ମସ୍ତକ । ଦଧିନଉତି ଓ କଳସକୁ ନେଇ ମସ୍ତକ । ଭୂପତନ ସଂଲଗ୍ନ ୫ ଫୁଟ ୨ ଇଞ୍ଚ ଉଚ୍ଚ ପୀଠ ଉପରେ ବିମାନର ବାଡ଼ ବା କାନ୍ଥ ନିର୍ମିତ । ଲମ୍ବ ଦିଗରେ ଏହାର ପାଞ୍ଚଗୋଟି ଭାଗ ରହିଛି । ବିମାନର ପଶ୍ଚିମ ପାର୍ଶ୍ୱ ପଟରେ ସମାନ୍ତରାଳ ଭାବରେ ଶ୍ରୀକୃଷ୍ଣଲୀଳା ସମ୍ବଳିତ ଗିରି–ଗୋବର୍ଦ୍ଧନ ଧାରଣ, ଧେନୁକାସୁର ବଧ, ରଥରେ ମଥୁରାଗମନ, ଗୋପୀମାନଙ୍କ ସହ ବିହାର ଆଦି ଦୃଶ୍ୟ ଦର୍ଶିତ ହୋଇଛି । ସମ୍ମୁଖ ଭାଗରେ ହସ୍ତୀଯୂଥ ଯାତ୍ରା, ଅଶ୍ୱଯାତ୍ରା ଓ ସୈନ୍ୟମାନଙ୍କର ଯୁଦ୍ଧ ଯାତ୍ରାର ଦୃଶ୍ୟ ରହିଛି । ଗଣ୍ଡିର ନିମ୍ନରେ ଦୁଇଟି ଭୂମି ଅଁଳା ସମୁଦାୟ ମନ୍ଦିରକୁ ଘେରି ରହିଛି । ଏହା ଅବର୍ଣ୍ଣନୀୟ କାରୁକାର୍ଯ୍ୟ ବିମଣ୍ଡିତ ।

ଅଗ୍ନିପୁରାଣ ଓ ଶିଳ୍ପ ଶାସ୍ତ୍ରର ନିୟମାନୁଯାୟୀ ବିଭିନ୍ନ ଦିଗପାଳଙ୍କ ମୂର୍ତ୍ତି ସ୍ଥାନିତ ହୋଇଛି । ପୂର୍ବଦିଗରେ ଇନ୍ଦ୍ରଐରାବତୀ ହସ୍ତୀ ଉପରେ, ଅଗ୍ନି ଛାଗ ବା ମେଘ ଉପରେ, ଦକ୍ଷିଣ ଦିଗରେ ଯମ ମହିଷ ଉପରେ, ନୈର୍ଋତ





କୋଣରେ ରାକ୍ଷସ ମନୁଷ୍ୟ ଉପରେ, ଐଶାନ୍ୟ କୋଣରେ ଈଶାନ, ବୃଷଭ ଉପରେ ଉର୍ଦ୍ଧ୍ୱରେ ବ୍ରହ୍ମା ଓ ଅଧଃରେ ଅନନ୍ତ ବାସୁକୀ ଉପରେ ଉପବେଶନ କରିଛନ୍ତି । ତଳ ଜଂଘାର ଦୁଇ ଖାକରା ମୁଣ୍ଡି ମଝିରେ ଥିବା କୋଣରେ ବିରାଟ ଗଜ ମୂର୍ତ୍ତି ରହିଛି । ଶରୀର ଭାଗ ସିଂହ ଓ ମୁଖଭାଗ ଗଜ ବିଡାଳ ବିରାଜମାନ ହୋଇ ଅପସ୍ମାର ପୁରୁଷ ବା ରାକ୍ଷସକୁ ପଦରେ ମନ୍ଥନ କରୁଛି । ସିଂହ ବିଡାଳର ପାଦତଳେ ଗଜ ରହିଛି । ପ୍ରତ୍ୟେକ ଦିଗରେ ୪ଟି କରି ବିଡାଳ ଅଛି ।

ବିମାନର ଉପର ଜଂଘାରେ ଥିବା ପୀଢ଼ମୁଣ୍ଡିମାନଙ୍କରେ ଜୟଦେବଙ୍କ 'ଦଶାବତାର'ରେ ବର୍ଣ୍ଣିତ ବିଷ୍ଣୁଙ୍କ ଦଶାବତାର ମଧ୍ୟ ଏଠାରେ ଶୋଭା ପାଉଛି । ଶ୍ରୀକୃଷ୍ଣଙ୍କ ବିଭିନ୍ନ ଲୀଳା ମଧ୍ୟ ଏହି କାନ୍ଥଗୁଡ଼ିକରେ ଚିତ୍ରିତ ହୋଇଛି । ପୃଥିବୀ ସୃଷ୍ଟି ସମୟରେ କ୍ଷୀରସାଗରରେ ବିଷ୍ଣୁଙ୍କ ଅନନ୍ତଶୟନ ଏବଂ ବିଷ୍ଣୁଙ୍କ ନାଭିରୁ ଉତ୍ପନ୍ନ ପଦ୍ମ ଉପରେ ଉପବେଶନ କରିଥିବା ବ୍ରହ୍ମଦେବ ମଧ୍ୟ ଏକ ମନମୋହନ ଚିତ୍ର ଜଗନ୍ନାଥ ମନ୍ଦିରରେ ଦେଖିବାକୁ ମିଳେ । ଭଗବାନ ବିଷ୍ଣୁ ଗୋଟିଏ ଶିଶୁ ଭାବରେ ଏକ ଭାସମାନ ବରପତ୍ର ଉପରେ ବିଶ୍ରାମ ନେଉଥିବା ଓ ତାଙ୍କ ପାଦ ଆଙ୍ଗୁଳିକୁ ପାଟିରେ ପୂରାଇଥିବା ଚିତ୍ର ଅନ୍ୟ ଏକ ଆକର୍ଷଣୀୟ ଚିତ୍ରକଳା । 'କାଞ୍ଚିବିଜୟ' ଜଗନ୍ନାଥ ମନ୍ଦିରର ଅନ୍ୟ ଏକ ସୁନ୍ଦର ଚିତ୍ର ଯେଉଁଥିରେ ପ୍ରଭୁ ଜଗନ୍ନାଥ ଓ ବଳଭଦ୍ର ଘୋଡ଼ାରେ ଚଢ଼ି ଯୁଦ୍ଧକ୍ଷେତ୍ରକୁ ଯାଉଥିବା ବେଳେ ମାଣିକ ଗଉଡୁଣୀଠାରୁ ଦହି ଖାଇବା ପାଇଁ ବାଟରେ ଅଟକିଛନ୍ତି ।

ବିମାନର ଉପର ଜଂଘାରେ ଦକ୍ଷିଣ–ପୂର୍ବ କୋଣରେ ବରାହ ଏବଂ ନୃସିଂହ, ଦକ୍ଷିଣ–ପଶ୍ଚିମ କୋଣରେ ବଳରାମ, ଉତ୍ତର–ପଶ୍ଚିମ କୋଣରେ କଳ୍କି ଓ ବୁଦ୍ଧଙ୍କ ପ୍ରତିମା । କଳ୍କି ଅଶ୍ୱ ପୃଷ୍ଠରେ ଆସୀନ ହୋଇ ଲଗାମ ଧରିଛନ୍ତି । ଉପର ଜଂଘାରେ ଦୁଇ ପୀଢ଼ ଅଛି । ମନ୍ଦିରର କୋଣମାନଙ୍କରେ ସୁନ୍ଦରୀମାନେ ବିଭିନ୍ନ ମୁଦ୍ରାରେ ଅବସ୍ଥାପିତ । ଶ୍ରୀମନ୍ଦିରର ପୂର୍ବଦ୍ୱାର ସିଂହଦ୍ୱାର, ପଶ୍ଚିମଦ୍ୱାର ବ୍ୟାଘ୍ରଦ୍ୱାର, ଉତ୍ତରଦ୍ୱାର ହାତୀଦ୍ୱାର ଓ ଦକ୍ଷିଣଦ୍ୱାର ଅଶ୍ୱଦ୍ୱାର ନାମେ ନାମିତ । ସିଂହଦ୍ୱାର ଦେଇ ମନ୍ଦିରରେ ପ୍ରବେଶ କରିବା ପରେ ୨୨ ପାହାଚ ଆରମ୍ଭ ହୁଏ । ପ୍ରତ୍ୟେକ ପାହାଚର ଓସାର ୬ ଫୁଟ, ଉଚ୍ଚତା ୬ ଇଞ୍ଚ, ଲମ୍ବ ୭୦ ଫୁଟ୍ । ପିଲାମାନଙ୍କୁ ଦୀର୍ଘଜୀବୀ କରିବାକୁ ପିତାମାତା ବାଇଶପାହାଚରେ ଗଡ଼େଇ ଗଡ଼େଇ ଉପରୁ ତଳକୁ ସିଂହଦ୍ୱାର ପର୍ଯ୍ୟନ୍ତ ଆଣିବା ପାଇଁ ମନାସି ଥାଆନ୍ତି । ସମସ୍ତେ କହନ୍ତି ବାଇଶପାହାଚ କିନ୍ତୁ କ୍ୱଚିତ ଗଣିଥାନ୍ତି । ପ୍ରକୃତରେ ଏହି ପାହାଚ ୨୪ଟା । ଶ୍ରୀଜଗନ୍ନାଥ ଭାଇଭଉଣୀଙ୍କ ସହିତ ଏହି ଚବିଶ ପାହାଚରେ ଯିବା ଆସିବା କରନ୍ତି । ପ୍ରତ୍ୟେକେ ଗଣନ୍ତି ୨୧ ପାହାଚ । ୨୪ ପାହାଚ ମଧ୍ୟରୁ ଅନ୍ୟ ୨ଟି ପାହାଚ ଗୋପନ । ଜୀବ ୨୧ ପାହାଚ ଅତିକ୍ରମ କରି ୨୨ ପାହାଚରେ ବିରାଜମାନ କରିଥିବା ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରନ୍ତି । ସିଂହଦ୍ୱାର ପଛପଟୁ କାଶୀବିଶ୍ୱନାଥ ପର୍ଯ୍ୟନ୍ତ ଥିବା ପାହାଚ ମିଶାଇଲେ ଗୁମୁଟ ପର୍ଯ୍ୟନ୍ତ ୧୮ ପାହାଚ ଅଛି । ଆନନ୍ଦବଜାର ପଟେ ମନ୍ଦିରକୁ ପ୍ରବେଶ କଲେ ୨ଟି ପାହାଚ ଓ ପଶ୍ଚିମ ପାଖରେ ଥିବା ଗୁମୁଟ ମନ୍ଦିର ଦେଇ ଭୋଗମଣ୍ଡପ ସମ୍ମୁଖକୁ ଗଲେ ୨ଟି ଦୀର୍ଘ ପାହାଚ ରହିଛି । ଏହାକୁ ମିଶାଇଲେ (୧୮+୪) ବାଇଶ ପାହାଚ ।

ବଡ଼ଦାଣ୍ଡ ଉପରୁ ମନ୍ଦିର ଉଚ୍ଚତା ୨୧୪ ଫୁଟ୍ । ମନ୍ଦିର ୪ ଭାଗରେ ବିଭକ୍ତ– ବିମାନ, ଜଗମୋହନ, ନାଟମନ୍ଦିର ଓ ଭୋଗ ମଣ୍ଡପ । କାନ୍ଥର କୋଣକୁ କୋଣ ୮୦ ଫୁଟ୍ ଲମ୍ବ ଓ ଓସାର ୮୦ ଫୁଟ୍ । ଭିତରକୁ ଭିତର ୧୮ ଫୁଟ୍ ଲମ୍ବ । ଜଗମୋହନର ଉଚ୍ଚତା ୧୦୦ ଫୁଟ୍ । ଲମ୍ବ ୮୦ ଫୁଟ୍ ଓ ଓସାର ୮୦ ଫୁଟ୍ ପରିମିତ ଜାଗା । ଏହାର ୩ଟି ଦ୍ୱାର ମଧ୍ୟରୁ ଦକ୍ଷିଣ ପଟ ଦ୍ୱାର ଦେଇ ଗଲେ ମୁକ୍ତିମଣ୍ଡପ, ଉତ୍ତର ଦ୍ୱାରଟି ଭଣ୍ଡାରଘରକୁ ଓ ପୂର୍ବପଟ ଦ୍ୱାର ଜୟବିଜୟରୁ ନାଟମନ୍ଦିର ପର୍ଯ୍ୟନ୍ତ । ନାଟମନ୍ଦିରର ଲମ୍ବ ୮୦ ଫୁଟ ଓ ୮୦ ଫୁଟ ଓସାର ମଧ୍ୟରେ କୌଣସି ଲମ୍ବ ନ ଥାଏ । ଦକ୍ଷିଣ ଦ୍ୱାରରେ ରୋଷେଇଘର ପର୍ଯ୍ୟନ୍ତ, ଯେଉଁଠାରେ ରନ୍ଧା, ଅନ୍ନଭୋଗ ଏହି ବାଟେ ଭୋଗମଣ୍ଡପ ପର୍ଯ୍ୟନ୍ତ ଯାଏ । ସମ୍ମୁଖ ଗରୁଡ଼ ଖୁଣ୍ଟ । ଦେବଦାସୀ (ମାହାରୀ) ଏହିଠାରେ ନୃତ୍ୟ କରନ୍ତି । ଏଠାରେ ଧ୍ୟାନ, କୀର୍ତ୍ତନ ଓ ଜପତପ କରାଯାଏ ।

---

କୈବଲ୍ୟ, ଦଉତୋଟା, ପୁରୀ





# ଶ୍ରୀଜଗନ୍ନାଥ ଓ ନାଗାର୍ଜୁନ ବେଶ

ଡକ୍ଟର ଉମେଶ ଚନ୍ଦ୍ର ଚିହ୍ନରା

ଶ୍ରୀଜଗନ୍ନାଥଙ୍କ ମୂଳ ସ୍ୱରୂପ ଏବେ ବି ରହସ୍ୟାଚ୍ଛନ୍ନ । କେଉଁ ସ୍ମରଣାତୀତ କାଳରୁ ଉତ୍କଳରେ ତାଙ୍କର ଆବିର୍ଭାବ ଓ ଆରାଧନା ହୋଇ ଆସୁଅଛି, ସେ ସଂପର୍କରେ ଇତିହାସରୁ କୌଣସି ବିଧିବଦ୍ଧ ବିବରଣୀ ମିଳେ ନାହିଁ । ତାଙ୍କ ଗଠନ ରୀତିର ବିଚିତ୍ରତା ସହିତ ଆବିର୍ଭାବ ସଂପର୍କୀୟ ନାନା କିମ୍ବଦନ୍ତୀ ତାଙ୍କୁ ଯଥାର୍ଥରେ ଏକ ରହସ୍ୟମୟ ଦେବତାରେ ପରିଣତ କରିଅଛି । ମୂଳତଃ ଦୁଇଟି ମାତ୍ର ଅବୟବରେ ସେ ଗଠିତ । ଭୁଜ ଓ ନେତ୍ର । ଅଧୋଭାଗ ବର୍ତ୍ତୁଳାକାର ପିଣ୍ଡି ଭଳି ଏକ ବସ୍ତୁ ଯାହା ଉପରେ ଏହି ଉପରୋକ୍ତ ଦୁଇଟି ଅବୟବ ଅବସ୍ଥିତ । ଭୁଜ ଦୁଇଟି ମଧ୍ୟ ସମ୍ପୂର୍ଣ୍ଣ ନୁହେଁ, ଅସଂପୂର୍ଣ୍ଣ । ନେତ୍ର ଦୁଇଟି କଥା ଚିନ୍ତା କଲେ ଜଣାଯାଏ, ତାହା ସାଧାରଣ ନେତ୍ରାକୃତି ନୁହେଁ । ପତା, ପଲକ ଓ ଭ୍ରୂଲତା ବିହୀନ । କେବଳ ଡୋଳା ହିଁ କହିଲେ ଠିକ୍ ହେବ । ସେଥିପାଇଁ ତ ନିଜର ନାମ ପରି ଚକ୍ଷୁଦ୍ୱାରା ମଧ୍ୟ ସେ ନାମିତ । 'ଚକାଡୋଳା' ଯେପରି ଏକ ନାମ ବାଚକ ବିଶେଷ୍ୟ । ବିଶେଷଣକୁ ବିଶେଷ୍ୟରେ ପରିଣତ କରିଛନ୍ତି ସେ । ମୁଖର ବର୍ଣ୍ଣ କୃଷ୍ଣ ହେତୁ ଅନ୍ୟ ଅବୟବର ବର୍ଣ୍ଣ କୃଷ୍ଣବର୍ଣ୍ଣ ହେବା ସ୍ୱାଭାବିକ, କିନ୍ତୁ ଅନ୍ୟ ଅବୟବ ସବୁ ଶ୍ୱେତବର୍ଣ୍ଣ । କେବଳ ଅସଂପୂର୍ଣ୍ଣ ବିଗ୍ରହ ନୁହେଁ ପରନ୍ତୁ ଏହି ଅସଂପୂର୍ଣ୍ଣତାକୁ ମଧ୍ୟ ବିଚିତ୍ରତା ତଥା ଅସାମଞ୍ଜସ୍ୟ ଘେରି ରହିଛି । ଏହି ଅସାମଞ୍ଜସ୍ୟ ମଧ୍ୟରେ ସେହି ଅସଂପୂର୍ଣ୍ଣ ବିଗ୍ରହରେ ସବୁ ଧର୍ମ, ବର୍ଣ୍ଣନ, ଶାସ୍ତ୍ର, ବାଦ ଯେପରି ପୂର୍ଣ୍ଣତାର ସଂକେତ ପ୍ରତ୍ୟକ୍ଷ କରିଛି । ସବୁର ନିୟନ୍ତ୍ରକ ସେ । ଶ୍ରୀଜଗନ୍ନାଥଙ୍କ ବିଗ୍ରହ ଏକ ପ୍ରତୀକାତ୍ମକ ଅଭିବ୍ୟକ୍ତି । ବେଦ, ଉପନିଷଦରେ ବର୍ଣ୍ଣିତ ସର୍ବଶକ୍ତିମାନ ସୃଷ୍ଟି କାରଣର କାରଣ ବ୍ରହ୍ମଙ୍କ ସ୍ୱରୂପ ଶ୍ରୀଜଗନ୍ନାଥଙ୍କ ବିଗ୍ରହରେ ପ୍ରକଟିତ । ଯଥାର୍ଥରେ ସେ 'ଅପାଣି ପାଦୋ ଜବନୋ ଗ୍ରହୀତା'ର ପ୍ରକାଶ୍ୟ ରୂପ । ଏଥିପାଇଁ ସବୁ ମତ, ସବୁ ପଥ, ସବୁ ଦର୍ଶନ ସମସ୍ତ ତତ୍ତ୍ୱ ସମସ୍ତ ଆରାଧ, ସମସ୍ତ ଇଷ୍ଟ ତାଙ୍କଠାରେ ପ୍ରତ୍ୟକ୍ଷୀଭୂତ ହୋଇ ଆସିଅଛି । ଏଥିପାଇଁ ବିଭିନ୍ନ ଧର୍ମର ଉପାସକ, ଭକ୍ତ ତାଙ୍କୁ ନିଜ ନିଜର ଆରାଧ୍ୟଙ୍କ ବେଶଭୂଷାରେ ସଜ୍ଜିତ କରି ବିଭିନ୍ନ ପୂଜା ପାର୍ବଣ ଅନୁଷ୍ଠାନ କରି ଆସିଛନ୍ତି । ଏହି ବେଶଭୂଷାରେ ସଜ୍ଜିତ କରାଇ ଭକ୍ତ ପ୍ରଭୁଙ୍କଠାରେ ନିଜର ଇଷ୍ଟଙ୍କର ଲୀଳା ପ୍ରତ୍ୟକ୍ଷ କରିବା ସହିତ ଆନନ୍ଦାତିଶଯ୍ୟରେ ପୁଲ୍ଲକିତ ହୋଇ ଉଠିଥାଏ ।

ହିନ୍ଦୁ ସଂସ୍କୃତିରେ ତ୍ରେତୟା ଯୁଗର ରାମ ଅବତାର ଓ ଦ୍ୱାପର ଯୁଗର କୃଷ୍ଣାବତାରର ମହତ୍ତ୍ୱ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଏହି ଅବତାରରେ ଅବତାର ଶ୍ରୀରାମ ଓ ଅବତାର ଶ୍ରୀକୃଷ୍ଣଙ୍କର ବିଭିନ୍ନ ଲୀଳା ସଂଘଟିତ ହୋଇଅଛି । ଏହି ସବୁ ଲୀଳାକୁ ବର୍ଷକରେ ବିଭିନ୍ନ ନିର୍ଦ୍ଦିଷ୍ଟ ତିଥି ଓ ନକ୍ଷତ୍ରାନୁସାରେ ଭକ୍ତ ପାଳନ କରିଥାଏ । ଓଡ଼ିଶାରେ ଅଧିଷ୍ଠିତ ଶ୍ରୀଜଗନ୍ନାଥ ଏ ଜାତିର ରାଷ୍ଟ୍ରଦେବତା । ସେ ଅବତାରୀ, ରାମ, କୃଷ୍ଣାଦି ଅବତାର ତାଙ୍କରିଠାରୁ ସୃଷ୍ଟ । ଏଣୁ ଭକ୍ତ ନିର୍ଦ୍ଦିଷ୍ଟ ତିଥି ଓ ନକ୍ଷତ୍ରରେ ପାଳନ କରୁଥିବା ଉତ୍ସବ ଅନୁଷ୍ଠାନ ତାଙ୍କରିଠାରେ ହିଁ ଆରୋପ କରିଥାଏ । ସେ ବେଶରେ ସଜ୍ଜିତ ହୋଇ ରାମ ରୂପରେ ପୂଜା ପାଆନ୍ତି ତ କେତେବେଳେ ପୁଣି ଶ୍ରୀକୃଷ୍ଣ ରୂପରେ ଆରାଧିତ ହୋଇଥାଆନ୍ତି । ସମାଲୋଚକମାନେ ମତ ଦିଅନ୍ତି ଯେ

ଆନୁମାନିକ ଦ୍ୱାଦଶ ଶତାବ୍ଦୀ ଶେଷଭାଗରୁ ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣ ଅଭିନ୍ନ ବୋଲି ପରିଗୃହୀତ ହୋଇଆସୁଛନ୍ତି । ବିଶେଷତଃ ଷୋଡ଼ଶ ଶତାବ୍ଦୀର ପ୍ରଥମ ଦଶକରେ ଶ୍ରୀଚୈତନ୍ୟଙ୍କ ଓଡ଼ିଶା ଆଗମନ ଓ ଗୌଡ଼ୀୟ ବୈଷ୍ଣବ ଧର୍ମର ପ୍ରଚାର ଓ ପ୍ରସାର ଫଳରେ ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣ ଏକାକାର ହୋଇଉଠିଛନ୍ତି । ଶ୍ରୀକୃଷ୍ଣଙ୍କର ସଂଘଟିତ ବାଲ୍ୟଲୀଳା, ମାଧୁର୍ଯ୍ୟଲୀଳା, ଔଦାର୍ଯ୍ୟ ଓ ଐଶ୍ୱର୍ଯ୍ୟଲୀଳାର ସମସ୍ତ ପର୍ବପର୍ବାଣି ଶ୍ରୀଜଗନ୍ନାଥ ମନ୍ଦିରରେ ଅନୁଷ୍ଠିତ ହୋଇଥାଏ । ଶ୍ରୀକୃଷ୍ଣଙ୍କର ଏହି ସମସ୍ତ ଲୀଳାକୁ ପ୍ରତ୍ୟକ୍ଷ କରିବା ଉଦ୍ଦେଶ୍ୟରେ ଶ୍ରୀଜଗନ୍ନାଥଙ୍କୁ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ବେଶଭୂଷାରେ ଭୂଷିତ କରାଯାଇଥାଏ । ଭାଦ୍ରବ ମାସରେ କୃଷ୍ଣଙ୍କର ଜନ୍ମଉତ୍ସବଠାରୁ କଂସ ନିଧନ ପର୍ଯ୍ୟନ୍ତ ଶ୍ରୀଜଗନ୍ନାଥଙ୍କର ବନଭୋଜି ବେଶ, କାଳୀୟଦଳନ ବେଶ, ରାମ ବଳରାମ ବେଶ ଇତ୍ୟାଦି ଅନୁଷ୍ଠିତ ହୁଏ । ସେହିପରି ଶ୍ରୀକୃଷ୍ଣଙ୍କର ଐଶ୍ୱର୍ଯ୍ୟ ଲୀଳାର ଅନ୍ୟତମ ବେଶ ହେଉଛି ନାଗାର୍ଜୁନ ବେଶ । ଏହି ବେଶର ବିଶେଷତ୍ୱ ହେଉଛି ଯେ ପ୍ରତିବର୍ଷ ଏହା ଅନୁଷ୍ଠିତ ହୋଇନଥାଏ । ସାଧାରଣତଃ କାର୍ତ୍ତିକ ମାସର ପଞ୍ଚୁକ (ଶୁକ୍ଳପକ୍ଷ ଏକାଦଶୀଠାରୁ ପୂର୍ଣ୍ଣମୀ ପର୍ଯ୍ୟନ୍ତ) ଯେଉଁବର୍ଷ ପାଞ୍ଚଦିନ ପରିବର୍ତ୍ତେ ଛଅଦିନ ପାଳିତ ହୁଏ ସେହିବର୍ଷ ଶ୍ରୀଜଗନ୍ନାଥ ନାଗାର୍ଜୁନ ବେଶ ଧାରଣ କରନ୍ତି । ଆଶ୍ୱିନ ମାସ ଶୁକ୍ଳପକ୍ଷ ଏକାଦଶୀ ଦିନଠାରୁ ଶ୍ରୀମନ୍ଦିରରେ କାର୍ତ୍ତିକ ବ୍ରତ ଆରମ୍ଭ ହେଉଥିବାରୁ ଶ୍ରୀଜଗନ୍ନାଥଙ୍କର ରାଧାଦାମୋଦର ବେଶ ଏହିଦିନଠାରୁ ଆରମ୍ଭ ହୋଇ କାର୍ତ୍ତିକ ମାସ ଶୁକ୍ଳପକ୍ଷ ଦଶମୀ ତିଥି ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥାଏ । ଏକାଦଶୀଠାରୁ ପୂର୍ଣ୍ଣମୀ ପର୍ଯ୍ୟନ୍ତ ପାଞ୍ଚଦିନ ମହାପ୍ରଭୁଙ୍କର ଯଥାକ୍ରମେ ଲକ୍ଷ୍ମୀନାରାୟଣ ବେଶ, ବାଙ୍କଚୂଳ ବେଶ, ତ୍ରିବିକ୍ରମ ବେଶ, ଡାଳିକିଆ ବେଶ ଓ ରାଜରାଜେଶ୍ୱର ବେଶ ଅନୁଷ୍ଠିତ ହୁଏ । ଏହି ପାଞ୍ଚଦିନ ମଧ୍ୟରେ ଯେଉଁ ତିଥି ଦୁଇଦିନ ପଡ଼େ ଅର୍ଥାତ ସେହି ତିଥିର ଶେଷଦିନ ବା ମଳ ତିଥିରେ ଶ୍ରୀଜଗନ୍ନାଥଙ୍କୁ ନାଗାର୍ଜୁନ ବେଶରେ ସଜ୍ଜିତ କରାଯାଇ ଆରାଧନା କରାଯାଇଥାଏ । ଏହି ବେଶ ଶ୍ରୀଜଗନ୍ନାଥଙ୍କର ପାରମ୍ପରିକ ବେଶ ନୁହେଁ । ଏହା ଯଜମାନୀ ବେଶ । ପ୍ରଭୁଙ୍କର ପ୍ରାୟ ପ୍ରତ୍ୟେକ ବେଶ କୌଣସି ମଠମାନଙ୍କ ଦ୍ୱାରା ତଥା ଭକ୍ତମାନଙ୍କ ଦ୍ୱାରା ଅନୁଷ୍ଠିତ ହୋଇଥାଏ । ଏଥିପାଇଁ ଠାକୁର ରାଜାଙ୍କଠାରୁ ସେମାନେ ଅନୁମତି ପତ୍ର ବା ସନନ୍ଦ ପ୍ରାପ୍ତ ହୋଇଥାନ୍ତି ।

ଶ୍ରୀଜଗନ୍ନାଥଙ୍କ ନାଗାର୍ଜୁନ ବେଶ ଶ୍ରୀକୃଷ୍ଣଙ୍କର ଐଶ୍ୱର୍ଯ୍ୟ ଲୀଳାର ସ୍ମାରକୀ । ଦ୍ୱାପର ଯୁଗରେ ଭଗବାନ ଶ୍ରୀକୃଷ୍ଣଙ୍କ ଶିକ୍ଷାଗୁରୁ ସାନ୍ଦିପନୀଙ୍କ ପତ୍ନୀଙ୍କୁ ଗୁରୁଦକ୍ଷିଣା ସ୍ୱରୂପ ତାଙ୍କର ମୃତ ପଞ୍ଚପୁତ୍ରଙ୍କୁ ଯମପୁରରୁ ଫେରାଇ ଆଣିବାପାଇଁ ପ୍ରତିଜ୍ଞାବଦ୍ଧ ହୋଇଥିଲେ । ଏଥିପାଇଁ ଶ୍ରୀକୃଷ୍ଣ ଯମପୁରକୁ ଯାଇ ଯମରାଜାଙ୍କୁ ସାନ୍ଦିପନୀଙ୍କ ପଞ୍ଚପୁତ୍ରଙ୍କର ପ୍ରାଣଭିକ୍ଷା କରିଥିଲେ । ଯମପୁର ପରିଦର୍ଶନ ସମୟରେ ନିଜର ପ୍ରିୟ ସଖା ପାଣ୍ଡବମାନଙ୍କର ମୃତ ପିତା ପଣ୍ଡୁଙ୍କୁ ଦେଖିବାର ସୁଯୋଗ ପାଇଥିଲେ । ଦୀର୍ଘ ଏକସ୍ତରୀ ବର୍ଷ ହେଲା ପଣ୍ଡୁ ଶରୀର ତ୍ୟାଗ କରିଥିଲେ ମଧ୍ୟ ସେ ବ୍ରହ୍ମଲୋକରେ ପହଞ୍ଚି ପାରି ନାହାନ୍ତି ବରଂ ଯମରାଜାଙ୍କ ରାଜସିଂହାସନ ତଳେ ଦଣ୍ଡାୟମାନ ହୋଇ ରହିଛନ୍ତି । ଏହି ଦୃଶ୍ୟ ଦେଖି ଶ୍ରୀକୃଷ୍ଣ ପଣ୍ଡୁଙ୍କ ସଂପର୍କରେ ଯମରାଜାଙ୍କୁ ପଚାରିଥିଲେ । ଯମରାଜା ଉତ୍ତରରେ ପଣ୍ଡୁ ଜୀବିତାବସ୍ଥାରେ ମୃଗୟା ସମୟରେ ଆତ୍ମିକ ଋଷିଙ୍କୁ (ମୃଗ ରୂପରେ ରତିକ୍ରୀଡ଼ା କରୁଥିବା ସମୟରେ)ଜଙ୍ଗଲରେ ଶର ନିକ୍ଷେପ କରି ବଧ କରିଥିବାରୁ ବ୍ରହ୍ମହତ୍ୟା ଦୋଷରେ ଦୋଷୀ ବୋଲି ଶ୍ରୀକୃଷ୍ଣଙ୍କୁ କହିଥିଲେ । ବ୍ରହ୍ମହତ୍ୟା ଦୋଷରେ ଦୋଷୀ ହୋଇଥିବାରୁ ଏବଂ ତା'ର ପ୍ରାୟଶ୍ଚିତ ପ୍ରତିକାର କରା ନହୋଇଥିବାରୁ ପଣ୍ଡୁ ବ୍ରହ୍ମଲୋକ ପ୍ରାପ୍ତିରୁ ବଂଚିତ ହୋଇ ଅଛନ୍ତି । ଶ୍ରୀକୃଷ୍ଣ ସାନ୍ଦିପନୀଙ୍କର ପଞ୍ଚପୁତ୍ରଙ୍କର ଜୀବନ ପ୍ରଦାନସହ ଦ୍ୱାରକାକୁ ଫେରି ଜ୍ୟେଷ୍ଠ ଭ୍ରାତ ବଳରାମଙ୍କୁ ଯମପୁରରେ ଦେଖିଥିବା ସମସ୍ତ ଦୃଶ୍ୟ ଓ ପଣ୍ଡୁ ରାଜାଙ୍କ ଦୁର୍ଦ୍ଦଶା କଥା କହିଲେ । ଭାଇ ବଳରାମ ନାରଦଙ୍କୁ ଡକାଇ ଇନ୍ଦ୍ରପ୍ରସ୍ଥର ରାଜା ଯୁଧିଷ୍ଠିରଙ୍କୁ ପଣ୍ଡୁଙ୍କ ସନ୍ଦେଶ ଦେବାକୁ ଏବଂ ଏହାର ପ୍ରାୟଶ୍ଚିତ କରିବାକୁ ନିର୍ଦ୍ଦେଶ ଦେଲେ । କୃଷ୍ଣ–ବଳରାମଙ୍କ ନିର୍ଦ୍ଦେଶରେ ନାରଦ ଇନ୍ଦ୍ରପ୍ରସ୍ଥ ଯାଇ ତାଙ୍କ ପିତାଙ୍କ କଥା ଜଣାଇଲେ । ପିତାଙ୍କର ଏତାଦୃଶ ଅବସ୍ଥା କଥା ଶୁଣି ରାଜା ଯୁଧିଷ୍ଠିର ଦୁଃଖ ପ୍ରକାଶ କରିବା





ସଙ୍ଗେ ସଙ୍ଗେ ନିଜକୁ ଧିକ୍କାର କଲେ । କେଉଁ ପ୍ରାୟଶ୍ଚିତ ଦ୍ୱାରା ପିତାଙ୍କର ବ୍ରହ୍ମଲୋକ ପ୍ରାପ୍ତି ହେବ ତା'ର ପ୍ରତିକାର ପାଇଁ ନାରଦଙ୍କୁ ଉପାୟ ଚିନ୍ତା କରିବାକୁ କହିଲେ ବ୍ରହ୍ମହତ୍ୟା ଦୋଷରୁ ପିତୃମୋକ୍ଷ ପାଇଁ ଚାରୋଟି ଉପାୟ ରହିଥିବା କଥା ନାରଦ ଯୁଧିଷ୍ଠିରଙ୍କୁ ଅବଗତ କରାଇଲେ । ପ୍ରଥମଟି ହେଲା ପୁତ୍ର ଅବିଚ୍ଛିନ୍ନ ଭାବରେ ଅନ୍ନଦାନ ଦେବ । ଦ୍ୱିତୀୟଟି ହେଲା ପୁତ୍ର ଯଦି ବ୍ରହ୍ମଜ୍ଞାନ ସାଧନା କରିବ । ତୃତୀୟଟି ହେଲା ଧାରା ତୀର୍ଥ କରିବା ଅର୍ଥାତ୍ ଶେଷ ଜୀବନ ପର୍ଯ୍ୟନ୍ତ ତୀର୍ଥାଟନ କରିବା । ଚତୁର୍ଥଟି, ପୁତ୍ର ଯଦି ରାଜସ୍ୱୀୟ ଯଜ୍ଞ କରିପାରେ । ଏହି ଚାରୋଟି ମଧ୍ୟରୁ ଯୁଧିଷ୍ଠିରଙ୍କ ପକ୍ଷରେ ରାଜସ୍ୱୀୟ ଯଜ୍ଞ ଅପେକ୍ଷାକୃତ ଗ୍ରହଣଯୋଗ୍ୟ ହେଲା । ରାଜସ୍ୱୀୟ ଯଜ୍ଞ ପାଇଁ ଏକଲକ୍ଷ ରାଜାଙ୍କୁ ନିମନ୍ତ୍ରଣ କରାଯିବ । ଶତ୍ରୁ ମିତ୍ର ସମସ୍ତ ରାଜା ରାଜସ୍ୱୀୟ ଯଜ୍ଞରେ ଉପସ୍ଥିତ ରହିବେ । ଏ ସମସ୍ତ ବିଚାର ବିମର୍ଶ ମଧ୍ୟରେ ପାଣ୍ଡବ ତଥା ଶ୍ରୀକୃଷ୍ଣଙ୍କର ପରମ ଶତ୍ରୁ ଜରାସନ୍ଧ ହିଁ ଭୟର କାରଣ ହେଲା । ରାଜା ଯୁଧିଷ୍ଠିର ଦ୍ୱାରକାରୁ ଶ୍ରୀକୃଷ୍ଣଙ୍କୁ ଡକାଇ ସମସ୍ୟା ସଂପର୍କରେ ଆଲୋଚନା କରିବା ସଙ୍ଗେ ସଙ୍ଗେ ଜରାସନ୍ଧଙ୍କୁ ବଧ କରିବା ପାଇଁ ଶ୍ରୀକୃଷ୍ଣ ଦ୍ୱିତୀୟ ପାଣ୍ଡବ ଭୀମଙ୍କୁ ନିୟୋଜିତ କଲେ । ଜରାସନ୍ଧ ବଧ ପରେ ରାଜସ୍ୱୀୟ ଯଜ୍ଞର ପ୍ରସ୍ତୁତି ଆରମ୍ଭ ହେଲା । ରାଜା ଯୁଧିଷ୍ଠିରଙ୍କ ଆଦେଶରେ ପାଣ୍ଡବ ଚାରିଭାଇ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳର ରାଜାମାନଙ୍କୁ ନିମନ୍ତ୍ରଣ କରିବାକୁ ଗଲେ । ରାଜସ୍ୱୀୟ ଯଜ୍ଞ ଷୋଳଦିନ ଅନୁଷ୍ଠିତ ହେବ । ଏହି ଷୋଳଦିନ ଅବିଚ୍ଛିନ୍ନ ଭାବରେ ଅନ୍ନଦାନ, ବସ୍ତ୍ରଦାନ, ଧନରତ୍ନ ଦାନ ଓ ଯଜ୍ଞ କୁଣ୍ଡରେ ଘୃତଦାନ ଅନୁଷ୍ଠିତ ହେବ ।

ଅର୍ଜୁନ ପାତାଳପୁରରେ ପ୍ରବେଶ କରି ବାସୁକୀ ରାଜାଙ୍କୁ ରାଜସ୍ୱୀୟ ଯଜ୍ଞର ନିମନ୍ତ୍ରଣ ଜଣାଇଲେ । ବାସୁକୀ ପୃଥିବୀକୁ ମସ୍ତକରେ ଧାରଣ କରିଥିବାରୁ ଯଜ୍ଞରେ ଯୋଗ ଦେବାକୁ ନିଜର ଅକ୍ଷମତା ପ୍ରକାଶ କଲେ । ଏକଥା ଶୁଣିଲା ପରେ ଅର୍ଜୁନ ନିଜର ଧନୁରେ ପୃଥିବୀକୁ ଧାରଣ କରିପାରିବେ ବୋଲି କହନ୍ତେ ବାସୁକୀ ପୃଥିବୀକୁ ଅର୍ଜୁନଙ୍କ ଧନୁହୁଳ ଉପରେ ରଖିଲେ । ବାସୁକୀଙ୍କ ଅନୁପସ୍ଥିତିରେ ଅର୍ଜୁନ ନିଜର ଧନୁରେ ପୃଥିବୀକୁ ଧାରଣକରି ପାତାଳପୁରରେ ରହିଲେ । ବାସୁକୀ ନିଜର ଅନିନ୍ଦ୍ୟ ସୁନ୍ଦରୀ ଅଲିଅଳି କନ୍ୟା ସନ୍ଧ୍ୟାବାଳୀକୁ ଅର୍ଜୁନର ସେବାରେ ନିୟୋଜିତ କରି ଯୁଧିଷ୍ଠିରଙ୍କ ରାଜସ୍ୱୀୟ ଯଜ୍ଞରେ ଯୋଗଦେବାକୁ ଆସିଲେ । ଇତ୍ୟବସରରେ ଅର୍ଜୁନ ଓ ସନ୍ଧ୍ୟାବାଳୀର ପ୍ରେମ ସଙ୍ଗଠିତ ହୋଇ ସନ୍ଧ୍ୟାବାଳୀ ଗର୍ଭବତୀ ହେଲା । ବାସୁକୀ ରାଜ ଯଜ୍ଞ ସାରି ମର୍ତ୍ତ୍ୟରୁ ଫେରିଲେ । ସନ୍ଧ୍ୟାବାଳୀ ଓ ଅର୍ଜୁନର ପ୍ରେମ ସଂପର୍କ ଜାଣି କନ୍ୟାକୁ ଅର୍ଜୁନଙ୍କୁ ପ୍ରଦାନ କଲେ । ପାତାଳ ପୁରରେ କିଛି ଦିନ ଅବସ୍ଥାନ କରିବା ପରେ ଅର୍ଜୁନ ଇନ୍ଦ୍ରପ୍ରସ୍ଥ ଆସିବାକୁ ମନସ୍ଥ କଲେ । ଅର୍ଜୁନଙ୍କ ଅନୁପସ୍ଥିତି ଗର୍ଭବତୀ ସନ୍ଧ୍ୟାବାଳୀ ପାଇଁ ଦୁର୍ବିସହ ବୋଲି ଜାଣି ରାଜପ୍ରାସାଦର ଏକ ବୃକ୍ଷକୁ ନିଜର ଉପସ୍ଥିତି ବୋଲି ମନେ କରିବାକୁ ଅର୍ଜୁନ ପତ୍ନୀଙ୍କୁ ପ୍ରବୋଧନା ଦେଲେ । ସେହି ବୃକ୍ଷ ଅର୍ଜୁନ ବୃକ୍ଷ ନାମରେ ପରିଚିତ । ପରିଶେଷରେ ସନ୍ଧ୍ୟାବାଳୀଠାରୁ ବିଦାୟ ନେଇ ଅର୍ଜୁନ ମର୍ତ୍ତ୍ୟପୁରରେ ପହଞ୍ଚିଲେ ।

ଜ୍ୟେଷ୍ଠମାସ କୃଷ୍ଣପକ୍ଷ ଚତୁର୍ଥୀ ତିଥିରେ ସନ୍ଧ୍ୟାବାଳୀର ଗର୍ଭସଂଚାର ହୋଇଥିଲା । କୁମ୍ଭସଂକ୍ରାନ୍ତି ପାଞ୍ଚଦିନ ଫାଲଗୁନ୍ ମାସ କୃଷ୍ଣପକ୍ଷ ଚତୁର୍ଥୀ ତିଥି ରବିବାର ଦିନ ଦଶ ଦଣ୍ଡ ହସ୍ତା ନକ୍ଷତ୍ରରେ ପୁତ୍ର ଜନ୍ମଲାଭ ହେଲା । ମାତା ସନ୍ଧ୍ୟାବାଳୀ ନାଗକୁଳର ଏବଂ ପିତା ତୃତୀୟ ପାଣ୍ଡବ ଅର୍ଜୁନ । ଉଭୟଙ୍କ ନାମ ସମ୍ମିଶ୍ରଣରେ ପୁତ୍ରର ନାମ ନାଗାର୍ଜୁନ ରଖାଗଲା । ଦିନକୁ ଦିନ ପୁତ୍ରର ତେଜ ବୃଦ୍ଧି ପାଇ ମହାପରାକ୍ରମଶାଳୀ ହେଲା । କିଶୋର ପୁତ୍ର ଅସୀମ ଶକ୍ତିର ଅଧିକାରୀ ହୋଇ ନାଗକୁଳରେ ଆତଙ୍କ ସୃଷ୍ଟି କଲା । ଏକଦା ତକ୍ଷକ ନାଗର ପୁତ୍ର ବାତାବଳୀ ନାଗାର୍ଜୁନଙ୍କୁ ପିତାଙ୍କ ସଂପର୍କରେ ପ୍ରଶ୍ନ କଲା । ଏହି ପ୍ରଶ୍ନରେ ଅପମାନିତ ହୋଇ ନାଗାର୍ଜୁନ ମା'ଙ୍କ ନିକଟକୁ ଆସି ପିତାଙ୍କ ପରିଚୟ, ବାସସ୍ଥାନ ଇତ୍ୟାଦି ସଂପର୍କରେ ଜାଣିବାକୁ ଚାହିଁଲା । ମା'ଙ୍କଠାରୁ ସମସ୍ତ ବିଷୟ ଅବଗତ ହୋଇ ପିତାଙ୍କୁ ସାକ୍ଷାତ କରିବା ପାଇଁ ଜିଦ୍ ଧରିଲା । ମାତାଙ୍କଠାରୁ ଆଶୀର୍ବାଦ ଓ ବିଦାୟ ନେଇ ମର୍ତ୍ତ୍ୟଲୋକକୁ ଅଗ୍ରସର ହେଲା । ପିତାଙ୍କ





ଅନ୍ୱେଷଣରେ ମର୍ତ୍ତ୍ୟଲୋକରେ ବୁଲୁବୁଲୁ କାଶୀନଦୀ ତୀରରେ ପହଞ୍ଚିଲା । ନଦୀପାର ହେବାକଥା ଚିନ୍ତାକରି ନଦୀର କୂଳେ କୂଳେ ଯାଉ ଯାଉ ଏକ ଅନୁପମ ଉଦ୍ୟାନ ଦେଖିଲା । ସେ ଉଦ୍ୟାନର ସୌନ୍ଦର୍ଯ୍ୟ ଅବର୍ଣ୍ଣନୀୟ । ମଳୟର ପବନ ଅନବରତ ପ୍ରବାହିତ । ନାନାଜାତି ସୁଗନ୍ଧ ପୁଷ୍ପ, ଝରଣା, ବନ୍ୟ ଜୀବଜନ୍ତୁ ରହିଛନ୍ତି । ଇନ୍ଦ୍ରଙ୍କର ପ୍ରମୋଦ ଉଦ୍ୟାନ ନନ୍ଦନକାନନ ଅପେକ୍ଷା ଏହା ଅତ୍ୟନ୍ତ ଆକର୍ଷଣୀୟ । ଏହି ଉଦ୍ୟାନ 'ହର ଉଦ୍ୟାନ' ନାମରେ ପରିଚିତ । ଏହି ଉଦ୍ୟାନର ପୂର୍ବଦ୍ୱାରରେ ଦ୍ୱାରପାଳ ଆଦିତ୍ୟ, ଦକ୍ଷିଣ ଦ୍ୱାରର ଦ୍ୱାରପାଳ ଗଣେଶ, ଉତ୍ତର ଦ୍ୱାରର ଦ୍ୱାରପାଳ ଚଣ୍ଡପ୍ରଚଣ୍ଡ ଓ ପଶ୍ଚିମ ଦ୍ୱାରର ଦ୍ୱାରପାଳ ଜୟନ୍ତିକ ଅଜୟନ୍ତିକ । ଉଦ୍ୟାନ ମଧ୍ୟରେ ବହୁ ମୁନିଋଷି ଧ୍ୟାନମଗ୍ନ । ନାଗାର୍ଜୁନ ଉଦ୍ୟାନର ସୌନ୍ଦର୍ଯ୍ୟରେ ଅଭିଭୂତ ହୋଇ ସେଠାରେ ରହିବାକୁ ଇଚ୍ଛା ପ୍ରକାଶ କଲା । ଦକ୍ଷିଣ ଦ୍ୱାରର ଦ୍ୱାରପାଳ ଗଣେଶଙ୍କୁ ନିଜର ମନର ଅଭିଳାଷ ଜଣାଇବାରୁ ଗଣେଷ ମନା କରିବା ସଙ୍ଗେ ସଙ୍ଗେ କେବଳ ଦେବ ଦେବ ମହାଦେବ ସନ୍ତୁଷ୍ଟ ହୋଇ ଅନୁମତି ପ୍ରଦାନ କଲେ ଏହି ଉଦ୍ୟାନରେ ବାସ କରିହୁଏ ବୋଲି କହିଲେ । ମହାଦେବଙ୍କୁ ସନ୍ତୁଷ୍ଟ କରିବାକୁ ନାଗାର୍ଜୁନ କଠୋର ତପସ୍ୟାରେ ବସିଲା । ନଦୀର ବାଲିରେ ଏକ ବାଲୁକା ଲିଙ୍ଗ ସ୍ଥାପନ ପୂର୍ବକ ଅଜପା ରୁଦ୍ରବ୍ରହ୍ମ ମନ୍ତ୍ର ଜପକଲା । କେବଳ ତୁଳସୀ ପତ୍ର ରକ୍ଷଣ କରି ତପସ୍ୟାରତ ହେଲା । ଏହି ତପସ୍ୟାରେ ରୁଦ୍ର ସନ୍ତୁଷ୍ଟ ହୋଇ ନାଗାର୍ଜୁନ ସମ୍ମୁଖରେ ଆବିର୍ଭାବ ହେଲେ ଏବଂ ବର ଯାଚିଲେ । ନାଗାର୍ଜୁନ ତ୍ରିପୁର ବିଜୟୀ ବର ସହିତ ପାଶୁପତ ଶର, ତ୍ରିଶୂଳ, ଖଟ୍ୱାଙ୍ଗ, ଅମୋହ ମୁଦ୍‌ଗର, ନାଗଫାଶ ଇତ୍ୟାଦି ଅସ୍ତ୍ର ଲାଭ କଲା । ରୁଦ୍ର ନାଗାର୍ଜୁନଙ୍କୁ ପୁତ୍ର ବୋଲି ସମ୍ବୋଧନ କରି ମହାକାଳ ନାରାଚ ମଧ୍ୟ ପ୍ରଦାନ କଲେ । ନାଗାର୍ଜୁନ ରୁଦ୍ରଙ୍କ ସହିତ ମା' ପାର୍ବତୀଙ୍କୁ ସାକ୍ଷାତ୍ କଲା । ପାର୍ବତୀ ପୁତ୍ରବୋଲି ସମ୍ବୋଧନ କରି ତ୍ରିଜୀବୀବର ଓ ଅମୋହ ଶକ୍ତି ପ୍ରଦାନ କଲେ । ହର ଉଦ୍ୟାନରେ ରିହବାକୁ ଅନୁମତି ଦେବାକୁ ସ୍ୱାମୀଙ୍କୁ ମଧ୍ୟ ଅନୁରୋଧ କଲେ । ଶିବ ପାର୍ବତୀଙ୍କ ପ୍ରିୟ ପୁତ୍ର ହେବାରୁ ଗଣେଶ ପରଶୁ ଓ ଅମୃତାକ୍ଷଶର, କାର୍ତ୍ତିକେୟ, ସୂର୍ଯ୍ୟ ବ୍ରତ ଶର ଓ ହେମଗଦା ବାରାହୀ ଦେବୀ ଅଗ୍ନି ନାରାଚ୍ ଓ ମହାକାଳ ବାଣ ପ୍ରଦାନ କଲେ । ଏହି ସମସ୍ତ ଅସ୍ତ୍ର ଲାଭ କରି ନାଗାର୍ଜୁନ ମା' ପାର୍ବତୀଙ୍କ ନିର୍ଦ୍ଦେଶରେ ହର ଉଦ୍ୟାନରେ ଥିବା ଶିବଙ୍କର ଅତିପ୍ରିୟ ଗଣ୍ଡାର ରକ୍ଷଣାବେକ୍ଷଣ ଦାୟିତ୍ୱ ଗ୍ରହଣ କଲା ।

ଦିନେ ରାଜା ଯୁଧିଷ୍ଠିର ବାରୁଣାବନ୍ତରେ ଥିବାବେଳେ ନାରଦ ଉପସ୍ଥିତ ହେଲେ । ନାରଦଙ୍କୁ ଦେଖି ଯୁଧିଷ୍ଠିର ପିତା ପଣ୍ଡୁଙ୍କ ସଂପର୍କରେ ପଚାରିଲେ । ନାରଦ ଅତ୍ୟନ୍ତ ବିଷର୍ଣ୍ଣ ବଦନରେ କହିଲେ ଯେ ଅଦ୍ୟାବଧି ପଣ୍ଡୁଙ୍କୁ ବ୍ରହ୍ମଲୋକ ପ୍ରାପ୍ତି ହୋଇନାହିଁ । ଯମରାଜା ସିଂହାସନର ତୃତୀୟ ପାହାଚ ତଳେ ଛିଡ଼ା ହୋଇଥିବା ପଣ୍ଡୁ ରାଜସ୍ୱୀୟ ଯଜ୍ଞ ପରେ ୨ୟ ପାହାଚକୁ ଉଠିଛନ୍ତି । ବ୍ରହ୍ମଲୋକକୁ ଯିବା ପାଇଁ ଆହୁରି ଗୋଟିଏ ପାହାଚ ବାକି ଅଛି । ଯୁଧିଷ୍ଠିର ଏ କଥାଶୁଣି ମର୍ମାହତ ହେଲେ । ନାରଦ ସାନ୍ତ୍ୱନା ପ୍ରଦାନ କରି କହିଲେ ଯେ ତୁମେ ରାଜସ୍ୱୀୟ ଯଜ୍ଞ କରିଛ ସତ କିନ୍ତୁ ପିତୃଶ୍ରାଦ୍ଧ ପ୍ରଦାନ କରି ନାହଁ । ଏଣୁ ତୁମ୍ଭର ପିତା ତଥାପି ବ୍ରହ୍ମଲୋକର ଏକ ପାହାଚ ତଳେ ଦଣ୍ଡାୟମାନ । ଯୁଧିଷ୍ଠିର ଏକଥା ଶୁଣି ନିଜର ଭାଇମାନଙ୍କୁ ଡାକିଲେ ଏବଂ ପିତୃଶ୍ରାଦ୍ଧ ନିମିତ୍ତ ଶୀଘ୍ର ଆୟୋଜନ କରିବା ପାଇଁ ନିର୍ଦ୍ଦେଶ ଦେଲେ । ଏହି ଶ୍ରାଦ୍ଧ ନିମିତ୍ତ ଗଣ୍ଡା ମାଂସର ଆବଶ୍ୟକତା ସଂପର୍କରେ ଜଣାଇବାକୁ ଅର୍ଜୁନ ଗଣ୍ଡା ମାଂସ ଅନ୍ୱେଷଣରେ ବାହାରିଲେ ଏବଂ ଅନ୍ୟ ଭାଇମାନେ ଶ୍ରାଦ୍ଧ ଉପକରଣ ପ୍ରସ୍ତୁତିରେ ଲାଗିପଡ଼ିଲେ । ଅର୍ଜୁନ ବହୁ ଜଙ୍ଗଲ ବୁଲି ମଧ୍ୟ ଗଣ୍ଡାର ସନ୍ଧାନ ପାଇଲେ ନାହିଁ । ନବଦିନ ନବରାତ୍ର ଅତିକ୍ରାନ୍ତ ହୋଇଯିବା ସତ୍ତ୍ୱେ ଗଣ୍ଡାର ପତ୍ତା ମିଳୁ ନାହିଁ ।

ବିଷର୍ଣ୍ଣମତି ଅର୍ଜୁନ ଅସ୍କନ୍ଦ ପର୍ବତରେ ଗଣ୍ଡା ଅନ୍ୱେଷଣରେ ବୁଲୁ ବୁଲି ନାରଦଙ୍କ ସାକ୍ଷାତ ପାଇଲେ ଏବଂ ନିଜର ଅସହାୟତା ପ୍ରକାଶ କଲେ । ନାରଦ ଅର୍ଜୁନଙ୍କ କଥାଶୁଣି ରୁଦ୍ର ପର୍ବତ ତଳେ ହର ଉଦ୍ୟାନରେ ଗୋଟିଏ ଗଣ୍ଡାଥିବାର ସନ୍ଧାନ ଦେଲେ । ଅର୍ଜୁନ ନାରଦଙ୍କ କଥାନୁସାରେ ହର ଉଦ୍ୟାନରେ ପହଞ୍ଚି ଗଣ୍ଡାର ଅନୁସନ୍ଧାନ





କଲେ । କିଛି ସମୟ ପରେ ନାନା ରତ୍ନାଭରଣ ଯୁକ୍ତ ହୋଇ ଗଣ୍ଡା ଜଳପାନ କରିବାକୁ ଝରଣା ନିକଟକୁ ଆସିଲା । ଜଳପାନ ଶେଷକରି ଫେରିଲା ବେଳକୁ ଲତା ଗହଳରେ ଲୁଚି ରହିଥିବା କିରାତ ବେଶୀ ଅର୍ଜୁନ ଶର ନିକ୍ଷେପ କଲେ । ଶରାଘାତରେ ପ୍ରଚଣ୍ଡ ଶବ୍ଦ କରି ଗଣ୍ଡା ମୃତ୍ୟୁ ବରଣ କଲା । ସେହିଦିନ ନାଗାର୍ଜୁନର ସ୍ୱନକ୍ଷତ୍ର ବନ୍ଦାପନା ଦିବସ ପଡ଼ିଥିବାରୁ ସେ ମା'ଙ୍କ ନିକଟକୁ ପାତାଳପୁର ଗମନ କରିଥିଲା । ବନ୍ଦାପନା ସମୟରେ ନାନା ଅଶୁଭ ଶକୁନ ଦେଖି ଶୀଘ୍ର ନିଜ ଉଦ୍ୟାନକୁ ପ୍ରତ୍ୟାବର୍ତ୍ତନ କରିବାକୁ ବ୍ୟଗ୍ର ହେଲା । ଉଦ୍ୟାନରେ ଅର୍ଜୁନ ଗଣ୍ଡା ବଧକରି ଗଣ୍ଡାର ରକ୍ଷକଙ୍କୁ ଅପେକ୍ଷା କରି ରହିଥିଲେ । ଗଣ୍ଡା ଦେହରେ ଥିବା ସମସ୍ତ ରତ୍ନ ଅଳଙ୍କାରକୁ ରକ୍ଷକଙ୍କୁ ପ୍ରଦାନ କରି ମୃତ ଗଣ୍ଡାକୁ ପିତୃଶ୍ରାଦ୍ଧାର୍ଥେ ଘେନି ଯିବା ପାଇଁ ଅପେକ୍ଷା କରିଥିଲେ । ନାଗାର୍ଜୁନ ଉଦ୍ୟାନରେ ପହଞ୍ଚି ଦେଖେତ ରୁଦ୍ରଙ୍କର ପ୍ରିୟ ଗଣ୍ଡା ଶରାଘାତରେ ମୃତ୍ୟୁବରଣ କରିଅଛି । ଏହା ଦେଖି ନାଗାର୍ଜୁନର କ୍ରୋଧ ଚରମ ସୀମାରେ ପହଞ୍ଚିଲା । କ୍ରୋଧରେ ଜର୍ଜରିତ ହୋଇ ବ୍ରହ୍ମା, ବିଷ୍ଣୁ, ଯକ୍ଷ, ରାକ୍ଷସ, କିନ୍ନର ଯେ କେହି ଗଣ୍ଡାକୁ ବଧ କରିଥାନ୍ତୁ ନା କାହିଁକି ସେ ତାଙ୍କୁ ଜୀବନରେ ଛାଡ଼ିବ ନାହିଁ ବୋଲି ପ୍ରତିଜ୍ଞା କଲା । ଏହି ସମୟରେ ଅର୍ଜୁନ ଲତା ଗହଳରୁ ବାହାରି ନିଜେ ହିଁ ଗଣ୍ଡା ବଧକାରୀ ବୋଲି ସ୍ୱୀକାର କଲେ । ଅର୍ଜୁନଙ୍କୁ ଗଣ୍ଡାର ହତ୍ୟାକାରୀ ବୋଲି ଜାଣି ନାଗାର୍ଜୁନର କ୍ରୋଧ ଦ୍ୱିଗୁଣିତ ହୋଇପଡ଼ିଲା । ଚକ୍ଷୁ ଆରକ୍ତ ବର୍ଣ୍ଣ, ମୁଖ ବିବର୍ଣ୍ଣ ଏବଂ କ୍ରୋଧ ଜର୍ଜରିତ ଶରୀରରେ ଅର୍ଜୁନଙ୍କୁ ମାରିବା ପାଇଁ ଅସ୍ତ୍ର ନିକ୍ଷେପ କଲା । ଅର୍ଜୁନ ପ୍ରତି ଅସ୍ତ୍ର ପ୍ରେରଣ କରି ଯୁଦ୍ଧ କଲେ । ତିନିଦିନ ପର୍ଯ୍ୟନ୍ତ ଏହି ଯୁଦ୍ଧ ଚାଲିଲା । ଯୁଦ୍ଧରେ କେହି କାହାକୁ ପରାସ୍ତ କରିପାରିଲେ ନାହିଁ । ନାଗାର୍ଜୁନ ଶେଷରେ ଶିବଙ୍କଠାରୁ ପ୍ରାପ୍ତ ମହାକାଳ ନାରାଚକୁ ଅର୍ଜୁନ ଉଦ୍ଦେଶ୍ୟରେ ପ୍ରେରଣ କଲା । ଅର୍ଜୁନଙ୍କ ମହାକାଳ ନାରାଚ ଅସ୍ତ୍ରରେ ପରାସ୍ତ ହେଲେ ଏବଂ ତାଙ୍କ ଶରୀର ଦୁଇଖଣ୍ଡ ହୋଇଗଲା । ନାଗାର୍ଜୁନ ଅର୍ଜୁନର ରକ୍ତକୁ ଚିତାରେ ଗ୍ରହଣ କରି ଅର୍ଜୁନର ଧନୁ ଓ କିରୀଟି ଧରି ମା' ସନ୍ଧ୍ୟାବାଳୀ ନିକଟକୁ ଅଗ୍ରସର ହେଲା । ମା'ଙ୍କ ନିକଟରେ ପହଞ୍ଚି ସମସ୍ତ ବିଷୟ ବର୍ଣ୍ଣନା କରିବା ସହିତ ଅର୍ଜୁନର ଧନୁ ଓ କିରୀଟି ଦେଖାଗଲା । ସନ୍ଧ୍ୟାବାଳୀ ଧନୁ ଓ କିରୀଟିକୁ ଚିହ୍ନି ଏହା ଅର୍ଜୁନର ବୋଲି ଜାଣିଲେ । ରାଜପ୍ରାସାଦରେ ଥିବା ଅର୍ଜୁନବୃକ୍ଷ ମଧ୍ୟ ଝାଉଁଳି ଯାଇଥିବା ଦୃଶ୍ୟ ସନ୍ଧ୍ୟାବାଳୀର କ୍ରନ୍ଦନକୁ ଦ୍ୱିଗୁଣିତ କରିଦେଲା । ପୁତ୍ରକୁ ଧିକ୍କାର କରିବା ସଙ୍ଗେ ସଙ୍ଗେ ଶୋକାକୁଳ ମା' ଓ ପୁଅ ଅର୍ଜୁନଙ୍କ ମୃତ ଦେହ ନିକଟକୁ ଆସିଲେ । ଅର୍ଜୁନଙ୍କ ମୃତ ପିଣ୍ଡକୁ ଧରି ପତ୍ନୀ ସନ୍ଧ୍ୟାବାଳୀ ପ୍ରାଣବଳି ଦେବାକୁ ସ୍ଥିର କଲେ ।

ନାରଦ ଶ୍ରୀକୃଷ୍ଣ ବଳରାମଙ୍କୁ ନାଗାର୍ଜୁନ ଦ୍ୱାରା ଅର୍ଜୁନ ମୃତ୍ୟୁବରଣ କରିଥିବା କଥା ଜଣାଇଦେଲେ । ଏହି ଖବର ଶୁଣି କ୍ରୋଧାନ୍ୱିତ ବଳରାମ ଓ ଶ୍ରୀକୃଷ୍ଣ ଯାଦବ ଦଳ ସୈନ୍ୟସାମନ୍ତ ଓ ଯୁଧିଷ୍ଠିର ଇତ୍ୟାଦି ପାଣ୍ଡବମାନଙ୍କୁ ଧରି ହର ଉଦ୍ୟାନରେ ପହଞ୍ଚିଗଲେ । ସଙ୍ଗେ ସଙ୍ଗେ ନାଗାର୍ଜୁନଙ୍କ ସହିତ ଯୁଦ୍ଧ ଆରମ୍ଭ ହୋଇଗଲା । ଯୁଦ୍ଧ ଭୀଷଣରୁ ଭୀଷଣତର ହୁଅନ୍ତେ ନାରଦ କପିଳାସକୁ ଯାଇ ଶିବଙ୍କୁ ମଧ୍ୟ ଏହି ଯୁଦ୍ଧ ସମ୍ବାଦ ଜଣାଇଦେଲେ । ପ୍ରିୟ ପୁତ୍ର ନାଗାର୍ଜୁନ ସହିତ କୃଷ୍ଣ ବଳରାମ ଯୁଦ୍ଧ କରିବା କଥା ଶୁଣି ଅନୁଚର ବର୍ଗଙ୍କ ସହ ଶିବ ଯୁଦ୍ଧ କ୍ଷେତ୍ରରେ ଉପସ୍ଥିତ ହେଲେ । ଯୁଦ୍ଧ ପ୍ରଚଣ୍ଡରୁ ପ୍ରଚଣ୍ଡତର ହୋଇଉଠିଲା । ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ପ୍ରକମ୍ପିତ ହେଲା । ଏ ସମସ୍ତ ଦ୍ୱନ୍ଦ୍ୱର ସୂତ୍ରଧର ନାରଦ ପ୍ରମାଦ ଗଣିଲେ । ସଙ୍ଗେ ସଙ୍ଗେ ବ୍ରହ୍ମଲୋକକୁ ଯାଇ ପିତାମହ ବ୍ରହ୍ମାଙ୍କୁ ପରିସ୍ଥିତି ସଂପର୍କରେ ଅବଗତ କରାଇଲେ । ବ୍ରହ୍ମା ତତ୍କ୍ଷଣାତ୍ ଯୁଦ୍ଧ କ୍ଷେତ୍ରରେ ପହଞ୍ଚିଗଲେ । ଯୁଦ୍ଧରୁ କ୍ଷାନ୍ତ ହେବାକୁ ଶ୍ରୀକୃଷ୍ଣ ଓ ବଳରାମଙ୍କୁ ଅନୁରୋଧ କଲେ । ଅର୍ଜୁନଙ୍କ ଜୀବନ ହିଁ ତାଙ୍କର ଏକମାତ୍ର କାମ୍ୟ ବୋଲି ଶ୍ରୀକୃଷ୍ଣ ବ୍ରହ୍ମାଙ୍କୁ କହିଲେ । ଶିବଙ୍କୁ କ୍ରୋଧ ଶାନ୍ତ କରିବାକୁ ବ୍ରହ୍ମା ମଧ୍ୟ ଅନୁରୋଧ କଲେ । ବ୍ରହ୍ମାଙ୍କ ଅନୁରୋଧରେ ସମସ୍ତେ କ୍ରୋଧ ଶାନ୍ତ କରନ୍ତେ ସେ ଯମରାଜାଙ୍କୁ ସ୍ମରଣ କଲେ । ଯମରାଜା ମାତୃ ଅଭିଶାପ ଗ୍ରସ୍ଥ ଗଳିତ କୁଷ୍ଠ ବ୍ୟାଧି କ୍ରାନ୍ତ ଶରୀରରେ ଉପସ୍ଥିତ ହେଲେ । ମା' ଛାୟାଙ୍କ ଅଭିଶାପ ଦ୍ୱାରା ଯମରାଜା ରୋଗଗ୍ରସ୍ଥ





ହୋଇଥିଲେ ମଧ୍ୟ ଏହି ଅଭିଶାପରୁ ମୁକ୍ତ ହେବାର ଉପାୟ କହିଥିଲେ । କୌଣସି ଏକ ସମୟରେ ବ୍ରହ୍ମା, ବିଷ୍ଣୁ ଏବଂ ଶିବଙ୍କୁ ଏକତ୍ର ଦର୍ଶନ କଲେ ଏବଂ ଶିବ ପ୍ରୀତ ହୋଇ ବର ପ୍ରଦାନ କଲେ ଯମ ବ୍ୟାଧିମୁକ୍ତ ହୋଇପାରିବେ ବୋଲି ମା' ଛାୟା କହିଥିଲେ । ବ୍ରହ୍ମାଙ୍କ ଅନୁରୋଧରେ ଯମରାଜା ଅର୍ଜୁନଙ୍କୁ ସଂଜୀବନୀ ମନ୍ତ୍ର ପ୍ରଦାନ କରିବାରୁ ଶିବ ପ୍ରୀତ ହୋଇ ଯମରାଜାଙ୍କୁ କୁଷ୍ଠ ବ୍ୟାଧିରୁ ମୁକ୍ତ କଲେ । ପଣ୍ଡୁ ରାଜାଙ୍କ ପାଇଁ ଯମ ଏହିଭଳି ଏକ ଦୁର୍ଲ୍ଲଭ ଦର୍ଶନ ଲାଭ କରିବାର ସୁଯୋଗ ପାଇଥିବାରୁ ପଣ୍ଡୁଙ୍କୁ ବ୍ରହ୍ମଲୋକକୁ ଯିବାକୁ ଅନୁମତି ପ୍ରଦାନ କଲେ । ପଣ୍ଡୁଙ୍କର ବ୍ରହ୍ମଲୋକ ପ୍ରାପ୍ତି ହେଲା । ଯାଦବ ଓ ପାଣ୍ଡବ କୁଳ ଆନନ୍ଦିତ ହେଲେ । ପିତୃଶ୍ରାଦ୍ଧର ଆଉ ଆବଶ୍ୟକତା ରହିଲା ନାହିଁ । ଏଣୁ ଯମ ମୃତ ସଂଜୀବନୀ ମନ୍ତ୍ର ଦ୍ୱାରା ମୃତ ଗଣ୍ଡାକୁ ମଧ୍ୟ ଜୀବଦାନ ପ୍ରଦାନ କଲେ ।

ଏ ସମସ୍ତ ଆନନ୍ଦ ମଧ୍ୟରେ ପୁଣି ଏକ ବିଷାଦର ଛାୟା ଘୋଟିଗଲା, ଅର୍ଜୁନ ଏକ କିଶୋର ବାଳକଦ୍ୱାରା ପରାସ୍ତ ହୋଇ ମୃତ୍ୟୁବରଣ କରିଥିବା କଥା ଜାଣିବାପରେ ନିଜକୁ ଧିକ୍‌କାର କରିବା ସହିତ ଆତ୍ମହତ୍ୟା କରିବା ପାଇଁ ପ୍ରତିଜ୍ଞା କଲେ । ପୃଥିବୀରେ ଶ୍ରୀକୃଷ୍ଣଙ୍କ ବ୍ୟତୀତ ଅନ୍ୟ କାହାଦ୍ୱାରା ସେ ପରାସ୍ତ ହେବେ ନାହିଁ ବୋଲି ତାଙ୍କର ଦୃଢ଼ ଧାରଣା ଥିଲା । ଏହି ଅହଂକାରକୁ ଦୂରୀଭୂତ କରିବା ପାଇଁ ଶ୍ରୀକୃଷ୍ଣ ନାଗାର୍ଜୁନ ରୂପରେ ଅର୍ଜୁନଙ୍କୁ ପରାସ୍ତ କରିଥିଲେ ବୋଲି ପ୍ରବୋଧନା ଦେଲେ । କିନ୍ତୁ ଅର୍ଜୁନ ଏହି ପ୍ରବୋଧନାରେ ଶାନ୍ତ ନ ହେବାରୁ ଶ୍ରୀକୃଷ୍ଣ ନାଗାର୍ଜୁନ ରୂପରେ ସମସ୍ତଙ୍କ ସମ୍ମୁଖରେ ଆବିର୍ଭାବ ହୋଇଥିଲେ । ଅର୍ଜୁନ ନିଜ ପୁତ୍ରଠାରେ ସଖା ଶ୍ରୀକୃଷ୍ଣଙ୍କୁ ଏବଂ ଶ୍ରୀକୃଷ୍ଣଠାରେ ପୁତ୍ର ନାଗାର୍ଜୁନଙ୍କୁ ଦେଖି ଆଶ୍ଚର୍ଯ୍ୟ ହେବା ସଂଗେ ସଂଗେ ନିଜକୁ ଧନ୍ୟ ମଣିଲେ । ପିତା ପୁତ୍ର ଉଭୟେ ଆନନ୍ଦରେ ପରସ୍ପରଙ୍କୁ କୋଳାଗ୍ରତ କଲେ । ସ୍ୱର୍ଗରୁ ଦେବତାମାନେ ନାଗାର୍ଜୁନଙ୍କ ଉପରେ ପୁଷ୍ପବୃଷ୍ଟି କଲେ । ଏହି ଐଶ୍ୱର୍ଯ୍ୟ ଲୀଳାର ସ୍ମାରକୀ ହେଉଛି ଶ୍ରୀଜଗନ୍ନାଥଙ୍କ ନାଗାର୍ଜୁନ ବେଶ ।

ନାଗାର୍ଜୁନ ଓ ଅର୍ଜୁନଙ୍କ ଯୁଦ୍ଧ ଶେଷରେ ଅର୍ଜୁନଙ୍କ ମୃତ ପିଣ୍ଡ ଗୋଟିଏ ଦିନ ପଡ଼ି ରହିଥିଲା । ଏହା ମଧ୍ୟରେ କୃଷ୍ଣ ବଳରାମ ଓ ଶିବଙ୍କର ଯୁଦ୍ଧ, ବ୍ରହ୍ମା ଏବଂ ଯମରାଜାଙ୍କ ଆଗମନ ହୋଇଛି । ଗୋଟିଏ ଦିନର ଗୋଟିଏ ତିଥି ଅତିକ୍ରାନ୍ତ ହୋଇଗଲେ ମୃତ ସଂଜୀବନୀ ମନ୍ତ୍ର କାର୍ଯ୍ୟ କରିନଥାଏ । ଏଣୁ ଶ୍ରୀକୃଷ୍ଣ ସୂର୍ଯ୍ୟଦେବଙ୍କୁ ଅନ୍ୟ ଏକ ତିଥିକୁ ସଂକ୍ରମଣ ନ କରିବା ପାଇଁ ଅନୁରୋଧ କରିଥିଲେ ଅର୍ଥାତ୍ ଗୋଟିଏ ତିଥି ସୂର୍ଯ୍ୟଦେବ ଦୁଇଦିନ ଭୋଗ କଲେ । ନିଜ ପୁତ୍ର ଯମର ଅଭିଶାପ ମୋଚନ ସମୟ ଉପସ୍ଥିତ ଜାଣି ସୂର୍ଯ୍ୟଦେବ ଶ୍ରୀକୃଷ୍ଣଙ୍କ ଅନୁରୋଧ ରକ୍ଷା କରିଥିଲେ । କାର୍ତ୍ତିକମାସ ଶୁକ୍ଳପକ୍ଷ ଏକାଦଶୀ ତିଥିଠାରୁ ନାଗାର୍ଜୁନ ଏବଂ ଅର୍ଜୁନଙ୍କ ମଧ୍ୟରେ ଯୁଦ୍ଧ ଅନୁଷ୍ଠିତ ହୋଇଥିଲା । ଅର୍ଜୁନଙ୍କ ପୁନର୍ଜନ୍ମ ମଳ ତିଥିରେ ହେଲା । ଏଣୁ ଏହାର ସ୍ମାରକୀ ସ୍ୱରୂପ ଯେଉଁ ବର୍ଷ କାର୍ତ୍ତିକମାସ ଏକାଦଶୀଠାରୁ ପୂର୍ଣ୍ଣମୀ ମଧ୍ୟରେ ମଳ ତିଥି ଭୋଗ ହୁଏ ସେହିବର୍ଷ ଶ୍ରୀଜଗନ୍ନାଥଙ୍କୁ ନାଗାର୍ଜୁନ ବେଶରେ ଭୂଷିତ କରାଯାଇଥାଏ ।

ପି.ଏମ.ବି.–୬୪
ସଂଧ୍ୟା ନିଳୟ, ହାଉସିଂ ବୋର୍ଡ଼ କଲୋନି
ବଳିଆପଣ୍ଡା, ପୁରୀ–୧



# ସର୍ବେଷାମପି ଦେବାନାଂ...

**ଉମାକାନ୍ତ ଦାଶ**

ଅଖିଳ ବ୍ରହ୍ମାଣ୍ଡର ସ୍ରଷ୍ଟା ଶ୍ରୀପୁରୁଷୋତ୍ତମ । ଚରାଚର ବିଶ୍ୱ ତାଙ୍କଠାରେ ସ୍ଥିତ ଏବଂ ପରିଶେଷରେ ସମସ୍ତେ ତାଙ୍କଠାରେ ଲୀନ ହୋଇଯାନ୍ତି । ସୃଷ୍ଟି, ସ୍ଥିତି ଓ ସଂହାରର ସେହିଁ କାରଣ ।ସେ ନିରାକାର, ନିର୍ଗୁଣ, ନିର୍ଲିପ୍ତ, ସେ ବ୍ରହ୍ମ । ଉପନିଷଦର ଋଷିଗଣ ତାଙ୍କୁ ବ୍ରହ୍ମ ରୂପେ ଅଭିହିତ କରିଛନ୍ତି । ଉପନିଷଦମାନଙ୍କରେ ବ୍ରହ୍ମଙ୍କ ସତ୍ତା ଓ ସ୍ୱରୂପକୁ ନେଇ ବ୍ୟାପକ ଆଲୋଚନାମାନ ଦୃଷ୍ଟିଗୋଚର ହୁଏ । ଏଗୁଡ଼ିକରେ ବ୍ରହ୍ମଙ୍କର ଐଶ୍ୱର୍ଯ୍ୟ ଓ ମହିମାମାନ ବର୍ଣ୍ଣିତ ହୋଇଛି । ଏହି ବ୍ରହ୍ମଙ୍କୁ ଆନନ୍ଦ ସ୍ୱରୂପ ରୂପେ ଅଭିହିତ କରାଯାଇଛି । ଖ୍ରୀଷ୍ଟପୂର୍ବ ୫ମ ଶତାବ୍ଦୀରେ ରଚିତ ବ୍ରହ୍ମସୂତ୍ରରେ ମହର୍ଷି ବଦରାୟଣ କୁହନ୍ତି ଯେ ଶ୍ରୁତିରେ ଅଭ୍ୟାସ କରି ତାଙ୍କୁ ଆନନ୍ଦମୟ ବୋଲି କୁହାଯାଇଥିବାରୁ ସେ ଆନନ୍ଦମୟ ସ୍ୱରୂପ ଅଟନ୍ତି । ଉପନିଷଦରେ ଉଲ୍ଲେଖ ଅଛି– ''ତସ୍ମାଦ୍ୱା–ଏତସ୍ମାଦ୍ୱିଜ୍ଞାନମୟାତ୍ । ଅନ୍ୟୋନ୍ତର ଆନନ୍ଦମୟଂ ।'' ସେହି ଉପନିଷଦରେ ପୁଣି ବ୍ରହ୍ମଙ୍କର ଅନ୍ୟ ଏକ ସ୍ୱରୂପ 'ସତ୍ୟଂ ଜ୍ଞାନମନନ୍ତ ବ୍ରହ୍ମ' ବୋଲି ଉଲ୍ଲେଖ ଅଛି । ମାଣ୍ଡୁକ୍ୟ ଉପନିଷଦରେ ବ୍ରହ୍ମଙ୍କୁ ସମସ୍ତଙ୍କର ଅଧିପତି, ସର୍ବଜ୍ଞ ତଥା ଅନ୍ତର୍ଯ୍ୟାମୀ ରୂପେ ବର୍ଣ୍ଣନା କରାଯାଇଛି । ତାଙ୍କଠାରୁ ସମସ୍ତ ଜୀବ ଉତ୍ପତ୍ତି ହୁଅନ୍ତି ଏବଂ ତାଙ୍କଠାରେ ଲୀନ ହୁଅନ୍ତି । ମୁଣ୍ଡକ ଉପନିଷଦରେ ବ୍ରହ୍ମଙ୍କୁ ଅମୃତ ଏବଂ ଅବିନାଶୀ କୁହାଯାଇଛି । ସେହିଁ ସମ୍ମୁଖରେ, ପଶ୍ଚାତ୍ ଭାଗରେ, ଦକ୍ଷିଣରେ ଓ ଉତ୍ତରରେ, ନିମ୍ନରେ ଓ ଉର୍ଦ୍ଧ୍ୱରେ ବ୍ୟାପୀ ରହିଛନ୍ତି । ଏହି ସମଗ୍ର ବିଶ୍ୱ ସେହି ବ୍ରହ୍ମ ହିଁ ଅଟନ୍ତି ।

ବ୍ରହ୍ମଙ୍କର ସଗୁଣ ଓ ନିର୍ଗୁଣ ଉଭୟ ରୂପ ପରିଲକ୍ଷିତ ହୁଏ । ଶଙ୍କରାଚାର୍ଯ୍ୟ ମତ ଦିଅନ୍ତି, ଯେତେବେଳେ ନିର୍ଗୁଣ ବ୍ରହ୍ମ ଲୀଳା କରିବା ନିମନ୍ତେ ମାୟା ଦ୍ୱାରା ଆବୃତ ହୁଅନ୍ତି ସେତେବେଳେ ତାଙ୍କର ଜଗତ ସୃଷ୍ଟି କରିବାର ଇଚ୍ଛା ଜାଗ୍ରତ ହୁଏ । ସେହି ସମୟରେ ସେ ସଗୁଣ ଭାବ ବା ସବିଶେଷ ଭାବ ଧାରଣ କରି ଜଗତର ସୃଷ୍ଟି, ସ୍ଥିତି ଓ ସଂହାର ପ୍ରକ୍ରିୟାରେ ପ୍ରବୃତ୍ତ ହୁଅନ୍ତି । ନିର୍ଗୁଣ ନିର୍ବିଶେଷ ବ୍ରହ୍ମ କୌଣସି କାର୍ଯ୍ୟ କରିବାକୁ ସମର୍ଥ ନୁହନ୍ତି । ବ୍ରହ୍ମଙ୍କର ବୀଜଶକ୍ତିର ନାମ ମାୟା । ମାୟାରେ ଆବୃତ୍ତ ହେଲେ ତାଙ୍କଠାରେ ପ୍ରବୃତ୍ତି ଜନ୍ମେ ।

ସମଗ୍ର ବୈଦିକ ସାହିତ୍ୟରେ କୁତ୍ରାପି ପ୍ରତିମା ନିର୍ମାଣ ଓ ଉପାସନାର ପ୍ରସଙ୍ଗ ଆଲୋଚନା ହୋଇନାହିଁ । ତେବେ ଅଗ୍ନି, ବରୁଣ, ସୂର୍ଯ୍ୟ, ସୋମ, ଇନ୍ଦ୍ର, ଦ୍ୟୌଃ, ମରୁତଗଣ, ବାୟୁ, ଆପଃ, ପୁଷା, ରୁଦ୍ର ଓ ପର୍ଜନ୍ୟ ପ୍ରଭୃତି ଦେବତା ଏବଂ ଉଷା, ପୃଥିବୀ, ରାତ୍ରି ପ୍ରଭୃତି ଦେବୀଙ୍କ ସ୍ତୁତିରୁ ପ୍ରକୃତିର ବିଭିନ୍ନ ବିଭାବକୁ ଦେବ–ଦେବୀ ଜ୍ଞାନ କରାଯାଇଥିବା ମନେହୁଏ ଏବଂ ପରବର୍ତ୍ତୀ କାଳରେ ଏମାନଙ୍କଠାରେ ବ୍ୟକ୍ତିତ୍ୱ ଆରୋପ କରାଯାଇ ପୁରୁଷ ବା ନାରୀ ବିଶେଷ ରୂପେ ବିବେଚନା କରାଯାଇଛି । ତେବେ ସମୟର ଆବଶ୍ୟକତାକ୍ରମେ ଉପନିଷଦରେ ବ୍ରହ୍ମଙ୍କ ନିଦାନ ହୋଇସାରି ଏକ ବ୍ରହ୍ମ ରୂପେ ପ୍ରତିପାଦନ କରାଯାଇଛି । ପୁଣି ବ୍ରହ୍ମ ଏକ ହେଲେ ହେଁ ବିଦ୍ୱାନମାନେ, ବ୍ରହ୍ମବିତ୍‌ମାନେ, ପଣ୍ଡିତମାନେ ତାଙ୍କୁ ବହୁ ନାମରେ ନାମିତ କରିଥାନ୍ତି ।



ପ୍ରାକୃତିକ ଲୀଳାକୁ ସୁଗମ ଧାରାରେ ବୁଝାଇବାକୁ ଋଷିଗଣ ବିଭିନ୍ନ ଦେବତାଙ୍କ କଳ୍ପନା କରିଥିଲେ (ବଳଦେବ ଉପାଧ୍ୟାୟ– ଭାରତୀୟ ଦର୍ଶନ) । ବ୍ୟକ୍ତି ସତ୍ତାରୁ ପ୍ରତୀକାତ୍ମକ ଭାବେ ନାନା ଦେବଦେବୀଙ୍କର ସଗୁଣ ରୂପର ପରିକଳ୍ପନା କରାଯାଇଥିବା ମନେହୁଏ । ଅବ୍ୟକ୍ତ ନିର୍ଗୁଣ ବ୍ରହ୍ମ ସୃଷ୍ଟି, ସ୍ଥିତି ଓ ଲୟର ଯେତେବେଳେ କାରଣ ହୋଇପଡ଼ନ୍ତି ସେତେବେଳେ ସେ ସଗୁଣ ରୂପରେ କ୍ରିୟାଶୀଳ ହୋଇପଡ଼ନ୍ତି ଏବଂ ବିଭିନ୍ନ କ୍ରିୟା ସଂପାଦନରେ ପ୍ରବୃତ୍ତ ହୁଅନ୍ତି । ତଦନୁସାରେ ତାଙ୍କଠାରେ ରୂପ ଓ ଗୁଣର କଳ୍ପନା କରାଯାଏ । ଏହି ରୂପ ସବୁ ପ୍ରତୀକାତ୍ମକ । ଐତିହାସିକମାନେ ମତ ଦିଅନ୍ତି କି ଖ୍ରୀଷ୍ଟୀୟ ୧ମ/୨ୟ ଶତକ ବେଳକୁ ପ୍ରତିମା ପରିକଳ୍ପନାର ସୂତ୍ରପାତ ହୋଇଥିବା ସଂଭବ । ବିଶ୍ୱପିତା ପରଂବ୍ରହ୍ମଙ୍କର ବିଭିନ୍ନ ଗୁଣକୁ ନେଇ ନାନା ରୂପର ପରିକଳ୍ପନା ଓ ତଦନୁସାରେ ଧ୍ୟାନମାନ ପ୍ରସ୍ତୁତ ହୋଇ ଭାରତୀୟ ସମାଜରେ ତାଙ୍କର ବିରାଟ ରୂପକୁ ଅବଧାରଣ କରିବାର ଏବଂ ଆକଳନ କରିବାର ଉଦ୍ୟମ କରାଗଲା । ଋଗ୍‌ବେଦର ପୁରୁଷସୂକ୍ତରେ ସକଳ ଐଶ୍ୱର୍ଯ୍ୟ ବିମଣ୍ଡିତ ପୁରୁଷରୂପୀ ଦେବତାଙ୍କ ସ୍ୱରୂପ ବର୍ଣ୍ଣିତ ।

ବୈଦିକ ଋଷିଗଣ ସେହି ଏକା ନିତ୍ୟତତ୍ତ୍ୱକୁ ବୁଝାଇବାକୁ ପୁରୁଷ ତୁଲ୍ୟ ବିଶ୍ୱକର୍ମା, ପ୍ରଜାପତି, ହିରଣ୍ୟଗର୍ଭ, ବିଶ୍ୱାବସୁ, ଆଦି ନାମମାନ ବ୍ୟବହାର କରିଛନ୍ତି । ପରବର୍ତ୍ତୀ କାଳରେ ଉପନିଷଦର ଋଷିଗଣ ସେହି ଏକା ପରମାତ୍ମା ପରମପୁରୁଷଙ୍କୁ 'ବ୍ରହ୍ମ' ଶବ୍ଦରେ ବ୍ୟକ୍ତ କରିଛନ୍ତି । ବ୍ରହ୍ମ ନିର୍ଗୁଣ ହେଲେ ହେଁ ସୃଷ୍ଟି, ସ୍ଥିତି ଓ ସଂହାରର କାରଣ ରୂପେ ସଗୁଣ ହୋଇପଡ଼ନ୍ତି । ସେ କ୍ରିୟାଶୀଳ ହୋଇଯାଆନ୍ତି । ମୁଣ୍ଡକ ଉପନିଷଦ କହନ୍ତି, ତାଙ୍କଠାରୁ ଋଗ୍, ଯଜୁ, ସାମ ଓ ଅଥର୍ବ ବେଦ, ସମ୍ୱତ୍ସର ପ୍ରଭୃତି ସମସ୍ତ କାଳ, ଚନ୍ଦ୍ର, ସୂର୍ଯ୍ୟ ସହିତ ସମସ୍ତ ସାଧଗଣ, ମନୁଷ୍ୟଗଣ, ପଶୁପକ୍ଷୀ, ପ୍ରାଣାପାନ ବାୟୁ, ଅନ୍ନ, ତପଃ, ଶ୍ରଦ୍ଧା, ସତ୍ୟ, ବ୍ରହ୍ମଚର୍ଯ୍ୟ, ସମସ୍ତ ସମୁଦ୍ର, ପର୍ବତ, ନଦନଦୀ, ସମସ୍ତ ଔଷଧି, ସମସ୍ତ ରସ ଉତ୍ପନ୍ନ ହୋଇଅଛି । ତୈତ୍ତିରୀୟ ଉପନିଷଦରେ ମଧ୍ୟ ଏହି ପ୍ରସଙ୍ଗ ଏକାପରି ବର୍ଣ୍ଣିତ ହୋଇଛି । ଏହିପରି ଭାବରେ ସଗୁଣ ବ୍ରହ୍ମ ବା ପୁରୁଷ ଜଗତ ନିର୍ମାଣ କରନ୍ତି । ଶଙ୍କରାଚାର୍ଯ୍ୟଙ୍କ ମତରେ ନିର୍ଗୁଣ, ନିର୍ବିଶେଷ ବ୍ରହ୍ମ ମାୟାଦ୍ୱାରା ଉପାଧିଯୁକ୍ତ ହୋଇ ସଗୁଣ, ସବିଶେଷ ବ୍ରହ୍ମ ରୂପେ ଜଗତ ସୃଷ୍ଟିର କାରଣ ହୁଅନ୍ତି ।

ଉପନିଷଦମାନଙ୍କରେ ଋଷିଗଣ ସେହି ପରମାତ୍ମା ପରମେଶ୍ୱରଙ୍କୁ ପୁରୁଷ ନାମରେ ସୂଚିତ କରିଥିଲେ ହେଁ ଈଶୋପନିଷଦରେ ତାଙ୍କୁ ପୁଷନ୍ ବା ପୁଷାଦେବ ରୂପେ ଉଲ୍ଲେଖ କରିଛନ୍ତି ଯାହାର ତାତ୍ପର୍ଯ୍ୟ ହେଉଛି, ସେ ହେଉଛନ୍ତି ପୋଷଣକର୍ତ୍ତା ପରମେଶ୍ୱର ବା ବ୍ରହ୍ମ । ଉପନିଷଦରେ ଆତ୍ମାକୁ ମଧ୍ୟ ବହୁ ସ୍ଥଳରେ ବ୍ରହ୍ମରୂପେ ଅଭିହିତ କରାଯାଇଛି 'ଅୟମାତ୍ମା ବ୍ରହ୍ମ' ଉପନିଷଦର ମୁଖ୍ୟ ପ୍ରତିପାଦ୍ୟ ବିଷୟ ବ୍ରହ୍ମ । ଋଗ୍‌ବେଦର ପୁରୁଷସୂକ୍ତର ବର୍ଣ୍ଣିତ ପୁରୁଷ ଉପନିଷଦରେ ବ୍ରହ୍ମରୂପେ ଅଭିହିତ ହୋଇଛନ୍ତି । ସେହି ବ୍ରହ୍ମଙ୍କୁ ହିଁ ପୁଣି ଆଚାର୍ଯ୍ୟ ରାମାନୁଜ ତାଙ୍କର ବ୍ରହ୍ମସୂତ୍ରର ଶ୍ରୀଭାଷ୍ୟରେ ପୁରୁଷୋତ୍ତମ ବୋଲି କହିଛନ୍ତି । ପୁରୁଷୋତ୍ତମ ଶବ୍ଦଟି ପ୍ରଥମେ ପରଂବ୍ରହ୍ମ ପରମେଶ୍ୱରଙ୍କ ପାଇଁ ବ୍ୟାସକୃତ ମହାଭାରତରେ ବ୍ୟବହୃତ ହୋଇଥିବା ଜଣାଯାଏ । ମହାଭାରତରେ ଭୀଷ୍ମପର୍ବ ଅନ୍ତର୍ଗତ ଶ୍ରୀମଦ୍ ଭଗବତ ଗୀତା ଏବଂ ବିଷ୍ଣୁ ସହସ୍ରନାମରେ 'ପୁରୁଷୋତ୍ତମ' ଶବ୍ଦଟି ଉପଲବ୍ଧ ହୁଏ । ଗୀତାରେ ଶବ୍ଦଟି ସଚ୍ଚିଦାନନ୍ଦ ସ୍ୱରୂପ, ସର୍ବବ୍ୟାପୀ ପରଂବ୍ରହ୍ମଙ୍କ ଉଦ୍ଦେଶ୍ୟରେ ବ୍ୟବହାର କରାଯାଇଛି । ଆଚାର୍ଯ୍ୟ ନିମ୍ବାର୍କ ମଧ୍ୟ ଅନନ୍ତ, ଅଚିନ୍ତ୍ୟ, ସର୍ବଜୀବ ମଧ୍ୟରେ ପରିବ୍ୟାପ୍ତ ବ୍ରହ୍ମଙ୍କୁ ହିଁ ପୁରୁଷୋତ୍ତମ ରୂପେ ଉଲ୍ଲେଖ କରିଛନ୍ତି । ପୂର୍ଣ୍ଣବ୍ରହ୍ମ ହିଁ ପୁରୁଷସୂକ୍ତରେ କଥିତ ସହସ୍ରଶୀର୍ଷା ପୁରୁଷ । ସେ ହିଁ ପୁରୁଷୋତ୍ତମ ।

ଶ୍ରୀମଦ୍ ଭଗବତ ଗୀତାରେ ମୋଟ ପାଞ୍ଚୋଟି ଶ୍ଳୋକରେ 'ପୁରୁଷୋତ୍ତମ' ଶବ୍ଦ ରହିଛି । ତନ୍ମଧ୍ୟରୁ ଅଷ୍ଟମ ଅଧ୍ୟାୟ ୧ମ ଶ୍ଳୋକ, ୧୦ମ ଅଧ୍ୟାୟ ୧୫ଶ ଶ୍ଳୋକ ଓ ୧୧ଶ ଅଧ୍ୟାୟ ୩ୟ ଶ୍ଳୋକରେ ଅର୍ଜୁନ ଭଗବାନ ଶ୍ରୀକୃଷ୍ଣଙ୍କୁ ପୁରୁଷୋତ୍ତମ ରୂପେ ସମ୍ବୋଧନ କରିଛନ୍ତି ।

ପୁରୁଷୋତ୍ତମଙ୍କୁ କ୍ଷର ଓ ଅକ୍ଷର– ଏହି ଦୁଇଟି ଉପାଧି ଦୋଷ ସ୍ପର୍ଶ କରିପାରେନାହିଁ । ସେ ଉଭୟ ପୁରୁଷଠାରୁ ଉତ୍ତମ ହେତୁ ସେହିଁ ପରମାତ୍ମା ପୁରୁଷୋତ୍ତମ ।





ପରବର୍ତ୍ତୀ ପୁରାଣ ସାହିତ୍ୟରେ ପରମାତ୍ମା ପରମେଶ୍ୱର ସେହି ଏକ ବ୍ରହ୍ମଙ୍କୁ ଭିନ୍ନ ଭିନ୍ନ ଭାବରେ ଓ ନାମରେ ରୂପରେ ବର୍ଣ୍ଣନା କରାଯାଇଥିଲେ ହେଁ ସେଇ ଏକା ଲକ୍ଷ୍ୟ ବ୍ରହ୍ମଙ୍କ ଉପଲବ୍‌ଧି ପାଇଁ ନିରନ୍ତର ଅଭିପ୍ସା । ତେବେ ବ୍ରହ୍ମପୁରାଣ, ପଦ୍ମପୁରାଣ, ନାରଦ ପୁରାଣ, ସ୍କନ୍ଦ ପୁରାଣ, ମତ୍ସ୍ୟ ଓ ବିଷ୍ଣୁ ଆଦି ପୁରାଣରେ ପରମ ପୁରୁଷ ବ୍ରହ୍ମଙ୍କ ମାହାତ୍ମ୍ୟ ନାନା ଉପାଖ୍ୟାନ ଅବଲମ୍ବନରେ କଥିତ ହୋଇଥିଲେ ହେଁ ପୂର୍ବ ସମୁଦ୍ର ତଟରେ ଉତ୍କଳ ନାମକ ଦେଶର ଯେଉଁ ବୈଶିଷ୍ଟ୍ୟ ପ୍ରତିପାଦିତ ହୋଇଛି ତାହାର ମୁଖ୍ୟକାରଣ ହେଉଛି ଏଠାରେ ବସବାସ କରୁଥିବା ମାନବଗୋଷ୍ଠୀ ଚର୍ମ ନେତ୍ରରେ କେବଳ ବ୍ରହ୍ମଙ୍କୁ ଦର୍ଶନ କରିବାର ସୌଭାଗ୍ୟ ଲାଭ କରିଛନ୍ତି ନୁହେଁ, ଜଗତବାସୀଙ୍କୁ ଏହି ସୁଯୋଗ ମଧ୍ୟ ପ୍ରଦାନ କରିଛନ୍ତି । ଏହା ଏକ ଦୁଃସାହସ ହୋଇପାରେ । ହେଲେହେଁ ଗୋଟାଏ ଜାତିର ଗଭୀର ଅନୁସନ୍ଧିତ୍ସା ଅଭିନିବିଷ୍ଟ ମାନସିକ ବୃତ୍ତି ଓ ଦୀର୍ଘ ତିତିକ୍ଷାର ପରିଣତି ସ୍ୱରୂପ ଏହା ସମ୍ଭବ ହୋଇପାରିଛି ।

ଏହି ପୁରାଣମାନଙ୍କରେ ବ୍ରହ୍ମ ପୁରୁଷୋତ୍ତମ ରୂପେ ଅଭିହିତ । ଏହି ପୁରୁଷୋତ୍ତମ ପୁଣି ଶ୍ରୀଜଗନ୍ନାଥ, ଚତୁର୍ଦ୍ଧାମୂର୍ତ୍ତି, ଦାରବ ବିଗ୍ରହ, ଦାରୁବ୍ରହ୍ମ । ପୂର୍ବରୁ ଉଲ୍ଲେଖ କରିଅଛୁ ଯେ ବିଗ୍ରହ ମାତ୍ରକେ ପ୍ରତୀକାତ୍ମକ । ଶଙ୍ଖକ୍ଷେତ୍ର, ନୀଳାଦ୍ରିରେ ରତ୍ନସିଂହାସନାରୂଢ଼ ଶ୍ରୀନୀଳାଦ୍ରୀଶଙ୍କ ଦାରବ ବିଗ୍ରହ ମଧ୍ୟ ପ୍ରତୀକାତ୍ମକ । ଯୋଗୀ ସାଧକମାନଙ୍କ ପାଇଁ, ଭକ୍ତମାନଙ୍କ ପାଇଁ କଳି ଯୁଗରେ ପରଂବ୍ରହ୍ମ ପୁରୁଷୋତ୍ତମ ଦାରବ ବିଗ୍ରହରେ ଆତ୍ମପ୍ରକାଶ କରିଛନ୍ତି । ଶ୍ୱେତାଶ୍ୱେତର ଉପନିଷଦରେ ବ୍ରହ୍ମଙ୍କର ବର୍ଣ୍ଣନା ପରିଦୃଷ୍ଟ ହୁଏ ।

ଉପନିଷଦର ଋଷିଙ୍କ ପରିକଳ୍ପନାରେ ଏହା ହିଁ ବ୍ରହ୍ମଙ୍କ ସ୍ୱରୂପ ଯାହାଙ୍କର ସର୍ବତ୍ର କରଚରଣ, ସର୍ବତ୍ର ଚକ୍ଷୁ, ମସ୍ତକ ଓ ମୁଖ, ସର୍ବତ୍ର କର୍ଣ୍ଣ । ସଂସାରର ସମସ୍ତ ବସ୍ତୁକୁ ବ୍ୟାପୀ କରି ରହିଛନ୍ତି ସେ । ତାଙ୍କଠାରେ ସମସ୍ତ ଇନ୍ଦ୍ରିୟଜନିତ ଗୁଣର ଆଭାସ ରହିଛି । ମାତ୍ର ସେ ଇନ୍ଦ୍ରିୟ ଶୂନ୍ୟ । ସେ ସମସ୍ତଙ୍କ ପ୍ରଭୁ, ସମସ୍ତଙ୍କ ରକ୍ଷକ, ସୁହୃଦ୍ । ସେ କରଚରଣ ହୀନ ହୋଇ ମଧ୍ୟ ସବୁଆଡ଼େ ଯାଇପାରନ୍ତି, ସବୁଗ୍ରହଣ କରିପାରନ୍ତି, ଚକ୍ଷୁ ହୀନ ହେଲେହେଁ ସେ ଦ୍ରଷ୍ଟା, କର୍ଣ୍ଣ ହୀନ ହୋଇ ମଧ୍ୟ ଶ୍ରୋତା । ସେ ସମସ୍ତ ବସ୍ତୁକୁ ଜାଣନ୍ତି ଅଥଚ ତାଙ୍କୁ କେହି ଜାଣିପାରନ୍ତି ନାହିଁ । ଜ୍ଞାନୀମାନେ ତାଙ୍କୁ ହିଁ କେବଳ ସର୍ବଶ୍ରେଷ୍ଠ, ପରିପୂର୍ଣ୍ଣ, ମହାନ୍ ପୁରୁଷ କହିଥାନ୍ତି ।

ବ୍ରହ୍ମଙ୍କ ଏ ଯେଉଁ ରୂପର କଳ୍ପନା କରାଗଲା ତାହା ଶ୍ରୀଜଗନ୍ନାଥଙ୍କ ଚତୁର୍ଦ୍ଧା ଦାରୁବିଗ୍ରହରେ ପରିଲକ୍ଷିତ ହୁଏ । ଅବ୍ୟକ୍ତ ଅରୂପ ବ୍ରହ୍ମଙ୍କୁ ରୂପ ଦେବା, ବ୍ୟକ୍ତ କରିବାର ଏହା ବୋଧହୁଏ ନିର୍ବିକଳ୍ପ ବିଗ୍ରହ । ଶ୍ରୀପୁରୁଷୋତ୍ତମ ବା ବ୍ରହ୍ମଙ୍କର ଏହି ଦାରବ ପ୍ରତିମାକୁ ସାଧାରଣ ଦାରୁ ପ୍ରତିମା କହି ଅବଜ୍ଞା କରାଯାଇନପାରେ ।

ପୁରୁଷୋତ୍ତମଙ୍କର ଏହି ଦାରୁବିଗ୍ରହ ଦାରୁବ୍ରହ୍ମ । ଏହାଙ୍କ ଦର୍ଶନରେ ବ୍ରହ୍ମଙ୍କ ଦର୍ଶନ ହୁଏ ଏବଂ ଏହା ସମସ୍ତ ଦୁଃଖ ଖଣ୍ଡନ କରି ଅଖଣ୍ଡ ଆନନ୍ଦ ଦାନ କରନ୍ତି ।

ତେଣୁ ଏହାକୁ ପ୍ରତିମା ଜ୍ଞାନ କରାଯାଇନପାରେ । ସେ ସ୍ୱୟଂ ସର୍ବଦୁଃଖ ଖଣ୍ଡନକାରୀ, ଅଖଣ୍ଡ ଆନନ୍ଦପ୍ରଦାନକାରୀ, ଦାରୁମୟୀ ବ୍ରହ୍ମ ।

ପୁରାଣକାଳରେ ସ୍ୱାଭାବିକ ଧାରାରେ ପୁରୁଷୋତ୍ତମ ରୂପେ କେବଳ ଶ୍ରୀକ୍ଷେତ୍ରର ଶ୍ରୀପୁରୁଷୋତ୍ତମ ହିଁ ଅଭିହିତ ହେଲେ ଏବଂ ତାଙ୍କର ଅଧିଷ୍ଠିତ କ୍ଷେତ୍ର ପୁରୁଷୋତ୍ତମ କ୍ଷେତ୍ର ବା ପୁରୁଷୋତ୍ତମ ପୁରୀ ବା ପୁରୁଷୋତ୍ତମ ଏବଂ ଗ୍ରାମୀଣ ଓଡ଼ିଆ ଭାଷାରେ ପୁରସ୍ତମ ରୂପେ ଅଭିହିତ ହେଲା । ଏହି କ୍ଷେତ୍ରର ମାହାତ୍ମ୍ୟ ଏତେ ବଢ଼ିଗଲା ଯେ କୁହାଗଲା-

ସର୍ବେଷାମପି ଦେବାନାଂ ରାଜା ଶ୍ରୀପୁରୁଷୋତ୍ତମଃ
ସର୍ବେଷାମପି କ୍ଷେତ୍ରାଣାଂ ରାଜା ଶ୍ରୀପୁରୁଷୋତ୍ତମଃ ।
(ବ୍ରହ୍ମାଣ୍ଡ ପୁରାଣ)

ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଓ କ୍ଷେତ୍ରାଧିପ ମହାପ୍ରଭୁ ଶ୍ରୀପୁରୁଷୋତ୍ତମ ଉଭୟେ ରାଜା, ଶ୍ରେଷ୍ଠ, ଅଦ୍ୱିତୀୟ । ପରବର୍ତ୍ତୀ କାଳରେ ପୁରୁଷୋତ୍ତମ ନାମଟି ଆତ୍ମଗୋପନ କଲା ଶ୍ରୀଜଗନ୍ନାଥ ଶବ୍ଦରେ । ଶ୍ରୀଜଗନ୍ନାଥ ଶବ୍ଦଟି ତନ୍ତ୍ରରୁ ଆନୀତ ଶବ୍ଦ ଯହିଁରେ ବ୍ୟାପିଯିବାର ଭାବନା ଭରି ରହିଛି ।

ସମଗ୍ର ଜଗତକୁ ପରିବ୍ୟାପ୍ତ ହୋଇଯିବାର ଭାବ ରହିଛି 'ଶ୍ରୀଜଗନ୍ନାଥ' ଶବ୍ଦଟିରେ । ଶ୍ରୀପୁରୁଷୋତ୍ତମ ନାମ ସମୟକ୍ରମେ ସାଧାରଣ ପ୍ରୟୋଗରୁ ଅପସରିଯାଇ ସମ୍ପ୍ରତି ଶ୍ରୀଜଗନ୍ନାଥ, ଶ୍ରୀଜଗନ୍ନାଥ ଧାମ ଓ ଶ୍ରୀକ୍ଷେତ୍ର ଇତ୍ୟାଦି ଶବ୍ଦଗୁଡ଼ିକର ବହୁଳ ପ୍ରୟୋଗ ପରିଲକ୍ଷିତ ହୁଏ ।

ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ ବୈଦିକ ବିଚାରମାନ ଲୋକଙ୍କ ଭିତରେ ପ୍ରବର୍ତ୍ତନ କରାଇବା ପାଇଁ ଏବଂ କାଳକାଳକୁ ତାକୁ ଉଜ୍ଜୀବିତ କରି ରଖିବା ପାଇଁ ଅନେକ ସୂତ୍ର ମଧ୍ୟରୁ ଦେବଦେବୀଙ୍କ ପ୍ରତିମା ଉପାସନା ଅନ୍ୟତମ । ପ୍ରତୀକାତ୍ମକ ଭାବରେ ପ୍ରତିମା ଓ ତହିଁରେ ଦେବତାଙ୍କ ଗୁଣାରାଜିର ପ୍ରତିଫଳନ ଭାରତୀୟ ଜୀବନଧାରାରେ ଏକ ପ୍ରଭାବଶାଳୀ ଅଙ୍ଗ । ଅବଶ୍ୟ ସମୟର ପ୍ରବାହରେ ବହୁ ତତ୍ତ୍ୱ, ଦର୍ଶନ ଏବଂ କର୍ମକାଣ୍ଡର ଗଣ୍ଠି ଭିତରେ ସରଳ ଚିନ୍ତାଗୁଡ଼ିକ ଜାଲପରି ଛନ୍ଦି ହୋଇ ଏତେ ଜଟିଳ ହୋଇପଡ଼େ ଯେ ସାଧାରଣ ମଣିଷଟିଏ ଆଧ୍ୟାତ୍ମିକତା କ୍ଷେତ୍ରରେ ବିଶ୍ୱାସକୁ ଆଧାର କରି ଅଗ୍ରସର ହେଉ ହେଉ ବିଶ୍ୱାସ ସବୁ ଅନ୍ଧବିଶ୍ୱାସ ଏବଂ ସଂସ୍କାର ସବୁ ପରଂପରାରେ କୁସଂସ୍କାରରେ ପର୍ଯ୍ୟବସିତ ହୋଇପଡ଼େ ।

ପଣ୍ଡିତମାନେ କୁହନ୍ତି ଯେ ଖ୍ରୀଷ୍ଟୀୟ ୧ମ/୨ୟ ଶତାବ୍ଦୀ ପରେ ଅଷ୍ଟାଦଶ ପୁରାଣର ପରିକଳ୍ପନା ହୋଇଥିଲା । ଅଗ୍ନି, ସୂର୍ଯ୍ୟ, ବିଷ୍ଣୁ, ଶିବ, ଭଗବତୀ, ଦୁର୍ଗା, ଲକ୍ଷ୍ମୀ, ଗଣେଶ, କାର୍ତ୍ତିକେୟ ଦେବତାଙ୍କ ମହିମା ପ୍ରଚାର ମାଧ୍ୟମରେ ସେହି ଏକ ବ୍ରହ୍ମଙ୍କ ମହିମା ଗାନ କରିବା ଥିଲା ଉଦ୍ଦେଶ୍ୟ । ସର୍ବଶକ୍ତିମାନ ଈଶ୍ୱରଙ୍କ ସର୍ବ ବ୍ୟାପକତା ପ୍ରତିପାଦନ କରିବା ପାଇଁ ପୁରାଣ ବର୍ଣ୍ଣିତ ଉପାଖ୍ୟାନମାନ ମଧ୍ୟ ଥିଲା ଉଦ୍ଦେଶ୍ୟ ମୂଳକ । ଏପରି ସବୁ ଦେବତାମାନଙ୍କର ପ୍ରତୀକାତ୍ମକ ପ୍ରତିମା ନିର୍ମାଣ ଓ ଉପାସନା ଭାରତୀୟ ଆଧ୍ୟାତ୍ମିକ ଜୀବନରେ ଏକ ଅପରିହାର୍ଯ୍ୟ ଅଙ୍ଗ ହୋଇପଡ଼ିଲା । ସେହି ଦୃଷ୍ଟିରୁ ଶ୍ରୀପୁରୁଷୋତ୍ତମଙ୍କ ଉପାସନା ପାଇଁ ବିଗ୍ରହର କଳ୍ପନା ଏକ ସମୟର ବିଚାର । ଏହି ବିଗ୍ରହ ପୁଣି କେତେବେଳେ ନୀଳମଣି ବିଗ୍ରହ ନୀଳମାଧବ ଯାହା ଶବର ରାଜା ବିଶ୍ୱାବସୁଙ୍କ ଦ୍ୱାରା ଗୁପ୍ତ ଭାବରେ ଆରାଧିତ ହେଉଥିଲେ । ଶବରର ସରଳ ଦେବତାଟିଏ, ସୁଖଦୁଃଖର ନିୟାମକ ଦେବତାଟିଏ, ଯାହାକୁ ଶବର ପ୍ରାଣଭରି ପ୍ରୀତି କରୁଥିଲା । ସେ ତା'ଠାରୁ ଅପହୃତ ହୋଇ ଦାରୁବ୍ରହ୍ମ ହୋଇଗଲେ । ଅସୁମାରି ସେବା ନିଯୋଗ ସାଙ୍ଗକୁ ଛପନପଉଟି ଭୋଗ, ଷୋଡ଼ଶୋପଚାର ପୂଜାବିଧିରେ ବନ୍ଧା ହୋଇ ରତ୍ନସିଂହାସନରେ ବିଜେ କଲେ । ତାଙ୍କଠାରେ ସନାତନତ୍ୱ ଆରୋପକରି ବେଦାନ୍ତ ମୂର୍ତ୍ତିର ପରିକଳ୍ପନା କରି ଏବଂ ନିର୍ବିକଳ୍ପ, ନିରାକାର, ନିର୍ଗୁଣ ବ୍ରହ୍ମ ବିବେଚନା କରାଗଲା । ସେହି ବ୍ରହ୍ମ କଳି ଯୁଗରେ ରୂପ ନେଇ ଉଭା ହେଲେ ନୀଳକନ୍ଦରରେ ଅଥବା ସିଏ ଋଷଭନାଥ, ସିଏ ବୁଦ୍ଧ, ସିଏ ଭୈରବ, ସିଏ ଗୋପିକା ପ୍ରାଣବଲ୍ଲଭ ବୃନ୍ଦାବନ ବିହାରୀ ମୁରଲୀଧର କୃଷ୍ଣ । ତେବେ ସାଧାରଣ ମଣିଷଟିଏ ପାଇଁ ସେ ଭାରି ସରଳ ଦେବତାଟିଏ ଯାହାରି ଉପସ୍ଥିତି ସେ ଅନୁଭବ କରିପାରେ । ସେଇ ଦେବତା'ର ଦୈନନ୍ଦିନ ଚଳଣି ଭିତରେ ଯେଉଁ ମଣିଷପଣିଆ, ଯେଉଁ ଆତ୍ମୀୟତା, ଯେଉଁ ସରଳ ସୌହାର୍ଦ୍ଦ୍ୟ ସେସବୁ କେଉଁ ପର୍ଯ୍ୟାୟର ବିଚାରକରିବା କଥା । ତା'ର ଆନନ୍ଦ ବଜାର, ତା'ର ମହାପ୍ରସାଦ, ତା'ର ଛପନପଉଟି ଭୋଗ, ତାକୁ ପରଷୁଥିବା ଲକ୍ଷ୍ମୀ ଠାକୁରାଣୀ, ତା'ର ପତିତପାବନ ନେତ, ତା'ର ଶ୍ରୀଗୁଣ୍ଡିଚା ଯାତ, ତା'ର ବଡ଼ ଦେଉଳ, ତା'ର ବଡ଼ଦାଣ୍ଡ, ବଡ଼ପଣ୍ଡା, ବଡ଼ ଠାକୁର ନାଆଁ ସର୍ବୋପରି ତା'ର ଚକାଆଖି କେମିତି କେମିତି ଲାଗେ । ମଣିଷକୁ ତା'ର ପାଖକୁ ପାଖକୁ ଟାଣି ନିଏ । ଏତେ ବଡ଼ପଣର ଅଧିକାରୀ ହୋଇ 'ମଣିମା ମଣିମା' ଡାକରେ ଚେଇଁ ଉଠୁଥିବା ଠାକୁର ସିଏ କେତେ ଆପଣାର ଆପଣାର ଲାଗନ୍ତି ସତେ । ଏତେ ଆତ୍ମୀୟତାକୁ ନେଇ ତତ୍ତ୍ୱର ଜଟିଳ ଛନ୍ଦରେ ଛନ୍ଦିଦେଲେ ସେ ଶବରର ପ୍ରିୟ ଦେବତା ହେବେ କେମିତି? ସ୍ନେହ, ପ୍ରୀତି ପାଖରେ ତତ୍ତ୍ୱ ସବୁ ହାର ମାନିଯାଏ । ଭାଗବତରେ ଏହି କଥାଟିକୁ ସୁନ୍ଦର ଭାବରେ ବୁଝାଇ ଦିଆଯାଇଛି ଗୋପିକା ଓ ଉଦ୍ଧବଙ୍କ କଥୋପକଥନ ପ୍ରସଙ୍ଗରେ । ଯେତେ ତାର୍କିକ, ଯେତେ ସୈଦ୍ଧାନ୍ତିକ





ହେଲେହେଁ ବୈଦିକ ଅଥବା ଉପନିଷଦୀୟ ଧାରାରେ ଶ୍ରୀଜଗନ୍ନାଥଙ୍କୁ ବିଚାର କଲେ ସେହି ବିଚାର ଗଣମୁଖୀ ହୋଇପାରିବ ନାହିଁ । ଏପରି ବିଚାରର ଊର୍ଦ୍ଧ୍ୱରେ ଶ୍ରୀଜଗନ୍ନାଥ । ସେ ଗଣଙ୍କ ଦେବତା । ଶ୍ରୀଜଗନ୍ନାଥଙ୍କ କଳ୍ପନା ଯିଏ କଲା ସିଏ ସମସ୍ତଙ୍କୁ ଏକାଠି କରିବା ପାଇଁ କରିଥିଲା, ସବୁ ମଣିଷକୁ ଗୋଟିଏ ପରିବାରର କରିଦେବା ପାଇଁ । ଭାରତୀୟ ମନୀଷୀଙ୍କ 'ବସୁଧୈବ କୁଟୁମ୍ବକମ୍' ବିଚାରଟି ଶ୍ରୀଜଗନ୍ନାଥଙ୍କ ଚଳଣିରେ ରୂପାୟିତ ହୋଇଛି । ମଣିଷକୁ ଆଚରଣ ସିଦ୍ଧ କରିବା ଏହାର ଉଦ୍ଦେଶ୍ୟ । ବିଜ୍ଞଜନେ ତାକୁ ତତ୍ତ୍ୱରେ ଜାଣିବେ । କିନ୍ତୁ ଗଣେ? ଗଣଙ୍କ କଥା କଣ ହେବ? ଏସବୁ ଭାବର କଥା, ଶବରର ସରଳ ପ୍ରୀତିର କଥା । ଅତଏବ ଜଗନ୍ନାଥ ବିଚାର ରହିଛି ଭାବନାରେ । ଜଗନ୍ନାଥ ସଂସ୍କୃତିରେ ଯିଏ ଅବଗାହନ କରିବ ସିଏ ମଣିଷକୁ ଆଲିଙ୍ଗନ କରିବ, କାହାରିକୁ ପର କରିବ ନାହିଁ । ଏହାହିଁ ଶ୍ରୀଜଗନ୍ନାଥ ଚିନ୍ତା ବା ପୁରୁଷୋତ୍ତମ ଚିନ୍ତନର ମୂଳମନ୍ତ୍ର ।

ଭାରତବର୍ଷରେ ଯେତେସବୁ ମତବାଦ ବିଭିନ୍ନ ସମୟରେ ଜନ୍ମ ନେଇଛି ତହିଁରୁ କେତୋଟି ସ୍ୱତନ୍ତ୍ର ଧର୍ମ ନାମରେ ପ୍ରସିଦ୍ଧି ଅର୍ଜନ କରିଛନ୍ତି । ହେଲେହେଁ ସବୁ ମତବାଦ ଶ୍ରୀଜଗନ୍ନାଥଙ୍କ ମହତ୍ତ୍ୱକୁ ସ୍ୱୀକାର କରିଛନ୍ତି । ସମସ୍ତ ମତବାଦର ମୌଳିକ ବିଚାରମାନ ଶ୍ରୀଜଗନ୍ନାଥ ଚେତନା ଭିତରେ ସୁନ୍ଦର ଭାବରେ ରୂପ ପାଇଛି । ଅତଏବ ଅନେକଙ୍କୁ ଏକ ଭାବନାରେ ଉଦ୍‌ବୁଦ୍ଧ କରିବାରେ ଶ୍ରୀଜଗନ୍ନାଥ ଚେତନା ଏକ ଅତୁଳନୀୟ ଅବଦାନ ଗୋଟାଏ ଜାତିର । ପ୍ରତ୍ୟେକ ବ୍ୟକ୍ତିସତ୍ତାକୁ ସ୍ୱୀକୃତି ଦେଇ ସମସ୍ତଙ୍କୁ ଏକତ୍ର କରିବାର ସୂତ୍ରଟିଏ ଶ୍ରୀଜଗନ୍ନାଥ । ବ୍ୟଷ୍ଟି ବଞ୍ଚିବ, ସମଷ୍ଟି ରହିବ । ଯିଏ ଯାହାର ସ୍ଥାନରେ ରହି ସ୍ୱକୀୟ ସତ୍ତାର ଅନୁଭବ କରିବେ । ଶ୍ରୀଜଗନ୍ନାଥ ଚେତନା ଏହି ବିଚାରଟି ଭରିଦିଏ । ସାମ୍ୟ, ସୌହାର୍ଦ୍ଦ୍ୟ, ସମନ୍ୱୟର ଅନ୍ୟ ନାମ ଶ୍ରୀଜଗନ୍ନାଥ । ନାଆଁଟିରେ ସମସ୍ତଙ୍କୁ ବାନ୍ଧି ରଖିବାର ମନ୍ତ୍ରଟି ଗୁମ୍ଫିତ ହୋଇଛି । ଚାରିଆଡ଼କୁ ବ୍ୟାପିଯିବାର ଭାବଭରା ନାଆଁଟିଏ ଇଏ । ସେଇଥିପାଇଁ କେହି କେହି ଏଇ ନାଆଁଟିକୁ ତନ୍ତ୍ରର ବୋଲି କହିଥାନ୍ତି । 'ତନ୍' ଧାତୁର ଅର୍ଥ ବ୍ୟାପୀଯିବା । ଏଥିରୁ ତନ୍ତ୍ରର ଉତ୍ପତ୍ତି । (ତନ୍ୟ ତେ ଇତି ଜ୍ଞାନଂ....)

ଭାରତ ଭଳି ଏକ ବିଶାଳ ଦେଶରେ ଯେଉଁଠି କାଳକାଳରୁ ବହୁ ମତବାଦର ମଣିଷ ବସବାସ କରନ୍ତି ସେଇଠି ସହନଶୀଳତା ଯେ କେତେ ଅପରିହାର୍ଯ୍ୟ ତାହାକୁ କେହି ଅସ୍ୱୀକାର କରିପାରିବେ ନାହିଁ । ଅନ୍ୟର ମତ ପ୍ରତି, ଚିନ୍ତା ପ୍ରତି, ଚଳଣି ପ୍ରତି ସହନଶୀଳ ହେବା, ସମ୍ମାନ ଦେବା ଭାବନାଟି ନଥିଲେ ଏପରି ଅନୁଷ୍ଠାନ ସହ ସଂପର୍କ ବିପଜ୍ଜନକ ହୋଇପଡ଼େ । ସହନଶୀଳତାକୁ ଅଙ୍ଗୀକାର କରିଛି ଶ୍ରୀଜଗନ୍ନାଥ ସଂସ୍କୃତି । ରଢ଼ିବାଦୀମାନଙ୍କ ବିରୁଦ୍ଧରେ ଅନ୍ତଃସ୍ୱରର ଲହଡ଼ି ସୃଷ୍ଟି କରି ତା'ର ପ୍ଲାବନ କରିଛି ନିର୍ଭୀକ ଭାବରେ କେବଳ ସହନଶୀଳତା'ର ଆତ୍ମିକ ବିଭବକୁ ପୁଞ୍ଜିକରି । ସହନଶୀଳତା'ର ବାର୍ତ୍ତାରେ ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରିଦିଏ ଶ୍ରୀଜଗନ୍ନାଥ ଚେତନା । ସେଥିରେ ପୁଣି ଦାରୁ ମୂର୍ତ୍ତି, ଖାଲି ପ୍ରସାଦ ନୁହେଁ ମହାପ୍ରସାଦ– ବଡ଼ ଅଦ୍ଭୁତଚିନ୍ତା, ଏହାରି ମାଧ୍ୟମରେ ଏକ ଜାତିହୀନ, ବର୍ଣ୍ଣହୀନ ସାମାଜିକ ବ୍ୟବସ୍ଥା, ଏସବୁ ବିପ୍ଳବ ନୁହେଁ ତ କ'ଣ?

ଧନ୍ୟ ଏହି ଦେଶ, ଏହି ଦେଶର ଦେବତା ଶ୍ରୀଜଗନ୍ନାଥ । ବିଗତ ଶହ ଶହ ବର୍ଷର ଇତିହାସ, ରାଜନୀତି, ଧର୍ମ, ସମାଜ, ସଂସ୍କୃତି, ସାହିତ୍ୟ ସହ ଏମିତି ବିଜଡ଼ିତ ହୋଇପଡ଼ିଲେ ଶ୍ରୀଜଗନ୍ନାଥ ଯେ ତାଙ୍କୁ ବାଦ୍‌ଦେଇ ଗୋଟିଏ ଜାତିର ଅସ୍ତିତ୍ୱ କଳ୍ପନା କରିହୁଏ ନାହିଁ । ଗୋଟିଏ ଜାତିର ସୁଖ ଦୁଃଖର ନିୟାମକ ହୋଇପଡ଼ିଲେ ଶ୍ରୀଜଗନ୍ନାଥ । ଏ ଜାତିର ପ୍ରାଣସତ୍ତା, ଶେଷରେ ଏହାର ପରିଚୟ ।

ନୈବେଦ୍ୟ
ପୂଜାରୀପୁଟ, କୋରାପୁଟ

**ସହାୟକ ଗ୍ରନ୍ଥ**

୧) ଶ୍ରୀଜଗନ୍ନାଥ ସଂସ୍କୃତି– ବିମଳ କୃଷ୍ଣ ପାଲ

୨) ଶ୍ରୀଜଗନ୍ନାଥ ତତ୍ତ୍ୱ – ଶ୍ରୀ ଜଗବନ୍ଧୁ ପାଢ଼ୀ

୩) ଶାବର ଶ୍ରୀକ୍ଷେତ୍ର ସମାଚାର (ପତ୍ରିକା) – ଶ୍ରୀଜଗନ୍ନାଥ ମନ୍ଦିର, କୋରାପୁଟ

୪) ପୁରୁଷୋତ୍ତମ ଉପାସନା– ଡ. ନବୀନ କୁମାର ସାହୁ

# ଶ୍ରୀପୁରୁଷୋତ୍ତମଙ୍କ ରଥଯାତ୍ରା

**ସଦାଶିବ ମିଶ୍ର**

ଭାରତରେ ସନାତନ ଧର୍ମୀ ବା ହିନ୍ଦୁଧର୍ମାବଲମ୍ବୀ ବହୁ ସଂଖ୍ୟାରେ ବାସ କରନ୍ତି । ହିନ୍ଦୁଧର୍ମାବଲମ୍ବୀ ବହୁ ଦେବଦେବୀଙ୍କୁ ପୂଜା କରନ୍ତି । ସେଥିମଧ୍ୟରୁ ବିଷ୍ଣୁଙ୍କୁ ଅଧିକ ପ୍ରାଧାନ୍ୟ ଦେଇଥାନ୍ତି । ବିଷ୍ଣୁ ବା ପୁରୁଷୋତ୍ତମ ହେଉଛନ୍ତି ସଚରାଚର ମଣ୍ଡଳର ସୃଷ୍ଟିକର୍ତ୍ତା ଓ ପାଳନକର୍ତ୍ତା । ମର୍ତ୍ତ୍ୟଲୋକରେ ବିଷ୍ଣୁଙ୍କର ପ୍ରିୟ କ୍ଷେତ୍ର ହେଲା ଭାରତବର୍ଷ । ଏହି ଭାରତରେ ପୁରୁଷୋତ୍ତମ ବିଭିନ୍ନ ଅବତାର ଗ୍ରହଣ କରି ପୃଥିବୀବାସୀଙ୍କୁ ବିଭିନ୍ନ ସଙ୍କଟରୁ ଉଦ୍ଧାର କରିଛନ୍ତି । ସତ୍ୟ, ନ୍ୟାୟ, ଧର୍ମର ପ୍ରତିଷ୍ଠା ସହିତ ମାନବବାଦର ମହାନତା ପ୍ରସାର କରିଛନ୍ତି । ଭାରତବର୍ଷରେ ବିଷ୍ଣୁଙ୍କର ପ୍ରିୟ ୪ ଧାମ ମଧ୍ୟରୁ ଶ୍ରୀକ୍ଷେତ୍ର ସର୍ବଶ୍ରେଷ୍ଠ ବୋଲି ଶାସ୍ତ୍ରକାର, ଦାର୍ଶନିକ, ପଣ୍ଡିତମାନେ ମତବ୍ୟକ୍ତ କରିବା ସହିତ ବିଭିନ୍ନ ଶାସ୍ତ୍ରରେ ମଧ୍ୟ ଉଲ୍ଲେଖ ରହିଅଛି । ଶାସ୍ତ୍ର ଓ ଲୋକକଥାରୁ ଜଣାଯାଏ ଯେ ବିଷ୍ଣୁଙ୍କର ଏହି ୪ କ୍ଷେତ୍ର ମଧ୍ୟରୁ ବିଷ୍ଣୁ ତଥା ପୁରୁଷୋତ୍ତମ ରାମନାଥରେ ସ୍ନାନ କରନ୍ତି, ଦ୍ୱାରକାରେ ବେଶ ହୁଅନ୍ତି, ଶ୍ରୀକ୍ଷେତ୍ର ପୁରୀରେ ଭୋଜନ କରନ୍ତି ଓ ବଦ୍ରିନାଥରେ ଶୟନ କରନ୍ତି । ଶ୍ରୀକ୍ଷେତ୍ରର ଅନ୍ୟନାମ ପୁରୁଷୋତ୍ତମ କ୍ଷେତ୍ର । କପିଳସଂହିତାରେ ଉଲ୍ଲେଖ ଅଛି –

''ସର୍ବେଷାଂ ମପି କ୍ଷେତ୍ରାଣାଂ, ରାଜା ପୁରୁଷୋତ୍ତମ
ସର୍ବେଷାଂ ମପି ଦେବାନାଂ, ରାଜା ପୁରୁଷୋତ୍ତମ ।''

ଶ୍ରୀକ୍ଷେତ୍ର ହେଉଛି ପରମ ପାବନ କ୍ଷେତ୍ର । ଏଠାରେ ସ୍ୱୟଂ ପୁରୁଷୋତ୍ତମ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ରୂପରେ ବିଦ୍ୟମାନ । ଅନ୍ୟ କ୍ଷେତ୍ରରେ ବିଗ୍ରହ ଶିଳା କିମ୍ବା ଧାତୁରେ ନିର୍ମିତ ହୋଇଥିଲା ବେଳେ ଶ୍ରୀକ୍ଷେତ୍ରର ପୁରୁଷୋତ୍ତମ ଦାରୁ (କାଠ)ରେ ନିର୍ମିତ । ଶ୍ରୀମନ୍ଦିରର ରୀତି ନୀତି ପୂଜାବିଧି ସ୍ୱତନ୍ତ୍ର ଓ ବିସ୍ମୟକର । ଠାକୁର ହୋଇ ମଧ୍ୟ ତାଙ୍କର ଦିନଚର୍ଯ୍ୟା ସାଧାରଣ ମନୁଷ୍ୟର ଜୀବନଚର୍ଯ୍ୟା ଭଳି । ସେ ମଧ୍ୟ ରୋଗରେ ପଡ଼ନ୍ତି, ଔଷଧ ସେବନ କରନ୍ତି, ଜଳକ୍ରୀଡ଼ା କରନ୍ତି, ମୃଗୟାକୁ ଯାଆନ୍ତି, ରାଜ ଅଭିଷେକ ହୁଅନ୍ତି, ବିଭିନ୍ନ ବେଶରେ ଭକ୍ତଙ୍କୁ ଦର୍ଶନ ଦିଅନ୍ତି । ସକାଳର ମଙ୍ଗଳଆଳତୀ (ଦୁଆରଫିଟା) ଠାରୁ ବଡ଼ସିଂହାର ବେଶ ଦ୍ୱାର ବନ୍ଦ ପର୍ଯ୍ୟନ୍ତ ଦୈନିକ ନୀତିକାନ୍ତିକୁ ଦେଖିଲେ ଯେ କେହି ପୁଲକିତ ହୁଏ । ଏଭଳି ଠାକୁର ଜଗତରେ ବିରଳ । ସବୁ ଧର୍ମ, ସଂପ୍ରଦାୟ, ଜାତି, ଗୋଷ୍ଠୀକୁ ସେ ନିଜ ଭିତରେ ଏକୀଭୂତ କରି ମହିମାମୟ । ଶ୍ରୀମନ୍ଦିରର ଦୈନିକ ସେବାପୂଜା ଓ ବର୍ଷର ବିଭିନ୍ନ ଯାନିଯାତ୍ରା, ଉତ୍ସବ, ପର୍ବ ପର୍ବାଣିରେ ଆମ ସମାଜର ୪ ଜାତି – ବ୍ରାହ୍ମଣ, କ୍ଷତ୍ରୀୟ, ବୈଶ୍ୟ ଓ ଶୁଦ୍ର ଅଂଶ ଗ୍ରହଣ କରିଥାନ୍ତି । ଶ୍ରୀକ୍ଷେତ୍ର ଓ ପୁରୁଷୋତ୍ତମଙ୍କ ମହିମା ବର୍ଣ୍ଣନା କରିବାକୁ ଯାଇ କବି ବଳରାମ ଦାସ ଭାବ ସମୁଦ୍ରରେ ଲେଖିଛନ୍ତି –

''କାହୁଁ ଭିଆଇଲୁ କ୍ଷେତ୍ର ତୋହର
ଚଉଦ ଭୁବନ ମଧ୍ୟୁ ବାହାର ।।
ନାଥ ତୋ କ୍ଷେତ୍ରେ ସାନବଡ଼ ନାହିଁ
ବ୍ରାହ୍ମଣ ଚଣ୍ଡାଳ ଯେ ସରିଦୁଇ ।।''

ଶ୍ରୀଜଗନ୍ନାଥ ହିଁ ସାକ୍ଷାତ୍ ପୁରୁଷୋତ୍ତମ ବୋଲି ଅନେକ ଶାସ୍ତ୍ରକାର, ପଣ୍ଡିତ, ଦାର୍ଶନିକ ଓ ଧର୍ମ ପ୍ରଚାରକ ଉଦା କଣ୍ଠରେ ଘୋଷଣା କରିଛନ୍ତି ।





ପୁରୁଷୋତ୍ତମ ରୂପୀ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କ ବିଶ୍ୱବିଦିତ ରଥଯାତ୍ରା ଆଷାଢ଼ ମାସ ଶୁକ୍ଳପକ୍ଷ ଦ୍ୱିତୀୟା ତିଥିରେ ଅନୁଷ୍ଠିତ ହୁଏ । ଅନବସରର ୧୪ଦିନ ଅତିକ୍ରାନ୍ତ ପରେ ଆଷାଢ଼ ଅମାବାସ୍ୟା ଦିନ ଠାକୁରମାନେ ସେହି ଅଣସର ପିଣ୍ଡିରେ ଉଭା ହୋଇ ଦର୍ଶନ ଦେଇଥାନ୍ତି । କେହି କେହି ଏହାକୁ ଉଭା ଅମାବାସ୍ୟା ବୋଲି କହିଥାନ୍ତି । ଆଷାଢ଼ ଶୁକ୍ଳ ପ୍ରତିପଦାରେ ନବଯୌବନ ବେଶରେ ଭକ୍ତ ଓ ଦର୍ଶନାର୍ଥୀଙ୍କୁ ଦର୍ଶନ ଦେଇଥାନ୍ତି । ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ଠାକୁରମାନଙ୍କ ପ୍ରାତଃ ନୀତି ଶେଷ ହେବାପରେ ଖେଚୁଡ଼ି ଭୋଗ ଖାଇ ଠାକୁରମାନେ ଅଣସର ପିଣ୍ଡିରୁ ନିଜ ପ୍ରିୟ ସେବକମାନଙ୍କ ଦ୍ୱାରା ପହଣ୍ଡି ହୋଇ ଶ୍ରୀମନ୍ଦିରର ସିଂହଦ୍ୱାରରେ ସୁସଜ୍ଜିତ ତାଳଧ୍ୱଜ, ଦେବଦଳନ ଓ ନନ୍ଦିଘୋଷ ରଥକୁ ବିଜେ କରିଥାନ୍ତି । ତାଳଧ୍ୱଜ ରଥରେ ଶ୍ରୀବଳଭଦ୍ର, ଦେବଦଳନ ବା ଦର୍ପଦଳନ ରଥରେ ଚକ୍ରରାଜ ସୁଦର୍ଶନ, ମା'ସୁଭଦ୍ରା ଓ ନନ୍ଦିଘୋଷ ରଥରେ ଶ୍ରୀଜଗନ୍ନାଥ ବିଜେ ହୋଇଥାନ୍ତି । ଠାକୁରମାନେ ରଥରେ ବିଜେ ହୋଇ ଶ୍ରୀମନ୍ଦିରଠାରୁ ପ୍ରାୟ ଅଢ଼େଇ କିଲୋମିଟର ଦୂରରେ ଥିବା ଗୁଣ୍ଡିଚା ମନ୍ଦିର ବା ଗୁଣ୍ଡିଚା ମଣ୍ଡପକୁ ବିଜେ କରିଥାନ୍ତି । ଗୁଣ୍ଡିଚା ମଣ୍ଡପ ହେଉଛି ଶ୍ରୀଜୀଉମାନଙ୍କର ଜନ୍ମସ୍ଥାନ ବା ଜନ୍ମବେଦୀ । ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଶୂନ୍ୟବାଣୀ ଅନୁସାରେ ଶ୍ରୀକ୍ଷେତ୍ରର ମହୋଦଧି ତଟରେ ଭାସମାନ ଦାରୁ ସଂଗ୍ରହ କରି ଯେଉଁଠାରେ ଶ୍ରୀଜୀଉମାନଙ୍କ ବିଗ୍ରହ ନିର୍ମାଣ କରାଇଥିଲେ ସେହିସ୍ଥଳ ହେଉଛି ଗୁଣ୍ଡିଚା ମଣ୍ଡପ । ପରବର୍ତ୍ତୀ ଅବସ୍ଥାରେ ନୀଳାଚଳରେ ମନ୍ଦିର ନିର୍ମାଣ କରାଇ ଶ୍ରୀମନ୍ଦିରରେ ଶ୍ରୀଜୀଉମାନଙ୍କୁ ପ୍ରତିଷ୍ଠା କରାଇଥିଲେ ବୋଲି ବିଭିନ୍ନ ଶାସ୍ତ୍ର ଓ ପୁରାଣମାନଙ୍କରେ ଉଲ୍ଲେଖ ଅଛି । ଜନ୍ମଭୂମିକୁ ଭଲ ପାଇବା ଓ ଗୁଣ୍ଡିଚାରାଣୀଙ୍କୁ ଦେଇଥିବା ପ୍ରତିଶ୍ରୁତି ରକ୍ଷାପାଇଁ ଶ୍ରୀଜଗନ୍ନାଥ ବର୍ଷକରେ ଥରେ ନିଜର ଜନକପୁରୀକୁ ଯାତ୍ରା କରିଥାନ୍ତି । ନିଜେ ମହାପ୍ରଭୁ ଶ୍ରୀଜଗନ୍ନାଥ ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ କହିଛନ୍ତି –

''ଗୁଣ୍ଡିଚା ନାମେ ମୋ ଯାତ୍ରା ପରମ ପାବନୀ
ରଥଯାତ୍ରା ନାମେ ଖ୍ୟାତ ହେବ ଯେ ଅବନୀ ।''

– ଶ୍ରୀଜଗନ୍ନାଥ ପୁରାଣ

ଶ୍ରୀଜଗନ୍ନାଥଙ୍କର ବିଭିନ୍ନ ଯାତ୍ରା ମଧ୍ୟରୁ ଚନ୍ଦନଯାତ୍ରା, ସ୍ନାନଯାତ୍ରା, ରଥଯାତ୍ରା, ଝୁଲଣଯାତ୍ରା ଓ ଦୋଳଯାତ୍ରା ପ୍ରଧାନ । ଏହି ଯାତ୍ରାମାନଙ୍କ ମଧ୍ୟରୁ ସ୍ନାନଯାତ୍ରା ଓ ରଥଯାତ୍ରାରେ ସ୍ୱୟଂ ଦାରୁମୂର୍ତ୍ତିମାନେ ବିଜେ ହେଉଥିଲା ବେଳେ, ଅନ୍ୟାନ୍ୟ ଯାତ୍ରାରେ ଶ୍ରୀଜୀଉମାନଙ୍କ ଚଳନ୍ତି ପ୍ରତିମା ବିଜେ କରିଥାନ୍ତି । ଶ୍ରୀଜଗନ୍ନାଥ ମନ୍ଦିରର ଠାକୁରମାନଙ୍କର ଶ୍ରେଷ୍ଠ ଯାତ୍ରା ହେଉଛି ରଥଯାତ୍ରା । ଏହି ରଥଯାତ୍ରା ଆଜି ଓଡ଼ିଶା, ଭାରତ ଅତିକ୍ରମ କରି ପୃଥିବୀର ବିଭିନ୍ନ ଦେଶରେ ଅନୁଷ୍ଠିତ ହେଉଅଛି ।

ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଏବେ ସମଗ୍ର ମାନବଜାତିର ମହାମିଳନର ପର୍ବରେ ପରିଣତ ହୋଇଛି । ଜାତି, ଧର୍ମ, ଗୋଷ୍ଠୀ, ସଂପ୍ରଦାୟ ନିର୍ବିଶେଷରେ ସମସ୍ତେ ଶ୍ରୀକ୍ଷେତ୍ରର ବଡ଼ଦାଣ୍ଡରେ ରୁଣ୍ଡ ହୋଇ ରଥାରୂଢ଼ ଚକାନୟନଙ୍କୁ ଦେଖି ବିମୋହିତ ହୁଅନ୍ତି । ଜୟ ଜଗନ୍ନାଥ ଶବ୍ଦରେ ବଡ଼ଦାଣ୍ଡର ବାୟୁମଣ୍ଡଳ ମୁଖରିତ ହୋଇଉଠେ । ଶ୍ରୀଜଗନ୍ନାଥ ପ୍ରେମୀ ବିଶ୍ୱର କୋଟି କୋଟି ଅଧିବାସୀ ଉତ୍ସୁକତାର ସହ ଏହି ଦିନଟିକୁ ଅପେକ୍ଷା କରିଥାନ୍ତି, ରଥରେ ମହାପ୍ରଭୁ ଜଗତର ନାଥ ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ରୂପୀ ପୁରୁଷୋତ୍ତମଙ୍କୁ ଦର୍ଶନ କରିବାକୁ । ରଥଯାତ୍ରା ସମଗ୍ର ମାନବଜାତିର ହିତ ବା ମଙ୍ଗଳ ପାଇଁ ଉଦ୍ଦିଷ୍ଟ ।

ଆଷାଢ଼ସ୍ୟା ମଳେ ପକ୍ଷେ, ଦ୍ୱିତୀୟା ପୁଷ୍ୟା ସଂଯୁତେ
ଚରାଚର ହିତାର୍ଥାୟ, ଘୋଷଯାତ୍ରା ବିଧିୟତେ ।

– ଇନ୍ଦ୍ର ନୀଳମଣି ପୁରାଣ

ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଆମ ହିନ୍ଦୁ ସମାଜର ଏକ ମହାନ ଯାତ୍ରା । ସମାଜର ଚାରିଜାତି ଯଥା – ବ୍ରାହ୍ମଣ, କ୍ଷତ୍ରୀୟ, ବୈଶ୍ୟ ଓ ଶୁଦ୍ରମାନଙ୍କର ଯୋଗଦାନ ଦେଖିବାକୁ ମିଳେ । ରଥଗଡ଼ା ଠାରୁ ରଥୁ ଟଣାର ବିଭିନ୍ନ ନୀତି, ପୂଜାରେ ଶ୍ରୀଜଗନ୍ନାଥଙ୍କର ଅଙ୍ଗସେବକ ଦଇତାପତି, ମହାରଣା (କାଠଶିଳ୍ପୀ), ଚିତ୍ରଶିଳ୍ପୀ, ରଙ୍ଗଶିଳ୍ପୀ, କମାର, ତନ୍ତୀ, ଦର୍ଜି, ଭୋଇ ସେବକ, ଶ୍ରୀଜଗନ୍ନାଥଙ୍କ ନୀତି ସହିତ ବିଭିନ୍ନ ସେବକ ଏପରିକି ପୂଜାପଣ୍ଡା ଯୋଗଦେବା ସହିତ କ୍ଷତ୍ରୀୟ ଶିରୋମଣି ଗଜପତି ମହାରାଜ, ହିନ୍ଦୁମାନଙ୍କ ମହାନ





ଧର୍ମଗୁରୁ ଆଦିଶଙ୍କରାଚାର୍ଯ୍ୟ ମଠର ମଠାଧୀଶ, ପୁରୀ ଗୋବର୍ଦ୍ଧନପୀଠର ଶଙ୍କରାଚାର୍ଯ୍ୟ ଯୋଗ ଦେଇଥାନ୍ତି । ରାଜନେତା ଓ ଜନନାୟକମାନେ ମଧ୍ୟ ଯୋଗ ଦେଇଥାନ୍ତି, ଯେଉଁମାନଙ୍କର ଶ୍ରୀମନ୍ଦିରରେ ପ୍ରବେଶ ଅଧିକାର ନାହିଁ, ସେମାନେ ରଥଯାତ୍ରାରେ ରଥାରୂଢ଼ ଦାରୁବିଗ୍ରହମାନଙ୍କୁ ଦର୍ଶନ କରି ନିଜକୁ ଧନ୍ୟ ମନେକରନ୍ତି । ରଥଯାତ୍ରାରେ ଭକ୍ତର ଉଦଣ୍ଡ ନୃତ୍ୟ ଦେଖିତ, କେହି ସେବାୟତମାନଙ୍କର ସେବାକାର୍ଯ୍ୟ ଦେଖି, ଠାକୁରମାନଙ୍କ ପହଣ୍ଡି ବିଜେ ଦେଖିତ, କେହି ଠାକୁରରାଜା ରଥରେ ସୁନାବେଣ୍ଟ ଝାଡୁଧରି ଛେରାପହଁରା (ମାର୍ଜନା ବା ପରିଷ୍କାର କରିବା) ଦେଖିତ, କେହି ରଥାରୂଢ଼ ଦେବ ଦେବୀ ଓ ରଥର ଶୋଭା ଦେଖିତ କେହି କେହି ଭକ୍ତ ଗହଳି ପୂର୍ଣ୍ଣ ବଡ଼ଦାଣ୍ଡର ଶୋଭା ଦେଖି ଆତ୍ମହରା ହୋଇ ଗାଇ ଉଠେ –

''କାଳିଆ କାହ୍ନୁ, ଆଉ ବିଳମ୍ବ କର କାହିଁକି
ବରଷକ ଥରେ ବିଜୟ ରଥରେ
ପତିତ ତାରିବା ପାଇଁକି
ଚଉଦ ବ୍ରହ୍ମାଣ୍ଡ ରୁଣ୍ଡ ହୋଇଛନ୍ତି
ଦର୍ଶନ କରିବା ପାଇଁ କି ।''

ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାରେ ପୁରୀ ବଡ଼ଦାଣ୍ଡରେ ବିଭିନ୍ନ ଜାତି, ବର୍ଣ୍ଣ, ଧର୍ମ, ସଂପ୍ରଦାୟର ଭକ୍ତ ଓ ଦର୍ଶନାର୍ଥୀଙ୍କୁ ଦେଖିଲେ ମନେହୁଏ ସତେ ଯେପରି ସମଗ୍ର ବିଶ୍ୱବାସୀ ଏଠି ଏକାକାର ହୋଇଯାଇଛନ୍ତି । ମନରେ କେତେ ଭାବାବେଗ, ଅନ୍ତରେ କେତେ ପୁଲକ, ଅଙ୍ଗରେ ଶିହରଣ ତା'ର କଳନା କରି ହୁଏନାହିଁ । ଶାସ୍ତ୍ରକାରମାନଙ୍କ ମତରେ ମନୁଷ୍ୟ ଶରୀର ମଧ୍ୟ ଏକ ରଥସ୍ୱରୂପ । ସତ୍ୟ ଓ ସଦାଚାର ଏହି ରଥର ଦୁଇଟି ଚକ । ବଳ, ବିବେକ, ପରୋପକାର ଓ ଇନ୍ଦ୍ରିୟ ନିଗ୍ରହ ହେଉଛନ୍ତି ଏହାର ଅଶ୍ୱ ସଦୃଶ । କ୍ଷମା, କୃପା, ମମତା, ସ୍ନେହ, ସଦିଚ୍ଛା ଆଦି ରଜ୍ଜୁ ଦ୍ୱାରା ଅଶ୍ୱମାନେ ନିୟନ୍ତ୍ରିତ । ଶରୀର ରୂପୀ ରଥକୁ ଠିକ୍ ମାର୍ଗରେ ପରିଚାଳିତ କରିବାକୁ ହେଲେ ନିଜ ଭିତରେ ଥିବା ମନ, ପ୍ରାଣ ଶରୀରର ଯଥାର୍ଥ ବିକାଶ ସହିତ ଚୈତସତ୍ତାର ବିକାଶ ଅପରିହାର୍ଯ୍ୟ । ରଥଯାତ୍ରାରେ ରଥ ଚକର ଘର୍ଘର ନାଦ ମାନବ ଜାତିକୁ ସତର୍କ କରାଇଦିଏ ଜୀବନର ପ୍ରକୃତ ଲକ୍ଷ୍ୟ ପ୍ରତି ସଚେତନ ହୁଅ, ଅମୃତସ୍ୟ ପୁତ୍ର ଅମୃତପଥର ଯାତ୍ରୀ ହୁଅ ।

ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଦିନ ମଙ୍ଗଳାରୋପଣ କାର୍ଯ୍ୟରେ ଜଗତରହିତ ବା ମଙ୍ଗଳ ପାଇ ଘୋଷଣା କରାଯାଏ । ଘୋଷ ଶବ୍ଦ ଏକ ମଙ୍ଗଳଦାୟକ ଶବ୍ଦ । ଜଗତର ମଙ୍ଗଳ ପାଇଁ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ହେଉଥିବାରୁ ଏହାର ଅନ୍ୟନାମ ମଧ୍ୟ ଘୋଷଯାତ୍ରା । ଶ୍ରୀଜଗନ୍ନାଥଙ୍କ ରାଥଯାତ୍ରାର ମହାନତା ଓ ବିଶ୍ୱପ୍ରାଣତାକୁ ଉପଲବ୍ଧି କରି କବି ସଚ୍ଚିଦାନନ୍ଦ ରାଉତରାୟ ଗାଇ ଉଠିଥିଲେ –

''ତୁମେ ପରା ଚିର ଶାନ୍ତି ପ୍ରତୀତି
ନୀଳଚକ୍ରରେ ବାନ୍ଧିଛ ବନାତି ।''

ଗୁଣ୍ଡିଚା ମଣ୍ଡପରେ ଦାରୁବ୍ରହ୍ମମାନଙ୍କୁ ଥରେ ଦର୍ଶନ କଲେ ଶ୍ରୀମନ୍ଦିରରେ ଦଶବର୍ଷ ଦର୍ଶନ କରିବାର ଫଳ ମିଳେ । ଦିନ ଅପେକ୍ଷାରେ ରାତିରେ ଦର୍ଶନ କଲେ ଦଶଗୁଣ ଅଧିକ ଫଳ ମିଳେ ବୋଲି ସ୍କନ୍ଦ ପୁରାଣରେ ଉଲ୍ଲେଖ ଅଛି ।

''ନୀଳାଦ୍ରୌ ଦଶବର୍ଷାଣି ଗୁଣ୍ଡିଚା ମଣ୍ଡପେ ଦିନେ
ଦିବା ତଦ୍ଦର୍ଶନଂ ପୁଣ୍ୟଂ ରାତ୍ରୌ ଦଶ୍ଗୁଣ ଭବେତ୍ ।''

ଶ୍ରୀଜଗନ୍ନାଥଙ୍କର ରଥଯାତ୍ରାକୁ ପ୍ରତିତପାବନ ମହୋତ୍ସବ କୁହାଯାଏ । ଯେଉଁମାନେ ଶ୍ରୀମନ୍ଦିରରେ ପ୍ରବେଶ କରିବାର ଅଧିକାର ନାହିଁ, ସେମାନଙ୍କ ପାଇଁ ରଥଯାତ୍ରା ହେଉଛି ଏକ ରଥାରୂଢ଼ ଶ୍ରୀଜୀଉମାନଙ୍କୁ ଦର୍ଶନ କରିବାର ପୁଣ୍ୟ ଅବସର । ବଡ଼ଦାଣ୍ଡରେ ସମବେତ ଭକ୍ତ, ଦର୍ଶନାର୍ଥୀ ଓ ଜନତାଙ୍କ ଚକ୍ଷୁଯୁଗଳର ଦୃଷ୍ଟି ପ୍ରସରିଯାଏ ରଥାରୂଢ଼ ଶ୍ରୀଜୀଉମାନଙ୍କ ଉଦ୍ଦେଶ୍ୟରେ । ଜୟ ଜଗନ୍ନାଥ ଧ୍ୱନିରେ ବଡ଼ଦାଣ୍ଡ ପ୍ରକମ୍ପିତ ହେଉଥାଏ । ଭକ୍ତ ଓ ଭଗବାନଙ୍କର ମିଳନର ଅପୂର୍ବ ଅବସର ହେଉଛି ଶ୍ରୀକ୍ଷେତ୍ରର ରଥଯାତ୍ରା । ଏହି ରଥଯାତ୍ରା ସମଗ୍ର ମନୁଷ୍ୟ ଜାତିର ଜୀବନଯାତ୍ରାର ମହାନ ପର୍ବ ଓ ମାନବବାଦ, ବିଶ୍ୱଭ୍ରାତୃତ୍ୱର ମିଳନ ପର୍ବ । କବିଙ୍କ ଭାଷାରେ –

''ସେ କମ୍ବୁକଟକ ରାଜା ସ୍ୱୟଂ ଜଗନ୍ନାଥ
ଚତୁବର୍ଣ୍ଣେ ଚଉବର୍ଗଦେବାକୁ ସମର୍ଥ ହେ ।''

ସଂପାଦକ, ସୁଲେଖା, ଚଟିଆପଡ଼ାଗଳି
ବିମାନବଡୁ ସାହି, ପୁରୀ – ୭୫୨୦୦୧

# ମହାପ୍ରଭୁଙ୍କ ସ୍ନାନଜ୍ୱର ଓ ଅଣସର

ଇଂ. ପ୍ରଶାନ୍ତ କୁମାର ଆଚାର୍ଯ୍ୟ

୨୦୧୫ ମସିହାର ନବକଳେବର ପରେ ଏବର୍ଷ ଚତୁର୍ଦ୍ଧାଙ୍କର ପଞ୍ଚମ ବର୍ଷ ସ୍ନାନଯାତ୍ରା । କାରଣ ୨୦୧୫ ମସିହାର ଘନଘଟାମୟ ନବକଳେବର ପରେ ଏ ଥରର ରଥ ଓ ସ୍ନାନଯାତ୍ରା ପଞ୍ଚମତମ । କେଉଁ ଅଜଣା କାଳରୁ ମହାପ୍ରଭୁଙ୍କ ଯାତ୍ରା ଓ ପର୍ବପର୍ବାଣି ପ୍ରତିପାଳିତ । ସେ ମଧ୍ୟରୁ ସ୍ୱତନ୍ତ୍ର ବିଶେଷତ୍ୱ ବହନ କରେ ଶ୍ରୀଗୁଣ୍ଡିଚା ଓ ସ୍ନାନଯାତ୍ରା । ଆମ ପୁରାଣମାନଙ୍କରେ ସ୍ନାନଯାତ୍ରାର ମାହାତ୍ମ୍ୟ ବହୁ ଭାବରେ ବର୍ଣ୍ଣିତ । କୁହାଯାଏ ଯେ ବାରମାସରେ ତେରଯାତ୍ରା । ତାହା ଠିକ୍, ମାତ୍ର ମହାପ୍ରଭୁଙ୍କ ଯାତ୍ରା ସଂଖ୍ୟା ଦ୍ୱାଦଶ । ତ୍ରୟୋଦଶ ଯାତ୍ରାଟି ହେଉଛି ଜଗନ୍ନାଥ ମନ୍ଦିରର ପ୍ରତିଷ୍ଠା ଦିବସ । ଏହାକୁ 'ନୀଳାଦ୍ରି ମହୋଦୟ' ଆଖ୍ୟା ଦିଆଯାଇଛି । ଉତ୍କଳୀୟ ସ୍ମୃତିକାରମାନେ ଶ୍ରୀଜଗନ୍ନାଥଙ୍କ ବିଭିନ୍ନ ଯାତ୍ରା ତଥା ଉତ୍ସବ ପାଳନ ଓ ଏହାର ଫଳପ୍ରାପ୍ତି ସମ୍ପର୍କରେ ବିସ୍ତୃତ ବର୍ଣ୍ଣନା କରିଛନ୍ତି । ସ୍ମୃତିକାର ଗଦାଧର ରାଜଗୁରୁ ସ୍ୱୀୟ 'କାଳସାର' ଗ୍ରନ୍ଥରେ ଦ୍ୱାଦଶ ଯାତ୍ରାର ନାମୋଲ୍ଲେଖ କରିଛନ୍ତି –

ମଞ୍ଚସ୍ନାନଂ ରଥବରଗତିଃ ଶାୟନଂ ଚାୟନେ ଦ୍ୱେ
ପାର୍ଶ୍ୱ ବୃତ୍ତିଂ ଶୟନ ପରିହୃତିଃ ପ୍ରାବୃତିଃ ପୁଷ୍ୟପୂଜା
ଦୋଳାକେଳି ଦମନକମହୋଦ୍ଧକ୍ଷୟ ପୁଣ୍ୟା ତୃତୀୟା
ଯାତ୍ରାଃ ସ୍କାନ୍ଦେ ହରିପ୍ରତିମୟୋ ଦ୍ୱାଦଶେତି ପ୍ରତୀତଃ।

ସ୍ନାନଯାତ୍ରା ଜ୍ୟେଷ୍ଠମାସ ଶୁକ୍ଳ ପୂର୍ଣ୍ଣିମା ଦିନ ପାଳନ ହୋଇଥାଏ । ସ୍ନାନପୂର୍ଣ୍ଣିମାର ଅନ୍ୟନାମ ଦେବସ୍ନାନ ପୂର୍ଣ୍ଣିମା । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ସ୍ନାନଯାତ୍ରା ନୀତି ମହିମାମଣ୍ଡିତ । ଏହି ସ୍ନାନଯାତ୍ରାରେ ଶତାଧିକ ସେବକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାନ୍ତି । କାରଣ ସ୍ନାନପୂର୍ଣ୍ଣିମା ପ୍ରତ୍ୟୁଷରୁ ରାତିରେ ବାହୁଡା ପହଣ୍ଡି ମଧ୍ୟରେ ମୋଟ ୨୧ ପ୍ରକାର ନୀତି ପାଳିତ ହୁଏ । ତେବେ ଏହି ସ୍ନାନପୂର୍ଣ୍ଣିମା ହେଉଛି ମହାପ୍ରଭୁଙ୍କ ଜନ୍ମଦିନ । ଏହି ଦିନଟିକୁ ଶ୍ରୀଜଗନ୍ନାଥଙ୍କ ଆବିର୍ଭାବ ଦିନ ଭାବେ ଗ୍ରହଣ କରି ଉତ୍ସବ ପାଳନ ହୋଇଥାଏ । କେବଳ ଶ୍ରୀଗୁଣ୍ଡିଚା ଓ ସ୍ନାନଯାତ୍ରାରେ ହିଁ ମହାପ୍ରଭୁ ରତ୍ନ ସିଂହାସନରୁ ବାହାରକୁ ବିଜେ କରନ୍ତି । 'ନୀଳାଦ୍ରି ମହୋଦୟ' ଗ୍ରନ୍ଥରେ ସ୍ନାନଯାତ୍ରା ସମ୍ପର୍କରେ କୁହାଯାଇଛି ଯେ ଏକଦା ଦାରୁବ୍ରହ୍ମରୂପୀ ଶ୍ରୀଜଗନ୍ନାଥ ବ୍ରହ୍ମାଙ୍କ ଅନୁରୋଧ ଶୁଣି ଟିକିଏ ହସିଦେଇ ଗମ୍ଭୀର ସ୍ୱରରେ କହିଥିଲେ– ଜ୍ୟେଷ୍ଠ ପୂର୍ଣ୍ଣିମାରେ ମୋର ଜନ୍ମଦିନ କରାଇବ । କଳ୍ପବଟ ନିକଟରେ କୂପ ନିର୍ମାଣ କରିବ । ସେହିଦିନ ଉକ୍ତ କୂପରେ ନାନା ତୀର୍ଥ ଆବିର୍ଭୂତ ହେବେ । ସେହି ଜଳରେ ମୋତେ ସ୍ନାନ କରାଇ ପନ୍ଦରଦିନ ପର୍ଯ୍ୟନ୍ତ ଗୋପନରେ ରଖିବ । ପନ୍ଦରଦିନ ପୂର୍ବରୁ ଯିଏ ମୋତେ ଦର୍ଶନ କରିବ ସିଏ ନର୍କଗାମୀ ହେବ (ନୀ.ମ.୬ଷ୍ଠ ଅଧ୍ୟାୟ) । ତେବେ ଏହି ସ୍ନାନବିଧି ସ୍ନାନମଣ୍ଡପରେ ସମାପନ ହୁଅନ୍ତେ ସତରେ ପ୍ରଭୁଙ୍କୁ ଜ୍ୱର ହୁଏ । ସେଥିପାଇଁ ଚଉଦଦିନ ପର୍ଯ୍ୟନ୍ତ ଅଣସର ଘରେ ରୁହନ୍ତି । ଅଣସରଘରେ ଚତୁର୍ଦ୍ଧା ବିଗ୍ରହଙ୍କ ସହିତ ମାଧବ ରହିଥାନ୍ତି । ସାଧାରଣ ଲୋକର ଦେହ ଖରାପ ହେଲେ ଯେପରି ଚିକିତ୍ସା କରାଯାଏ, ଠିକ୍ ସେହିପରି ପ୍ରଭୁଙ୍କର ମଧ୍ୟ ଉପଚାର କରାଯାଏ । ସାଧାରଣ ଲୋକ ଚିକିତ୍ସାଳୟରେ ରହିଲାପରି ମହାପ୍ରଭୁ ଅଣସରଘରେ





ରୁହନ୍ତି । ପାଟପିତାମ୍ବରୀ ବସ୍ତ୍ର ଓ ଅଳଙ୍କାର ତ୍ୟାଗ କରି ମହାପ୍ରଭୁ ଖଣ୍ଡେଧଳା ସୂତାବସ୍ତ୍ର ପରିଧାନ କରି ଅଣସରଘରେ ରହିଥାନ୍ତି । ଏ ସମୟରେ କୌଣସି କଠିନ ଖାଦ୍ୟ ଖାଆନ୍ତି ନାହିଁ । ଫଳମୂଳ ଖାଆନ୍ତି । ସର, କ୍ଷୀର, ଅଳେଇଚ ଓ କର୍ପୂର ପଡିଥିବା ପଣା କେବଳ ପିଅନ୍ତି । ମଧ୍ୟାହ୍ନ ଧୂପ ସରିବା ପରେ ଓ ସନ୍ଧ୍ୟାଧୂପ ସରିବା ପରେ ଅଣସର ଘର ଖୋଲାଯାଏ। ଦଇତାପତି ପରିବାର ସମସ୍ତେ ଗୋଷ୍ଠୀଗତ ଭାବେ ପ୍ରତ୍ୟହ ଖଣ୍ଡିଏ ବସ୍ତ୍ର ପରିଧାନ କରି ମହାପ୍ରଭୁଙ୍କ ସେବାରେ ନିୟୋଜିତ ହୁଅନ୍ତି ।

ଅତ୍ୟଧିକ ସ୍ନାନଯୋଗୁଁ ଜ୍ୱରରେ ପୀଡିତ ହୋଇ ଚତୁର୍ଦ୍ଧା ବିଗ୍ରହ ଅଣସରରେ ରହିବା ପରେ ସେଠାରେ ଚାଲେ ଗୁପ୍ତ ସେବା । ଭିତର ଅଣସର ପିଣ୍ଡିରେ ଚାଲିଥିବା ଏହି ଗୁପ୍ତଲୀଳାରେ କେତୋଟି ନିଷିଦ୍ଧ ନିୟମ ରହିଛି । ତାହା ହେଲା ଅଣସର ଗୃହକୁ ଦଇତା ଓ ପତି ମହାପାତ୍ର ସେବକଙ୍କ ବ୍ୟତୀତ ଅନ୍ୟ ସେବକ କେହି ଯାଇପାରିବେ ନାହିଁ । ଅଣସରଘରେ ରାଶିତେଲର ଦୀପ ବ୍ୟତୀତ ଅନ୍ୟ କୌଣସି ଆଲୋକ ବ୍ୟବହାର ହୋଇପାରିବ ନାହିଁ । ଅଣସର ପିଣ୍ଡିରେ ଖଳିଲାଗି ଏକାଦଶୀ ପର୍ଯ୍ୟନ୍ତ ସୁଗନ୍ଧିତ ଧଳାଫୁଲ ବ୍ୟତୀତ ଅନ୍ୟ କୌଣସି ଫୁଲ ପ୍ରବେଶ ନିଷିଦ୍ଧ । ଏ ସମୟରେ କୌଣସି ପ୍ରକାର ରନ୍ଧାଭୋଗ ଅର୍ପଣ କରାଯାଏ ନାହିଁ । ଅଣସରରେ କେବଳ ପଣା ଓ ଚକଟା ଭୋଗ ସମର୍ପଣ ହୋଇଥାଏ । ଏଥିସହିତ ଆମ୍ବ, ପଣସ, ସପୁରି ଆଦି କେତେକ ନିର୍ଦ୍ଦିଷ୍ଟ ଫଳ ଭୋଗ ହେବାର ବିଧି ରହିଛି । ଅଣସର ଘରକୁ ସେବା ପାଇଁ ପ୍ରବେଶ କରିଥିବା ସେବକ ଏକ ବସ୍ତ୍ର ପରିଧାନ କରି ଠାକୁରଙ୍କୁ ସମର୍ପିତ ହୋଇଥିବା ପ୍ରସାଦ ଗ୍ରହଣ କରିଥାନ୍ତି । ଏଥିପାଇଁ ଯେଉଁ ପତ୍ର ଓ ପାତ୍ର ବ୍ୟବହାର କରାଯାଏ, ତାହା ମଧ୍ୟ ଅଣସର ଘରୁ ବାହାରକୁ ଆସିନଥାଏ । ଅଣସର ଶେଷ ପର୍ଯ୍ୟନ୍ତ ସମସ୍ତ ଫୁଲ, ଫଳ, ଚୋପା ଓ ଖାଦ୍ୟ ସେବନରେ ବ୍ୟବହୃତ ହୋଇଥିବା ପତ୍ର ଇତ୍ୟାଦି ସେହି ଗୃହରେ ଗୋଟିଏ କୋଣରେ ରଖାଯାଇଥାଏ । ଏକାଦଶୀ ପର୍ଯ୍ୟନ୍ତ ଭୋଗ ସମର୍ପଣ ବେଳେ ଅଣସର ଘରେ କୌଣସି ପ୍ରକାର ଘଣ୍ଟା ଓ ଘଣ୍ଟି ବାଜେ ନାହିଁ । ଦଶମୀ ପର୍ଯ୍ୟନ୍ତ କୌଣସି ଶବ୍ଦ କିମ୍ବା ବଡ ପାଟିରେ କଥାବାର୍ତ୍ତା କରାଯିବ ନାହିଁ । ଏହି ସମୟରେ ଶ୍ରୀମନ୍ଦିର ଭିତରେ କୌଣସି ପ୍ରକାର ନିର୍ମାଣ କାର୍ଯ୍ୟ କରାଯାଏ ନାହିଁ କାରଣ ଏହାଦ୍ୱାରା ଶବ୍ଦ ହେବାର ସମ୍ଭାବନା ଥାଏ । ଆଜି କରୋନା ସାଧାରଣ ଜନତା ମଧ୍ୟ ଅଣସର ବ୍ରତ ଧାରଣ କରିଛନ୍ତି । କେବଳ ଓଡିଶାରେ କି ଭାରତରେ ନୁହେଁ । ସାରା ପୃଥିବୀରେ ଏହିଭଳି ଏକାନ୍ତ ଏମିତି ଅଣସର ବ୍ୟବସ୍ଥା ଚାଲିଛି ।

ଅଣସରରେ ମଧ ବନକଲାଗି ହୁଏ । ସାଧାରଣ ବନକଲାଗିଠାରୁ ଏହା ସ୍ୱତନ୍ତ୍ର ରୂପେ ହୋଇଥାଏ। ଏମିତିରେ ପ୍ରତ୍ୟେକ ଗୁରୁବାର ବନକଲାଗି ନୀତି ହେବାର ବିଧି ରହିଛି । ଦଇତା ଓ ପତି ମହାପାତ୍ରମାନେ ଏ ସେବା କରିଥାନ୍ତି । ଦଇତା ଓ ପତି ମହାପାତ୍ର ସେବା ଏକ ଗୋଷ୍ଠୀଗତ ସେବା । ଏମାନେ ଅଧର ପୋଛା ନୀତି, ବନକଲାଗି ଓ ଅଣସରରେ ଖଡି ପ୍ରସାଦ ଲାଗି ନୀତି ସମ୍ପାଦନ କରିଥାନ୍ତି । ଦେବସ୍ନାନ ପୂର୍ଣ୍ଣିମାଠାରୁ ରଥଯାତ୍ରା ପର୍ଯ୍ୟନ୍ତ ଦଇତା ଓ ପତି ମହାପାତ୍ର ସେବକ ହବିଷାନ୍ନରେ ରହି ସେବା ନିଯୁକ୍ତ ହୋଇଥାନ୍ତି । ବନରୁ ଯାତ ସାମଗ୍ରୀରେ ମହାପ୍ରଭୁଙ୍କ ଶ୍ରୀମୁଖ ଶୃଙ୍ଗାର ହେଉଥିବାରୁ ଏ ନୀତିର ନାମକରଣ ହୋଇଛି ବନକଲାଗି । ବନକଲାଗି ପାଇଁ କସ୍ତୁରୀ, କେଶର, ହରିତାଳ, ହେଙ୍ଗୁଳ, ଧଳାରଙ୍ଗ ଏବଂ ଶ୍ରୀଖଣ୍ଡ କଳା ଦରକାର ହୋଇଥାଏ । ଏହିସବୁ ପ୍ରାକୃତିକ ସାମ୍ରାଗୀକୁ ନେଇ ଦଇତା ଓ ପତି ମହାପାତ୍ର ମହାପ୍ରଭୁଙ୍କ ଶ୍ରୀମୁଖକୁ ଶୃଂଗାର କରିଥାନ୍ତି । ମାତ୍ର ଅଣସର ବନକଲାଗି ଟିକିଏ ନିଆରା । ଚତୁର୍ଦ୍ଦଶୀ ତିଥିରେ ଦଇତା ଓ ପତି ମହାପାତ୍ରମାନେ ଠାକୁରଙ୍କ ବନକଲାଗି କରାଇଥାନ୍ତି । ନିରାକାର ରୂପକୁ ପ୍ରଥମେ ରେଖା ଅଙ୍କନ କରି ଆକାର ରୂପ ଦେଇଥାନ୍ତି। ଏହାପରେ ବନକାଲାଗି ହୁଏ । ଶ୍ରୀଜଗନ୍ନାଥ ଓ ବଡଠାକୁରଙ୍କ ବନକଲାଗିରେ ଧଳା, କଳା ଏବଂ ନାଲିରଙ୍ଗ ବ୍ୟବହାର ହେଉଥିବାବେଳେ ଦେବୀ ଶୁଭଦ୍ରାଙ୍କ ବନକଲାଗିରେ ହଳଦିଆ, ଧଳା ଓ ନାଲି ରଙ୍ଗ ବ୍ୟବହାର ହୋଇଥାଏ । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ





ଶ୍ରୀଭୁଜରେ ଶଙ୍ଖ, ଚକ୍ର ଏବଂ ଶ୍ରୀବତ୍ସଚିହ୍ନ ଅଙ୍କା ଯାଇଥାଏ । ସେହିପରି ବଡଠାକୁରଙ୍କ ଶ୍ରୀଭୁଜରେ ହଳ, ମୂଷଳ ଏବଂ ମସ୍ତକରେ ସପ୍ତଫେଣୀ ସର୍ପ ଅଙ୍କା ଯାଇଥାଏ।

ମହାପ୍ରଭୁଙ୍କ ସ୍ନାନ ଦର୍ଶନ ଅଶେଷ କଲ୍ୟାଣକର । ଏ ସମ୍ପର୍କରେ ପୁରୁଷୋତ୍ତମ ମାହାତ୍ମ୍ୟରେ ବହୁକଥା ବର୍ଣ୍ଣିତ । ତନ୍ମଧ୍ୟରୁ ଚିରରୋଗାକ୍ରାନ୍ତର ଆରୋଗ୍ୟଲାଭ, ଅପୁତ୍ରିକର ପୁତ୍ରଲାଭ, କୁଷ୍ଠରୋଗ ବିନଷ୍ଟ ଇତ୍ୟାଦି ସ୍ନାନଦର୍ଶନ ଓ ସ୍ନାନଜଳ ସ୍ପର୍ଶରେ ସମ୍ଭବ ହୋଇଥାଏ । ଏ ସମ୍ପର୍କରେ ଜୈମନୀ ଅନେକ କଥା ଋଷି ଓ ବ୍ରାହ୍ମଣମାନଙ୍କୁ କହିଛନ୍ତି । ଏପରିକି ତାଙ୍କ ମତରେ ମହାପ୍ରଭୁଙ୍କ ସ୍ନାନଜଳ କେବଳ ପ୍ରଭାବଶାଳୀ ନୁହେଁ ଅପରନ୍ତୁ ଗଂଗାଜଳଠାରୁ ପବିତ୍ରତମ ଅଟେ । ତ୍ରିବାର ସତ୍ୟ କରି ଜୈମନୀ କୁହନ୍ତି–

ସତ୍ୟଂ ସତ୍ୟଂ ପୁନଃ ସତ୍ୟଂ ବ୍ରବୀମି ଦ୍ୱିଜ ପୁଙ୍ଗ ବାଃ<br>
ସର୍ବ ସନ୍ତାପଶମନମଶେଷ ମଳନାଶନମ୍ ॥<br>
ସ୍ୱପନଂ ଶ୍ରୀ ପତେର୍ଜ୍ୟୈ ଷ୍ଠ୍ୟାଂ ଯଦି ଭକ୍ତ୍ୟା ବିଲୋକିତଂ<br>
ପ୍ରାୟଶ୍ଚିତ ନିମିତାନି ଯାନି ପାପାନି ସନ୍ତି ବୈ ॥

ଅର୍ଥାତ୍ ଜୈଷ୍ଠ ପୂର୍ଣ୍ଣିମାରେ ଭକ୍ତିଭାବ ନେଇ ଯଦି ଭଗବାନ ଶ୍ରୀପତିଙ୍କର ସ୍ନାନଯାତ୍ରା ଅବଲୋକ କରାଯାଏ ତେବେ ସକଳ ସନ୍ତାପ ଓ ଅଶେଷପାପ ପ୍ରଶମିତ ହୋଇଥାଏ । ହେ ଦ୍ୱିଜଶ୍ରେଷ୍ଠଗଣ ! ମୁଁ ଏହା ତ୍ରିବାର ସତ୍ୟ କରି କହୁଅଛି । ବିଶେଷତଃ ପ୍ରାୟଶ୍ଚିତ ଯୋଗ୍ୟ ଯେତେକିଛି ପାପ ଥିବ ଶ୍ରୀହରିଙ୍କ ସ୍ନାନୋତ୍ସବ ଦର୍ଶନରେ ସେ ସମସ୍ତ କ୍ଷୟପ୍ରାପ୍ତ ହୋଇଥାଏ । ଏଣୁ ଜ୍ୟେଷ୍ଠ ପୂର୍ଣ୍ଣିମାର ଏହି ସ୍ନାନ ଦର୍ଶନ ଅପେକ୍ଷା ଅଧିକ ମୋକ୍ଷପ୍ରଦ ଶ୍ରେଷ୍ଠକର୍ମ ଅନ୍ୟ କିଛି ନାହିଁ । ତାଙ୍କୁ ତେଣୁ ଦେବତାମାନେ ମଧ୍ୟ ସ୍ତୁତି କରିଥାନ୍ତି ।

ବର୍ତ୍ତମାନ କରୋନା ମହାମାରୀ ଆତଙ୍କ ସକାଶେ ସାମାଜିକ ଦୂରତା ବଜାୟ ରଖିବା ଜରୁରୀ ହୋଇପଡିଥିବା ବେଳେ ସ୍ନାନ ଯାତ୍ରା ଓ ଶ୍ରୀଗୁଣ୍ଡିଚା ପାଳନରେ ଦୁଇଟିଯାକ ଗୋଷ୍ଠୀଗତ ସେବା ହୋଇଥିବାରୁ ସାମୂହିକ ସହଯୋଗ ଅପରିହାର୍ଯ୍ୟ । ସଂପ୍ରତି ଓଡିଶାରେ ଆକ୍ରାନ୍ତଙ୍କ ସଂଖ୍ୟା ବଢି ଚାଲିଥିବା ବେଳେ ଲକ୍ଷାଧିକ ଶ୍ରଦ୍ଧାଳୁ ରୁଣ୍ଡ ହେବାର ସମ୍ଭାବନା ଅଧିକ । ଏ ସମୟରେ ବିଧିରକ୍ଷା କରାଯିବ ଅବା ସ୍ନାନ ଓ ରଥଯାତ୍ରା ଯଥାବିଧି ପାଳନ କରାଯିବ ତାହାହିଁ ମହାଚିନ୍ତାର ବିଷୟ ହୋଇପଡିଛି । ତାଙ୍କ ରହସ୍ୟମୟ ଲୀଳାର ଅର୍ଥ କେବଳ ତାଙ୍କୁ ହିଁ ଜଣା । କରୋନାର ଭୟାବହତା ସୃଷ୍ଟି କରି ତା ଭିତରେ ଅମ୍ଫାନ ଭଳି ବାତ୍ୟା ଭରିଦେଇ ସେଇ ଅବସ୍ଥାରେ ସ୍ନାନ ଓ ରଥଯାତ୍ରା କରାଇବା କେବଳ ତାଙ୍କ ପକ୍ଷରେ ସମ୍ଭବ । ଯେଣୁ କରୋନା ତାଙ୍କ ସୃଷ୍ଟି, ଅମ୍ଫାନ ବି ତାଙ୍କରି ଓ ସ୍ନାନ, ରଥଯାତ୍ରା ମଧ ତାଙ୍କରି ସୃଷ୍ଟି । ଏଣୁ ସିଏ ହିଁ କରିବେ ଓ କରାଇବେ । ଏଥିପାଇଁ ଚିନ୍ତା କରି ଲାଭ ନାହିଁ ।

ମହାସଚିବ, ପୀଠ ପରିଷଦ<br>
ଗୋବର୍ଦ୍ଧନ ମଠ, ପୁରୀ







# ଆରାଧୟ ଜଗନ୍ନାଥ

**ଡକ୍ଟର ରଜତ କୁମାର କର**

ପ୍ରଭୁ ଶ୍ରୀରାମ ଓ ପରମ ପୁରୁଷ ପ୍ରଭୁ ଶ୍ରୀକୃଷ୍ଣ ଯେତେବେଳେ ସଂସାରଠାରୁ ବିଦାୟ ନେଇ ସ୍ୱଧାମକୁ ଯିବା ପାଇଁ ବସିଲେ, ସେତେବେଳେ ଅନୁଗତମାନେ ପ୍ରଶ୍ନ କରିଛନ୍ତି– ପ୍ରଭୁ ଆପଣଙ୍କରନୁପସ୍ଥିତିରେ କାହାକୁ ଧରି ରହିବୁ ? ଶ୍ରୀକୃଷ୍ଣ କହିଥିଲେ ବୋଲି ଜନଶ୍ରୁତି ଅଛି ଯେ, ମୋ ଯିବା ପରେ ଦ୍ୱାରକାଧୀଶଙ୍କ ମୂର୍ତ୍ତି ମଧ୍ୟରେ ମୋତେ ପାଇବ ।

ବାଲ୍ମୀକି ରାମାୟଣ ଉତ୍ତର ଖଣ୍ଡରେ ଏଭଳି ପରିସ୍ଥିତିରେ କର୍ତ୍ତବ୍ୟ ସମ୍ବନ୍ଧରେ ବିଭୀଷଣଙ୍କୁ ଶ୍ରୀରାମ କହୁଛନ୍ତି – 'ଆରାଧୟ ଜଗନ୍ନାଥ ଇକ୍ଷ୍ୱାକୁ କୁଳ ଦୈବତଂ', ଅର୍ଥାତ୍ ଆମ ଇକ୍ଷ୍ୱାକୁ କୁଳର ଇଷ୍ଟଦେବତା ଶ୍ରୀଜଗନ୍ନାଥଙ୍କୁ ଆରାଧନା କର ।

ବାଲ୍ମୀକି ରାମାୟଣ ଉତ୍ତରଖଣ୍ଡର ଏହି ଉକ୍ତି ଉଦ୍ଧାର କରି କେତେକ ଗବେଷକ କହନ୍ତି – ଏଥିରେ ପୁରୀର ବର୍ତ୍ତମାନ ଶ୍ରୀବିଗ୍ରହ ଶ୍ରୀଜଗନ୍ନାଥଙ୍କ ଆରାଧନା କରିବା ପାଇଁ ଶ୍ରୀରାମ ନିର୍ଦ୍ଦେଶ ଦେଇଛନ୍ତି ।

ଇକ୍ଷ୍ୱାକୁ ବଂଶୀୟ ରାଜା ବା ପରବର୍ତ୍ତୀ କାଳରେ ରଘୁବଂଶ ବୋଲାଉଥିବା ରାଜବଂଶର ଇଷ୍ଟଦେବତା ଥିଲେ ଅନନ୍ତ ଶୟନ ବିଷ୍ଣୁ ମୂର୍ତ୍ତି । ମୂଳ ବାଲ୍ମୀକି ରାମାୟଣରେ ପ୍ରଭୁ ଶ୍ରୀରାମଙ୍କ ଦୈନିକ ପୂଜା ପାଉଥିବା ବିଗ୍ରହକୁ ଗୀତାପ୍ରେସ୍‌ର ସଂସ୍କରଣରେ ଟୀକା କରି ଲେଖାଯାଇଛି– ''ଏ ପ୍ରଭୁ ହେଉଛନ୍ତି ପଦ୍ମନାଭ ବା ଅନନ୍ତ ଶୟନ ମୂର୍ତ୍ତି ।'' ମୋର ପିତାମାତାଙ୍କ ଶୁଦ୍ଧିକ୍ରିୟା ପରେ ଚାରିଧାମ ଯାତ୍ରା ଅବକାଶରେ ରାମେଶ୍ୱର ନିକଟସ୍ଥ ''ମୂଳ ଜଗନ୍ନାଥ'' ମନ୍ଦିରକୁ ଦେଖାଇବା ପାଇଁ ନେଇଥିଲେ ପତ୍ନୀ ଶାନ୍ତିଲତାଙ୍କ ଭାଇ ଡାକ୍ତର କବି ପ୍ରସାଦ ମିଶ୍ରଙ୍କ ଜଣେ ଅନୁଗତ ବନ୍ଧୁ । ତାଙ୍କଠାରୁ ମୁଁ ଓ ପତ୍ନୀ ଜାଣିଲୁ ଯେ, ଜଗନ୍ନାଥ ରୂପରେ ଏଠାରେ ପୂଜିତ ହୁଅନ୍ତି ଅନନ୍ତ ଶୟନ ମୂର୍ତ୍ତି । ତାଙ୍କର କହିବା ଅନୁସାରେ ପୁରୀରୁ ଆସୁଥିବା ଦର୍ଶନାର୍ଥୀମାନଙ୍କୁ ସେମାନେ କହନ୍ତି– ''ଏ ଦେବତା ହେଲେ ମୂଳ ଜଗନ୍ନାଥ, ତୁମ ଜଗନ୍ନାଥ ଏହାଙ୍କ ପରେ ପ୍ରତିଷ୍ଠା ପାଇଛନ୍ତି ।'' ଏହି ମୂଳ ଜଗନ୍ନାଥ ହେଉଛନ୍ତି ରଘୁବଂଶର ଇଷ୍ଟଦେବତା । ଏହାଙ୍କୁ ପୂଜା କରି ଦଶରଥ ମହାରାଜା ପ୍ରଭୁ ଶ୍ରୀରାମଙ୍କୁ ପୁତ୍ର ରୂପେ ପାଇଛନ୍ତି । ଏହିଭଳି ବିଗ୍ରହ ଅଯୋଧ୍ୟାଠାରେ ପ୍ରତିଦିନ ଦଶରଥ ଓ ଶ୍ରୀରାମ ପୂଜା କରୁଥିଲେ । ଏହା ସେଦିନ କହିଥିଲେ ତାମିଲନାଡୁର ବନ୍ଧୁ । ମନରେ ସ୍ୱଭାବତଃ ପ୍ରଶ୍ନ ଉଠିଲା, ବିଷ୍ଣୁଙ୍କ ଅନନ୍ତ ଶୟନ ମୂର୍ତ୍ତି ଜଗନ୍ନାଥ ନାମରେ ବିଶେଷ ଭାବେ ନାମିତ ହେବ କାହିଁକି ? ମନେ ପଡିଲା, ଦୁର୍ଗାପୂଜା ବେଳେ ମାର୍କଣ୍ଡେୟ ପୁରାଣ ଅନ୍ତର୍ଗତ ଚଣ୍ଡୀର ପ୍ରଥମ ଉପାଖ୍ୟାନ କଥା ।

ଶ୍ରୀଚଣ୍ଡୀର ବର୍ଣ୍ଣନାନୁଯାୟୀ କ୍ଷୀର ସାଗରରେ ଅନନ୍ତ ସର୍ପଙ୍କୁ ଶଯ୍ୟା କରି ଗଭୀର ନିଦ୍ରାରେ ଶୟନ କରିଛନ୍ତି ମହାପ୍ରଭୁ ବିଷ୍ଣୁ । ତାଙ୍କ ଦୁଇ କର୍ଣ୍ଣର ମଳରୁ ମଧୁ ଓ କୈଟଭ ନାମରେ ଦୁଇ ଅସୁର ବିଷ୍ଣୁଙ୍କ ନାଭି କମଳରୁ ଜାତ ହୋଇ ସ୍ତୁତି କରୁଥିବା ବ୍ରହ୍ମାଙ୍କୁ ଭକ୍ଷଣ କରିବାକୁ ଉଦ୍ୟତ ହେଲେ ।

ରକ୍ଷାକର୍ତ୍ତା କାହାନ୍ତି ? ଭୟଭୀତ ସୃଷ୍ଟିକର୍ତ୍ତା ବ୍ରହ୍ମା ଦେଖିଲେ ଯୋଗମାୟା କର୍ତ୍ତୃକ ମାୟାରେ ଗଭୀର ନିଦ୍ରାରେ





ନିମଗ୍ନ ହୋଇଛନ୍ତି । ବ୍ରହ୍ମା ବିକଳରେ ଭଗବତୀ ଯୋଗମାୟାଙ୍କୁ ପ୍ରାର୍ଥନା କଲେ– ''ତ୍ୱଂ ସ୍ୱାହା ତ୍ୱଂ ସ୍ୱାଧା ତ୍ୱଂ ବଷଟ୍‌କାରାତ୍ମିକା'' ବ୍ରହ୍ମାଙ୍କ ପ୍ରାର୍ଥନାରେ ପ୍ରୀତା ହୋଇ ଭଗବତୀ ଯୋଗମାୟା ନିଦ୍ରା ସ୍ୱରୂପିଣୀ ନିଜ ପ୍ରଭାବରୁ ପ୍ରଭୁଙ୍କୁ ମୁକ୍ତ କରିଦେଲେ । ପ୍ରଭୁଙ୍କ ନିଦ୍ରା ଭଗ୍ନ ହେବା ପରେ ସେ ମଧୁ ଓ କୈଟଭଙ୍କୁ ବଧ କଲେ । ଏହି ଅବସ୍ଥାରେ ଚଣ୍ଡୀରେ ଶ୍ରୀ ବିଷ୍ଣୁଙ୍କ ବର୍ଣ୍ଣନା ହେଲା– ''ଉତ୍ତସ୍ଥୌ ଜଗନ୍ନାଥ ତୟା ମୁକ୍ତୋ ଜନାର୍ଦ୍ଦନ ।'' ଚଣ୍ଡୀ ପାଠ ବେଳେ ମନରେ ଆସେ ପ୍ରଭୁଙ୍କ ପାଇଁ ଏହି ଦୁଇଟି ନାମ ପ୍ରୟୋଗର ତାତ୍ପର୍ଯ୍ୟ କ'ଣ ? ପ୍ରଭୁ ବିଷ୍ଣୁ ନିଦ୍ରାମୁକ୍ତ ହେଲେ ବୋଲି ନକହି ଦୁଇଟି ନାମରେ ବିଷ୍ଣୁଙ୍କୁ ପରିଚିତ କରାଗଲା କି ଉଦ୍ଦେଶ୍ୟରେ ?

ବର୍ତ୍ତମାନ ମନକୁ ଆସୁଛି ଯେ, ଅନନ୍ତ ଶଯ୍ୟାରେ ପ୍ରଭୁ ଯେତେବେଳେ ଶୟନ କରନ୍ତି, ସେତେବେଳେ ସାରା ସୃଷ୍ଟିରେ ପ୍ରଳୟ ହୁଏ । ଜୀବଜନ୍ତୁ, ଉଦ୍ଭିଦ, ପକ୍ଷୀ, ପତଙ୍ଗ ସମସ୍ତେ ବିନାଶପ୍ରାପ୍ତ ହୁଅନ୍ତି । ବିନାଶ ବେଳେ ପ୍ରାଣ ଥିବା ସୃଷ୍ଟିର ଜୀବଜଗତ ଉତ୍ପୀଡିତ ହୁଅନ୍ତି । ଜୀବଜଗତକୁ ପୀଡା ଦେଉଥିବାରୁ ପ୍ରଭୁଙ୍କ ନାମ ଜନାର୍ଦ୍ଦନ । ଜନାନାଂ ଅର୍ଦ୍ଦୟନ୍ତି ଅର୍ଥାତ୍ ଜନମାନଙ୍କୁ ପୀଡା ପ୍ରଦାନ କରନ୍ତି ପ୍ରଭୁ, ତେଣୁ ସେ ଜନାର୍ଦ୍ଦନ । ପ୍ରଳୟ କାଳରେ ଯେ ଥିଲେ ବିନାଶକାରୀ ଓ ଧ୍ୱଂସର ଆବାହକ ଜନାର୍ଦ୍ଦନ, ବର୍ତ୍ତମାନ ସେ ନିଦ୍ରାରୁ ଉତ୍‌ଥିତ ହେଲେ । ଏହି ଉତ୍ଥାନ ସହିତ ହେବ ଜୀବଜଗତର ସୃଜନ ଓ ପାଳନ । ଏହି ସୃଜନ ଓ ପାଳନର କର୍ତ୍ତା ଅର୍ଥରେ ଜଗନ୍ନାଥ ନାମରେ ପରିଚିତ ହୋଇଛନ୍ତି ବିଷ୍ଣୁ ।

କିନ୍ତୁ ସବୁବେଳେ ଏହି ଅର୍ଥରେ ଜଗନ୍ନାଥ ଶବ୍ଦ ବ୍ୟବହାର ହୋଇନାହିଁ । ପୁରାଣ ଓ କାବ୍ୟମାନଙ୍କରେ ବିଷ୍ଣୁ ଅର୍ଥରେ ଜଗନ୍ନାଥ ଶବ୍ଦ ବ୍ୟବହୃତ ହୋଇଅଛି । କୌଣସି ମନ୍ଦିରର ବିଗ୍ରହଙ୍କୁ ଜଗନ୍ନାଥ ନାମରେ ନାମିତ କରିବାର କୌଣସି ପ୍ରମାଣ ନାହିଁ ।

ନବମ ଓ ଦଶମ ଶତାବ୍ଦୀ ବେଳକୁ ପୁରୀଠାରେ ଥିବା ଶ୍ରୀମନ୍ଦିର ପୁରୁଷୋତ୍ତମ ପ୍ରାସାଦ ଭାବେ ପରିଚିତ ହୋଇଛି । ଦକ୍ଷିଣ ସମୁଦ୍ର ତୀରରେ ଥିବା ଏହି ମନ୍ଦିରର ଦେବତା ପ୍ରଥମେ ମାଧବ ଓ ପରେ ଶ୍ରୀପୁରୁଷୋତ୍ତମ ଭାବେ ଭାରତବର୍ଷରେ ସୁପରିଚିତ ହୋଇଛନ୍ତି ।

ଶଙ୍କରାଚାର୍ଯ୍ୟଙ୍କ ନାମରେ ପରିଚିତ ହେଉଥିବା ଜଗନ୍ନାଥ ସ୍ୱାମୀ ସ୍ତୋତ୍ରରେ ଜଗନ୍ନାଥଙ୍କୁ ପ୍ରଧାନ ଦେବତା ଭାବେ ପରିଚିତ କରିବାକୁ ପ୍ରୟାସ ହୋଇଥିଲେ ବି ଶଙ୍କରାଚାର୍ଯ୍ୟ ପୁରୀ ଆସିବା ସମୟ ଅଷ୍ଟମ ଶତାବ୍ଦୀରେ ଶ୍ରୀମନ୍ଦିର ଦେବତା ଜଗନ୍ନାଥ ନାମରେ ପରିଚିତ ହେବାର ଶାସ୍ତ୍ରୀୟ ଓ କାବ୍ୟିକ ପ୍ରମାଣ ନାହିଁ । ଜଗନ୍ନାଥ ସ୍ୱାମୀ ସ୍ତୋତ୍ରର ରଚୟିତା ଚୈତନ୍ୟ ମହାପ୍ରଭୁ ବୋଲି ମଧ୍ୟ କୁହାଯାଉଛି ।

ଶ୍ରୀଚୈତନ୍ୟ ମହାପ୍ରଭୁ ପୁରୀରେ ରହୁଥିବା ସମୟରୁ ଶ୍ରୀମନ୍ଦିରରେ ପୂଜିତ ଦେବତା ଜଗନ୍ନାଥ ବୋଲି ବିଶେଷ ଭାବେ ପରିଚିତ ହେଲେ । ଏହା ଷୋଡଶ ଶତାବ୍ଦୀର କଥା । ଶଙ୍କରାଚାର୍ଯ୍ୟ ଆସିବା ପରେ ପୁରୀଠାରେ ବୌଦ୍ଧ ପଣ୍ଡିତମାନଙ୍କୁ ସେ ଯୁକ୍ତିରେ ପରାସ୍ତ କରିଦେବାରୁ ଭାରତର ଏକ ପ୍ରସିଦ୍ଧ ଜ୍ଞାନକେନ୍ଦ୍ର ପୁରୀରୁ ବୌଦ୍ଧମାନଙ୍କ ପ୍ରଭାବ କମିଗଲା ।

ଏହି ବୌଦ୍ଧମାନେ ଥିଲେ ମହାଯାନ ସମ୍ପ୍ରଦାୟର । ଏହି ଚିନ୍ତାରେ ବୁଦ୍ଧଙ୍କ ମୂଳ ଭାବନାରେ ବିପୁଳ ପରିବର୍ତ୍ତନ ଅଣାଯାଇ ତନ୍ତ୍ର, ମନ୍ତ୍ର ଓ ଇନ୍ଦ୍ରଜାଲ ସବୁ ପ୍ରବର୍ତ୍ତନ କରାଯାଇ ଭକ୍ତମାନଙ୍କୁ ପ୍ରଭାବିତ କରିବା ପାଇଁ ବ୍ୟବସ୍ଥା ରହିଲା । ବୁଦ୍ଧ ଈଶ୍ୱର ପୂଜା ପାଇଁ କହିନଥିଲେ । ଉନ୍ନତ ତଥା ନିରାଡମ୍ବର ଜୀବନଯାପନ କରି କାମନାର ବିନାଶ କରିବା ଥିଲା ବୁଦ୍ଧଦେବଙ୍କ ମୂଳ ଭାବନାର ଲକ୍ଷ୍ୟ । କାମନାର ସମ୍ପୂର୍ଣ୍ଣ ବିଲୟ ହୋଇ ନିର୍ବାଣ ପ୍ରାପ୍ତି ପାଇଁ ବୌଦ୍ଧମାନେ ସାଧନାରତ ହେଲେ ଆଉ ଈଶ୍ୱର ପୂଜାର ଆବଶ୍ୟକତା ନାହିଁ ବୋଲି ବୁଦ୍ଧଦେବ ପ୍ରଚାର କରିଥିଲେ ।

ପରବର୍ତ୍ତୀ କାଳରେ ଏହି ଚିନ୍ତାରେ ବିଶ୍ୱାସୀ ଭକ୍ତମାନଙ୍କୁ ହୀନଯାନପନ୍ଥୀ ବୋଲି କହି ଅନ୍ୟ ଭକ୍ତମାନେ ନିଜକୁ ମହାଯାନପନ୍ଥୀ ବୋଲାଇଲେ । ଏଥିରେ ମହାଶୂନ୍ୟର ଉପାସନା ହେଲା । ଏହି ମହାଶୂନ୍ୟ ହେଲେ ସର୍ବୋତ୍ତମ





ସତ୍ତା । ଏହି ସର୍ବୋତ୍ତମ ତଥା ସର୍ବୋଚ୍ଚ ସତ୍ତାକୁ ମହାଯାନପନ୍ଥୀମାନେ ନାମ ଦେଲେ ଆଦିବୁଦ୍ଧ । ଏହି ଆଦିବୁଦ୍ଧଙ୍କୁ ସେମାନେ ଜଗନ୍ନାଥ ନାମରେ ମଧ୍ୟ ନାମିତ କରିଥିଲେ । ଓଡ଼ିଶାର ପଶ୍ଚିମାଞ୍ଚଳର ଲଙ୍କା ବା ବଲାଙ୍ଗୀର, ସୋନପୁର ମଣ୍ଡଳର ରାଜା ଇନ୍ଦ୍ରଭୂତି ଏହାଙ୍କ ଉଦ୍ଦେଶ୍ୟରେ ଲେଖିଥିଲେ– ''ପ୍ରଣିପତ୍ୟ ଜଗନ୍ନାଥ ସର୍ବଜୀନ ବରାର୍ଚ୍ଚିତଂ ।'' ଏ ଜଗନ୍ନାଥ ଆମ ଶ୍ରୀମନ୍ଦିର ଜଗନ୍ନାଥ ନୁହଁନ୍ତି ।

ସେ ହେଉଛନ୍ତି ଆଦିବୁଦ୍ଧ, ସେ ମହାଶୂନ୍ୟ ସ୍ୱରୂପ, ନାମ ତାଙ୍କର ଜଗନ୍ନାଥ । ମହାଯାନ ବୌଦ୍ଧ ଚିନ୍ତାରେ ତାଙ୍କଠାରୁ ଉଦ୍ଭବ ହୋଇଛନ୍ତି ପାଞ୍ଚଜଣ ଧ୍ୟାନୀ ବୁଦ୍ଧ ।

ସେହି ମହାଶୂନ୍ୟ ସ୍ୱରୂପ ଆଦିବୁଦ୍ଧ ଅବ୍ୟକ୍ତ, ସେ ନିରାକାର । ତାଙ୍କର ବ୍ୟକ୍ତ ରୂପ ବା ଦୃଶ୍ୟ ହେଉଥିବା ସତ୍ତା ହେଲେ ଅମିତାଭ ବା ଅମିତାୟୁ । ସେ ଅଦୃଶ୍ୟ ଆଦିବୁଦ୍ଧଙ୍କର ଦୃଶ୍ୟମାନ ରୂପ । ମହାଯାନପନ୍ଥୀ ବୌଦ୍ଧମାନେ ଦୁଇଟି ଗୋଲ ପଥରକୁ ତଳ ଉପର ଭାବେ ରଖି ଆଦିବୁଦ୍ଧ ଭାବେ ପ୍ରଦର୍ଶନ କରିଛନ୍ତି । ବୁଦ୍ଧ ନିର୍ମାଣ ପ୍ରାପ୍ତି ପରେ ଜୀବିତ ଥାଇ ମଧ୍ୟ ନିରାକାର ସ୍ୱରୂପ ଓ ଶୂନ୍ୟଦେହୀ ଭାବେ କଳ୍ପିତ ହେଲେ । ମାଡ୍ରାସ୍ ବା ତାମିଲନାଡୁ ମ୍ୟୁଜିୟମ୍‌ରେ ସୁରକ୍ଷିତ ସାରନାଥ ବୁଦ୍ଧ ମନ୍ଦିର ବା ସ୍ତୁପରେ ପ୍ରଦର୍ଶିତ ହୋଇଛି ବୁଦ୍ଧଦେବଙ୍କ ନିଜ ରାଜ୍ୟ ଓ ପରିବାର ନିକଟକୁ ପ୍ରତ୍ୟାବର୍ତ୍ତନର ଦୃଶ୍ୟ । ସେଠାରେ ରାଜ୍ୟବାସୀଙ୍କ ଗହଣରେ ଅଛନ୍ତି ପୁତ୍ର ରାହୁଳ । ସେ ସ୍ୱାଗତ କରୁଛନ୍ତି ସର୍ବତ୍ୟାଗୀ ତଥା ସର୍ବୋତ୍ତମ ଜ୍ଞାନ ବା ବୁଦ୍ଧତ୍ୱପ୍ରାପ୍ତ ଗୌତମଙ୍କୁ । ସେଠାରେ ଗୌତମଙ୍କ ସ୍ଥାନରେ ମନୁଷ୍ୟ କେହି ନାହାନ୍ତି । ଅଛନ୍ତି ପ୍ରତୀକରୂପୀ ଆଦିବୁଦ୍ଧ । ଦୁଇଟି ଗୋଲାକାର ଉପର ତଳ ପ୍ରସ୍ତର ଦୁଇ ତାଙ୍କ ପ୍ରତିନିଧିତ୍ୱ କରିଛନ୍ତି । ସେହି ତଳ ଉପର ଦୁଇ ଗୋଲାକାର ପ୍ରସ୍ତର ଶୂନ୍ୟସ୍ୱରୂପୀ ଆଦିବୁଦ୍ଧଙ୍କ ପ୍ରତୀକ । ତାଙ୍କ ନାମ ଜଗନ୍ନାଥ । ମହାଯାନୀ ବୁଦ୍ଧମାନେ ଓଡ଼ିଶାରେ ବହୁ ସଂଖ୍ୟାରେ ରହିଥିଲେ ଓ ଧର୍ମ ଜଗତରେ ବିପୁଳ ଭାବରେ ପ୍ରଭାବ ବିସ୍ତାର କରିଥିଲେ । ଅଷ୍ଟମ ଶତାବ୍ଦୀରେ ଉତ୍କଳରେ ପ୍ରବେଶ କରି ଶଙ୍କରାଚାର୍ଯ୍ୟ ସେହି ମହାଯାନୀ ବୁଦ୍ଧମାନଙ୍କୁ ଯୁକ୍ତିରେ ପରାସ୍ତ କଲେ । ଗଭୀର ଭାବରେ ପ୍ରଭାବିତ ହୋଇ ସେହି ବୌଦ୍ଧ ଗୁରୁମାନେ ଶିଷ୍ୟମାନଙ୍କ ସହିତ ସନାତନ ଧର୍ମ ବା ହିନ୍ଦୁଧର୍ମକୁ ଗ୍ରହଣ କଲେ । ଏହି ସମୟ ହେଲା ଏହା ଏକ ମହାମିଳନ ବା ଖାଣ୍ଟି ଭାଷାରେ ଗୋଟିଏ ଫେଣ୍ଟାଫେଣ୍ଟିର ବେଳ । ହିନ୍ଦୁଦେବଦେବୀ, ତନ୍ତ୍ର, ପୂଜାବିଧି ଧୀରେ ଧୀରେ ବୌଦ୍ଧମାନେ ଗ୍ରହଣ କରିଗଲେ । ସମୟକ୍ରମେ ଏହି ମହାଯାନ ବୌଦ୍ଧଧର୍ମ ହିନ୍ଦୁଧର୍ମରେ ବିଲୟ ଲାଭ କଲା । ହିନ୍ଦୁମାନେ ମଧ୍ୟ ମହାଯାନୀ ଦେବଦେବୀମାନଙ୍କୁ ଗ୍ରହଣ କରି ତାଙ୍କ ଧର୍ମରେ ଅନ୍ତର୍ଭୁକ୍ତ କଲେ । ବୌଦ୍ଧମାନଙ୍କର କୁରୁକୁଲ୍ଲା ହିନ୍ଦୁମାନଙ୍କର କାଳୀ ଭାବେ ପୂଜିତା ହେଲେ । ବୌଦ୍ଧମାନଙ୍କର ମହାକାଳ ହିନ୍ଦୁମାନଙ୍କର ଶିବ ଭୈରବ ହୋଇଗଲେ । ବୌଦ୍ଧତନ୍ତ୍ର ଓ ହିନ୍ଦୁତନ୍ତ୍ରର ସମନ୍ୱୟ ଘଟି ଶ୍ରୀମନ୍ଦିରରେ ଥିବା ପୂଜିତ ଦେବତା ପୁରୁଷୋତ୍ତମ ଓ ପରବର୍ତ୍ତୀ କାଳରେ ଜଗନ୍ନାଥ ବୋଲାଉଥିବା ଦେବତାଙ୍କ ଉପାସନା ଓ ପୂଜା ବିଧିରେ ହିନ୍ଦୁ ଓ ବୌଦ୍ଧ ତନ୍ତ୍ରର ପ୍ରାଧାନ୍ୟ ରହିଲା ।

ପୁରୁଷୋତ୍ତମ ବା ଶ୍ରୀଜଗନ୍ନାଥ ପ୍ରଥମରୁ ଥିଲେ ବୈଷ୍ଣବ ଦେବତା । ପରେ ବିଭିନ୍ନ କାଳରେ ଧୀରେ ଧୀରେ ଶ୍ରୀଜଗନ୍ନାଥ ଚିନ୍ତନ ଓ ଉପାସନା ତନ୍ତ୍ର ଦ୍ୱାରା ଗଭୀର ଭାବରେ ପ୍ରଭାବିତ ହେଲା ।

ଯେଉଁ ଜଗନ୍ନାଥଙ୍କୁ ଶୂନ୍ୟ ପୁରୁଷ ବା ମହାଶୂନ୍ୟ ବୋଲି ଦର୍ଶାଇଥିଲେ ବୌଦ୍ଧମାନେ, ଶ୍ରୀଶଙ୍କରାଚାର୍ଯ୍ୟ ସେମାନଙ୍କୁ ଦର୍ଶାଇଲେ ଯେ ସେ ହେଉଛନ୍ତି ବେଦାନ୍ତ ବର୍ଣ୍ଣିତ ନିରାକାର ବ୍ରହ୍ମ । ସେ ସର୍ବବ୍ୟାପି, ସେ ମହାଶୂନ୍ୟ ସ୍ୱରୂପ । ଏହି ଚିନ୍ତାର ସୂତ୍ରରେ ବହୁ ପରବର୍ତ୍ତୀ କାଳରେ ପ୍ରଥମେ ଶାରଳା ଦାସ ଓ ପରେ ପଞ୍ଚସଖା ଶ୍ରୀଜଗନ୍ନାଥଙ୍କର ବର୍ତ୍ତମାନର ରୂପକୁ ବୌଦ୍ଧାବତାର ବୋଲି କହିଛନ୍ତି । ପାଠକମାନଙ୍କୁ ଏଠାରେ କହିରଖେ ଯେ, ଏଠାରେ ଜଗନ୍ନାଥ କପିଳବସ୍ତୁର ବୁଦ୍ଧ ନୁହଁନ୍ତି । ସେ ବୌଦ୍ଧ, ସେ ଏହି ବୌଦ୍ଧ ଅର୍ଥରେ ଶୂନ୍ୟ ପୁରୁଷ ବୌଦ୍ଧାବତାର । ଶାରଳା ଦାସଙ୍କ





ଭାଷାରେ ଏହି ବୌଦ୍ଧାବତାରରେ ''ସେ କଳିରେ, ବିହରିବେ'' ଅର୍ଥାତ୍ ଆତଯାତ ହେବେ ।

ବୌଦ୍ଧସ୍ତୂପମାନଙ୍କରେ ଥିବା ଶୂନ୍ୟରୂପୀ ଆଦିବୁଦ୍ଧଙ୍କୁ ବେଦାନ୍ତ ବର୍ଣ୍ଣିତ ପରମବ୍ରହ୍ମ ବୋଲି କହି ସେହି ରୂପରେ ବା ଦୁଇ ଗୋଲାକାର ପ୍ରସ୍ତରର ସମାହାରରେ ନିରାକାର ଜଗନ୍ନାଥ ପୂଜା କରିବା ପାଇଁ ଶଙ୍କରାଚାର୍ଯ୍ୟ ନିର୍ଦ୍ଦେଶ ଦେଇଥିବେ ବୋଲି ମୋତେ ଲାଗୁଛି । ଏଭଳି ଦୁଇ ମୂର୍ତ୍ତିର ସମନ୍ୱୟ ମିଳୁଛି ବର୍ତ୍ତମାନର ନୂଆପଡା ଜିଲ୍ଲାର ମାରାଗୁଡା ଉପତ୍ୟକାରେ । ଏହାଙ୍କ ବିଷୟରେ ସବିଶେଷ ଗବେଷଣା କରିଛନ୍ତି ନୂଆପଡାର ଖଡ଼ିଆଳ ରାଜ୍ୟର ରାଜା ଜିତାମିତ୍ର ସିଂହଦେଓ । ମୁଁ ମନେ କରୁଛି ଯେ ପୂର୍ବରୁ ଏକକ ମୂର୍ତ୍ତି ଭାବେ ବର୍ତ୍ତମାନର ନୃସିଂହ ମନ୍ଦିରରେ ପ୍ରଥମେ ପୂଜିତ ହେଉଥିଲେ ଏକକ ପୁରୁଷୋତ୍ତମ । ପରେ ପଞ୍ଚରାତ୍ର ପଦ୍ଧତିର ଲୋକପ୍ରିୟତା ଫଳରେ ପୁରୁଷୋତ୍ତମଙ୍କ ସହ ଯୋଡା ହେଲେ ସଙ୍କର୍ଷଣ ବା ବଳଭଦ୍ର । ପରେ ଆସିଲେ ସୁଭଦ୍ରା ଓ ସୁଦର୍ଶନ । ସ୍ତୂପରେ ଥିବା ଆଦିବୁଦ୍ଧ ବା ପରମବ୍ରହ୍ମ ମୂର୍ତ୍ତି ଅନୁସାରେ ଶଙ୍କରାଚାର୍ଯ୍ୟ ନିଶ୍ଚୟ ବ୍ୟବସ୍ଥା କରିଥିବେ ନିରାକାର ଜଗନ୍ନାଥଙ୍କ ପୂଜା । କ୍ଷୁଦ୍ର କଳେବର ବିଶିଷ୍ଟ ଏହି ନିରାକାର ମୂର୍ତ୍ତି ପରବର୍ତ୍ତୀ କାଳରେ ବିଶାଳ ତ୍ରିମୂର୍ତ୍ତିଙ୍କ ସହ କ୍ଷୁଦ୍ରକାୟ ମାଧବଭାବେ ରତ୍ନ ସିଂହସନରେ ବିରାଜିତ ହେବା ମନକୁ ଆସୁଛି । ବିରାଟକାୟ ଜଗନ୍ନାଥଙ୍କ ସହ ଏହି କ୍ଷୁଦ୍ରକାୟ ମାଧବଙ୍କ ରହିବା ଆବଶ୍ୟକତା କ'ଣ ? କୁହାଯାଉଛି, ଯେ ଜଗନ୍ନାଥ ଇନ୍ଦ୍ରଦ୍ୟୁମ୍ନଙ୍କୁ କଥା ଦେଇଛନ୍ତି, ପ୍ରାସାଦ ଭାଙ୍ଗିଲେ ବା କିଛି ଅଘଟଣ ଘଟିଲେ ମଧ୍ୟ ସେ ଏ ସ୍ଥାନ ଛାଡିଯିବେ ନାହିଁ । ଶ୍ରୀଜଗନ୍ନାଥ ଭାଇ ଉଭଣୀ ରୂପେ ପରିଚିତ ସଙ୍କର୍ଷଣ ବଳଭଦ୍ର ଓ ଯୋଗମାୟା ଦୁର୍ଗା ବା ଭାରତର ଅନ୍ୟ ପ୍ରାନ୍ତରେ ପରିଚିତ ଏକାନଂଶା ରୂପିଣୀ ସୁଭଦ୍ରାଙ୍କୁ ନେଇ ଜନସମ୍ପର୍କ ବା ଭକ୍ତବାନ୍ଧବତ୍ୱ କାର୍ଯ୍ୟରେ ବାହାରି ଆସନ୍ତି । ଏତେବେଳେ ପ୍ରଭୁଙ୍କ ରତ୍ନସିଂହାସନ ଖାଲି ହୁଏ ନାହିଁ । ନିତ୍ୟ ଦର୍ଶନ ବେଳେ ଶ୍ରୀଜଗନ୍ନାଥଙ୍କ ପାଖରେ ଥାଆନ୍ତି ସୁଦର୍ଶନ ଓ ପ୍ରଭୁ ମାଧବ । ମାଧବ ପ୍ରଭୁ ବିଶେଷ ଭାବେ ଦୃଷ୍ଟି ପଥାରୁଢ଼ ହୁଅନ୍ତି ନାହିଁ, ଭକ୍ତ ଭଲଭାବେ ନିରେଖି ଚାହିଁଲେ ଦୃଶ୍ୟ ହେବେ ।

ଗୁଣ୍ଡିଚା ପରଦିନ ସିଂହାସନରେ ସ୍ପଷ୍ଟ ଦେଖାଯାନ୍ତି ମାଧବ ପ୍ରଭୁ । ଏହାଙ୍କୁ ପୁଣି ମାଧବ ନାମ କାହିଁକି ଦିଆଗଲା ? ବିଭିନ୍ନ ସ୍ଥାନରେ ତଥା ଶ୍ରୀମନ୍ଦିର ବେଢ଼ା ଭିତରେ ଚତୁର୍ଭୁଜ ପ୍ରସ୍ତର ମୂର୍ତ୍ତି ମାଧବ ରୂପେ ବିରାଜିତ । ସେମାନେ ନିରାକାର ପ୍ରଭୁ ବିଷ୍ଣୁଙ୍କର ଲୀଳା ପ୍ରଦର୍ଶନକାରୀ ଓ ପ୍ରକଟ ସାକାର ମୂର୍ତ୍ତି । ପୁରୁଷୋତ୍ତମ ପ୍ରସ୍ତର ରୂପରେ ସିଂହାସନରେ ଥିବାବେଳେ, ବୋଧହୁଏ ତାଙ୍କ ପାଖରେ ଶଙ୍କରାଚାର୍ଯ୍ୟ ପ୍ରବର୍ତ୍ତିତ ଦାରୁ ନିର୍ମିତ ମାଧବଙ୍କ କ୍ଷୁଦ୍ର ମୂର୍ତ୍ତି ରହିଲେ । ବ୍ରହ୍ମ ଭାବେ ନିରାକାର ଜଗନ୍ନାଥଙ୍କ ମୂର୍ତ୍ତି ଦାରୁରେ ନିର୍ମିତ ହୋଇଅଛି । ଏ ମାଧବ ମୂର୍ତ୍ତି ବାମନରୂପୀ କ୍ଷୁଦ୍ର ଶରୀର ବିଶିଷ୍ଟ । ଏହାଙ୍କ ସାଦୃଶ୍ୟ ବହନ କରି ବିରାଟ ଜଗନ୍ନାଥ ମୂର୍ତ୍ତି ଗଠିତ ହେଲା ପ୍ରସ୍ତର ମୂର୍ତ୍ତିଙ୍କ ସ୍ଥାନରେ । ବାରମ୍ବାର ବିଦେଶୀମାନଙ୍କ ଅତ୍ୟାଚାରର ସମ୍ମୁଖୀନ ହୋଇ ଯେତେବେଳେ ଶ୍ରୀମନ୍ଦିର ପୁରୁଷୋତ୍ତମଙ୍କୁ ସ୍ଥାନାନ୍ତର କରିବାକୁ ପଡିଲା, ସେତେବେଳେ ଅସୁବିଧା ସୃଷ୍ଟି ହେଲା । ଧର୍ମଶାସ୍ତ୍ର ଅନୁସାରେ ପ୍ରସ୍ତର ମୂର୍ତ୍ତି ପୂର୍ବ ମନ୍ଦିରକୁ ଫେରି ପାରିବେ ନାହିଁ, ତାଙ୍କ ପାଇଁ ଦରକାର ନୂତନ ମନ୍ଦିର ।

ଏହି ପରିସ୍ଥିତିରେ ଚିନ୍ତା କରାଗଲା ଦାରୁ ଦେବତାଙ୍କ କଥା । ମୂର୍ତ୍ତି ଦାରୁରେ ଗଢ଼ା ହେଲେ ଆଉ ସେ ବାଧା ନାହିଁ । ଯଦି ନୂତନ ଭାବେ ନିର୍ମିତ ହେବେ, ତେବେ ସ୍ୱରୂପ ବା ଢ଼ଙ୍ଗ ବଦଳୁ । ଏହି କଥା ଚିନ୍ତା କଲା ଜାତି ।

ପଣ୍ଡିତ, ଶିଳ୍ପୀ ଓ ଭକ୍ତ, ଧର୍ମଗୁରୁ ପ୍ରତିନିଧିଙ୍କର ସମବେତ ନିଷ୍ପତ୍ତି ପରେ ଧୀରେ ଧୀରେ ପ୍ରଭୁ ବିବର୍ତ୍ତିତ ହୋଇଛନ୍ତି । ମନେ ହେଉଛି, ଅନଙ୍ଗଭୀମ ୩ୟଙ୍କ ରାଜତ୍ୱର ଶେଷ କାଳରେ ଦାରୁ ମୂର୍ତ୍ତି କଥା ଚିନ୍ତା କରାଯାଇଛି । ତାଙ୍କର ରାଜତ୍ୱ କାଳ ମଧ୍ୟରେ ତାଙ୍କର ବିଧବା କନ୍ୟା ତଥା ବୀର ଜାମାତା ପରମାର୍ଦ୍ଦି ଦେବଙ୍କ ପତ୍ନୀ ଚନ୍ଦ୍ରିକା ଦେବୀ ଶିଳା ଲିପିରେ କହିଛନ୍ତି– ''ସେ ନିର୍ମାଣ କରେଇଛନ୍ତି ''ପ୍ରାସାଦ ପୁରୁଷୋତ୍ତମସ୍ୟ'' ବା ଶ୍ରୀପୁରୁଷୋତ୍ତମଙ୍କ





ମନ୍ଦିର ।'' ସେହି ଶିଳାଲିପି ଅନୁସାରେ ମନ୍ଦିରରେ ଅଛନ୍ତି ବଳ, କୃଷ୍ଣ ଓ ସୁଭଦ୍ରା । ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ନାମ ଏତେବେଳକୁ ବିଶେଷ ପ୍ରଚାର କରାଯାଇନାହିଁ ବୋଧହୁଏ । ଅନଙ୍ଗଭୀମ ତୃତୀୟ ଯେ ପୁରୁଷୋତ୍ତମଙ୍କୁ ଉତ୍କଳର ରାଜା ବୋଲି ଘୋଷଣା କରି ନିଜକୁ ତାଙ୍କର ରାଉତ ବୋଲି ପରିଚିତ କରାଇଛନ୍ତି । ସେ ରାଜଧାନୀ କଟକଠାରେ ପୁରୁଷୋତ୍ତମ ମନ୍ଦିର ପ୍ରତିଷ୍ଠା କରିଛନ୍ତି ମହାନଦୀ କୂଳରେ । ସେ ମନ୍ଦିର ଭାଙ୍ଗିଲା ଦିଲ୍ଲୀ ସୁଲତାନ ଫିରୋଜ ସାହା ।

ମୁସଲମାନ ଐତିହାସିକ କହିଛନ୍ତି, ସେ ଜଗନ୍ନାଥ ମୂର୍ତ୍ତି ପ୍ରସ୍ତର ନିର୍ମିତ ଥିଲା । ସେ ମୂର୍ତ୍ତିର ଭଗ୍ନାବଶେଷର ଆଲୋକ ଚିତ୍ର (ଫଟୋ) ମୁଁ ସଂଗ୍ରହ କରିଛି । ଜଣାପଡୁଛି ମନ୍ଦିରର ଦେବତା ପୁରୁଷୋତ୍ତମ ଓ ଜଗନ୍ନାଥ ଉଭୟ ନାମରେ ପରିଚିତ ଥିଲେ । ଅନଙ୍ଗଭୀମ ୩ୟ ରାଜତ୍ୱର ପ୍ରାରମ୍ଭରେ ପ୍ରସ୍ତର ନିର୍ମିତ ପୁରୁଷୋତ୍ତମ ମୂର୍ତ୍ତି ନିର୍ମାଣ କଟକରେ କରିଥିଲେ । ସୋନପୁର ବିନିକାରେ ରାଜତ୍ୱର ଶେଷ ଭାଗରେ ୧୨୩୦ ଖ୍ରୀଷ୍ଟାବ୍ଦରେ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ । ସେଠାରେ ଦାରୁ ନିର୍ମିତ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଅଛନ୍ତି, କିନ୍ତୁ ସୁଦର୍ଶନ ନାହାନ୍ତି ।

ତୃତୀୟ ଅନଙ୍ଗଭୀମଙ୍କ ପରେ ତାଙ୍କ ପୁତ୍ର କୋଣାର୍କ ନିର୍ମାତା ନରସିଂହ ଦେବଙ୍କ ସମୟରେ ତ୍ରିମୂର୍ତ୍ତିଙ୍କ ମଧ୍ୟରୁ ଜଗନ୍ନାଥଙ୍କ ସହିତ ମହିଷାମର୍ଦ୍ଦିନୀ ଦୁର୍ଗା ଓ ଶିବ ଲିଙ୍ଗଙ୍କୁ ନରସିଂହ ଦେବ ପୂଜା କରୁଥିବା ମନ୍ଦିର ଗାତ୍ରରେ ଦର୍ଶାଯାଇଛି । କାଳକ୍ରମେ ଦାରୁମୂର୍ତ୍ତି ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ଭକ୍ତମେଳରେ ବିଶେଷ ରୂପେ ପରିଚିତ ହେଲେ । ଜଗନ୍ନାଥ ଅସମ୍ପୂର୍ଣ୍ଣ ହୋଇ ମଧ୍ୟ ସମ୍ପୂର୍ଣ୍ଣ । ସେ ନିରାକାର, ସାକାର ଓ ବ୍ୟକ୍ତ ତଥା ଅବ୍ୟକ୍ତଙ୍କ ପ୍ରତୀକ ମୂର୍ତ୍ତି । ସେ କୌଣସି ସମ୍ପ୍ରଦାୟ ଓ ଗୋଷ୍ଠୀର ଦେବତା ନୁହନ୍ତି ।

ଏନ୍–୧/୧୮୩, ନୂଆପଲ୍ଲୀ
ଭୁବନେଶ୍ୱର–୧୫

# ଦେଖାଅ ମୁକ୍ତିର ପଥ

ଉର୍ମିଳା ମିଶ୍ର

ସତ୍ୟ ଶାନ୍ତି ଧର୍ମ ପଥେ ଘେନିଯାଅ
କିଛି ଲୋଡ଼ା ନାହିଁ ଆଉ
କରୁଣାର ବାରିଧାରା ବିଞ୍ଚିଦିଅ
ଜଗତ ଉଦ୍ଧାର ହେଉ ।
ସତ୍ୟର ସନ୍ଧାନେ ରହିଥାଉ ମତି
ତୁମରି ଆଶିଷ ପାଇ
ପ୍ରଭୁ ପାଦ ପଦ୍ମେ ଥାଉ ମନ ଧ୍ୟାନ
ଆହେ ବ୍ରହ୍ମାଣ୍ଡ ଗୋସାଇଁ ।
ଏତିକି ମାଗୁଣି ଶ୍ରୀପାଦେ ଗୁହାରି
ଦୟାମୟ କୃପାମୟ
କର୍ମ ମଧ୍ୟେ ଦେଖୁଥିବି ବ୍ରହ୍ମଜ୍ୟୋତି
ଭାବ ଭକ୍ତି ଢାଳିଦିଅ ।
କାମନା ବାସନା ଗର୍ବ ଅହଂକାର
ପାପ ତାପ ଧ୍ୱଂସ ହେଉ
ନାମ ଧ୍ୟାନ ତବ ପୂଜାର୍ଚ୍ଚନା ବେଳେ
ପ୍ରାଣପକ୍ଷୀ ଉଡ଼ିଯାଉ ।

ଆରାଧନା ପ୍ୟାଲେସ୍, ବି–୪୦୩
ନନ୍ଦନ ବିହାର, ପୋ–କିଟ୍ ସ୍କୋୟାର
ଥାନା–ଇନ୍‌ଫୋସିଟି, ଭୁବନେଶ୍ୱର, ପିନ୍–୭୫୧୦୨୪





# ଧୂଳି

ରକ୍ଷକ ନାୟକ

ପ୍ରକାଣ୍ଡ ପାହାଡ଼କୁ ସମୟ ଗଡ଼େଇ ଗଡ଼େଇ
ଧୂଳି କରିଦେଲା, ପବନ ଉଡ଼େଇ ଉଡ଼େଇ
କେଉଁଠି ଫିଙ୍ଗିଲା କେଜାଣି
ଏବେ ଆଉ କିଛି ନାହିଁ ।
କାହାକୁ ଦୃଶ୍ୟ ହେଉନି ବୋଲି
ମୁଁ କ'ଣ ନାହିଁ?
ମୁଁ ତ ଦେଖିପାରୁଛି!
ଯେଉଁ ଆଖି ଲୁହ, ମୋହ
ଅହଂ, ଅକ୍ଷରର ଅଂଗ ଥିଲା
ସେ ଅବଶ୍ୟ ଆଉ ନାହିଁ ।
ଅବୟବର ବିନା ଅବଲଂବନରେ
ସମୟର ବିନା ସହାୟତାରେ
ମୁଁ ଘୂରି ଆସୁଛି ବ୍ରହ୍ମାଣ୍ଡ
ଯେଉଁଠି ଚାହୁଁଛି ପଶିପାରୁଛି
ନାହିଁ କିଛି ବାରଣ
ଅର୍ଗଳି, ଆକଟ ।
କୋଉଠି ରହିପାରୁନି
ଅଂତରୀକ୍ଷ ଅକୁଳନ ଲାଗିଛି ।
ସବୁ ନିର୍ମାଣ ଶୂନ୍ୟର ଭିଆଣ
କ୍ଷଣ କ୍ଷଣକୁ ଆନ
ନାହିଁ କିଛି ପ୍ରବେଶ ପ୍ରସ୍ଥାନ ।

ଏଇଠି ଅଟକିଗଲା
କେଉଁଠି? ଭୂଗୋଳ ଅବାଂତର
ଏଇ ବୋଧେ କେଂଦ୍ର
କାଳର । କଳ୍ପନାର ।
ସାମ୍ନାରେ ବିଗ୍ରହ ।
ନୁହେଁ ପ୍ରତିରୂପ କି ପ୍ରତିମା
ଅଦୃଷ୍ଟପୂର୍ବ । ଅଜ୍ଞେୟ ।
ସେ ବି ଶୂନ୍ୟ ଦେହ
ନିଗୂଢ଼ ନିଗ୍ରହ ପୂର୍ଣ୍ଣମୟ
ବ୍ରହ୍ମାଂଡ଼ଠୁ ବୃହତ୍
ବି ଅଣୁରେ ଅସଂଖ୍ୟ ପ୍ରତୀତ ।
ଏବେ ପ୍ରତେ ହେଲା ଧୂଳିର ମହତ୍ୱ
ଧୂଳି ନହେଇଥିଲେ କି
ଏମନ୍ତ ଆଶ୍ଚର୍ଯ୍ୟର ଅଂଶ ହେଇପାରିଥାନ୍ତି !
ପ୍ରାଣହୀନ ପାହାଡ଼ ପରି ପଡ଼ି ରହିଥାନ୍ତି
ଯେମିତି ନଥିବାରେ ଥିଲି ଏଯାବତ୍ ।

ରାଜଭବନ, ଭୁବନେଶ୍ୱର-୮







# ସେହି ଓଁକାର ନାଦେ

ସୂର୍ଯ୍ୟ ମିଶ୍ର

ଭବ ପାରାବାର ଭାବ ଭଉଁରୀରେ ଲୋଟିଛି ଜୀବନ ସାରା
ବୁଝି ପାରିଲିନି ସାରା ଆୟୁଷ ଯେ ବିଷାଦ ବନ୍ଦୀଶାଳା
ମିଛ ମମତାର ମୂଲ ମାଗିମାଗି ବିତିଗଲା ଏ ବୟସ
ସପନ ସଉଦା ସଜାଇ ସଜାଇ ପିଇଛି କାମନା ବିଷ ।

ଯଶ ଦୁଆରେ ମୁଁ ପାପଦୀପ ଜାଳି ବସିଅଛି ଭାଳି ଭାଳି
ଶରୀର ନଗର ନବଦ୍ୱାରେ ମୋର ଅନାଚାର ଖେଳେ ଦୋଳି
ବେକରେ ପକାଇ ମାୟାଫୁଲ ହାର ଅଶିବର ଅନୁରାଗେ
ତୁଚ୍ଛ ମଣିଲି ବୟସ ଓ ବ୍ୟାଧି ଅହଂକାରର ଆଗେ ।

ଚିହ୍ନି ପାରିନି ପ୍ରାଣର ପ୍ରତିମା ଯିଏ ଚିର ପ୍ରିୟତମ
ଜୀବନ ଅର୍ଥ ସଂପଦେ ଖୋଜି ବଂଚେ ଉନ୍ମାଦ ସମ
ଗୋଟିଏ ମାର୍ଗ ବରି ନେଇଛନ୍ତି ଆବେଗ ଓ ଅବୟବ
ଦୂରରୁ ସୁଦୂର ଅତି ବହୁ ଦୂର ଲମ୍ବିଛି ପରାଭବ ।

ବିବେକ କଟାଳ କରି ବସେ ଯେଣୁ ପ୍ରାୟଶ୍ଚିତର ସ୍ୱର
ଗୁଂଜରି ଉଠେ, ଏଇ ପ୍ରାଣପୀଠ କଂପିତ ଥରହର
ବାକି ଆୟୁକାଳ ଆପିବି ତୁମକୁ ହୃଦେ କରି ଦେବାଳୟ
ଯାବତ ମରଣ ପାଇବି ନିଶ୍ଚେ ପରମର ବରାଭୟ ।

ଅୟୁତ ଅଳିକ ବିଲୀନ ହୋଇବେ ଅଦେଖା ତୁମରି ପାଦେ
ସବୁ କଳ ରୋଳ ଗୋଳ ମିଶିଯିବେ ମହା ଓଁକାର ନାଦେ ।

'ପ୍ରାର୍ଥନା'
୮୯୫/୮୯୬, ସତ୍ୟନଗର, ଭୁବନେଶ୍ୱର–୭୫୧୦୦୭





# ଭକ୍ତିର ମହାଦୀପ

ଡକ୍ଟର ସରୋଜିନୀ ଷଡ଼ଙ୍ଗୀ

ମୋ ପାଖରେ କାହିଁ,
ସାତବର୍ଣ୍ଣର, ରଙ୍ଗ ପସରା
ତୁମ ଶ୍ରୀମୁଖକୁ, କରିବି ବନକଲାଗି,
ମୋ ପାଖରେ କାହିଁ, ମାଢ଼ ମାଢ଼ ସୁନା
ଖଞ୍ଜି ଦେବି ମୁଁ ତୁମ ଶ୍ରୀଭୁଜରେ
ଦିବ୍ୟ ସୁନାର ବାହୁଟି,
ତୁମ ଶ୍ରୀପାଦରେ ସଜାଇ ଦେବି ମୁଁ
ସୁନା ଶ୍ରୀପୟର
ମସ୍ତକେ ପୁଣି ପିନ୍ଧାଇ ଦେବି
ସୁନାର ଭବ୍ୟ କିରୀଟୀ ।
ମୋ ପାଖରେ ନାହିଁ ଅଷ୍ଟ ଅଳଙ୍କାର
ହୀରା, ନୀଳା, ମୋତି ମାଣିକର ହାର
ରତ୍ନଚିତା ତ' ନାହିଁ ମୋ ହାତରେ
କୁହ କେଉଁ ଚିତା ନାଇଦେବି ଭାଲେ
ତୁମ ଶ୍ରୀଅଙ୍ଗକୁ ସଜାଇ ଦେଇ ମୁଁ
କରି ଦେବି ସୁନା ମଣ୍ଡଣି ।
ତୁମ ଅଭିଷେକ ପାଇଁ ମୋ ପାଖରେ
ନାହିଁ ରତ୍ନ ସିଂହାସନ,
ଆଖି ଲୁହରେ ମୋ'
ପଖାଳି ଦେବି ମୁଁ
ହୃଦୟକୁ ମୋର,
ତେବେ ଯାଇ ଆହେ ନୀଳ ନିରଞ୍ଜନ !
ଆସୀନ ହେବ ତ' ହୃଦସିଂହାସନେ ମୋର ?

ଶୁଦ୍ଧଜଳ ତ ନାହିଁ ମୋ ପାଖରେ
କୁହତ' କେମିତି
ମାଜଣା ତୁମର ହେବ ?
ପ୍ରତୀକାତ୍ମକ, ସ୍ନାନ ପାଇଁ ତୁମ
ସମର୍ପି ଦେବି ଶୁଦ୍ଧ ମନର ଜଳ !
ମନ୍ତ୍ର ଜାଣେନି, ତନ୍ତ୍ର ଜାଣେନି
ବେଦଗାନ ନୁହେଁ, ସାମଗାନ ନୁହେଁ
କେବଳ ତୁମରି ନାମ ଉଚ୍ଚାରଣେ
କରିବି ମନ୍ତ୍ରସ୍ନାନ ।
ଭକ୍ତିର ଫୁଲେ କରିବି ତୁମର
ବଡ଼ ସିଂହାର ବେଶ
ଅନୁରାଗର ଏ ବିପୁଳରଙ୍ଗେ
ରଙ୍ଗାଇ ଦେବି ତୁମରି ଶ୍ରୀମୁଖ,
ବିଚିତ୍ର ବର୍ଣ୍ଣେ, ସଜାଇ ଦେବି ମୁଁ
ଅଖଣ୍ଡ ତୁମ ଦେହ,
ଭଲପାଇବାର ନୈବେଦ୍ୟକୁ
ତୁମ ଆଗେ ବାଢ଼ି,
ଭାବ, ଅନୁଭବ, ବିଭୋର ଲୁହରେ
ପୂର୍ଣ୍ଣ କରି ମୋ ମନର ଦୀପାଳି
ଜଳାଇବି ଆଜି
ଭକ୍ତି ରସର ଅଖଣ୍ଡ ମହାଦୀପ ।

ସ୍ତ୍ରୀରୋଗ ଓ ପ୍ରସୂତି ବିଶେଷଜ୍ଞ
ଲିଙ୍କ୍‌ରୋଡ଼, କଟକ–୧୨

# ବୁଦ୍ଧ ଅବତାରେ ମର୍ମସ୍ପର୍ଶୀ ଗାଥା

ଶକୁନ୍ତଳା ଆଚାର୍ଯ୍ୟ

ଯୁବରାଜଙ୍କର ଆଦେଶେ–ଛନ୍ଦକ
ନକରି ପାରେ ପ୍ରକାଶ,
ଭ୍ରମି, ଭ୍ରମି ପାଦେ ରାଜପ୍ରାସାଦରେ
ଖୋଜୁଥିଲା ଅବକାଶ ।
ଛିଡ଼ି ପଡୁଛକି ମସ୍ତକରେ ବଜ୍ର
ହୃଦେ ଚାପି କୋହ–ଦୁଃଖ,
କୁମାର ନିକଟେ ଶପଥ ବ୍ରତରେ
ଫିଟାଇନି କାହିଁ ମୁଖ ।
କେହି ନଜାଣନ୍ତି ରାଜପୁରେ ଜନେ
ଏକା ସେ, ଛନ୍ଦକ ବିନା,
କାଲି ପ୍ରଭାତରେ ମଣିମୟ ଶାଳା
ଦୀପ୍ତି–ହୀନ ହେବ ସିନା ।
ସତୀ ପ୍ରଣୟିନୀ କନକ ପ୍ରତିମା
ଯଶୋଧାରା ରାଜ ରାଣୀ
ପତିପ୍ରେମ ହରା ବିରହ ବିଧୁରା
ବଞ୍ଚିବେକି ଏହା ଜାଣି ?
ଯେତେ ପ୍ରବୋଧିଲେ କାହିଁ ନିବର୍ତ୍ତାଇ
ନପାରେ କୁମାର ମନ,
ଭୋଗ ବିଳାସରେ ରାଜ ପ୍ରାସାଦରେ
ନଟାଣେ ମାୟା ବନ୍ଧନ ।
ଆହା–ମାୟାଦେବୀ ରାଜା ଶୁଦ୍ଧୋଦନ
କେମନ୍ତେ ରହିବେ ତେଜି
ସଂସାର ସାଗର ବନ୍ଧନରେ ଜନେ
ସହଜେ ପାରିବେ ହେଜି
ଯାହା ହେଉ ପଛେ ନପାରେ ସମ୍ଭରି
ଏଡି ମୋ ଶପଥ ବ୍ରତ
ବହି ସର୍ବ ପାପ ରାଜା ରାଣୀ ପାଖେ
ଫେରିବି ଗୋପନ ସତ ।
ଚିନ୍ତା ଶୋକ ପ୍ରାଣେ ଆଗକୁ ‘‘ଛନ୍ଦକ’’
ପାଦ ବଢ଼ାଇଲେ ଧିରେ
ଠିଆ ହୋଇ ତହିଁ ଚମକି ଉଠିଲେ
ଶୁଣୁଥିଲେ ନତ ଶିରେ ।
କେହି ନଶୁଣିଲେ ସେହି ଶୂନ୍ୟବାଣୀ
ଏକା ପ୍ରଭୁ ଭୃତ୍ୟ ବିନା
ଯୁଗେ–ଯୁଗେ–ଭକ୍ତ ଅବତରି ଥାଏ
ଜଗତ କଲ୍ୟାଣେ ସିନା ।
ନୁହଁଇ ମନୁଷ୍ୟ ସାଧାରଣ ସେତ
ଦେବତାଙ୍କ ଅବତାର
ପ୍ରଭୁ ଇଚ୍ଛା ମତେ ବାରଣ କରିବା
ଶକତି ଅଛି କାହାର
ଶୁଣି ଦୈବ ବାଣୀ ଲୁହ ପୋଛି ବୀର
ଦୃଢ଼ କରି ନେଲେ ଛାତି
ବିକଶିଲେ ନଭେ ନକ୍ଷତ୍ର ଗହଣେ
ମାଡିଆସେ ଘନରାତି ।
ନିରବ ନିସ୍ତବ୍ଧ ହେଲା ଘୋର ନିଶି
ଧରି ଭୀତ କୃଷ୍ଣ ବେଶ





ଶିଶୁ ଘେନି କୋଳେ ନିଦ୍ରା ଯୁବ ରାଶି
ଶୋଭୁଥିଲା ଚାରୁକେଶ ।
ଖଞ୍ଜିଥିଲେ ସଖୀ ବିବିଧ ଭୂଷଣ
ସାଜିଥିଲେ –''ମନୋହର''
କେଉଁ ରୂପବତୀ ସଙ୍ଗରେ ତୁଳନା
ହେବ ସେ ଲାବଣ୍ୟଝର ?
ଥରେ ''ଯଶୋଧାରା'' ଥରେ ଶିଶୁ ପୁତ୍ରେ–
ଦେଉଥିଲେ ପ୍ରଭୁ ଦୃଷ୍ଟି
ସେହି ''ଦୟାମୟ'' ବିଶ୍ୱରେ ଅଦ୍ଭୁତ
କରିଥାନ୍ତି ଯାହା ସୃଷ୍ଟି ?
ପାଦ ଟିପି–ଟିପି–ବାହାରେ ଛନ୍ଦକ
ତଥାପି ନପାରେ ଡାକି
ଗୁଣଗ୍ରାହୀ ହୟ କାହାକୁ ନିରେଖି
ଲୁହପୂର୍ଣ୍ଣ କରେ ଆଖି ।
ଧନ୍ୟ ହେବ ଆଜି ଜନମ ଜୀବନ
ପ୍ରଭୁ ଅଙ୍ଗ ପୃଷ୍ଠେ ଧରି
ପାପ ବନ୍ଧନରୁ ପଶୁ ଜନମରୁ
ଯିବ ଅବିଳମ୍ବେ ତରି ?

ଘନୁ ଘନ ଉଷ୍ମ ନିଃଶ୍ୱାସ ବହନ୍ତେ–
ଛିଣ୍ଡାଇ ପ୍ରେମ ବିବାଦ
ନିଦ୍ରା ପିତା–ମାତା–ପ୍ରଣୟ ବନ୍ଧନ
ତେଜିଲେ ରାଜ ପ୍ରାସାଦ ।
ଶ୍ରୀକ୍ଷେତ୍ର ମନ୍ଦିରେ ଦଶ ଅବତାର
ବୁଦ୍ଧି ''ପାଟେ''–ଜଗନ୍ନାଥ–
ଏକ ମୁଖେ ରୂପ ବିରାଜୁ ଅଛନ୍ତି
ଦର୍ଶନ କରନ୍ତି ଭକ୍ତ ।
ସତୀ ପତିବ୍ରତା ''ଯଶୋଧାରା''–ମାତା
ମହାଲକ୍ଷ୍ମୀ ଅଙ୍କେ ରହି
ଦୟା–କ୍ଷମା–ସ୍ନେହ ଦେଉଛନ୍ତି ସଦା
ପଦ୍ମବାସ ଆସେ ବହି ।
ଆଜି ତେବେ ଏହି ଭାରତ ଭୂଇଁରେ
କେଉଁ ଛାର ଭୋଗ–ଲାଗି
ନଶ୍ୱର ଶରୀର ଘୋର ଅତ୍ୟାଚାରେ
ନର ଅପଯଶ ଭାଗି ?

ସତ୍ୟବାଦୀ, ଶ୍ରୀରାମଚନ୍ଦ୍ରପୁର
୨ୟ ଖଣ୍ଡ, ଜିଲ୍ଲା–ପୁରୀ







# କଳା କଳେବର କାଳିଆ ଠାକୁର

ରତ୍ନାକର ରାଉତ

କଳା କଳେବର କାଳିଆ ଠାକୁର
ତୁମେତ ଜଗତ ସାଇଁ
ସାରା ଦୁନିଆରେ ତୁମ ପରି ଦିଅଁ
କେଉଁଠି ଅଛନ୍ତି କାହିଁ ?
ତୁମ ଦରଶନ ପାଇଁ
କାହିଁ କେତେ ଦୂରୁ
ଭକତ ଆତୁରେ
ନିତି ଆସୁଛନ୍ତି ଧାଇଁ
ବରଷକ ବାରମାସ
ଗହଳି ଚହଳି ଲାଗିଛି ଦେଉଳେ
ଭକତଙ୍କ ଭିଡ ଆନନ୍ଦ ବଜାରେ
ବଡଦାଣ୍ଡେ କେତେ ମଉଛବ ମେଳା
କଳା ଠାକୁର ହେ ଜଗତ କରତା
ଜଗତ ସାଇଁ
ଏସବୁ ତୁମରି ଲୀଳା, ଏସବୁ ତୁମରି ଲୀଳା!
ତୁମ କରୁଣା ବାରିଦ ବରଷିବା ଆଶା ନେଇ
ଥରେ ଜୀବନରେ ଚକାଆଖି ସହ
ଆଖି ମିଶେଇବା ପାଇଁ
କେତେ ଆଶା କେତେ ଭରସା ନେଇ
ଆସନ୍ତି ଭକତ ଜନେ
ତୁମେତ ଏମିତି କରତା ସାଜିଛ
କାହାକୁ କରନି ମନା ।
ଯିଏ ତୁମ ପାଦେ ଶରଣ ପଶିଲା
କଳା ଠାକୁର ହେ ତୁମ କାଣିଚାଏ
କରୁଣା ପାଇଲେ
ତା' ଦୁଃଖ ହୋଇଯାଏ ଊଣା ।
ବିନା ପାଉଣାରେ ମହାପାପୀ ପାପ
ନିମିଷେ ହୁଅଇ ନାଶ
ତୁମ ପଦ କମଳରେ ପ୍ରଣତି ଜଣେଇ
ଯିଏ କରିଦିଏ ସମର୍ପଣ
କଳୁଷ କାଳିମା ସବୁ ପୋଛିଦେଇ
ତା' ଜୀବନକୁ କର ଧନ୍ୟ ।
ତୁମେ ଭକତର ମନ ଜାଣ
ଆତ୍ମ ବଡିମାରେ ଅନ୍ଧ ହୋଇ ଯିଏ
ଅହମିକା ବଳେ ଜାଣେନି ତୁମର
ମହତ ପଣିଆ
ତା' ଜୀବନ ଅଚିରେ ହୁଅଇ ଧ୍ୱଂସ ।
କଳା ଠାକୁର ହେ ଭକତ ଜନଙ୍କ ପାଇଁ
ତୁମ କରୁଣାର କର ଦିଅ ବଢେଇ
ତୁମେତ ଜଗତ ସାଇଁ
ସାରା ଦୁନିଆରେ ତୁମ ପରି ଦିଅଁ
କେଉଁଠି ଅଛନ୍ତି କାହିଁ ?
କଳା କଳେବର କାଳିଆ ଠାକୁର
ତୁମେତ ଜଗତ ସାଇଁ ।

କ୍ୱାର୍ଟର ନଂ: ସି–୭
ୟୁନିଟ୍–୯(ଫ୍ଲାଟ୍), ଭୁବନେଶ୍ୱର–୭୫୧୦୨୨

# ରଥାରୂଢ଼ କାଳିଆ ଠାକୁର

ମମତା ପରିଡ଼ା

ବରଷକ ଥରେ ଆସ ମହାପ୍ରଭୁ
ପବିତ୍ର ଘୋଷ ଯାତରେ
ଦରଶନ କରି ମୋକ୍ଷ ପ୍ରାପ୍ତି ହୁଏ
ଦେଖି ଚତୁର୍ଦ୍ଧାମୂର୍ତ୍ତିରେ ।
ଚକାଆଖି ସାଥେ ଆଖି ମିଶିଯାଏ
ନପଡେ ପଲକ ନେତ୍ର
ଭକତି ଆନନ୍ଦେ ବୋହିଯାଏ ଅଶ୍ରୁ
ଝର ଝର ଅବିରତ ।
ପହଣ୍ଡି ହୋଇଣ ଟାହିଆ ହଲାଇ
ଝୁଲି ଝୁଲି ଜଗା ଆସେ
ବଳଭଦ୍ର ଆଉ ସୁଭଦ୍ରାଙ୍କ ସଙ୍ଗେ
ହସି ହସି ରଥେ ବସେ ।
ବ୍ୟଥିତ ହୃଦୟେ କ୍ରୋଧଭରା ମନେ
ଶୂନ୍ୟ ଶ୍ରୀମନ୍ଦିରେ ବସି
ଭାଳେଣି କରନ୍ତି ଲକ୍ଷ୍ମୀ ଠାକୁରାଣୀ
ସାଥେ ନ ନେଲେ ମୋ ପତି ।
ଭାଇଭଉଣୀଙ୍କୁ ସଙ୍ଗେ ଧରି ବୁଲେ
ବାର ମାସ ଯାତରାରେ
ବରଷକେ ଥରେ ନିଏ ନାଇଁ ସାଥେ
ମାଉସୀ ମା ମନ୍ଦିରରେ ।
ନବଦିନ ରହି ପିଠା କ୍ଷୀରି ଖାଏ
ଉପାସେ ମୁଁ ପଡ଼ିଥାଏ
ବଡ଼ ଦଗାଦିଆ କାଳିଆ ଠାକୁର
କେଡେ ନିଠୁର ସତେ ହେ ?
ବାହୁଡ଼ା ରଥରେ ଯାକ ଯମକରେ
ଭ୍ରାତୃ ଭଗିନୀଙ୍କ ସାଥେ
ଶ୍ରୀମନ୍ଦିର ଯିବେ କାଳିଆ ଠାକୁର
ସଙ୍ଗରେ ନନେଇ ମୋତେ ।

ସ୍ୱର୍ଗରୁ ଦେବତା ପୁଷ୍ପ ବରଷାଇ
ବିଜେ ଘୋଷେ ସ୍ୱୟଂ ହରି
ତ୍ରାହୀମାଂ ମଣିମା ଯୋଡ ହସ୍ତେ
ଭକ୍ତେ ଲୋଟନ୍ତି ଭୂମିରେ ପଡ଼ି ।
ଦିବ୍ୟସିଂହ ଦେବ ସ୍ୱର୍ଣ୍ଣ ଖଡିକାରେ
ଛେରା ପହଁରା କରନ୍ତି
ଇଚ୍ଛାମୟ ହରି କ୍ଷଣେ ନା ଚାହିଁଲେ
ରଥ ଚକ ନ ଗଡନ୍ତି ।
ଘର ଘର ଗର୍ଜି ରଥ ଚକ ଗଡ଼େ
ବଡ଼ଦାଣ୍ଡ ଦୁଲୁକେଇ
ହରିବୋଲ ଧ୍ୱନି ଘଣ୍ଟ ଘଣ୍ଟା ନାଦେ
ଶିରୀକ୍ଷେତ୍ର ଉଛୁଳେଇ ।
କେତେ ଠାଣୀ କରେ ବାଙ୍କ ଚୂଳିଆ ସେ
ଷୋହଳ କଳାର ମଣି ।
ଶ୍ରୀଛାମୁ ଚରଣେ ନାଚନ୍ତି ପାଟୁଆ
ଗାଆନ୍ତି ଢଗ ଢମାଳି ।
ଏକାଦଶୀ ଦିନ ସ୍ୱର୍ଣ୍ଣ ଅଳଙ୍କାରେ
ସାଜି ଦିଅଁ ଦରଶନ
କୋଟି ଭକତଙ୍କ ମନ ମୋହିନିଏ
ଝଟକେ ରୂପ ଲାବଣ୍ୟ ।
ନୀଳାଦ୍ରି ବିଜୟ ପର୍ବ ଆସିଯାଏ
ଲକ୍ଷ୍ମୀ ବାଟ ଓଗାଳନ୍ତି
ରସଗୋଲା ଦେଇ ପ୍ରିୟାଙ୍କୁ ଖୁଆଇ
ମାନ ଭଞ୍ଜନ କରାନ୍ତି ।
ଜୟ ଜଗନ୍ନାଥ ଧ୍ୱନି ଶବଦରେ
ମନ୍ଦିରେ ବିଜେ କରନ୍ତି
ଲୀଳାମୟ ହରି କେ କଳିବ ଜାଣି
ଗହନ ଲୀଳା ସେ କରନ୍ତି ।

ଗ୍ରାମ - ତେନ୍ତୁଳିପଦା, ତିର୍ତ୍ତୋଲ
ଜଗତସିଂହପୁର





# ଅନନ୍ତ

**ଡକ୍ଟର ରାଜଲକ୍ଷ୍ମୀ ଜେନା**

ଭାବୁକ, ସାଧକ, ଜିଜ୍ଞାସୁ ଭକତ
ପ୍ରଶ୍ନ ଅଟେ ସଭିଙ୍କର
ସଗୁଣ, ନିର୍ଗୁଣ, ସୂକ୍ଷ୍ମ ବା ସ୍ଥୂଳରେ
କେଉଁଥିରେ ଖେଳାର ।
ବିଶ୍ୱର ବିସ୍ମୟ ଅଦଭୁତ ଗରିମା
ଦେଖି ଜଳକା ଭକତ
ରୂପରେ, ରସରେ, ଭାବ ଭାବନାରେ
ହୁଏ ଖାଲି ବିମୋହିତ ।
ସତ୍ୟରେ ନୃସିଂହ ଉଗ୍ରବୀର ତୁମେ
ତ୍ରେତୟାରେ ରାମଚନ୍ଦ୍ର
ଦ୍ୱାପରେ ଶ୍ରୀକୃଷ୍ଣ ଲୀଳାବିହାରୀ ହେ
କଳିଯୁଗେ ଜଗନ୍ନାଥ ।
ତୁମ ଲୀଳାଖେଳା ରୂପରଙ୍ଗ ଛଟା
ଭରପୂର ରହସ୍ୟରେ
ନୀତିକାନ୍ତି ଭରା ଯାନିଯାତ୍ରା ସବୁ
ଆନନ୍ଦ ଭରେ ସବୁରେ ।
କଅଣ, କେମିତି, କାହିଁକି, କିପରି
କେବେଠାରୁ ତୁମେ ଜାତ
ପ୍ରଶ୍ନ ଆବେଳିରେ, ସଂଶୟ ଭିତରେ
ଭକତ ହୁଏ ଚକିତ ।

ଜଣକର ନୁହେଁ, ଗଣଦେବ ତୁମେ
ଅଟ ପୁଣି ଅବତାରୀ
ଦାରୁ ଦେହ ପୁଣି ବିଚିତ୍ର ଚେହେରା
ଭକ୍ତ ମନ ଦିଏ ଭରି ।
ଦୟଣା, ତୁଳସୀ, ଅଗୁରୁ, ଚନ୍ଦନ
ମହମହ ବାସୁ ଥାଅ
ଅଦୃଶ୍ୟ ତ୍ରିଗୁଣ ରଜ୍ଜୁକୁ ଧରିଣ
ଭକତଙ୍କୁ ନଚାଅ
ଦୁଷ୍ଟର ଦମନ, ସନ୍ଥର ପାଳନ
ପାଇଁ ଆସ ଯୁଗେ ଯୁଗେ
ପୁରାଣ, ଦର୍ଶନ ମତ ଓ ପଥରେ
ଭକତ ତୁମକୁ ଦେଖେ
ଯେତେ କହୁଥିଲେ ସତେ ନାହିଁ ଶବ୍ଦ
ଧାରା ତୁମେ ଅନନ୍ତର
ଭକତ ଭାବରେ ଘେନା କରି ମୋତେ
ଘେନ ପ୍ରଣାମ ମୋହର ।

ଝୁନଝୁନୱାଲା ବିଦ୍ୟାପୀଠ
ବାରଙ୍ଗ, କଟକ





# ବିଶ୍ୱନିୟନ୍ତା

କୁନଲତା ତ୍ରିପାଠୀ

ଜୟ ଜୟ ଜଗନ୍ନାଥ ଦାରୁବ୍ରହ୍ମ ନାମେ ଖ୍ୟାତ
ଚତୁର୍ଦ୍ଧା ମୂରତି ପ୍ରୋକ୍ତ  ବେଦାନ୍ତ ସାର
ଚିନ୍ତା ଚେତନାର ଊର୍ଦ୍ଧ୍ୱ ତୀର୍ଥରାଜେ ହିଁ ସମ୍ଭବ
ଅନନ୍ୟ କ୍ଷେତ୍ରେ ଅପୂର୍ବ ବିଶ୍ୱ ଆଧାର
ଶ୍ରୀନୀଳକନ୍ଦରେ ସୁନ୍ଦର
ଅରୂପେ ସ୍ୱରୂପ ଘେନି ନୀଳାଦ୍ରିବର ।
କ୍ଷେତ୍ର ପରମପାବନ ଖ୍ୟାତ ଶ୍ରୀପୁରୁଷୋତ୍ତମ
ସୁମହତ କୀର୍ତ୍ତିମାନ ତୀର୍ଥ ମହାନ
ପ୍ରଭୁ ଶ୍ରୀପୁରୁଷୋତ୍ତମ ଦାରୁ ବିଗ୍ରହ ଧାରଣ
ସ୍ୱୟଂ ଯହିଁ ବିଦ୍ୟମାନ ଭବ୍ୟ ପ୍ରମାଣ
କରିବାକୁ ମାନବ ଲୀଳା
ଅନନ୍ୟ ଅପୂର୍ବ ଦିବ୍ୟ ଆହା ଏ ଖେଳା ।
ଶଂଖାକୃତି ଏହି କ୍ଷେତ୍ର ସଦା ପରମ ପବିତ୍ର
ଆଧାରେ ଅକ୍ଷୟବଟ କଳ୍ପାନ୍ତ କଳ୍ପ
ଅନ୍ତର୍ବେଦୀ ରକ୍ଷା ପାଇଁ ଅଷ୍ଟଗୋଟି ଶକ୍ତି ତହିଁ
ନିତ୍ୟ ବିରାଜିତ ରହି ଦିବ୍ୟ ସମ୍ଭୂତ
ଅଷ୍ଟ ରୁଦ୍ର ଅଷ୍ଟ ଗୌରୀ
ସ୍ୱୟଂ ଶିବା ଶିବ ଯା ନିତ୍ୟ ସେବାକାରୀ ।
ବଟମୂଳେ ଅଗ୍ନିକୋଣେ ବଟ ମଙ୍ଗଳା ପ୍ରମାଣେ
ପଶ୍ଚିମେ ବିମଳା ନାମେ ସେ ଦେବୀ ଗୌରୀ
ଶଂଖର ପୃଷ୍ଠ ଭାଗରେ ସର୍ବ ମଙ୍ଗଳା ନାମରେ
ଥାନ୍ତି ସେ ବାୟୁ କୋଣରେ ହାରିଗୁହାରି
ଆତ୍ମାନନ୍ଦେ ହୋଇ ବିଭୋର
ନିତ୍ୟ ସେବୁଥାନ୍ତି ପ୍ରଭୁ ଦିବ୍ୟ ପୟର ।

ଉତ୍ତରେ ସେ ଅର୍ଦ୍ଧାଶିନୀ ଐଶାନେ ଆଲମ୍ବା ନାମ୍ନୀ
ମାତା ସେ ଗିରି ନନ୍ଦିନୀ ବିଶ୍ୱ ବନ୍ଦିନୀ
ଦକ୍ଷିଣେ ସେ କାଳରାତ୍ରୀ ପୂର୍ବେ ମରୀଚିକା ଭାତି
ଚଣ୍ଡରୂପା ସେ ପ୍ରତୀତି ନୈଋତ କୋଣୀ
ସ୍ୱମୂର୍ତ୍ତିମାନଙ୍କୁ ସେ ଘେନି
ଅନ୍ତର୍ବେଦୀ ରକ୍ଷା କରୁଛନ୍ତି ଜନନୀ ।
ନମସ୍ତେ ଶ୍ରୀଜଗନ୍ନାଥ କ୍ଷେତ୍ରାଧିପତି ଶ୍ରୀକ୍ଷେତ୍ର
ରୁଦ୍ରେ କରି ସମ୍ମୋହିତ କଲେ ସ୍ଥାପନା
ତୁମ୍ଭଠାରୁ ହିଁ ସମ୍ଭୂତ ଅଷ୍ଟ ପ୍ରକାରେ ବିଭକ୍ତ
ମଧ୍ୟ ସ୍ୱୟଂ ବିରାଜିତ ଉଡ଼ାଇ ବାନା
ରୁଦ୍ର ସେ କପାଳମୋଚନ
କ୍ଷେତ୍ର ରକ୍ଷା କରି ଯା କ୍ଷେତ୍ରପାଳ ନାମ ।
ରୁଦ୍ର ଯେ ମାର୍କଣ୍ଡେଶ୍ୱର ଈଶାନେଶ୍ୱର ଆବର
ବିଶ୍ୱ ପାଳି ବିଶ୍ୱେଶ୍ୱର ଶମ୍ଭୁ ସତ୍ୱର
ବଟମୂଳେ ବଟେଶ୍ୱର ଲିଂଗାଷ୍ଟକ ମହେଶ୍ୱର
ନୀଳକଣ୍ଠେଶ୍ୱର ସାର ଶ୍ରୀଯମେଶ୍ୱର
ଦର୍ଶନ ସ୍ପର୍ଶନ ପୂଜନେ
ସର୍ବ ପାପ ଧ୍ୱଂସ ହୁଅଇ ତତକ୍ଷଣେ ।
ନମସ୍ତେ ବିଶ୍ୱ ଜୀବନ ଶ୍ରୀଚରଣେ ନିବେଦନ
କରନ୍ତୁ ବିଶ୍ୱ କଲ୍ୟାଣ ଯେ ଇଚ୍ଛାମୟ
ଇଂଗିତେ ମାତ୍ର ଯାହାର ସୃଷ୍ଟ୍ୟନ୍ତ ସ୍ଥିତି ଆବର
ସଂଘର୍ଷ ସଙ୍କଟ ହର ବିଶ୍ୱଭାବୟ
ସର୍ବ କାରଣର କାରଣ
ବିଶ୍ୱକର୍ତ୍ତା ବିଶ୍ୱମୂର୍ତ୍ତି ବିନତି ଘେନ ।

ଦୁର୍ନୀତି ନିବାରଣ ନିର୍ଦ୍ଦେଶାଳୟ
କଟକ–୧





# ଭକତ ବତ୍ସଳ ଶ୍ରୀଜଗନ୍ନାଥ

**ଶକୁନ୍ତଳା ଚିହ୍ନରା**

ମରତ ବୈକୁଣ୍ଠ ଅଟେ ପାବନ ଶ୍ରୀକ୍ଷେତ୍ର
ତୀର୍ଥରାଜ–ପୁରୀ ନାମେ ଜଗତେ ବିଖ୍ୟାତ ।
ବେଦୋତ୍ତର ଯୁଗେ ତାଙ୍କ ରୂପ ଓମ୍‌କାର
ନିରଞ୍ଜନ, ନିରାକାର, ଅବ୍ୟକ୍ତ, ଅକ୍ଷର ।
ବିଶ୍ୱାବସୁ ଶବରର ଯେ ନୀଳମାଧବ
ଇନ୍ଦ୍ରଦ୍ୟୁମ୍ନ ରାଜା ପାଇଁ ସେ ପୁରୁଷୋତ୍ତମ ।
କାହା ପାଇଁ ରାମ, କୃଷ୍ଣ କା'ପାଇଁ କାଳିଆ
ରହସ୍ୟମୟ ଦେବତା ସେ ନୀଳାଚଳିଆ ।
ଶାକ୍ତ ପାଇଁ ଶକ୍ତି ସିଏ, ଶୈବ ପାଇଁ ରୁଦ୍ର
ବୈଷ୍ଣବର ମହାବିଷ୍ଣୁ, ସୌର ଇଷ୍ଟ ସୂର୍ଯ୍ୟ ।
ସବୁ ଧର୍ମ ସାରତତ୍ତ୍ୱ ନିଜ ଅଙ୍ଗେ ଧରି
ଭକ୍ତ ପାଇଁ ଯାଇଥାଏ ରଥଯାତ୍ରା କରି ।

ଜାତି, ଧର୍ମ, ବର୍ଣ୍ଣ ଭେଦ ତା'ପାଖରେ ନାହିଁ
ରାଜା–ପ୍ରଜା, ଜ୍ଞାନୀ–ମୂର୍ଖ ସମାନ ତା'ପାଇଁ ।
ବିଶ୍ୱାସରେ ଡ଼ାକେ ଯିଏ ଯେଉଁ ନାମ ଧରି
ପାଏ ସିଏ ଦରଶନ ସେ ରୂପେ ତାଙ୍କରି ।
ଭକତ ବତ୍ସଳ ସିଏ ଭକ୍ତ ଭାବେ ବନ୍ଧା
ତା'ପାଇଁ ସବୁଠୁ ବଡ଼ ଭକ୍ତ ପ୍ରେମ ଶ୍ରଦ୍ଧା ।
ଶୁଣିଛି ଦ୍ରୌପଦୀ, ଧ୍ରୁବ, ପ୍ରହଲ୍ଲାଦ ଡ଼ାକ
ସୁଦାମାର ଖୁଦ ଭଜା ତା'ପାଇଁ ଅମୃତ ।
ଥାଉ ଯିଏ ଯେତେ ଦୂରେ ନିର୍ମଳ ଅନ୍ତରେ
ଡ଼ାକିଦେଲେ ନିମିଷକେ ଦୁଃଖ ଦୂର କରେ ।

ଦରଜୀପୋଖରୀ ଛକ
ଭିଆଇପି ରୋଡ଼, ପୋଲିସ୍ ଲାଇନ୍
ପୁରୀ–୧



# କାଳିଆ ଠାକୁର

ସବିତା ପରିଡା



କୁନ୍ତି ଭଳି ମୋତେ ଦୁଃଖ ଦିଅ ପ୍ରଭୁ
ନିତି ତୁମକୁ ଡାକିବି
ହନୁମାନ ପରି କର ହେ ଠାକୁର
ପଦ ସେବା କରୁଥିବି ।

ଲକ୍ଷ୍ମଣ ପରି ମୁଁ ହେବି ଆଜ୍ଞାଧୀନ
ସଦାରହି ତୁମ ପାଶ
ପ୍ରହଲ୍ଲାଦ ପରି ଭକ୍ତ କରି ଦିଅ
ମୋ ମୁଣ୍ଡରେ ରଖି ହସ୍ତ ।

ଅର୍ଜୁନଙ୍କ ପରି ସଖା କର ପ୍ରଭୁ
ସର୍ବଦା ପାଖରେ ଥିବି
ଯଶୋଦାଙ୍କ ପରି ମା’ କରି ଦିଅ
ମମତାରେ ବାନ୍ଧିଦେବି ।

ଦାସିଆ ବାଉରି କର ହେ ଠାକୁର
ନଡ଼ିଆ ନିତି ଖଞ୍ଜିବି
ଚଇତନ୍ୟ ପରି କରି ଦିଅ ପ୍ରଭୁ
ଉଦଣ୍ଡେ ନାମ ଗାଇବି ।

ସବୁ ଦୁଃଖ ମୋତେ ଦେଇ ଦିଅ ପ୍ରଭୁ
ମନରେ ନାହିଁ ମୋ ଦୁଃଖ
ମାଗୁଛି କେବଳ ଆହେ ଆଦିମୂଳ
ଜଗତେ ନରହୁ ଦୁଃଖ ।

ବିଶ୍ୱବାସୀ ସଦା ସୁସ୍ଥରେ ରହନ୍ତୁ
ତବ ଆଶୀର୍ବାଦ ଫଳେ ।
କାଳିଆ ଠାକୁର ଆହେ ଜଗନ୍ନାଥ
କୃପାକର କାଳେ କାଳେ ।

ବଉଳମଠ ଗଳି, ପୁରୀ



# ଗୁହାରି କରୁଛି ଠାକୁରେ

**ପ୍ରତିଭାରାଣୀ ମହାନ୍ତି**

ହେ ପରମପିତା, ପ୍ରାଣଦାତା
ତ୍ରାଣକର୍ତ୍ତା ମହାବାହୁ ହେ
ଚରଣେ ଶରଣ, ହେ ମୁରାରି
ଗିରିଧାରୀ ମହାବାହୁ ହେ ।
ଚତୁର୍ଦ୍ଦିଗ ଅନ୍ଧକାରେ
ଏକମାତ୍ର ଆଲୋକ ଦୀପିକା
ଜାଳିବ କି ସବୁଦୀପ
ଦୂରକରି ନିଶି ପ୍ରହେଳିକା
ରକ୍ଷାକର ଚକାଆଖି
ଚକ୍ରଧାରୀ, ଦେବକୀ ନନ୍ଦନ, ମହାବାହୁ ହେ ।
ଚରାଚର କଳାକାର
ସୃଷ୍ଟିକର୍ତ୍ତା ଦେଇଛ ଜୀବନ
ଆତଙ୍କିତ ବିଶ୍ୱବାସୀ
ଧ୍ୱଂସବେଳ ହେଲାଣି ଆସନ୍ନ
ଦୁଃଖହାରୀ ହେ କଂସାରି କରିବ ହେ
ବିପଦୁ ତାରଣ ମହାବାହୁ ହେ ।
ସ୍ୱାର୍ଥପର ମଣିଷର
ଭୁଲ ପାଇଁ ସଭିଏଁ କାତର
ମିଛମାୟା ଏ ସଂସାରେ
ସାହା ସେଇ କାଳିଆ ଠାକୁର
ଚତୁର୍ଭୁଜୋ ଜଗନ୍ନାଥୋ ତ୍ରାହିମାମ୍ ଜଗଦୀଶ୍ୱର
ମହାବାହୁ ହେ ।

ପ୍ଲଟ୍ ନଂ–୨୦୮, ଧର୍ମ ବିହାର
ଭୁବନେଶ୍ୱର

